# ଶ୍ରୀରାମ ଚରିତ ମାନସ

## ପ୍ରଥମ ଭାଗ

### ବାଲକାଣ୍ଡ ଓ ଅଯୋଧ୍ୟାକାଣ୍ଡ


ଅନୁବାଦ

**ସତ୍ୟାନନ୍ଦ ଚମ୍ପତିରାୟ**



**ଶ୍ରଦ୍ଧାପୁରୀ**

ପ୍ରଥମ ପ୍ରକାଶ
ଶ୍ରୀରାମ ନବମୀ
୩ ଅପ୍ରେଲ ୧୯୯୦

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରକ
ଦିବାକର ମିଶ୍ର
ଗୋସ୍ୱାମୀ ପ୍ରେସ୍
ଆଲାମଚନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ—ଟ ୮୦.୦୦

SRIRAMA CHARIT MANAS
Translated by
Satyananda Champatiray
Publishers : Vidyapuri, Cuttack 753002
1990

# ନିଜ କଥା

ଆମର କୁଳ ଦେବତା ରଘୁପତି । ବହୁଦିନ ପୂର୍ବରୁ ରଘୁପତିଙ୍କର ବିଗ୍ରହ ଆମ ଗାଁ ହିଜ ପାଖ ସରପାର ଠାକୁର ପ୍ରତିଷ୍ଠିତ ହୋଇ ପୂଜା ପାଉ ଅଛନ୍ତି ଏବଂ ମୋର ଜନ୍ମଦିନ ଠାରୁ ସୁଖ ଦୁଃଖ ଓ ସମ୍ପତ୍ତି ବିପତ୍ତି ଭିତରେ ମୁଁ ସେହି ରଘୁପତିଙ୍କର ସେବା କରି ଆସୁଅଛି ।

"ପ୍ରଗଟେଉ ଚହଁ ରଘୁପତି-ଶଶି-ଗୃରୁ
ବିଶ୍ୱ-ସୁଖଦ ଖଳ-କମଳ-ତୁଷାରୁ ।" (ବାଳକାଣ୍ଡ)

ସେହି ରଘୁପତିଙ୍କର ଚନ୍ଦ୍ରବଦନ କେବଳ ଯେ ଆମ ଗୃହରେ ବା ଆମ କୁଳରେ ଶୋଭା ପାଉଅଛି ତାହା ନୁହେଁ, ସଦାସର୍ବଦା ମୋର ହୃଦୟାକାଶରେ ପୂର୍ଣ୍ଣଶଶୀ ସ୍ୱରୂପ ରଘୁପତି ବିରାଜମାନ କରିଛନ୍ତି ।

ବାଲ୍ମୀକି ରାମାୟଣ ପରି ତୁଳସୀ ଦାସଙ୍କ ରଚିତ 'ଶ୍ରୀରାମ ଚରିତ ମାନସ' ଭାରତରେ ପ୍ରସିଦ୍ଧି ଲାଭ କରିଛି । ଭକ୍ତିରସରେ ରସାପ୍ଲୁତ ଶ୍ରୀରାମ ଚରିତ ମାନସ ମହର୍ଷି ବାଲ୍ମୀକିଙ୍କ ଦ୍ୱାରା ରଚିତ ପୃଥିବୀର ପ୍ରଥମ ମହାକାବ୍ୟ ଅପେକ୍ଷା ଅଧିକ ରସାଳ ଏବଂ ଜନମାନସର ଅଧିକାରୀ । ହିନ୍ଦୀ ଭାଷାଭାଷୀ ପ୍ରତ୍ୟେକ ଲୋକଙ୍କର ପ୍ରିୟ 'ରାମଚରିତ ମାନସ' ଓଡ଼ିଶାରେ ବିଶେଷ ପ୍ରଚାର ଲାଭ କରିନାହିଁ । ସରଳ ଓଡ଼ିଆରେ ନିତ୍ୟପାଠ୍ୟ ହେବା ଭଳି ଜଗନ୍ନାଥ ଦାସଙ୍କର ଭାଗବତ ଗ୍ରନ୍ଥ ଯେପରି ଓଡ଼ିଶାର ଘରେ ଘରେ ଓ ପ୍ରତି ଗ୍ରାମରେ ଆଦର ପାଉଅଛି, ସେହିପରି ହିନ୍ଦୀ ଭାଷା କଥିତ ହେଉଥିବା ପ୍ରତ୍ୟେକ ଗ୍ରାମରେ ଓ ପ୍ରତ୍ୟେକ ଘରେ ଗୋସ୍ୱାମୀ ତୁଳସୀ ଦାସଙ୍କ ରଚିତ ରାମଚରିତ ମାନସ ଆଦୃତ ଏବଂ ଗୃହୀତ । ଅବଶ୍ୟ ଓଡ଼ିଆରେ 'ଶ୍ରୀରାମ ଚରିତ ମାନସ'ର ବହୁ ଅନୁବାଦ ଗ୍ରନ୍ଥ ପ୍ରକାଶ ପାଇଅଛି । ତଥାପି ଏହା ବର୍ତ୍ତମାନ ସୁଦ୍ଧା ସମ୍ପୂର୍ଣ୍ଣ ଭାବରେ ଗ୍ରହଣୀୟ ହୋଇ ନାହିଁ । ଓଡ଼ିଶାରେ ରାମଚରିତ ମାନସର ଗ୍ରହଣୀୟତା ମୋର କାମନା । ତେଣୁ ଏହି ଅନୁବାଦ ଗ୍ରନ୍ଥଟି ମୁଁ ଲେଖିବାକୁ ପ୍ରୟାସ କରିଛି ।

୧୯୮୭ ମସିହା ମାର୍ଚ୍ଚ ମାସ ୨୪ ତାରିଖ ପୁଣ୍ୟ ତିଥିରେ ପୁରୀ 'ସୈକତ ନିବାସ' ଠାରେ ମୋର ପରମ ପୂଜ୍ୟ ଗୁରୁଦେବ ସ୍ୱାମୀ ଚିଦାନନ୍ଦ ସରସ୍ୱତୀ ମୋତେ ଦୀକ୍ଷା ଦାନ କରିବାବେଳେ ରାମାୟଣ ଗ୍ରନ୍ଥ ରଚନା କରିବାକୁ ଆଦେଶ ଦେଇଥିଲେ । ସେହି ଆଦେଶ ପ୍ରତିପାଳନ କରିବାକୁ ମୋର ଆନ୍ତରିକ ପ୍ରୟାସର ପ୍ରସୂନ ଏହି ଗ୍ରନ୍ଥଟି ତାଙ୍କର ଆଶିଷ ଲାଭ କରିବ ବୋଲି ମୋର ବିଶ୍ୱାସ ।

ଏହି ଗ୍ରନ୍ଥଟି ମୁଁ ଚଉଦ ଅକ୍ଷରୀ ବୃତ୍ତରେ ଲେଖିଛି, ଯେପରି ଏହା ସୁଲଳିତ ସ୍ୱରରେ ଗ୍ରାମେ ଗ୍ରାମେ ବୋଲିଯାଇ ପାରିବ ଏବଂ ପ୍ରତ୍ୟେକ ଓଡ଼ିଆ ରଘୁପତିଙ୍କ ଚରିତର ରସ ଆସ୍ୱାଦନ କରିପାରିବେ । ମୁଖ୍ୟତଃ ଗୀତା ପ୍ରେସ, ଗୋରଖପୁର ଦ୍ୱାରା ପ୍ରକାଶିତ ଶ୍ରୀ ହନୁମାନ ପ୍ରସାଦ ପୋଦାରଙ୍କ ଟୀକା ସହ 'ଶ୍ରୀରାମ ଚରିତ ମାନସ'କୁ ମୁଁ ହିଁ ଦିଗ୍‌ଦର୍ଶନ ପାଇଁ ଗ୍ରହଣ କରିଛି। ଯଥାସମ୍ଭବ ମୂଳ ଶ୍ରୀରାମ ଚରିତ ମାନସର ପଦ-ବିନ୍ୟାସକୁ ମୁଁ ଅକ୍ଷୁଣ୍ଣ ରଖିଛି । କିନ୍ତୁ ମୂଳ ଶ୍ରୀରାମ ଚରିତ ମାନସରେ ରହିଥିବା ଦୋହା, ଚୌପାଈ, ସୋରଠା ଏବଂ ଛନ୍ଦର ସ୍ଥାନ ଓଡ଼ିଆ ଭାଷାରେ ନାହିଁ । ତେଣୁ ମୁଁ ସେହି ଦୋହା ଓ ଚୌପାଈ ଆଦିରେ ଥିବା ବିଷୟବସ୍ତୁକୁ ସମ୍ପୂର୍ଣ୍ଣଭାବେ ଅକ୍ଷୁଣ୍ଣ ଓ କ୍ରମାନ୍ୱୟତା ରଖି ଓଡ଼ିଆ ଚଉଦ ଅକ୍ଷରୀ ବୃତ୍ତରେ ରଚନା କରିଅଛି । ଏହା ପାଠକମାନଙ୍କର ସୁବିଧା ନିମନ୍ତେ କରାଯାଇଛି । ତଥାପି ମାସ ପାରାୟଣ ଓ ନବାହ୍ନ ପାରାୟଣ ନିମନ୍ତେ ମୂଳ 'ରାମଚରିତ ମାନସ'ରେ ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କୁ ମୁଁ ଅତୁଟ ରଖିଛି, ଯେପରିକି ରସଗ୍ରାହୀ ଭକ୍ତ ପାଠକମାନେ ସୁବିଧା ଅନୁସାରେ ଏହାକୁ ନଅ ଦିନରେ ବା ମାସକରେ ପଢ଼ିପାରିବେ ।

ଶ୍ରୀରାମ ଚରିତ ମାନସରେ ଉତ୍ତମ କାବ୍ୟର ସମସ୍ତ ଲକ୍ଷଣ ସମ୍ପୂର୍ଣ୍ଣ ଭାବେ ପରିସ୍ଫୁଟ ଏବଂ ସାହିତ୍ୟର ସମସ୍ତ ରସ ବିଦ୍ୟମାନ । ଏଥିରେ ଆଦର୍ଶ ଗାର୍ହସ୍ଥ୍ୟ ଜୀବନ, ଆଦର୍ଶ ପାରିବାରିକ ଜୀବନ, ଆଦର୍ଶ ପାତିବ୍ରତ୍ୟ ଧର୍ମ, ଆଦର୍ଶ ଭ୍ରାତୃପ୍ରେମ ଏବଂ ଆଦର୍ଶ ରାଜଧର୍ମର ଯେଉଁ ବର୍ଣ୍ଣନା କରାଯାଇଛି, ତାହା ଅନ୍ୟତ୍ର ବିରଳ । ତା'ଛଡ଼ା ଏଥିରେ ଯେଉଁ ଉତ୍କୃଷ୍ଟ ଭକ୍ତି ଜ୍ଞାନ, ତ୍ୟାଗ ବୈରାଗ୍ୟ ଓ ସଦାଚାରର ଶିକ୍ଷା ତଥା ଜ୍ଞାନଯୋଗର ଯେଉଁ ଗୂଢ଼ ତତ୍ତ୍ୱମାନ ପରିବେଷଣ କରାଯାଇଛି, ତାକୁ ସାଧାରଣ ଲୋକେ ବୁଝିବା ପରି ଓଡ଼ିଆ ଭାଷାରେ ପ୍ରକାଶ କରିବାକୁ ମୁଁ ଚେଷ୍ଟା କରିଅଛି ।

ଏହି ଗ୍ରନ୍ଥ ଲୋକମାନଙ୍କ ଦ୍ୱାରା ଗୃହୀତ ଏବଂ ଆଦୃତ ହେଲେ ମୁଁ ମୋର ଶ୍ରମ ସାର୍ଥକ ହେଲା ବୋଲି ଜାଣିବି ।

ରାମନବମୀ, ୧୯୯୦
ରଘୁପତି ଆଶ୍ରମ, ସରପାରି

**ସତ୍ୟାନନ୍ଦ ଚମ୍ପତିରାୟ**

## ଶ୍ରୀରାମ ଭଜନ

ଶ୍ରୀରାମଚନ୍ଦ୍ର କୃପାଳୁ ଭଜ ମନ
ହରଣଂ ଭବ ଭୟ ଦାରୁଣମ୍ ।
ନବ କଞ୍ଜ ଲୋଚନ କଞ୍ଜ ମୁଖ କର
କଞ୍ଜ ପଦ କଞ୍ଜାରୁଣମ୍ ॥

କନ୍ଦର୍ପ ଅଗଣିତ ଅମିତ ଛବି ନବ
ନୀଳ ନୀରଦ ସୁନ୍ଦରମ୍ ।
ପଟ ପୀତ ପରିହିତ ତଡ଼ିତ ରୁଚି ଶୁଚି
ନୌମି ଜନକ-ସୁତାବରମ୍ ॥

ଭଜ ଦୀନବନ୍ଧୁ ଦୀନେଶ ଦାନବ
ଦୈତ୍ୟ ବଂଶ ନିକନ୍ଦନମ୍ ।
ରଘୁନନ୍ଦ ଆନନ୍ଦ କନ୍ଦ କୋଶଳ
ଚନ୍ଦ ଦଶରଥ ନନ୍ଦନମ୍ ॥

ଶିର ମୁକୁଟ କୁଣ୍ଡଳ ତିଳକ ଚାରୁ
ଉଦାର ଅଙ୍ଗ ବିଭୂଷଣମ୍ ।
ଆଜାନୁଭୁଜ ଶର ଚାପଧର
ସଂଗ୍ରାମ ଜିତ ଖର ଦୂଷଣମ୍ ॥

ଇତି ବଦତି ତୁଳସୀ ଦାସ ଶଙ୍କର
ଶେଷ ମୁନିମନ ରଞ୍ଜନମ୍ ।
ମମ ହୃଦୟ-କଞ୍ଜ ନିବାସ କୁରୁ
କାମାଦି ଖଳ ଦଳ ଗଞ୍ଜନମ୍ ॥

# ଶ୍ରୀରାମ-ରକ୍ଷା-ସ୍ତୋତ୍ରଂ

ଓଁ ଅସ୍ୟ ଶ୍ରୀରାମରକ୍ଷାସ୍ତୋତ୍ରସ୍ୟ, ବୁଧକୌଶିକ ଋଷିଃ, ଶ୍ରୀରାମଚନ୍ଦ୍ରୋ ଦେବତା, ଅନୁଷ୍ଟୁପ୍ଛନ୍ଦଃ, ଶ୍ରୀ ସୀତା ଶକ୍ତିଃ, ଶ୍ରୀହନୁମାନ୍ କୀଲକଂ, ଶ୍ରୀରାମଚନ୍ଦ୍ର-ପ୍ରୀତ୍ୟର୍ଥେ ଶ୍ରୀରାମ-ରକ୍ଷା-ସ୍ତୋତ୍ର-ଜପେ ବିନିଯୋଗଃ ।

## ଧ୍ୟାନଂ

ଧ୍ୟାୟେଦାଜାନୁବାହୁଂ ଧୃତ-ଶର-ଧନୁଷଂ ବଦ୍ଧ-ପଦ୍ମାସନସ୍ଥଂ
ପୀତଂବାସୋବସାନଂ ନବକମଳଦଳସ୍ପର୍ଦ୍ଧିନେତ୍ରଂ ପ୍ରସନ୍ନମ୍ ।
ବାମାଙ୍କାରୂଢ଼-ସୀତାମୁଖକମଳମିଳଲ୍ଲୋଚନଂ ନୀରଦାଭମ୍
ନାନାଲଙ୍କାରଦୀପ୍ତଂ ଦଧତମୁରୁଜଟାମଣ୍ଡଳଂ ରାମଚନ୍ଦ୍ରମ୍ । ୧

## ସ୍ତୋତ୍ରଂ

ଚରିତଂ ରଘୁନାଥସ୍ୟ ଶତ-କୋଟି-ପ୍ରବିସ୍ତରମ୍,
ଏକୈକମକ୍ଷରଂ ପୁଂସାଂ ମହାପାତକ-ନାଶନମ୍ ।୨

ଧ୍ୟାତ୍ୱା ନୀଳୋତ୍ପଳ-ଶ୍ୟାମଂ ରାମଂ ରାଜୀବ-ଲୋଚନମ୍,
ଜାନକୀ-ଲକ୍ଷ୍ମଣୋପେତଂ ଜଟାମୁକୁଟ-ମଣ୍ଡିତମ୍ । ୩

ସାସିତୂଣ ଧନୁର୍ବାଣ-ପାଣିଂ ନକ୍ତଞ୍ଚରାନ୍ତକମ୍,
ସ୍ୱଲୀଲୟା ଜଗତ୍ତ୍ରାତୁମାବିର୍ଭୂତମଜଂ ବିଭୁମ୍ । ୪

ରାମରକ୍ଷାଂ ପଠେତ୍ ପ୍ରାଜ୍ଞଃ ପାପଘ୍ନୀଂ ସର୍ବକାମଦାମ୍,
ଶିରୋ ମେ ରାଘବଃ ପାତୁ ଭାଲଂ ଦଶରଥାତ୍ମଜଃ । ୫

କୌଶଲ୍ୟେୟୋ ଦୃଶୌ ପାତୁ ବିଶ୍ୱାମିତ୍ରପ୍ରିୟଃ ଶ୍ରୁତୀ,
ଘ୍ରାଣଂ ପାତୁ ମଖତ୍ରାତା ମୁଖଂ ସୌମିତ୍ରିବତ୍ସଳଃ । ୬

ଜିହ୍ୱାଂ ବିଦ୍ୟାନିଧିଃ ପାତୁ କଣ୍ଠଂ ଭରତ-ବନ୍ଦିତଃ,
ସ୍କନ୍ଧୌ ଦିବ୍ୟାୟୁଧଃ ପାତୁ ଭୁଜୌ ଭଗ୍ନେଶକାର୍ମୁକଃ । ୭

କରୌ ସୀତାପତିଃ ପାତୁ ହୃଦୟଂ ଜାମଦଗ୍ନ୍ୟଜିତ୍,
ମଧ୍ୟଂ ପାତୁ ଖରଧ୍ୱଂସୀ ନାଭିଂ ଜାମ୍ବବଦାଶ୍ରୟଃ । ୮

ସୁଗ୍ରୀବେଶଃ କଟୀପାତୁ ସକ୍ଥିନୀ ହନୁମତ୍-ପ୍ରଭୁଃ,
ଊରୂ ରଘୂତ୍ତମଃ ପାତୁ ରକ୍ଷଃ-କୁଳ-ବିନାଶକୃତ୍ । ୯

ଜାନୁନୀ ସେତୁକୃତ୍ ପାତୁ ଜଙ୍ଘେ ଦଶମୁଖାନ୍ତକଃ,
ପାଦୌ ବିଭୀଷଣ-ଶ୍ରୀଦଃ ପାତୁ ରାମୋଽଖିଳଂ ବପୁଃ । ୧୦

ଏତାଂ ରାମବଳୋପେତାଂ ରକ୍ଷାଂ ଯଃ ସୁକୃତୀ ପଠେତ୍,
ସ ଚିରାୟୁଃ ସୁଖୀ ପୁତ୍ରୀ ବିଜୟୀ ବିନୟୀ ଭବେତ୍ । ୧୧

ପାତାଳ-ଭୂତଳ-ବ୍ୟୋମଚାରିଣଃ ଛଦ୍ମଚାରିଣଃ,
ନ ଦ୍ରଷ୍ଟୁମପି ଶକ୍ତାସ୍ତେ ରକ୍ଷିତଂ ରାମ ନାମଭିଃ । ୧୨

ରାମେତି ରାମଭଦ୍ରେତି ରାମଚନ୍ଦ୍ରେତି ବା ସ୍ମରନ୍,
ନରୋ ନ ଲିପ୍ୟତେ ପାପୈର୍ଭୁକ୍ତିଂ ମୁକ୍ତିଂ ଚ ବିନ୍ଦତି । ୧୩

ଜଗଜ୍ଜୈତ୍ରୈକମନ୍ତ୍ରେଣ ରାମନାମ୍ନାଭିରକ୍ଷିତମ୍,
ଯଃ କଣ୍ଠେ ଧାରୟେତ୍ତସ୍ୟ କରସ୍ଥାଃ ସର୍ବସିଦ୍ଧୟଃ । ୧୪

ବଜ୍ର-ପଞ୍ଜରନାମେଦଂ ଯୋ ରାମକବଚଂ ସ୍ମରେତ୍,
ଅବ୍ୟାହତାଜ୍ଞଃ ସର୍ବତ୍ର ଲଭତେ ଜୟମଙ୍ଗଳମ୍ । ୧୫

ଆଦିଷ୍ଟବାନ୍ ଯଥାସ୍ୱପ୍ନେ ରାମରକ୍ଷାମିମାଂହରଃ,
ତଥା ଲିଖିତବାନ୍ ପ୍ରାତଃ ପ୍ରବୁଦ୍ଧୋ ବୁଧକୌଶିକଃ । ୧୬

ଆରାମଃ କଳ୍ପବୃକ୍ଷାଣାଂ ବିରାମଃ ସକଳାପଦାମ୍,
**ଅଭିରାମ ସ୍ତ୍ରିଲୋକାନାଂ ରାମଃ ଶ୍ରୀମାନ୍ ସ ନଃ ପ୍ରଭୁଃ । ୧୭**

ତରୁଣୌ ରୂପସମ୍ପନ୍ନୌ ସୁକୁମାରୌ ମହାବଳୌ,
ପୁଣ୍ଡରୀକବିଶାଳାକ୍ଷୌ ଚୀରକୃଷ୍ଣାଜିନାମ୍ବରୌ । ୧୮

ଫଳମୂଳାଶିନୌଦାନ୍ତୌ ତାପସୌ ବ୍ରହ୍ମଚାରିଣୌ,
ପୁତ୍ରୌ ଦଶରଥସ୍ୟୈତୌ ଭ୍ରାତରୌ ରାମଲକ୍ଷ୍ମଣୌ । ୧୯

ଶରଣ୍ୟୌ ସର୍ବସତ୍ତ୍ୱାନାଂ ଶ୍ରେଷ୍ଠୌ ସର୍ବଧନୁଷ୍ମତାମ୍ ,
ରକ୍ଷଃକୁଳନିହନ୍ତାରୌ ତ୍ରାୟେତାଂ ନୌ ରଘୂତ୍ତମୌ । ୨୦

ଆତ୍ତସଜ୍ଜଧନୁଷାବିଷୁସ୍ପୃଶା ବକ୍ଷୟାଶୁଗନିଷଂଗ-ସଂଗିନୌ,
ରକ୍ଷଣାୟ ମମ ରାମଲକ୍ଷ୍ମଣାବଗ୍ରତଃ ପଥିସଦୈବ ଗଚ୍ଛତାମ୍ । ୨୧

ସନ୍ନଦ୍ଧଃ କବଚୀ ଖଡ୍‌ଗୀ ଚାପବାଣଧରୋ ଯୁବା,
ଗଚ୍ଛନ୍ମନୋରଥାନ୍ନଶ୍ଚ ରାମଃ ପାତୁ ସଲକ୍ଷ୍ମଣଃ । ୨୨

ରାମଃ ଦାଶରଥିଃ ଶୂରୋ ଲକ୍ଷ୍ମଣାନୁଚରୋ ବଳୀ,
କାକୁତ୍ସ୍ଥଃ ପୁରୁଷଃ ପୂର୍ଣ୍ଣଃ କୌଶଲ୍ୟେୟୋ ରଘୂତ୍ତମଃ । ୨୩

ବେଦାନ୍ତବେଦ୍ୟୋ ଯଜ୍ଞେଶଃ ପୁରାଣ-ପୁରୁଷୋତ୍ତମଃ,
ଜାନକୀ-ବଲ୍ଲଭଃ ଶ୍ରୀମାନପ୍ରମେୟ-ପରାକ୍ରମଃ । ୨୪

ଇତ୍ୟେତାନି ଜପନ୍ନିତ୍ୟଂ ମଦ୍‌ଭକ୍ତଃ ଶ୍ରଦ୍ଧୟାନ୍ୱିତଃ,
ଅଶ୍ୱମେଧାଧିକଂ ପୁଣ୍ୟଂ ସମ୍ପ୍ରାପ୍ନୋତି ନ ସଂଶୟଃ । ୨୫

ରାମଂ ଦୂର୍ବାଦଳଶ୍ୟାମଂ ପଦ୍ମାକ୍ଷଂ ପୀତବାସସମ୍ ,
ସ୍ତୁବନ୍ତିନାମଭିର୍ଦିବ୍ୟୈର୍ନତେ ସଂସାରିଣୋ ନରାଃ । ୨୬

ରାମଂ ଲକ୍ଷ୍ମଣ-ପୂର୍ବଜଂ ରଘୁବରଂ ସୀତାପତିଂ ସୁନ୍ଦରମ୍ ,
କାକୁତ୍ସ୍ଥଂ କରୁଣାର୍ଣ୍ଣବଂ ଗୁଣନିଧିଂ ବିପ୍ରପ୍ରିୟଂ ଧାର୍ମିକମ୍ ।
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥତନୟଂ ଶ୍ୟାମଳଂ ଶାନ୍ତମୂର୍ତ୍ତିମ୍ ,
ବନ୍ଦେ ଲୋକାଭିରାମଂ ରଘୁକୁଳତିଳକଂ ରାଘବଂ ରାବଣାରିମ୍ । ୨୭

ରାମାୟ ରାମଭଦ୍ରାୟ ରାମଚନ୍ଦ୍ରାୟ ବେଧସେ,
ରଘୁନାଥାୟ ନାଥାୟ ସୀତାୟାଃ ପତୟେ ନମଃ । ୨୮

ଶ୍ରୀ ରାମ ରାମ ରଘୁନନ୍ଦନ ରାମ ରାମ
ଶ୍ରୀ ରାମ ରାମ ଭରତାଗ୍ରଜ ରାମ ରାମ,
ଶ୍ରୀ ରାମ ରାମ ରଣକର୍କଶ ରାମ ରାମ,
ଶ୍ରୀ ରାମ ରାମ ଶରଣଂ ଭବ ରାମ ରାମ । ୨୯

ଶ୍ରୀ ରାମଚନ୍ଦ୍ର-ଚରଣୌ ମନସା ସ୍ମରାମି,
ଶ୍ରୀ ରାମଚନ୍ଦ୍ର-ଚରଣୌ ବଚସା ଗୃଣାମି,
ଶ୍ରୀ ରାମଚନ୍ଦ୍ର-ଚରଣୌ ଶିରସା ନମାମି,
ଶ୍ରୀ ରାମଚନ୍ଦ୍ର-ଚରଣୌ ଶରଣଂ ପ୍ରପଦ୍ୟେ । ୩୦

ମାତା ରାମୋ ମତ୍ପିତା ରାମଚନ୍ଦ୍ରଃ
ସ୍ୱାମୀ ରାମୋ ମତ୍ସଖା ରାମଚନ୍ଦ୍ରଃ ।
ସର୍ବସ୍ୱଂ ମେ ରାମଚନ୍ଦ୍ରୋ ଦୟାଳୁ-
ର୍ନାନ୍ୟଂ ଜାନେ ନୈବ ଜାନେ ନ ଜାନେ । ୩୧

ଦକ୍ଷିଣେ ଲକ୍ଷ୍ମଣୋ ଯସ୍ୟ ବାମେ ଚ ଜନକାତ୍ମଜା,
ପୁରତୋ ମାରୁତିର୍ଯସ୍ୟ ତଂ ବନ୍ଦେ ରଘୁନନ୍ଦନମ୍ । ୩୨

ଲୋକାଭିରାମଂ ରଣରଙ୍ଗଧୀରଂ,
ରାଜୀବନେତ୍ରଂ ରଘୁବଂଶନାଥମ୍ ।
କାରୁଣ୍ୟରୂପଂ କରୁଣାକରଂ ତଂ,
ଶ୍ରୀ ରାମଚନ୍ଦ୍ରଂ ଶରଣଂ ପ୍ରପଦ୍ୟେ । ୩୩

ମନୋଜବଂ ମାରୁତତୁଲ୍ୟବେଗଂ,
ଜିତେନ୍ଦ୍ରିୟଂ ବୁଦ୍ଧିମତାଂ ବରିଷ୍ଠମ୍ ।
ବାତାତ୍ମଜଂ ବାନରଯୂଥମୁଖ୍ୟଂ,
ଶ୍ରୀ ରାମଦୂତଂ ଶରଣଂ ପ୍ରପଦ୍ୟେ । ୩୪

କୂଜନ୍ତଂ ରାମରାମେତି ମଧୁରଂ ମଧୁରାକ୍ଷରମ୍ ,
ଆରୁହ୍ୟ କବିତା-ଶାଖାଂ ବନ୍ଦେ ବାଲ୍ମୀକି-କୋକିଳମ୍ । ୩୫

ଆପଦାମପହର୍ତ୍ତାରଂ ଦାତାରଂ ସର୍ବସମ୍ପଦାମ୍ ,
ଲୋକାଭିରାମଂ ଶ୍ରୀରାମଂ ଭୂୟୋ ଭୂୟୋ ନମାମ୍ୟହମ୍ । ୩୬

ଭର୍ଜ୍ଜନଂ ଭବବୀଜାନା ମର୍ଜ୍ଜନଂ ସୁଖସମ୍ପଦାମ୍ ,
ତର୍ଜ୍ଜନଂ ଯମଦୂତାନାଂ ରାମ ରାମେତି ଗର୍ଜ୍ଜନମ୍ । ୩୭

ରାମୋରାଜମଣିଃ ସଦା ବିଜୟତେ ରାମଂ ରମେଶଂ ଭଜେ,
ରାମେଣାଭିହତା ନିଶାଚରଚମୂ ରାମାୟ ତସ୍ମୈ ନମଃ ।
ରାମାନ୍ନାସ୍ତି ପରାୟଣଂ ପରତରଂ ରାମସ୍ୟ ଦାସୋଽସ୍ମ୍ୟହଂ,
ରାମେ ଚିତ୍ତଲୟଃ ସଦା ଭବତୁ ମେ ଭୋ ରାମ ମାମୁଦ୍ଧର । ୩୮

ରାମ ରାମେତି ରାମେତି ରମେ ରାମେ ମନୋରମେ,
ସହସ୍ର ନାମ ତତ୍ତୁଲ୍ୟଂ ରାମନାମ ବରାନନେ । ୩୯

ଇଷ୍ଟଦଂ କବଚଂ ଦିବ୍ୟଂ ନିୟମେନ ପଠେନ୍ନରଃ,
ତସ୍ୟ ସର୍ବାର୍ଥ-ସିଦ୍ଧିଃ ସ୍ୟାତ୍ ଶ୍ରୀ ମହେଶ-ପ୍ରସାଦତଃ ।

**ଇତି ଶ୍ରୀ ବୁଧକୌଶିକ ମୁନି-ବିରଚିତ-ଶ୍ରୀ ରାମରକ୍ଷା ସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।**

# କେତୋଟି ସମ୍ପୁଟ ମନ୍ତ୍ର

୧ ।   ମଙ୍ଗଳ ଭବନ ଅମଙ୍ଗଳହାରୀ,
ଦ୍ରବଉଁସୋ ଦଶରଥ ଅଜିର-ବିହାରୀ ।

**(ସମସ୍ତ କାର୍ଯ୍ୟସିଦ୍ଧି ପାଇଁ)**

୨ ।   ମଙ୍ଗଳ ମୂରତି ମାରୁତ ନନ୍ଦନ,
ସକଳ ଅମଙ୍ଗଳ ମୂଳ ନିକନ୍ଦନ ।

୩ ।   ପବନ ତନୟ ସନ୍ତନ ହିତକାରୀ,
ହୃଦୟ ବିରାଜତ ଅବଧବିହାରୀ ।

୪ ।   ସୁମିରି ପବନ ସୁତ ପାବନ ନାମୂ,
ଅପନେ ବଶ କରି ରାଖେ ରାମୂ ।

୫ ।   ଗଈ ବହୋରି ଗରୀବ ନେବାଜୂ,
ସରଲ ସବଲ ସାହିବ ରଘୁରାଜୂ ।

୬ ।   ମୋରି ସୁଧାରହି ସୋ ସବ ଭାଁତି,
ଜାସୁ କୃପା ନହିଂ କୃପାଁ ଅଘାତି

୭ ।   ଦୀନ ଦୟାଲ ବିରଦୁ ସଂଭାରୀ,
ହରହୁ ନାଥ ମମ ସଙ୍କଟ ଭାରୀ ।

**(ବିପତ୍ତି ନାଶ ପାଇଁ)**

# ଶ୍ରୀରାମ ଚରିତ ମାନସ

## ପ୍ରଥମ ସୋପାନ

## ବାଲ କାଣ୍ଡ

ବର୍ଣ୍ଣାନାମର୍ଥସଂଘାନାଂ ରସାନାଂ ଛନ୍ଦସାମପି ।
ମଙ୍ଗଳାନାଂ ଚ କର୍ତ୍ତାରୌ ବନ୍ଦେ ବାଣୀବିନାୟକୌ ॥ ୧ ॥

ଭବାନୀଶଙ୍କରୌ ବନ୍ଦେ ଶ୍ରଦ୍ଧାବିଶ୍ୱାସରୂପିଣୌ ।
ଯାଭ୍ୟାଂ ବିନା ନ ପଶ୍ୟନ୍ତି ସିଦ୍ଧାଃ ସ୍ୱାନ୍ତଃସ୍ଥମୀଶ୍ୱରମ୍ ॥ ୨ ॥

ବନ୍ଦେ ବୋଧମୟଂ ନିତ୍ୟଂ ଗୁରୁଂ ଶଙ୍କରରୂପିଣମ୍ ।
ଯମାଶ୍ରିତୋ ହି ବକ୍ରୋଽପି ଚନ୍ଦ୍ରଃ ସର୍ବତ୍ର ବନ୍ଦ୍ୟତେ ॥ ୩ ॥

ସୀତାରାମଗୁଣଗ୍ରାମପୁଣ୍ୟାରଣ୍ୟବିହାରିଣୌ ।
ବନ୍ଦେ ବିଶୁଦ୍ଧବିଜ୍ଞାନୌ କବୀଶ୍ୱରକପୀଶ୍ୱରୌ ॥ ୪ ॥

ଉଦ୍ଭବସ୍ଥିତିସଂହାରକାରିଣୀଂ କ୍ଲେଶହାରିଣୀମ୍ ।
ସର୍ବଶ୍ରେୟସ୍କରୀଂ ସୀତାଂ ନତୋଽହଂ ରାମବଲ୍ଲଭାମ୍ ॥ ୫ ॥

ଯନ୍ମାୟାବଶବର୍ତ୍ତି ବିଶ୍ୱମଖିଳଂ ବ୍ରହ୍ମାଦିଦେବାସୁରାଃ ।
ଯତ୍ସତ୍ତ୍ୱାଦମୃଷୈବ ଭାତି ସକଳଂ ରଜ୍ଜୌ ଯଥାହେର୍ଭ୍ରମଃ ।
ଯତ୍ପାଦପ୍ଳବମେକମେବ ହି ଭବାମ୍ଭୋଧେସ୍ତିତୀର୍ଷାବତାମ୍ ।
ବନ୍ଦେଽହଂ ତମଶେଷକାରଣପରଂ ରାମାଖ୍ୟମୀଶଂ ହରିମ୍ ॥ ୬ ॥

ନାନାପୁରାଣନିଗମାଗମସଂମତଂ ଯଦ୍
ରାମାୟଣେ ନିଗଦିତଂ କ୍ୱଚିଦନ୍ୟତୋଽପି ।
ସ୍ୱାନ୍ତଃସୁଖାୟ ତୁଳସୀ ରଘୁନାଥଗାଥା—
ଭାଷାନିବନ୍ଧମତିମଞ୍ଜୁଳମାତନୋତି ॥ ୭ ॥

# ଏକ

ବର୍ଣ୍ଣମାଳା ଅର୍ଥମାଳା ଛନ୍ଦ ଆଉ ରସ,
ଯେତେକ ମଙ୍ଗଳ କର୍ମ ଶୁଭଦ ସରସ—
କର୍ତ୍ତା ଏଣ୍ଟ ସକଳର ଯେହୁ ଏ ଜଗତେ
ସେହ୍ନ ବାଣୀ ବିନାୟକେ ବନ୍ଦଇ ନିରତେ । ୧

ଶ୍ରଦ୍ଧା ବିଶ୍ୱାସରୂପୀ ଭବାନୀ ଶଙ୍କର
ଯାହାଙ୍କ କରୁଣା ବିନା ସବୁ ସିଦ୍ଧ ନର
ଦେଖି ନ ପାରନ୍ତି କେବେ ନିଜର ଅନ୍ତରେ
ନିତ୍ୟ ଅବସ୍ଥିତ ସେହ୍ନ ଈଶ୍ୱରଙ୍କୁ ଥରେ । ୨

ଯାହାଙ୍କୁ ଆଶ୍ରୟ କରି ଦ୍ୱିତୀୟାର ଚନ୍ଦ୍ର,
ବଙ୍କା ହୋଇଲେବି ପୂଜ୍ୟ, ଦିଅଇ ଆହ୍ଲାଦ,
ସେହ୍ନ ଜ୍ଞାନମୟ ନିତ୍ୟ ଶଙ୍କର ସମାନ
ଗୁରୁଙ୍କ ଚରଣେ କରେ ବିନୀତ ପ୍ରଣାମ । ୩

ଜାନକୀ-ଶ୍ରୀରାମ-ଗୁଣ ଗ୍ରାମ-ମହାରଣ୍ୟେ
ବିହାର କରନ୍ତି ଯେହୁ ସମ୍ପୃକ୍ତ ମନେ,
ସେ ସିଦ୍ଧ ବିଜ୍ଞାନୀ କବି ବାଲ୍ମୀକି ମୁନି
ଆଉ ହନୁମାନ ବେନି ବନ୍ଦଇ ମୁଁ ପୁଣି । ୪

ଉତ୍ପତ୍ତି ସ୍ଥିତି ଆଉ ସଂହାରକାରିଣୀ
ଜଗତ ଜନନୀ ହୋଇ ସନ୍ତାପ ହାରିଣୀ;
କୋଟି ସୁକଲ୍ୟାଣମୟୀ ଶ୍ରୀରାମ ବଲ୍ଲଭା
ସୀତା ପାଦ-ପଦ୍ମ ଦୁଇ ବନ୍ଦେ ମୁହିଁ କବି । ୫

ଅଖିଳ ଭୁବନ ବ୍ରହ୍ମା ଦେବତା ଦଇତ,
ଯାହାଙ୍କର ମାୟାବଶେ ସଦା ବିମୋହିତ,
ଯେଉଁ ମାୟାହେତୁ ରଜ୍ଜୁ ଦିଶେ ସର୍ପ ପରି
ଅଳୀକ ସଂସାର ଲାଗୁଥାଏ ସତ ଭଳି,
ଚରଣ କେବଳ ଯା'ର ତରି ପ୍ରାୟେ କରି
ଏ ଭବ-ସାଗର ମାୟା ହେଲେ ଯା'ନ୍ତି ତରି,
କାରଣମାନଙ୍କ ମଧ୍ୟେ ପରମ କାରଣ
ରାମ ନାମେ ହରିଙ୍କୁ ମୁଁ କରୁଛି ବନ୍ଦନ । ୬

ନାନାବିଧ ପୁରାଣ ବେଦ ତନ୍ତ୍ର ସମର୍ଥିତ
ରାମାୟଣେ ଯା'ର ତତ୍ତ୍ୱ ଅଟେ ନିବେଦିତ,
ଅବା ଅନ୍ୟ କେଉଁଠାରେ ହିଁ ଶବଦେ ବର୍ଣ୍ଣିତ
ସେହି ରଘୁନାଥ ଗାଥା ସୁନ୍ଦର ଚରିତ,
ତୁଳସୀ ଭକତ ଭରେ ଅନେକ ଆଶାରେ
ରଚେ ନିଜ ସୁଖ ପାଇଁ ସରଳ ଭାଷାରେ । ୭

ଯାହାଙ୍କ ଚରଣ ସର୍ବ ସିଦ୍ଧି ପ୍ରଦାୟକ
ସେ ଗଣନାୟକ, ଗଜାନନ ବିନାୟକ,
ସେ ବୁଦ୍ଧି-ବାରିଧି ଶୁଭ ଗୁଣ-ନିକେତନ
ଶ୍ରୀ ଗଣେଶ କର ଦୟା ଏହି ଦୀନଜନ । ୮

ମୂକ ହୁଏ ବାବଦୂକ ଯା' କୃପାରେ କ୍ଷଣେ
ପଙ୍ଗୁ ଲଙ୍ଘିଯାଏ ତୁଙ୍ଗ ଗିରି ତତକ୍ଷଣେ,
କଳିକାଳ-ମଳ ନାଶୀ କରୁଣା ସାଗର
ଦୟାନିଧି ଦୟା କର ମୋତେ ନିରନ୍ତର । ୯

ଯାହାଙ୍କର ଅଙ୍ଗ ନୀଳୋତ୍ପଳ ଶ୍ୟାମ ବର୍ଣ୍ଣ
ତରୁଣ-ଅରୁଣ-ଅରବିନ୍ଦ ଯା' ଲୋଚନ,
କ୍ଷୀର-ସିନ୍ଧୁ-ଶାୟୀ-ନାରାୟଣ ପୀତବାସ
ମୋ ହୃଦୟ ସ୍ଥଳେ ସଦେ କରନ୍ତୁ ନିବାସ । ୧୦

କୁନ୍ଦେନ୍ଦୁ ଧବଳ ଦେହ କାନ୍ତି ସୁଶୋଭନ
କରୁଣା ନିଳୟ ଉମା ପ୍ରାଣ ପ୍ରିୟ ଧନ,
ଦୀନ-ଜନ-ସ୍ନେହୀ କାମ-ନାଶୀ ମହେଶ୍ୱର
ଏ ଅଧମ ଜନେ ଶଙ୍କରେ ଅନୁକମ୍ପା କର । ୧୧

ନର ରୂପଧାରୀ ହରି କରୁଣାସାଗର
ଯାହାଙ୍କ ବଚନ ରାଜି ଯେସନ୍ତେ ରବି-କର;
ଅଜ୍ଞାନ ଅନ୍ଧାର ନାଶ କରିପାରେ ଖରେ
ସେହି ଗୁରୁ ପାଦ-ପଦ୍ମେ ବନ୍ଦନା ମୁଁ କରେ । ୧୨

ବନ୍ଦୁଅଛି ଗୁରୁପଦ-ପଙ୍କଜ-ପରାଗ
ସୁରୁଚି ସୁବାସ ରସଭରି ଅନୁରାଗ,
ସୁଧାଭରି ଅଉଷଧ ଚୂର୍ଣ୍ଣ ମନୋହର
ସକଳ ସଂସାର-ରୋଗ ନିଦାନ ନିକର । ୧୩

ଏ ରଜ ସୁକୃତରୂପୀ ଶିବଙ୍କ ଦେହର
ସୁଶୋଭିତ ସେହି ଅବା ବିଭୂତି ନିର୍ମଳ,
ସେ ଶୋଭା କଲ୍ୟାଣ ଆଉ ଆନନ୍ଦ ଦାୟିନୀ
ଜନ-ମନ-ଦରପଣ ମଳ ବିନାଶିନୀ ।
ଏ ରଜ ତିଳକ କଲେ କେହି ଭକ୍ତଜନ
ସକଳ ସୁଗୁଣ ତାଙ୍କୁ କରନ୍ତି ଭଜନ । ୧୪

ଗୁରୁ ପଦନଖ ମଣି ସମ ଜ୍ୟୋତିର୍ମୟ
ସ୍ମରଣେ ହୃଦୟେ ଦିବ୍ୟ ଦୃଷ୍ଟିର ଉଦୟ,
ସେ ଅଜ୍ଞାନରୂପୀ ଅନ୍ଧକାର କରେ ନାଶ
ଭାଗ୍ୟବାନ ଜନ ହୃଦେ ହୁଅଇ ପ୍ରକାଶ । ୧୫

ଜାତ ମାତ୍ରେ ଖୋଲେ ହୃଦ ବିମଳ ଲୋଚନ
କଟେ ଭବ-ନିଶା-ଦୋଷ ଦୂରିତ କଷଣ,
ଶ୍ରୀରାମ ଚରିତ ରୂପ ମଣି ଓ ମାଣିକ
ଦିଶଇ ଯେ ସ୍ଥାନେ ଥାଉ, ଗୁପ୍ତ ବା ପ୍ରକଟ । ୧୬

ଯେପରି ଲଗାଇ ସିଦ୍ଧାଞ୍ଜନ ସୁସାଧକ
ହୁଅନ୍ତି ସୁଜ୍ଞାନୀ ସିଦ୍ଧ, ରତ୍ନ-ପ୍ରକାଶକ,
ଥାଉ ସେ ରତନ ଗିରି ବନ ଧରାତଳେ
କୌତୁକେ ପାରନ୍ତି ଦେଖି ଏହି ସିଦ୍ଧ ନରେ । ୧୭

ଗୁରୁ-ପଦ-ରଜ ମୃଦୁ ମଞ୍ଜୁଳ ଅଞ୍ଜନ
ନୟନ ଅମୃତ, ନେତ୍ର ଦୋଷ ବିଭଞ୍ଜନ,
ତହିଁରେ ନିର୍ମଳ କରି ବିବେକ-ଲୋଚନ
ଶ୍ରୀରାମ ଚରିତ ରଚେ, ଭବ-ବିମୋଚନ । ୧୮

ବନ୍ଦେ ଆଦ୍ୟେ ଧରାଦେବ ବ୍ରାହ୍ମଣ ଚରଣ
ମୋହ ଜାତ ସଂଶୟ ଯେ କରନ୍ତି ହରଣ,
ବନ୍ଦଇ ମୁଁ ସର୍ବଗୁଣାଧାର ସାଧୁଜନେ
ପ୍ରୀତି ରସାଣିତ ମୃଦୁ ଅମିୟ ବଚନେ । ୧୯

ସାଧୁଙ୍କ ଚରିତ କପା ସଦୃଶ ବିମଳ
ନୀରସ ଉଜ୍ଜ୍ୱଳ ଗୁଣମୟ ଯା'ର ଫଳ,
ଲୁଚନ୍ତି ଯେ ପରଛିଦ୍ର ନିଜେ ଦୁଃଖ ସହି
ବନ୍ଦନୀୟ ଯଶଲାଭ କରିଥାନ୍ତି ସେହି । ୨୦

କପାର ହୃଦୟ ଯେହ୍ନେ ଶୁଷ୍କ ଓ ନୀରସ
ଭୋଗ ବିନା ତେହ୍ନେ ସାଧୁ ସଦା ଶୁଷ୍କରସ,
ସେ ହୋଇ ଅଜ୍ଞାନ-ପାପ-ତମସା ରହିତ
ଶୁଭ୍ର ସମୁଜ୍ଜ୍ୱଳ ରୂପେ ହୁଅନ୍ତି ଶୋଭିତ,
ଗୁଣଯୁକ୍ତ କପା ପରି ସନ୍ତଙ୍କ ହୃଦୟ
ଭରି ରହିଥାଏ ସଦା ସଦ୍‌ଗୁଣ ନିଚୟ,
ବହୁ ଦୁଃଖ ସହି କପା ହୁଅଇ ବସନ
ଆନନ୍ଦ ଦିଅଇ ଜନେ କରି ଆଚ୍ଛାଦନ,
ସେହିପରି ଦୁଃଖ ସହି ସାଧୁ ସନ୍ଥ ଜନେ
ଦିଅନ୍ତି ଆନନ୍ଦ ଅନ୍ୟେ ଅଖିଳ ଭୁବନେ ।

ଆନନ୍ଦ ମଙ୍ଗଳମୟ ସାଧୁଙ୍କ ସମାଜ
ଜଗତେ ଜଙ୍ଗମ ଅଟେ ଯେହ୍ନ ତୀର୍ଥରାଜ,
ଶ୍ରୀ ରାମ ଭକତ ଯହିଁ ସୁରଧୂନୀ ଧାର
ସରସ୍ୱତୀ ଯହିଁ ବ୍ରହ୍ମ ବିଚାର ପ୍ରଚାର । ୨୧

ବିଧି ଓ ନିଷେଧମୟ ଯେତେ କର୍ମମାନ
କଳି-ମଳ-ନାଶୀ ରବି-ତନୟା ସମାନ,
ଶୁଣି ସେ ତ୍ରିବେଣୀ ସ୍ଥିତ ହରିହର କଥା
ସକଳ ମଙ୍ଗଳ ମୋଦ ମିଳଇ ସର୍ବଥା । ୨୨

ଅକ୍ଷୟବଟ ଯେହ୍ନ ତୀର୍ଥେ, ସ୍ୱଧର୍ମେ ବିଶ୍ୱାସ
ଶୁଭକର୍ମ, ସମାଜର ସୁଜନ ବିନ୍ୟାସ,
ଏ ସନ୍ତ-ସମାଜ-ତୀର୍ଥରାଜ ଟିଭେଁ ଜନେ
ସହଜେ ମିଳଇ ସବୁ ସ୍ଥାନେ ସବୁ କ୍ଷଣେ । ୨୩

ଅଲୌକିକ ତୀର୍ଥରାଜ, କେ ପାରିବ କହି
ପ୍ରତ୍ୟକ୍ଷ ପ୍ରଭାବ, ସଦ୍ୟ ଫଳଥାଏ ଦେଇ । ୨୪

ତା' ପ୍ରଭାବ ଶୁଣି ବୁଝି ପ୍ରୀତି ଅନୁରାଗେ
ପ୍ରସନ୍ନ ମାନସେ ସାଧୁ-ସମାଜ-ପ୍ରୟାଗେ,
ନିମଜ୍ଜି ଥାଆନ୍ତି ଯେହ୍ନ, ସେହି ଏ ଶରୀରେ
ଲଭିଥାନ୍ତି ଚତୁଃବର୍ଗ ଫଳକୁ ଅଚିରେ । ୨୫

ଦେଖ ସ୍ନାନ କରିବାର ଫଳ ତତ୍‌କାଳିକ
ବକ ହୁଏ ରାଜହଂସ, କାକ ହୁଏ ପିକ,
ଦେଖି ଏହି କଥା କେହି ନୋହୁ ଆଚମ୍ବିତ
ସତ୍‌ସଙ୍ଗ ମହିମା ନୁହେଁ କାହିଁ ଲୁକ୍‌କାୟିତ । ୨୬

ବାଲ୍ମୀକି ନାରଦ ମୁନି ଅଗସ୍ତି ଯେ ପୁଣି
ନିଜ ମୁଖେ ନିଜ କଥା ଯାଇଛନ୍ତି ଗୁଣି,
ଜଳଚର ସ୍ଥଳଚର ପୁଣି ନଭଚର
ଏ ଜଡ଼ ଚେତନ ଯେତେ ଜୀବ ଜଗତର । ୨୭

ଯେହୁ ଯହିଁ ଯେଉଁପରି ଯତନେ ପାଇଛନ୍ତି ,
ସୁମତି କୀରତି ଗତି ଭୂତି ଭଲ କନ୍ତି,
ଜାଣିବ ସେ ସବୁ ସିନା ସାଧୁସଙ୍ଗ ପାଇଁ
ବେଦ ଲୋକମତେ ଆନ ଉପାୟ ଯେ ନାହିଁ । ୨୮

ସାଧୁ ସଙ୍ଗ ବିନା ଜ୍ଞାନ କେବେ ନ ହୁଅଇ
ରାମ କୃପା ବିନା ତାହା ସୁଲଭ ନୁହଁଇ,
ସତ୍‌ସଙ୍ଗ ଆନନ୍ଦ ଆଉ ମଙ୍ଗଳର ମୂଳ
ସିଦ୍ଧି ଅଟେ ଫଳ. ବାଣୀ ସାଧନାର ଫୁଲ । ୨୯

ସାଧୁସଙ୍ଗ ପାଇ ଶଠ ଜନ ସୁଧୁରଇ
ପରଶେ ଯେସନେ ଲୁହା ସୁନା ପାଲଟଇ,
ଦୈବ ଯୋଗେ ସାଧୁ ଯେବେ ପଡ଼େ କୁସଙ୍ଗରେ
ଫଣି ମଣି ସମ ନିଜ ଗୁଣ ଅନୁସରେ । ୩୦

ବ୍ରହ୍ମା ହରିହର କବି ପଣ୍ଡିତ ଭାରତୀ
ସଙ୍କୋଚି ସାଧୁଙ୍କ ଗୁଣ କହି ନ ପାରନ୍ତି,
ତାହା ମୋହ ଦ୍ୱାରା କେବେ କହି ନ ହୁଅଇ
ଶାଗବାଲା ଯେହ୍ନେ ମଣି ଗୁଣ ନ ଚିହ୍ନଇ । ୩୧

ବନ୍ଦେ ମୁହିଁ ସମଚିତ୍ତ ସାଧୁସନ୍ଥ ଜନେ
ହିତ ଓ ଅହିତ କିଛି ନାହିଁ ତାଙ୍କ ମନେ,
ଅଞ୍ଜଳିରେ ଥିବା ଗନ୍ଧ କୁସୁମ ଯେପରି
ବେନି କରେ ସମଭାବେ ବାସ ଦିଏ ଭରି । ୩୨

ସରଳ ହୃଦୟ ସନ୍ଥ ଜନ ହିତକାରୀ
ତାଙ୍କର ସ୍ୱଭାବ ସ୍ନେହ ମନରେ ବିଚାରି,
ଶୁଣି ମୋର ଏହି ବାଳ-ସୁଲଭ ବିନତି
ଶ୍ରୀରାମ ଚରଣେ ଦିଅ ନିରମଳ ରତି । ୩୩

ଭଲ ମନେ ପୁଣି ଖଳେ କରୁଛି ପ୍ରଣାମ
ହିତକାରୀ ଜନେ ଯିଏ ଅକାରଣେ ବାମ,

ପର ଅହିତକୁ ଯିଏ ଭାବେ ନିଜ ଲାଭ
ଅନ୍ୟ ଉଜୁଡ଼ିଲେ ସୁଖ, ବଢ଼ନ୍ତେ ବିଷାଦ । ୩୪

ହରିହର ଯଶ-ପୂର୍ଣ୍ଣ-ଶଶିକୁ ଯେ ରାହୁ
ଅନ୍ୟର ଅନିଷ୍ଟ ପାଇଁ ବୀର ସ'ସ୍ର ବାହୁ,
ପର ଦୋଷ ଦେଖନ୍ତି ସେ ସହସ୍ର ଲୋଚନେ
ପରହିତ ରୂପ ଘୃତେ ମକ୍ଷିକା ଯେସନେ । ୩୫

ଅନ୍ୟକୁ ଦେବାକୁ ଦୁଃଖ ତେଜରେ ଅନଳ
କ୍ରୋଧେ ଯମରାଜ, ପାପ-ଧନେ ଧନେଶ୍ୱର,
କେତୁ ଅଟେ ସଭିଙ୍କର ହିତେ ସେହି ଖଳ
କୁମ୍ଭକର୍ଣ୍ଣ ପ୍ରାୟେ ଶୋଇ ପଡ଼ିଥିଲେ ଭଲ । ୩୬

ତେଜଇ ସେ ତନୁ ପର ଅନିଷ୍ଟ ନିମନ୍ତେ
ଡରକୋ କରକା କ୍ଷେତ ନାଶି ଯେଉଁମତେ,
କରୁଛି ବନ୍ଦନ ଶେଷ ସମ ଖଳ ଜନେ
ପରଦୋଷ ଦେଖନ୍ତି ଯେ ସହସ୍ର ବଦନେ । ୩୭

ପୁଣି ପ୍ରଣମଇ ପୃଥୁ ରାଜନ ସମାନେ
ପରଦୋଷ ଶୁଣଇ ଯେ ଦଶ ସ'ସ୍ର କାନେ,
ଶକ୍ର ସମ ପୁଣି ତାକୁ ବିନତି କରଇ
ସୁରା ଓ ସଇନ ଯା'ର ପ୍ରିୟ କଳ ପାଇଁ । ୩୮

ବଜ୍ର ସମ ବଚନ ଯା' ପ୍ରିୟ ଅନୁକ୍ଷଣେ
ପରଦୋଷ ଦେଖଇ ଯେ ସହସ୍ର ନୟନେ,
ଉଦାସୀନ ଶତ୍ରୁ ମିତ୍ର ଜନଙ୍କର ହିତ
ଶୁଣିଲେ ଜଳନ୍ତି, ଖଳ ସ୍ୱଭାବ ଏହିତ,
ଜାଣି ଏହା, ଏହି ଜନ ଯୋଡ଼ ବେନି କର
କରଇ ବିନତି ପ୍ରେମେ ଥରକୁ ଯେ ଥର । ୩୯

ମୋ' ନିଜ ପକ୍ଷରୁ କଲି ମିନତି କାକୁତି
କିନ୍ତୁ ସେ ତେଜିବେ ନାହିଁ ତାଙ୍କର ପ୍ରକୃତି,
ବାୟସକୁ ପାଳିଲେ ବି ଅନୁରାଗେ ଅତି
କେବେହେଁ ହେବ କି କାକ ନିରାମିଷ ମତି । ୪୦

ସନ୍ଥଜନ ଅସଜ୍ଜନ ଚରଣ ବନ୍ଦଇ
ବେନି ଦୁଃଖପ୍ରଦ ମାତ୍ର ଭେଦ ଅଛି ରହି,
ଜଣକର ବିୟୋଗରେ ପ୍ରାଣ ହରିନିଏ
ଅନ୍ୟର ମିଳନ ନିଦାରୁଣ ଦୁଃଖ ଦିଏ । ୪୧

ଜଗତରେ ଏକ ସଙ୍ଗେ ହୁଅନ୍ତି ଜନମ
ଗୁଣେ ଭିନ୍ନ ହୋଇ ଜୋକ ସରସିଜ ସମ,
ସାଧୁ ଓ ଅସାଧୁ ବେନି ସୁଧା ସୁରା ବିଧି
ଜନ୍ମଦାତା ଭବରୂପୀ ଅଗାଧ ବାରିଧି । ୪୨

ସବୁ ଭଲ ମନ୍ଦ ନିଜ ନିଜ କର୍ମମତେ
ଯଶ-ଅପଯଶ-ବିତ୍ତ ଲଭନ୍ତି ଜଗତେ,
ସାଧ, ସୁଧା, ସୁରଧୂନୀ, ଶଶି ମନୋରମ
ବିଷ ବହ୍ନି କର୍ମନାଶା ବ୍ୟାଧ ଯେ ଅଧମ,
ଗୁଣ ଅବଗୁଣ ତାଙ୍କ ଯେ କେହି ଜାଣଇ
ଯା'ର ଯେଉଁ ଭାବ, ତାକୁ ତା' ଭଲ ଲାଗଇ । ୪୩

ଭଲ ଯିଏ ଭଲ ପଣ କରଇ ଗ୍ରହଣ
ନୀଚତାକୁ ସଦାକାଳେ ଲଭେ ନୀଚ ଜନ,
ଅମରତା ପାଇଁ ଲଭେ ଅମୃତ ପ୍ରଶଂସା
ବିନାଶ କାରଣେ ବିଷ ଲଭେ ସେହି ଦଶା । ୪୪

ଖଳ ପାପ ଅବଗୁଣ ସାଧୁଗୁଣ କଥା
ଉଭୟେ ଅପାର ଗଣ୍ଡ ମହୋଦଧି ଯଥା,
ତହୁଁ କିଛି ଦୋଷ ଗୁଣ କଲି ମୁଁ ବର୍ଣ୍ଣନ
ନ ଚିହ୍ନି ହେନବ କିଏ, କେ ତେଜେ କେସନ । ୪୫

ଭଲ ମନ୍ଦ ଏ ଜଗତେ ବିଧାତା ଭିଆଣ
ଗୁଣ ଦୋଷ ବାଛୁ ବେଦେ ପୃଥକ ବିଧାନ,
ବେଦ ଇତିହାସ ଆଉ ପୁରାଣେ କଥିତ
ଗୁଣ ଅବଗୁଣେ ବିଧି ପ୍ରପଞ୍ଚ ଜଡ଼ିତ । ୪୬

ସୁଖ ଦୁଃଖ ପାପ ପୁଣ୍ୟ ଦିନ ଆଉ ରାତି
ସାଧୁ ଓ ଅସାଧୁ ପୁଣି କୁଜାତି ସୁଜାତି,
ଦେବତା ଦାନବ ଯେତେ ଉଚ ନୀଚ [illegible]
ମହୁର ସଙ୍ଗତେ ମୃତ୍ୟୁ ସୁଧା ସଞ୍ଜୀବନ,
ମାୟା ସହ ବ୍ରହ୍ମ ଜୀବ ସହିତେ ଈଶ୍ୱର
ଲକ୍ଷ୍ମୀ ଓ ଅଲକ୍ଷ୍ମୀ ଆଉ ରଙ୍କ ନରେଶ୍ୱର,
ସୁର ନଦୀ କର୍ମନାଶା ମରୁ ମାରବାର
କାଶୀ ଓ ମଗଧ ରାଜ୍ୟ, ବ୍ରାହ୍ମଣ ଚଣ୍ଡାଳ,
ସ୍ୱର୍ଗ ନର୍କ, ଅନୁରାଗ, ବିଷୟ-ବିରାଗ
ନିଗମେ ଆଗମେ ଦୋଷ ଗୁଣର ବିଭାଗ । ୪୭

ଜଡ଼ ଚେତନ ଏ ବିଶ୍ୱ, ଦୋଷ ଗୁଣେ ଭରା
ବିଧି ବିରଚନା ଏଇ ଜଗତଟା ସାରା,
ସନ୍ଥ-ହଂସ ପରିହରି ଦୋଷ ରୂପ ଜଳେ
ଦୁଗ୍ଧ ରୂପ ଗୁଣକୁ ସେ ନିଅନ୍ତି ଆଦରେ । ୪୮

ବିଧାତା ଦିଅନ୍ତି ଯେବେ ବିବେକ ଏସନ
ଦୋଷ ତେଜି ଗୁଣେ ତେବେ ବଳିବ ଏ ମନ,
କାହୁଁ କାଳ କର୍ମ ଆଉ ସ୍ୱଭାବର ଚାପେ
ଭଲ ଗୁଣ ଭୁଲିଯାନ୍ତି ସାଧୁ ଆପେ ଆପେ । ୪୯

ହରି ଭକ୍ତ ତାକୁ ଯେସନେ ସୁଧାରି ନିଅନ୍ତି
ଦୁଃଖ ଦୋଷ ଦଳି ଯଶ ବିମଳ ଦିଅନ୍ତି,
ସେପରି ସୁସଙ୍ଗେ କେବେ ଭଲ କରେ ଖଳ
ତଥାପି ଛୁଟେନା ମଳ ପ୍ରକୃତି ନକର । ୫୦

ପକାଇ ସୁବେଶ ଯେତେ ବଞ୍ଚକ ସମସ୍ତେ
ଏଇ ବେଶ ପାଇଁ ପୂଜା ପାଆନ୍ତି ଜଗତେ,
କିନ୍ତୁ ଧନେ ପଡ଼ି ଧରା ମରନ୍ତି ଯେପରି
କାଳନେମୀ ରାହୁ ଆଉ ରାବଣ ଯେପରି । ୫୧

କୁବେଶ ହେଲେହେଁ ସାଧୁ ଲଭଇ ସମ୍ମାନ
ଯେସନେ ଜଗତେ ଜାମ୍ବବାନ ହନୁମାନ,
କୁସଙ୍ଗେ ହୁଅଇ ହାନି, ଲାଭ ସୁସଙ୍ଗତେ
ସଭିଙ୍କି ବଦିତ ଏହା ଲୋକ ବେଦମତେ । ୫୨

ଧୂଳି ଧୂଳି ବାୟୁସାଥେ ଗଗନେ ଉଡ଼ଇ
କିନ୍ତୁ ନୀଚଗାମୀ ଜଳେ ପଙ୍କ ପାଲଟଇ,
ଦେଖ ସାଧୁ ଅସାଧୁଙ୍କ ପୋଷା ଶୁଆ ସାରି
କିଏ ରଟେ ରାମ ନାମ, କିଏ ଦିଏ ଗାଳି । ୫୩

କୁସଙ୍ଗତେ ଧୂଆଁ କଳା ଅଳନ୍ଧୁ ବୋଲଇ
ସୁସଙ୍ଗେ ପୁରାଣ ଲେଖେ ସ୍ୟାହି ସ୍ଥାନ ପାଇ,
ସେ ଧୂଆଁ ମିଶିଲେ ଜଳ ଅନଳ ପବନେ
ଜଗତ ବଞ୍ଚାଏ ହୋଇ ବାରିଦ ଗଗନେ । ୫୪

ଗ୍ରହ ଅଉଷଧି ଜଳ ପବନ ବସନ
କୁଯୋଗ ସୁଯୋଗ ପାଇ ପାଲଟେ ଲକ୍ଷଣ,
କୁବସ୍ତୁ ସୁବସ୍ତୁ ହୋଇ ଯାଆନ୍ତି ଜଗତେ
ଜାଣନ୍ତି ଏ କଥା ବିଜ୍ଞ ସୁଚତୁରବନ୍ତେ । ୫୫

ମାସେ ଦେନି ପକ୍ଷ, ସମ ଆଲୁଅ ଅନ୍ଧାର
ମାଛ ବିଧି ନାମ ଦେଲା ଦୁଇଟି ପ୍ରକାର,
ଶଶିକୁ ବଢ଼ାଏ ଏକ, ଛୁଡ଼ାଏ ଅପର
ଯଶ ଅପଯଶ ତେଣୁ ଜଗତେ ତାଙ୍କର । ୫୬

ଜଗତେ ଯେତେକ ଜୀବ ଜଡ଼ ବା ଚେତନ
ସର୍ବେ ରାମମୟ ଜାଣି ଏହି କବିଜନ,

ସେହି ସନ୍ତଙ୍କର ପୂତ ଚରଣ-କମଳେ
ଯୋଡ଼ି ବେନିକର ସଦା ବନ୍ଦନା ମୁଁ କରେ । ୫୭

ନର ନାଗ ଖଗ ପ୍ରେତ ଦେବତା ଦଇତ୍ୟ
ଗନ୍ଧର୍ବ କିନ୍ନର ପିତୃ-ପୁରୁଷ ସହିତ,
ନିଶାଚର ଆଦି ସର୍ବେ କରଇ ପ୍ରଣତି
ଦୟାକରି ଏବେ କୃପା କର ମୋତେ ପ୍ରଭୁ । ୫୮

ଚଉରାଶି ପ୍ରକାରର ଜାତି, ଲକ୍ଷେ ଯୋନିରେ ଶୁଣି
ତହିଁ ଯେତେ ଜୀବ ଜଳ ସ୍ଥଳ ନଭବାସୀ,
ସକଳ ଜଗତ ସୀତା-ରାମମୟ ଜାଣି
ପ୍ରଣାମ କରଇ ମୁହିଁ ଯୋଡ଼ି ବେନି ପାଣି । ୫୯

ମିଳି କୃପାକର ସର୍ବେ ହେ କୃପା-ଆକର
ଛଳ ତେଜି ଭାବ ମୋତେ ଆପଣା କିଙ୍କର,
ନିଜ ବୁଦ୍ଧି ବଳେ ତିଳେ ଭରସା ମୋ ନାହିଁ
ସନ୍ତଙ୍କର ପାଦେ କରେ ବିନୟ ସେ ପାଇଁ । ୬୦

ରଘୁପତି ଗୁଣଗ୍ରାମ ଗାଇବାକୁ ମନ
ଏକଥା ଅଗାଧ କିନ୍ତୁ ଲଙ୍ଘିବାକୁ ମନ,
ଦିଶୁନି ଉପାୟ କିଛି, ରଙ୍କ ମନ ମତି
କାମନା ମୋହର କିନ୍ତୁ ଅଟଇ ନୃପତି । ୬୧

ମତି ଅତି ନୀଚ ମୋର ଉଚ୍ଚ ଅଭିଳାଷ
ଜଗତେ ନ ମିଳେ ଘୋଳ, ଅମୃତରେ ଆଶ,
ସଜ୍ଜନେ କ୍ଷମିବେ ମୋତେ, ମୋର ଏ ଧୃଷ୍ଟତା
ମନ ଦେଇ ଶୁଣିବେ ମୋ ପିଲାଳିଆ କଥା । ୬୨

ଯେସନେ କହିଲେ ଶିଶୁ ଦରୋଟି ବଚନ
ସ୍ନେହେ ଶୁଣିଥାନ୍ତି ପିତାମାତା ଦେଇ ମନ,
ହସିବେ କୁଟିଳ କିନ୍ତୁ କୁବକ୍ତାର ମତି
ପର ଦୂଷଣକୁ ଯେହୁ ଭୂଷଣ କରନ୍ତି । ୬୩

କାହାକୁ ନ ଲାଗେ ନିଜ କବିତା ବଢ଼ିଆ
ହେଉ ତା' ସରସ ଅବା ଅତି ଫାରସିଆ,
ପର କବିତାରେ ଯେହୁ ଆନନ୍ଦ ପାଆନ୍ତି
ସେପରି ଉତ୍ତମ ଲୋକ ବହୁତ ନାହାନ୍ତି । ୬୪

ଜଗତେ ବହୁତ ଲୋକ ନଦୀ ସର ପରି
ହୁଅନ୍ତି ବଢ଼ିଲେ ଖୁସି ଜଳ ଲଭ କରି,
ପୁଣ୍ୟ ଶ୍ଳୋକ ସିନ୍ଧୁସମ ସଜ୍ଜନ କ୍ୱଚିତ
ପୂର୍ଣ୍ଣଶଶି ଦେଖି ଯିଏ ଉଚ୍ଛୁଳେ ଅଧିକ । ୬୫

ଭାଗ୍ୟ ସିନା ଶ୍ରେଷ୍ଠ ମୋର ବଡ଼ ଅଭିଳାଷ
କରୁଅଛି ମାତ୍ର ମୁହିଁ ଏକଇ ବିଶ୍ୱାସ,
ଶୁଣିଲେ ପାଇବେ ସୁଖ ସଜ୍ଜନେ କେବଳ
ଉପହାସ କରୁଥିବେ ଯେତେ ସବୁ ଖଳ । ୬୬

ଖଳ ଜନ ପରିହାସେ ହେବ ହିତ ମୋର
କୋଇଲି କି ଯେହ୍ନେ କାକ କହଇ କଠୋର,
ହଂସେ ଦେଖି ହସେ ବଗ, ଗୃଡକରେ ଭେକ
ନିର୍ମଳ ବାଣୀକୁ ଖଳେ ହସନ୍ତି ଅନେକ । ୬୭

କବିତା ରସିକ କିନ୍ତୁ ରାମେ ରତି ନାହିଁ
ସୁଖପ୍ରଦ ହାସ୍ୟରସ ଏହା ତାଙ୍କ ପାଇଁ,
ଭାଷାବଦ୍ଧ ଭଣିତି ମୋ, ମତି ମୋର ବାଇ
ହସିଲେ ହସନ୍ତୁ ପଛେ, ଦୋଷ କିଛି ନାହିଁ । ୬୮

ରାମ ପଦେ ନାହିଁ ମତି, ବୁଝିବା ଶକତି
ତାହାଙ୍କୁ ଲାଗିବ ଏହା ସ୍ୱାଦ ହୀନ ଅତି ।
ହରିହର ପଦେ ରତି ତର୍କହୀନ ମତି—
ସଜ୍ଜନେ ଏ ରାମ କଥା ହେବ ମିଠା ଅତି । ୬୯

ରାମ ରସେ ରସାପ୍ଲୁତ, ଜାଣି ହୃଦଗତେ
ସଜ୍ଜନେ ପ୍ରଶଂସି ଏହା ଶୁଣିବେ ନିରତେ ।

କବି ନୁହେଁ, ନୁହଇ ମୁଁ ବଚନ ପ୍ରବୀଣ
ସକଳ ପ୍ରକାର ଜ୍ଞାନ ବିଦ୍ୟା ବୁଦ୍ଧିହୀନ । ୭୦

ନାନାବିଧ ଅକ୍ଷର ଅର୍ଥ ନାନା ଅଲଙ୍କାର
ଛନ୍ଦ ବିରଚନା ପୁଣି ବିବିଧ ପ୍ରକାର,
ଭାବ ଆଉ ରସ ମଧ୍ୟେ ଭେଦ ଅଗଣନ
ବହୁ ଦୋଷ ଗୁଣଯୁକ୍ତ କବିତା ଲକ୍ଷଣ । ୭୧

କବିତା ବିଷୟେ ସତ ନାହିଁ କିଛି ଜ୍ଞାନ
ସାଦା କାଗଜରେ ଲେଖେ ବାଳକ ସମାନ । ୭୨

ମୋ ଭଣିତ ସବୁ ଗୁଣ ଗାରିମା ରହିତ
ଏକମାତ୍ର ଗୁଣ ତା'ର ଭୁବନ ବିଦିତ,
ବିମଳ ବିଶ୍ୱରବନ୍ତ ବିବେକୀ ସୁଜନେ
ଏକଥା ବିଚାରି ମନେ ଶୁଣିବେ ଯତନେ । ୭୩

ରଘୁପତିଙ୍କର ନାମ ଉଦାର ଏ ଗ୍ରନ୍ଥେ
ପୁରାଣ ଓ ଶ୍ରୁତିସାର, ପାବନ ଜଗତେ,
ମଙ୍ଗଳ ଭବନ ଆଉ ଅମଙ୍ଗଳହାରୀ
ଜପନ୍ତି ଯାହାକୁ ଉମା ସହ ତ୍ରିପୁରାରୀ । ୭୪

ଭଣିତ ବିଚିତ୍ର ଯାହା ସୁକବି ରଚିତ
ରାମ ନାମ ବିନୁ ତାହା ନୁହଇ ଶୋଭିତ,
ଅଳଙ୍କୃତା ଶଶିମୁଖୀ ରମଣୀରତନ
ଶୋଭନ ନ ଦିଶେ କେବେ ନ ଥିଲେ ବସନ । ୭୫

ସବୁ ଗୁଣ ହୀନ ହୋଇ କୁକବି ରଚିତ
ତଥାପି ଶ୍ରୀରାମ ନାମେ କାବ୍ୟ ସୁଶୋଭିତ,
ସାଦରେ ଗାଆନ୍ତି ତାକୁ ଶୁଣନ୍ତି ସଜ୍ଜନେ
ସନ୍ଥଜନ ଗୁଣଗ୍ରାହୀ ମଧୁପ ଯେସନେ । ୭୬

ଯଦିବା କବିତା ରସ ନାହିଁ ଏଥି କିଛି
ଶ୍ରୀରାମ ପ୍ରତାପ ତେବେ ପୂରି ରହିଅଛି,

ସେଇ ଭରସା ତ ମୋର ମନକୁ ଆସିଲା
କେ' ଅବା ସୁସଙ୍ଗେ ବଡ଼ପଣ ନ ପାଇଲା । ୭୭

ଧୂଆଁ ବି ଅଗୁରୁ ସଙ୍ଗେ ସୁଗନ୍ଧ ହୁଅଇ
ନିଜ ସ୍ୱଭାବର କଟୁ ଗୁଣକୁ ତେଜଇ,
ଭଣିତି ଅସନା, କିନ୍ତୁ ବିଷୟ ଉତ୍ତମ
ଜଗତ ମଙ୍ଗଳକାରୀ ରାମ କଥା ମନ୍ତ୍ର । ୭୮

ମଙ୍ଗଳକାରିଣୀ ପୁଣି କଳି-ମଳ ହରେ
ରଘୁନାଥ କଥା କହେ ତୁଳସୀ ଆଦରେ,
ମୋର ଏ କବିତା ଗତି ସୁରଧୂନୀ ପରି
ଅଙ୍କା ବଙ୍କା ହୋଇ ଚାଲେ ଲୋକ-ପାପ ହରି । ୭୯

ପ୍ରଭୁ ଯଶ ଭରା ଏହି ଭଣିତି ମୋହର
ହେଉ ଭଲ, ସନ୍ତଜନ ମନ ରୁଚିକର,
ଯେପରି ଶ୍ମଶାନ-ଭସ୍ମ ଶିବ ଅଙ୍ଗେ ଜଡ଼ି
ସୁନ୍ଦର ଦିଶଇ ମନେ ପୂତ ଭାବ ଭରି । ୮୦

ରାମ ଯଶ ସଙ୍ଗ ପାଇ ଭଣିତି ମୋହର
ସଭିଙ୍କୁ ଲାଗିବ ପ୍ରିୟ, ହେବ ପ୍ରୀତିକର,
ମଳୟ ପରଶେ ତରୁ ସୁବାସ ପ୍ରସାରେ
କେଉଁ କାଠ ବୋଲି ତାହା କେହି କି ପଚାରେ ! ୮୧

କାଳିଗାଈ ଦୁଧ ଧଳା ଆଉ ଗୁଣକାରୀ
ପିଅନ୍ତି ସକଳ ଜନେ ଏମନ୍ତ ବିଚାରି,
ତେହ୍ନେ ଗ୍ରାମ୍ୟ ଭାଷାରେ ଏ ସୀତା ରାମ ଯଶ
ଗାଇବେ ଶୁଣିବେ ଯେତେ ସୁଜ୍ଞାନୀ ଅବଶ୍ୟ । ୮୨

ମାଣିକ ମୁକୁତା ମଣି ଛବି ସୁଶୋଭନ
ଗିରି କରି ସର୍ପ ଶିରେ ନ ଶୋଭେ ତେସନ,
ତରୁଣୀ ତନୁରେ ଅବା ରଜାର ମୁକୁଟେ
ଯେସନେ ତାଙ୍କର ଶୋଭା ଅଧିକ ଉକୁଟେ । ୮୩

କହନ୍ତି ଏପରି ବୁଧେ—ସୁକବି କବିତା
ସ୍ଥାନେ ଜାତ ହୋଇ ଅନ୍ୟ ସ୍ଥାନେ ସୁଶୋଭିତା,
ଭକ୍ତି ଭାବରେ କବି କଲେ ବାଣୀଙ୍କୁ ସ୍ମରଣ
ଧାଇଁ ସେ ଆସନ୍ତି ତେଜି ବିଧାତା ଭବନ । ୮୪

ଶ୍ରୀରାମ ଚରିତ ସରେ ସ୍ନାହାନ ନ କଲେ
କଟେନା ତାଙ୍କର ଶ୍ରମ କୋଟି ଉପାୟରେ,
ଏପରି ପଣ୍ଡିତେ କବି ହୃଦୟେ ବିଚାରି
ଗାଇଥାନ୍ତି ହରି ଯଶ କଳି-ମଳ-ହାରି । ୮୫

ଗାଅ ଯଦି ସଂସାରିର ସୁଗୁଣ ଆଚରି
ମଥାପିଟି ଅନୁତାପ କରନ୍ତି ଭାରତୀ,
ହୃଦୟ ସାଗର, ବୁଦ୍ଧି ଶାମୁକା ସମାନ
ଶାରଦା ଯେ ସ୍ୱାତୀ ସମ କହନ୍ତି ସୁଜାଣ । ୮୬

ସୁବିଚାର ରୂପ ବାରି ବରଷିଲେ ତହିଁ
କବିତା ମୁକୁତାମଣି ସମ ଉପୁଜଇ । ୮୭

ଯୁକତିରେ ବିଦ୍ଧ କରି କବିତା-ମୁକୁତା
ମାଳା ରଚି ନେଇ ରାମ-କଥା ରୂପୀ ସୂତା,
ସଜ୍ଜନେ ନିର୍ମଳ ହୃଦେ କରନ୍ତି ଧାରଣ
ଅନୁରାଗ ଶୋଭାରେ ସେ ଦିଶନ୍ତି ଶୋଭନ । ୮୮

ଏ କରାଳ କଳିଯୁଗେ ଯାହାଙ୍କ ଜନମ
ହଂସ ବେଶେ ଯେ କରନ୍ତି ବାୟସ-କରମ,
କୁପଥେ ଗମନ ଯା'ର ଭୁଲି ବେଦ ପାଠ
ଯେ କପଟ-ମୂର୍ତ୍ତି କଳି-ଯୁଗ ପାପ-ପାଟ । ୮୯

ଯେ ଶଠେ ବୋଲାନ୍ତି ଭକ୍ତ ରଘୁନାଥଙ୍କର
ନିରନ୍ତର କାମ କ୍ରୋଧ କାଞ୍ଚନ କିଙ୍କର,
ସଂସାରେ ତାହାଙ୍କ ମଧ୍ୟେ ପ୍ରଥମେ ମୁଁ ଗଣା
ଧିକ ଧର୍ମଧ୍ୱଜୀ ମୋତେ, ଧନ୍ଦା ଜାଲେ ବଣା । ୯୦

ଯେବେ ନିଜ ଅବଗୁଣ ସକଳ କହିବି
କଥା ଏତେ ଯିବ ଲମ୍ବି ପାର ନ ପାଇବି,
ତହିଁରୁ ଅଳପ ତେଣୁ ଏଠାରେ ବଖାଣେ
ଅଳ୍ପକରୁ ବୁଝିଯିବେ ସକଳ ସୁଜାଣେ । ୯୧

ସକଳ ମିନତି ମୋର ଶୁଣି ଏକ ଚିତ୍ତେ
କେହି କେବେହେଲେ ଦୋଷ ନ ଦେବେ କାହିଁତେ,
ଯେ କରିବେ ଶଙ୍କା ଏତେ କହିଲି ଉତ୍ତରୁ
ସେହି ଜଡ଼ ମତି ବଡ଼ ମୂର୍ଖ ମୋହଠାରୁ । ୯୨

କବି ନୁହେଁ ମୁହିଁ, ମୋର ନାହିଁ ଚତୁରତା
ନିଜ ବୁଦ୍ଧି ଅନୁସାରେ କହେ ରାମ କଥା ।
ଶ୍ରୀରାମ ଚରିତ କାହିଁ ଅନନ୍ତ ଅପାର
କାହିଁ ମୁହିଁ ମୂଢ଼ମତି ଆସକ୍ତ ସଂସାର । ୯୩

ଯେଉଁ ପବନରେ ନଭେ ସୁମେରୁ ଉଡ଼ଇ
କହ ତହିଁ ତୁଳା କେଉଁ ଲେଖାରେ ଆସଇ ।
ଅସୀମ ପ୍ରଭୁତା ଜାଣି ରଘୁପତିଙ୍କର,
ଲେଖିବାକୁ ତାଙ୍କ କଥା ମାଡ଼ୁଅଛି ଡର । ୯୪

ବାଣୀ ଶେଷ ଶିବ ବ୍ରହ୍ମା ନିଗମ ପୁରାଣ
ନେତି ନେତି କହି ପ୍ରଭୁଙ୍କର ଗୁଣମାନ
ନିରନ୍ତର ଗାଉଛନ୍ତି; ତାଙ୍କରି ମହିମା,
ତାଙ୍କ ଯଶ ଗାଇବାକୁ ମୋର ଏ ବଡ଼ିମା । ୯୫

ପ୍ରଭୁଙ୍କ ପ୍ରଭୁତା ସର୍ବେ ବିଦିତ ଅଟଇ
ତଥାପି ନ କହି କେହି ନ ଅଛନ୍ତି ରହି ।
ତାହାର କାରଣ ଏହି, ବେଦେ ଉଲ୍ଲିଖିତ-
ଭଜନ ପ୍ରଭାବ ବହୁ ପ୍ରକାରେ ବର୍ଣ୍ଣିତ । ୯୬

ନାମ-ରୂପ-ଇଚ୍ଛାହୀନ ଯେ ପରମେଶ୍ୱର,
ଅଜ, ବିଶ୍ୱରୂପ, ଏକ, ବ୍ୟାପ୍ତ ଚରାଚର ;

ଯେ ସଚ୍ଚିଦାନନ୍ଦ ଶ୍ରେଷ୍ଠ ଧାମ ଭଗବାନ,
ଦେହ ଧରି ସେ ରଚନ୍ତି ନାନା ଲୀଳାମାନ । ୯୭

ସେ ଲୀଳା କେବଳ ଭକ୍ତ ଜନ ହିତ ଲାଗି,
ପରମ ଦୟାଳୁ ସେ ତ ପ୍ରଣତାନୁରାଗୀ ।
ରଖନ୍ତି ସେ ଯାହା ପ୍ରତି ପ୍ରୀତି ଅନୁରାଗ,
ଥରେ କୃପା କରି ଆଉ ନ କରନ୍ତି ତ୍ୟାଗ । ୯୮

ହୃତ ବସ୍ତୁ ପ୍ରଦାୟକ, ନିର୍ଦ୍ଧନ-ପାଳକ,
ସରଳ ସବଳ ସ୍ୱାମୀ ଶ୍ରୀ ରଘୁନାୟକ ।
ପଣ୍ଡିତେ ଗାଆନ୍ତି ହରି ଯଶ ଏହା ଜାଣି,
ସଫଳ ପବିତ୍ର କରିବାକୁ ନିଜ ବାଣୀ । ୯୯

ସେହି ଭରସାରେ ରଘୁପତି ଯଶ କଥା,
କହୁଅଛି ରଘୁନାଥ ପଦେ ନୋଇଁ ମଥା ।
ମୁନିଏ ପ୍ରଥମେ ଯଶ ଯାଇଛନ୍ତି ଗାଇ,
ମୋ ପାଇଁ ସୁଗମ ତେଣୁ ସେହି ପଥ ଭାଇ । ୧୦୦

ଅପାର ସରିତ ପରେ ଯେବେ ନରପତି,
ବହୁ ପରିଶ୍ରମେ ଏକ ସେତୁ ବିରଚନ୍ତି;
ସେହି ସେତୁ ପରେ କ୍ଷୁଦ୍ର ପିପୀଲିକା ଚଢ଼ି,
ହୋଇପାରେ ନଦୀ ପାରି ବିନା ଶ୍ରମ କରି । ୧୦୧

ଏହି ବଳେ କରି ଦୃଢ଼ ମନକୁ ମୋହରି,
ଲେଖିଯିବି ରଘୁନାଥ-କଥା ମନୋହରି ।
ବ୍ୟାସ ଆଦି ବହୁ କବି ପଣ୍ଡିତ ପ୍ରବରେ,
ଗାଇଛନ୍ତି ହରି ଗୁଣ ଯଶ ସମାଦରେ । ୧୦୨

ସେମାନଙ୍କ ପାଦ-ପଦ୍ମ କରଇ ବନ୍ଦନ,
ସବୁ ଇଚ୍ଛା ମୋର ସେହୁ କରନ୍ତୁ ପୂରଣ ।
କଳିର କବିଙ୍କୁ ପୁଣି କରଇ ପ୍ରଣାମ,
ଯେ ବର୍ଣ୍ଣି ଅଛନ୍ତି ରଘୁପତି ଗୁଣଗ୍ରାମ । ୧୦୩

ଯେ ପ୍ରାକୃତ କବିଗଣ ପରମ ପଣ୍ଡିତ,
ଭାଷାବନ୍ଧେ ଲେଖିଛନ୍ତି ଯେ ହରି ଚରିତ;
ଏପରି ଯେ କବି ସବୁ ଥିଲେ ଆଗ କାଳେ,
ପୁଣି ବର୍ତ୍ତମାନ ଯେତ୍କ ଅଛନ୍ତି ସଂସାରେ ।
ଆଗକୁ ହୋଇବେ ଆଉ ଯେଉଁମାନେ ଜାତ,
ଛଳ ତେଜି ସଭିଙ୍କୁ ମୁଁ କରେ ପ୍ରଣିପାତ । ୧୦୪

ଏବେ ସର୍ବେ ହର୍ଷ ମନେ ଦିଅନ୍ତୁ ଏ ବର;
ମୋ କବିତା ପାଉ ସାଧୁ ସମାଜେ ଆଦର ।
ଯେଣୁ ବୁଧେ ଯେ ପ୍ରବନ୍ଧେ ନ କରନ୍ତି ଶ୍ରଦ୍ଧା,
ମୂର୍ଖ କବି ରଚି ବୃଥା ଶ୍ରମ ତା'ର ସଦା । ୧୦୫

ସେ କୀର୍ତ୍ତି ବିଭୂତି ଆଉ କବିତା ଉତ୍ତମ,
ସଭିଙ୍କର ହିତକାରୀ ହୁଏ ଗଙ୍ଗା ସମ ।
ସୁନ୍ଦର ତ ରାମକୀର୍ତ୍ତି, ମୋ କବିତା ହୀନ,
ଏହି ଅସମତା ଲାଗି ମନ ମୋ ମଳିନ । ୧୦୬

ମାତ୍ରକ ହେ କବିଗଣେ ତବ ଅନୁଗ୍ରହେ,
ଏ ମେଳ ମୋ ପାଇଁ ହେବ ସୁଲଭ ନିଶ୍ଚୟେ ।
ପାଟ ବସନକୁ କଲେ ଅଖାରେ ସିଲେଇ,
ଆଦର ଲଭଇ ଅଖା ସେହି ପାଟ ନେଇ । ୧୦୭

ବିମଳ କୀରତି ଭରି ସରଳ କବିତା,
ଯାହା ଶୁଣି ଶତ୍ରୁ ଭୁଲି ସହଜ ଶତ୍ରୁତା,
ହୋଇଥାଏ ଶତମୁଖେ ପ୍ରଶଂସା ମୁଖର,
ସେପରି କବିତା ବୁଧେ କରନ୍ତି ଆଦର । ୧୦୮

ସ୍ୱଚ୍ଛ ବୁଦ୍ଧି ବିନା ଏହି କବିତା ନୁହଇ;
ମୋର ବୁଦ୍ଧି ବଳ ଅତି ଅଳପ ଯେ ତହିଁ ।
ଏଣୁ ମୁଁ ମିନତି କରେ ଥରକୁ ଯେ ଥର,
ହରି ଯଶ ଗାଇବାକୁ ମୋତେ କୃପା କର । ୧୦୯

ହେ କବି ପଣ୍ଡିତେ ତୁମେ ଶ୍ରୀରାମ-ଚରିତ—
ପୂତ ମାନ-ସରୋବର ସୁମଞ୍ଜୁଳ ହଂସ ।
ଏ ବାଳ ବିନୟ ଶୁଣି ଦେଖି ରୁଚି ମମ,
ମୋ ପ୍ରତି କରୁଣା କର, ମୁହିଁ ଯେ ଅଧମ । ୧୧୦

ରାମାୟଣକାର ମୁନି ଚରଣ କମଳେ,
ସବିନୟ ଭକ୍ତି ଭରେ ବନ୍ଦନା ମୁଁ କରେ ।
ଖର ସହ ରହି ଯେହୁ ମଞ୍ଜୁଳ କୋମଳ,
ଦୂଷଣ ସହିତେ ଥାଇ ଦୋଷରୁ ଅନ୍ତର । ୧୧୧

ବନ୍ଦେ ଭବ-ସିନ୍ଧୁ-ତରୀ ରୂପ ଚୃରି ବେଦ,
ରାମ ଯଶ ଗାଇ ସ୍ୱପ୍ନେ ନାହିଁ ଯାର ଖେଦ । ୧୧୨

ବିଧି ପଦ-ରେଣୁ ମୁହିଁ କରଇ ବନ୍ଦନ,
ଏ ଭବ-ବାରିଧି ଯିଏ କଲେ ବିରଚନ ।
ଯହୁଁ ଜାତ ସନ୍ଥ ସମ ସୁଧା ଶଶି ଧେନୁ,
ଖଳ ସମ ବିଷ ସୁରା ବେନ ହିଗେ ଯେଣୁ । ୧୧୩

ଦେବତା ବ୍ରାହ୍ମଣ ବୁଧ ଗ୍ରହଙ୍କ ଚରଣ,
ବନ୍ଦେ କର ଯୋଡ଼ି, କହି ବିନୟ ବଚନ—
ମୋଠାରେ ପ୍ରସନ୍ନ ହୋଇ ହେ ବନ୍ଦ୍ୟ ସକଳ,
ମନୋହର ମନୋରଥ ମୋର ପୂର୍ଣ୍ଣ କର । ୧୧୪

ଆଉ ପୁଣି ବନ୍ଦୁଅଛୁ ଗଙ୍ଗା ସରସ୍ୱତୀ,
ବେନଙ୍କର ଗାଥା ପୂତ ମନୋହର ଅତି ।
ସ୍ନାନ ପାନ କଲେ ଏକ ପାପ ନାଶ କରେ,
ଗୁଣ ଗାଇ ଶୁଣି ଆନ ଅଜ୍ଞାନତା ହରେ । ୧୧୫

ମୋ ଗୁରୁ, ମୋ ପିତା ମାତା, ନିତ୍ୟ ଦୀନ-ଦାନୀ,
ଦୀନବନ୍ଧୁ, ସୀତାପତି ସେବକ ଓ ସ୍ୱାମୀ ।
ରାମ ସଖା ତୁଳସୀର, ସତୀ ହିତକାରୀ,
ହର ପାର୍ବତୀଙ୍କୁ ବନ୍ଦେ ମୁଁ ପ୍ରଣତି ଢାଳି । ୧୧୬

କଳିକାଳ ଲକ୍ଷି ଦେଖି ଉମା ମହେଶ୍ୱର,
ବିଶ୍ୱ ହିତେ କଲେ ମନ୍ତ୍ର ସମୂହ ଶାବର ।
ଅକ୍ଷର ଅମେଳ ଅର୍ଥ କିଛି ନାହିଁ ତହିଁ,
ଜପି ନୁହେଁ, ଶିବ ବଳେ ପ୍ରଭାବ ଫୁଟଇ । ୧୧୭

ସେ ମହେଶ ମୋହ ପ୍ରତି ହୋଇ ଅନୁକୂଳ,
କରିବେ ଏ କଥା ଶୁଭ ଆନନ୍ଦର ମୂଳ ।
ହର ଗଉରୀଙ୍କୁ ସ୍ମରି ତାଙ୍କରି ପ୍ରସାଦେ,
ରାମାୟଣ ଲେଖୁଚି ମୁଁ ହୃଦୟ ଆହ୍ଲାଦେ । ୧୧୮

ଶୋଭିବ ମୋ ଲେଖା ଶିବ କୃପା ଲଭି କରି,
ଶଶି ତାରା ମେଳେ ଯେହ୍ନେ ଶୋଭଇ ଶର୍ବରୀ ।
ଯେଉଁମାନେ ଏ କଥାକୁ ଆଦର ସହିତେ,
କହିବେ ଶୁଣିବେ ଆଉ ବୁଝିବେ ସୁଚିତ୍ତେ ।
ହୋଇବେ ସେ ରଘୁପତି-ଚରଣାନୁରାଗୀ,
ଯିବ କଳି-ମଳ, ହେବେ ସୁମଙ୍ଗଳ ଭାଗୀ । ୧୧୯

ସତରେ ହେଉ ବା ହେଉ ସପନେ ମୋ ପ୍ରତି,
କୃପା କରିଥିବେ ଯେବେ ହର ପାରବତୀ,
ମୋ କବିତା ଶକ୍ତି ଯାହା ଲେଖିଛି ଏଥିରେ,
ସବୁ ସତ୍ୟ ସତ୍ୟ ହେଉ ଏହି ଅବସରେ । ୧୨୦

ବନ୍ଦୁଛି ସାକେତ ପୁରୀ ପରମ ପାବନୀ,
ସରିତ ସରଯୂ କଳି ପାପ-ବିମୋଚନୀ ।
ପ୍ରଣମୁଛି ତା'ର ପୁର ନର ନାରୀଗଣ,
ଯା' ପ୍ରତି ଟଳେନା ଅଳ୍ପ ପ୍ରଭୁ କୃପା-କ'ଣ । ୧୨୧

ଜାନକୀ ନିନ୍ଦକ ଜନ ପାପ କରି ନାଶ,
ଶୋକହୀନ କରି ନିଜ ଲୋକେ ଦେଲ ବାସ ।
ବିଶ୍ୱେ ପରିବ୍ୟାପ୍ତ ଯାର କୀର୍ତ୍ତି ଛନ୍ଦେ ଛନ୍ଦେ,
କୌଶଲ୍ୟା ରୂପିଣୀ ପୂର୍ବ ଦିଶିକୁ ମୁଁ ବନ୍ଦେ । ୧୨୨

ଯହିଁ ଜନମିଲେ ଗୁରୁ-ଶଶି-ରଘୁବୀର,
ବିଶ୍ୱ ସୁଖଦାୟୀ ଖଳ-କମଳ-ଶିଶିର ।
ରାଜା ଦଶରଥ ସାଥେ ଅନ୍ୟ ସବୁ ରାଣୀ,
ସୁକୃତ ମଙ୍ଗଳମୟ ଦ୍ରବ୍ୟ ମୂର୍ତ୍ତି ଜାଣି—
ପ୍ରଣାମ କରୁଛି ମନ କର୍ମ ଓ ବଚନେ,
କରୁଣା କରନ୍ତୁ ପୁତ୍ର-ସେବକ ଏ ଜନେ ।
ଯାହାଙ୍କୁ ସରଜି ବଡ଼ ହୋଇଛି ବିଧାତା,
ମହିମାର ଶେଷ ସୀମା ରାମ ପିତାମାତା । ୧୨୩।୧୨୪

ରାମ ପଦେ ଯାହାଙ୍କର ନିର୍ମଳ ପୀରତି,
ଯେ ଦୀନ-ଦୟାଳ-ପ୍ରଭୁ ବିଚ୍ଛେଦେ ନୃପତି
ତୃଣ ସମ ପ୍ରିୟ ତନୁ ତେଜିଲେ ତକ୍ଷଣେ,
ବନ୍ଦେ ସେହି ଦଶରଥ ଅଯୋଧ୍ୟା ରାଜନେ । ୧୨୫

ପରିଜନ ସାଥେ ବନ୍ଦେ ଜନକ ନୃପତି,
ଯାହାଙ୍କର ଥିଲା ରାମ ପଦେ ଗୂଢ଼ ରତି ।
ଯୋଗେ ଭୋଗେ ରଖିଥିଲେ ଯେ ପ୍ରୀତି ଗୁପତ,
ଶ୍ରୀରାମ ଦର୍ଶନେ ତାହା ହୋଇଲା ପ୍ରକଟ । ୧୨୬

ପ୍ରଥମେ ବନ୍ଦୁଛି ମୁହିଁ ଭରତ ଚରଣ,
କହି ନୁହେ ଯାହାଙ୍କର ବ୍ରତ ଓ ନିୟମ ।
ଶ୍ରୀରାମ ଚରଣ ପଦ୍ମେ ସଦା ଅଭିଳାଷ,
ଲୁବ୍‌ଧ-ମନ-ଅଳି ସମ ନ ଛାଡ଼ଇ ପାଶ । ୧୨୭

ଶୀତଳ କୋମଳ ଭକ୍ତ-ସଜ୍ଜନ ସୁଖଦ,
ବନ୍ଦଇ ଲକ୍ଷଣ ରାମାନୁଜ ପଦ୍ମ-ପଦ ।
ଶ୍ରୀରାମ କୀରତି ରୂପୀ ବିମଳ କେତନେ,
ଲକ୍ଷଣଙ୍କ ଯଶ ଦଣ୍ଡ ସ୍ୱରୂପ ଯେସନେ । ୧୨୮

ଯେ ଶେଷ ସହସ୍ର ଫଣା ଜଗତ ଆଧାର,
ଭବ ଭୟ ନାଶିବାକୁ ହେଲେ ଅବତାର,

ଗୁଣ ଖଣି କୃପାସିନ୍ଧୁ ସୁମିତ୍ରା ନନ୍ଦନ,
ଲକ୍ଷ୍ମଣ ମୋ ପ୍ରତି ସଦା ହୁଅନ୍ତୁ ପ୍ରସନ୍ନ । ୧୨୯

ଶତ୍ରୁଘ୍ନ ସୁଶୀଳ ଶୂର ପାଦ-ପଦ୍ମେ ବନ୍ଦେ,
ଭରତଙ୍କ ଅନୁଗାମୀ ଯିଏ ପଦେ ପଦେ ।
ମହାବୀର ହନୁମାନେ କରୁଚି ବିନତି,
ଗାଆନ୍ତି ଯାହାଙ୍କ ଯଶ ନିଜେ ସୀତାପତି । ୧୩୦

ଯାହାଙ୍କ ହୃଦୟ-ପୁରେ ସଦା ରଘୁପତି,
ଧନୁର୍ବାଣ ଧରି କରେ ନିବାସ କରନ୍ତି,
ଖଳ-ବନ-ହୁତାଶନ ପବନ-ନନ୍ଦନ,
ବନ୍ଦଇ ଶ୍ରୀ ହନୁମାନ ଯିଏ ଜ୍ଞାନ-ଘନ । ୧୩୧

କପିଶ୍ୱର ଋକ୍ଷପତି ନିଶାଚର ରାଜ,
ଅଙ୍ଗଦ ସହିତେ ଋକ୍ଷ ମର୍କଟ ସମାଜ ।
ସଭିଙ୍କର ଶ୍ରୀ ପଦୂର କରଇ ବନ୍ଦନ,
ଅଧମ ଦେହେ ଯେ କଲେ ରାମ ଦରଶନ । ୧୩୨

ଶ୍ରୀରାମ-ଚରଣ-ପଦ୍ମ ଉପାସକ ଯେତେ,
ଖଗ ମୃଗ ଦେବ ନର ଅସୁର ସମେତେ;
ସମସ୍ତଙ୍କ ପାଦ-ପଦ୍ମ ବନ୍ଦନ ମୁଁ କରେ,
ନିଷ୍କାମ-ହୃଦୟ ସେହି ରାମ ଅନୁଚରେ । ୧୩୩

ଶୁକ ସନକାଦି ଭକ୍ତ ମୁନୀଶ ନାରଦ,
ଯେ ସକଳ ମୁନିବର ଜ୍ଞାନ ବିଶାରଦ ।
ସଭିଙ୍କୁ ପ୍ରଣମେ ନୋଇଁ ଧରଣୀରେ ଶିର,
ଦାସ ଭାବ ଦୟାକର ଆହେ ମୁନି ଧୀର । ୧୩୪

ଜଗତ ଜନନୀ ସୀତା ଜନକ-ନନ୍ଦିନୀ,
କରୁଣା ନିଧାନ ରାମ-ପ୍ରିୟା ଶୁଭଙ୍ଗିନୀ;
ବେନି ପାଦ-ପଦ୍ମେ ତାଙ୍କ ଏତିକି ମିନତି,
ତାଙ୍କ କୃପା ଲଭି ହେବ ନିର୍ମଳ ମୋ ମତି । ୧୩୫

ପୁଣି ମୋ ବଚନେ କର୍ମେ ମନରେ ବିଗୃହି,
ରାଜୀବ-ଲୋଚନ ଦିବ୍ୟ ଧନୁଶରଧାରୀ,
ଭକ୍ତ-ଦୁଃଖ-ହର, ସୁଖ ଦାତା ରାମଙ୍କର,
ବନ୍ଦଇ ସକଳ-ରାମ-ଚରଣ-କମଳ । ୧୩୬

ଶବ୍ଦ ଆଉ ଅର୍ଥ ତା'ର, ଜଳ ତା' ଲହରୀ,
କହିବାକୁ ଭିନ୍ନ, ମାତ୍ର ଅଭିନ୍ନ ଯେପରି,
ସେପରି ଅଭିନ୍ନ ସୀତା-ରାମ-ଶ୍ରୀଚରଣେ,
ବନ୍ଦଇ ଯାହାଙ୍କୁ ପ୍ରିୟ ଦୀନ ଦୁଃଖୀ ଜନେ । ୧୩୭

ରଘୁବରଙ୍କର 'ରାମ' ନାମକୁ ବନ୍ଦଇ,
ଚନ୍ଦ୍ର ସୂର୍ଯ୍ୟ ଅଗ୍ନିର ଯେ କାରଣ ଅଟଇ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ରୂପ ଏହି ନାମ,
ନିର୍ଗୁଣ ଅନୁପ ବେଦ-ପ୍ରାଣ ଗୁଣଧାମ । ୧୩୮

(ଅକ୍ଷର ଭେଦରେ ରାମ ନାମ ଶାସ୍ତ୍ରମତେ,
ଅଗ୍ନି ସୂର୍ଯ୍ୟ ଚନ୍ଦ୍ର ମୂଳ ବୀଜ ଏ ଜଗତେ ।
ଶୁଭାଶୁଭ କର୍ମନାଶେ 'ର' ଅଗ୍ନି ବୀଜ,
ପାପ ଅନ୍ଧକାର ନାଶୀ 'ଅ' ସୂର୍ଯ୍ୟ ବୀଜ ।
'ମ' ଚନ୍ଦ୍ର ବୀଜ ଜାଣ ଶାନ୍ତି ପ୍ରଦାୟକ,
ଏ ଶକତି ବିନା ଏହି ଦେବେ ନିରର୍ଥକ ।
ଏ ବୀଜ ଶକ୍ତିକୁ ନେଇ ତିନି ଅବତାରେ,
'ରାମ' ନାମ ରହିଅଛି ଜାଣ ଏ ସଂସାରେ ।
ଅଗ୍ନିବଂଶେ ପର୍ଶୁରାମ, ସୂର୍ଯ୍ୟବଂଶେ ରାମ,
ପୁଣି ଅବତାର ଚନ୍ଦ୍ରବଂଶେ ବଳରାମ ।
ଅଗ୍ନି ସୂର୍ଯ୍ୟ ଚନ୍ଦ୍ର ବିନା ନ ଥାଏ ସୃଜନ,
ତେଣୁ ରାମ ନାମ ଜାଣ ଜଗତ କାରଣ ।
ବେଦ ପ୍ରାଣ ରୂପ ଏଇ ତ୍ରିବୀଜ ଅକ୍ଷର,
ଅଟନ୍ତି ସାକ୍ଷାତ ବ୍ରହ୍ମା ବିଷ୍ଣୁ ମହେଶ୍ୱର ।

'ର' କାର ଅଗ୍ନି ବୀଜ ତହୁଁ ରୁଦ୍ର ଜାତ,
'ଅ' କାର ସୂର୍ଯ୍ୟ ବୀଜ ବିଷ୍ଣୁ ବୋଲି ଖ୍ୟାତ ।
'ମ' କାର ଚନ୍ଦ୍ର ବୀଜୁଁ ବ୍ରହ୍ମାଙ୍କ ଉତ୍ପତ୍ତି,
ସୃଜନ ପାଳନ ଆଉ ସଂହାର କରନ୍ତି ।
ରାମ ନାମ ଅନୁପମ, ସଗୁଣ ନିର୍ଗୁଣ,
ଏ ନାମ ମହିମା କେବେ ନ ହୁଅଇ କ୍ଷୁଣ୍ଣ) ।

ଏ ମହାମନ୍ତ୍ରକୁ ନିତ୍ୟ ଜପନ୍ତି ମହେଶ,
ମୁକ୍ତିପ୍ରଦ ଏହା ତାଙ୍କ କାଶୀ ଉପଦେଶ ।
ଏ ନାମ ମହିମା ଜାଣିଛନ୍ତି ଗଣପତି,
ଯାହାର ପ୍ରଭାବେ ଅଗ୍ରପୂଜା ସେ ଲଭନ୍ତି । ୧୩୯

ଆଦି କବି ଜାଣନ୍ତି ଏ ନାମ ପରାକ୍ରମ,
ଓଲଟା ଜପି ବି ହେଲେ ପବିତ୍ର ପରମ ।
ଏ ନାମ ସହସ୍ର ନାମ ସମ—ଶିବ ବାଣୀ,
ଶୁଣି ପତି ସଙ୍ଗେ ଜପ କରିଲେ ଭବାନୀ । ୧୪୦

ଉମା ହୃଦ ଭାବ ଦେଖି ହର ହର୍ଷ ମନ,
ନାରୀ-ରତ୍ନ ନାରୀଙ୍କୁ ସେ କରିଲେ ଭୂଷଣ ।
ନାମ ପ୍ରଭାବକୁ ଶିବ ଜାଣନ୍ତି କେବଳ,
କାଳ କୂଟ ଦେଲା ତାଙ୍କୁ ଅମୃତର ଫଳ । ୧୪୧

ଶ୍ରୀରାମ ଭକତି ହେଲେ ବର୍ଷା ଋତୁ ସମ,
ସଜ୍ଜନ ଭକତେ ବାସ ଧାନ ଅନୁପମ ।
ରାମ ନାମ ବେନି ବର୍ଣ୍ଣ ଶ୍ରାବଣ ଭାଦ୍ରବ
ବେନି ମାସ—ଏ ତୁଳସୀ ମତ ଅଭିନବ । ୧୪୨

ଏ ବେନି ଅକ୍ଷର କେତେ ମଧୁର ସୁନ୍ଦର,
ବର୍ଣ୍ଣରୂପୀ ଶରୀରର ନୟନ ଯୁଗଳ ।
ଭକ୍ତ-ପ୍ରାଣ, ସୁମରିଲେ ସୁଲଭ ସୁଖଦ,
ଇହଲୋକେ ଲାଭ, ପରଲୋକେ ମୁକ୍ତିପ୍ରଦ । ୧୪୩

କହିଲେ ଶୁଣିଲେ ଆଉ ଜପିଲେ ଉତ୍ତମ,
ତୁଳସୀଙ୍କୁ ପ୍ରିୟ ରାମ ଲକ୍ଷ୍ମଣଙ୍କ ସମ ।
ବଖାଣିଲେ ଭିନ୍ନ ଲାଗେ ବର୍ଣ୍ଣଙ୍କର ପ୍ରୀତି,
ବ୍ରହ୍ମ ଜୀବ ସମ ସ୍ବତଃ ସ୍ୱାଭାବିକ ସ୍ଥିତି । ୧୪୪

ନର ନାରାୟଣ ସମ ବର୍ଣ୍ଣ ବେନି ଭ୍ରାତା,
ଜଗତ ପାଳକ ଭକ୍ତ ଜନଙ୍କର ତ୍ରାତା ।
ଭକ୍ତି ରୂପୀ ରୂପସୀର ସେ କର୍ଣ୍ଣ ଭୂଷଣ,
ଜଗତ ହିତାର୍ଥେ ନଭେ ଚନ୍ଦ୍ରମା ତପନ । ୧୪୫

ମୋକ୍ଷରୂପୀ ସୁଧାର ସେ ସ୍ୱାଦୁ ଓ ତୃପତି,
ଶେଷ ଓ କଚ୍ଛପ ସମ ଧରଣୀ ଧରନ୍ତି ।
ଭକ୍ତ-ମନ-କମଳେ ସେ ଭ୍ରମର ଯୁଗଳ,
ଜହ୍ନା-ଯଶୋଦା ର ଯେ ତ କୃଷ୍ଣ ହଳଧର । ୧୪୬

ରଘୁବରଙ୍କର ନାମେ ଏ ବେନି ଅକ୍ଷର,
ତୁଳସୀ କହଇ ଅତି ଦିଶଇ ସୁନ୍ଦର ।
ଏକ ଛତ୍ର ଅନ୍ୟ ଗୋଟି ମୁକୁଟର ମଣି—
ରୂପେ ସବୁ ବର୍ଣ୍ଣ ପରେ ହୁଅଇ ମଣ୍ଡଣି । ୧୪୭

ବୁଝିବାକୁ ଗଲେ ନାମ ନାମୀ ବେନି ଏକ,
ବେନି ମଧ୍ୟେ ପ୍ରୀତି ଯେହ୍ନେ ସ୍ୱାମୀ ଓ ସେବକ ।
ଈଶ୍ୱର ଉପାଧି ବେନି ନାମ ଆଉ ରୂପ,
ଅନାଦି ଅକଥନୀୟ ନିର୍ମଳ ସ୍ୱରୂପ । ୧୪୮

କହିବା କେ ବଡ଼ ସାନ ଅପରାଧ ଲାଗେ,
ଗୁଣ ଭେଦ ଶୁଣି ସାଧୁ ବିଚାରନ୍ତୁ ଆଗେ ।
ଦେଖ ଏହି ରୂପ ନାମ ଅଧୀନରେ ସିନା,
ରୂପ ଜ୍ଞାନ ନ ହୁଅଇ ଜାଣ ନାମ ବିନା । ୧୪୯

ନାମ ହୀନ ଦ୍ରବ୍ୟ ହାତ ପାପୁଲିରେ ରଖି,
ପରଖିଲେ ତାକୁ କେହି ଚହ୍ନି ପାରିବ କି ?

ସେପରି ନ ଥାଇ ଦ୍ରବ୍ୟ ନାମର ସ୍ମରଣେ,
ସପ୍ରେମେ ହୃଦେ ସେ ଦ୍ରବ୍ୟ ରୂପ ଆସେ ମନେ । ୧୫୦

ନାମ ରୂପ ଗତି କଥା କହି ହୁଏ ନାହିଁ,
ବୁଝିଲେ ଆନନ୍ଦ କିନ୍ତୁ ବର୍ଣ୍ଣିବ କେ କାହିଁ ?
ସଗୁଣ ନିର୍ଗୁଣ ମଧ୍ୟେ ସାକ୍ଷୀ ପରି ନାମ,
ବେନି ମଧ୍ୟେ କରଇ ସେ ଦୋଭାଷୀର କାମ । ୧୫୧

ତୁଳସୀ କହଇ ଯେବେ ଚାହୁଁ ତୁରେ ଭାଇ,
ଭିତର ବାହାର ଆଲୋକିତ ହେବା ପାଇଁ
ତେବେ ମୁଖ-ଦ୍ୱାର ଜିହ୍ୱା-ଦେହଳୀ ଉପରେ,
ରାମ-ନାମ ରୂପ ମଣି-ପ୍ରଦୀପ ତୁ ଧରେ । ୧୫୨

ଏ ନାମ ଜିହ୍ୱାରେ ଜପି ଜାଗିଥାଏ ଯୋଗୀ,
ବିଧି ପ୍ରପଞ୍ଚରୁ ହୋଇ ବିରକ୍ତ ବିୟୋଗୀ ।
ଅକଥ ଅନଘ ବ୍ରହ୍ମସୁଖ ଅନୁପମ,
ଲଭିଥାନ୍ତି ନାମ-ରୂପ-ରହିତ ପରମ । ୧୫୩

ଯେ ଇଚ୍ଛା କରନ୍ତି ଜାଣିବାକୁ ଗୂଢ଼ ତତ୍ତ୍ୱ,
ଜିହ୍ୱାରେ ସେ ନାମ ଜପି ଜାଣନ୍ତି ସମସ୍ତ ।
ନାମ ଜପ କଲେ ଲୟ ଲଗାଇ ସାଧକ,
ଅଣିମାଦି ଲଭି ସିଦ୍ଧ ହୁଏ ସେ ସାଧକ । ୧୫୪

ଏ ନାମ ଜପନ୍ତି ଅତି ଆର୍ତ୍ତ ହୋଇ ଜନ,
ମେଣ୍ଟଇ ସଙ୍କଟ, ସୁଖ ମିଳେ ଅଗଣନ ।
ରାମଙ୍କର ଭକ୍ତ ଚାରି ପ୍ରକାର ଜଗତେ,
ପୁଣ୍ୟବାନ ପାପହୀନ ଉଦାର ସମସ୍ତେ । ୧୫୫

ଏ ନାମ ଆଶ୍ରିତ ଚାରି ଚତୁର ଭକତେ,
ତହିଁ ଜ୍ଞାନୀ ଭକ୍ତ ପ୍ରିୟ ପ୍ରଭୁଙ୍କୁ ନିରତେ ।
ବେଦେ ଚାରି ଯୁଗେ ନାମ ପ୍ରଭାବ ଏମିତି,
କଳିରେ ଅଧିକ କିନ୍ତୁ ଗତି ନାହିଁ କିଛି । ୧୫୬

ସକଳ କାମନାହୀନ ଯେ ଭକତ ଜନ,
ରାମ ଭକ୍ତି ରୂପ ରସେ ସଦା ନିମଗନ ।
ସେମାନେ ବି ନାମାମୃତ ପ୍ରେମ ସରୋବରରେ
ରଖିଥାନ୍ତି ନିଜ ମନ-ମୀନ ନିରନ୍ତରେ । ୧୫୭

ସଗୁଣ ନିର୍ଗୁଣ ଦୁଇ ବ୍ରହ୍ମଙ୍କ ସ୍ୱରୂପ,
ଅନାଦି ଅକଥନୀୟ ଅଗାଧ ଅନୂପ ।
ବେନି ଠାରୁ ନାମ ବଡ଼—ଏ ମତ ମୋହରି,
ନିଜ ବଳେ ବେନିଙ୍କୁ ସେ ଥାଏ ବଶ କରି । ୧୫୮

ମୋ ଗାରିମା ବୋଲି ସୁଜ୍ଞେ ନ କରନ୍ତୁ ଜ୍ଞାନ,
କହଇ ବିଶ୍ୱାସେ ମନ ରୁଚି କଥାମାନ ।
ଏକ ଦାରୁଗତ ଏକ ବାହାରେ ପ୍ରକଟ,
ବେନି ଅଗ୍ନି ସମ ଜାଣ ବେନି ବ୍ରହ୍ମତତ୍ତ୍ୱ । ୧୫୯

ଉଭୟେ ଅଗମ୍ୟ ବ୍ରହ୍ମ ନାମରେ ସୁଗମ,
ବ୍ରହ୍ମ ରାମ ଠାରୁ ବଡ଼ ନାମ ଅନୁପମ ।
ବ୍ରହ୍ମ ଅବିନାଶୀ ଆଉ ବ୍ୟାପକ ନିର୍ଗୁଣ,
ରାମ ତ ସଚ୍ଚିଦାନନ୍ଦ ସଘନ ସଗୁଣ । ୧୬୦

ଏହିପରି ଅବିକାରୀ ପ୍ରଭୁ ହୃଦେ ଥାଇ,
ଜଗତର ଜୀବେ ଦୀନ ଦୁଃଖୀ କାହିଁ ପାଇଁ ?
ନାମ ନିରୂପଣ କରି ସେ ନାମ ଯତନେ,
ବ୍ରହ୍ମ ପ୍ରକଟଇ ଯେହ୍ନେ ମୂଲ୍ୟ ତା' ରତନେ । ୧୬୧

ଏସନେ ନିର୍ଗୁଣ ବ୍ରହ୍ମ ଠାରୁ ନାମ ବଡ଼,
ଅପାର ପ୍ରତାପ ଶକ୍ତି ମହିମା ନାମର ।
ରାମ ଠାରୁ ନାମ ବଡ଼ ଅଟଇ ଯେମନ୍ତେ,
ଏବେ କହୁଅଛି ତାହା ମୋ ବିଚାର ମତେ । ୧୬୨

ଭକତଙ୍କ ହିତେ ରାମ ନର ଦେହ ବହି,
ସାଧୁ ଜନେ ଦେଲେ ସୁଖ ବହୁ ଦୁଃଖ ସହି ।

ମାନବ ପ୍ରେମେ ଜପି ନାମ ଅକ୍ଳେଶେ ଭକତେ,
ଆନନ୍ଦ ମଙ୍ଗଳ ଧାମ ହୁଅନ୍ତି ଜଗତେ । ୧୭୩

ତାପସ ରମଣୀ ଏକ ତାରିଥିଲେ ରାମ,
ସୁଧାରଇ କୋଟି ଖଳ ମତି ଏହି ନାମ ।
ସୁକେତୁ ସୁତାକୁ ସେନା ତନୟ ସହିତେ,
ବଧ କରିଛନ୍ତି ରାମ ଋଷିଙ୍କର ହିତେ ।
ମାନବ ଦୁଃଖ ଦୋଷ ସାଥେ ଦୁରାଶା ସମସ୍ତ,
ଦଳେ ନାମ, ରବି ନିଶି ନାଶଇ ଯେମନ୍ତ ।
ରାମ ନିଜେ ଭାଙ୍ଗିଥିଲେ ଭବଙ୍କର ଧନୁ,
ନାମର ପ୍ରତାପେ ଭାଙ୍ଗେ ଭବ-ଭୟ ମନୁ । ୧୭୪

ସୁଶୋଭନ କଲେ ରାମ ଦଣ୍ଡକ ଅରଣ୍ୟେ,
ନାମ ପୂତ କରେ କୋଟି ଜନ ବଣ୍ୟ-ମନ ।
ନିଶାଚରି ଦଳ ଦଳି ଅଛନ୍ତି ଶ୍ରୀରାମ,
କଳିଯୁଗ ପାପ ନାଶ କରେ ଏହି ନାମ । ୧୭୫

ଜଟାୟୁ ଶବରୀ ପରି ଉତ୍ତମ ସେବକେ,
ମୁକ୍ତି ଦେଇ ନେଲେ ରାମ ପରମ ପୁଲକେ ।
କିନ୍ତୁ ବହୁ ଦୁଷ୍ଟ ଜନେ କରଇ ଉଦ୍ଧାର,
ରାମ ନାମ, ଯାର ଗୁଣଗାଥା ବେଦେ ସାର । ୧୭୬

ସମସ୍ତେ ଜାଣନ୍ତି ଏହା, ସୁଗ୍ରୀ ବିଭୀଷଣେ,
ବେନିଙ୍କୁ ରଖିଲେ ରାମ ଆପଣା ଶରଣେ ।
ବହୁ ଗରିବଙ୍କୁ କିନ୍ତୁ ଆଶ୍ରା ଦିଏ ନାମ,
ଲୋକେ ବେଦେ ଲେଖା ଯାର କୀର୍ତ୍ତି ଅଭିରାମ । ୧୭୭

ଏକତ୍ରିତ କରି ରାମ ଭାଲୁ କପି ଦଳ,
ସେତୁ ପାଇଁ ଖଟାଇଲେ ଅପ୍ରମିତ ବଳ ।
କିନ୍ତୁ ନାମ ନେବାକ୍ଷଣି ଭବ ପାରାବାର,
ଶୁଖିଯାଏ, ସୁଜନେ ଏ କଥାକୁ ବିଚାର । ୧୭୮

ସମରେ ଶ୍ରୀରାମ ମାରି ସବଂଶେ ରାବଣ,
ସୀତା ସହ ସ୍ୱପୁରକୁ କରିଲେ ଗମନ ।
ରାଜା ରାମ, ରାଜଧାନୀ, ଅଯୋଧ୍ୟା ନଗରୀ,
ସୁର ମୁନି ଜନେ ଗୁଣ ଗାଇଲେ ତାଙ୍କର । ୧୬୯

ସପ୍ରେମେ ସେବକ କଲେ ନାମ ସୁମରଣ,
ଜିତି ହୁଏ ମହା ମୋହ-ସେନା ଅକଳନ ।
ସ୍ନେହେ ମଜ୍ଜି ନିଜ ସୁଖେ ଚଳନ୍ତି ସଂସାରେ,
ନାମ ବଳେ ଚିନ୍ତା ତାଙ୍କୁ କେବେହେଁ ନ ଘାରେ । ୧୭୦

ବ୍ରହ୍ମ ଓ ରାମଙ୍କ ଠାରୁ ବଡ଼ 'ରାମନାମ',
ବରଦଙ୍କୁ ଦେଇପାରେ ଏହା ବରଦାନ ।
ଶତ କୋଟି ରାମ କଥା ମଧ୍ୟରୁ ମହେଶ,
ହୃଦେ ବାଛିଛନ୍ତି 'ରାମ'—ଏ ନାମ ବିଶେଷ । ୧୭୧

**ମାସ ପାରାୟଣ, ପ୍ରଥମ ବିଶ୍ରାମ ।**

ନାମର ପ୍ରସାଦେ ସଦାଶିବ ଅବିନାଶୀ,
ଅମଙ୍ଗଳ ବେଶେ ସେ ତ ସୁମଙ୍ଗଳ ରାଶି ।
ଶୁକ ସନକାଦି ସିଦ୍ଧ ମୁନି ଋଷି ଗଣ,
ନାମ ବଳେ ବ୍ରହ୍ମାନନ୍ଦ କରନ୍ତି ସେବନ । ୧୭୨

ନାରଦ ଜାଣନ୍ତି କେତେ ମହିମା ନାମର,
ବିଶ୍ୱ ପ୍ରିୟ ହରି, ତାଙ୍କ ପ୍ରିୟ ହରିହର ।
ନାମ ଜପିବାରୁ ପ୍ରଭୁ ହେ ନାମ ପ୍ରସାଦେ,
କଲେ ଭକ୍ତ ଶିରୋମଣି ଶିଶୁ ପ୍ରହଲ୍ଲାଦେ । ୧୭୩

ଜପିଲେ ଏ ନାମ ଧ୍ରୁବ ଗ୍ଲାନି ସହିକାରେ,
ଲଭିଲେ ଅତୁଳ ସ୍ଥିର ସ୍ଥାନ ଏ ସଂସାରେ ।
ପବନ ନାମକୁ ସ୍ମରି ପବନର ସୁତ,
ଶ୍ରୀରାମଙ୍କୁ କରିଛନ୍ତି ନିଜ ବଶୀଭୂତ । ୧୭୪

ପାପୀ ଅଜାମିଳ, ଗଜ ଗଣିକା ପିଙ୍ଗଳା,
ଲଭିଲେ ମୁକତି ଏଇ ନାମ ବଳେ ପରା ।
କେତେ ବା କହିବି ଏଇ ନାମର ବଡ଼ାଇ,
ନିଜେ ରାମ ନାମ ଗୁଣ ନ ପାରିବେ ଗାଇ । ୧୭୫

କଳିଯୁଗ କଳ୍ପତରୁ ସମ ରାମନାମ,
କଳିକାଳ ପାଇଁ ଏହା କଲ୍ୟାଣର ଧାମ ।
ଯାହାକୁ ସୁମରି କରି ଯାହାଠାରେ ଆଶ,
ଭାଙ୍ଗରୁ ତୁଳସୀ ହେଲା ଏ ତୁଳସୀ ଦାସ । ୧୭୬

ତ୍ରେତୟୁଗେ ତିନକାଳେ ତିନ ଲୋକେ ସ୍ଥିତ,
ଜୀବ ନାମ ଜପି ହୁଏ ଶୋକରୁ ରହିତ ।
ବେଦ ସନ୍ଥ ପୁରାଣଙ୍କ ଏଥିରେ ସମ୍ମତି,
ସକଳ ପୁଣ୍ୟର ଫଳ ରାମ ନାମେ ରତି । ୧୭୭

ପ୍ରଥମ ଯୁଗରେ ଧ୍ୟାନ ଦ୍ୱିତୀୟରେ ଯଜ୍ଞ,
ଦ୍ୱାପରେ ପୂଜାରେ ପ୍ରଭୁ ହୁଅନ୍ତି ପ୍ରସନ୍ନ ।
କଳି ଯେ ପାପର ମୂଳ କଳୁଷେ ମଳିନ,
ନର-ମନ ପାପ ରୂପୀ ପାରାବାରେ ମୀନ । ୧୭୮

ଏପରି କରାଳ କାଳେ ନାମ-କଳ୍ପବଟ,
ସ୍ମରଣେ ତୁଟଇ ଭବ ଜଞ୍ଜାଳ ସଙ୍କଟ ।
କଳିକାଳେ ରାମ ନାମ ଇଚ୍ଛା ଫଳ ଦାତା,
ପରଲୋକେ ହିତକାରୀ ଇହେ ପିତାମାତା । ୧୭୯

କଳିଯୁଗେ କିଛି ନୁହେଁ କର୍ମ ଭକ୍ତି ଜ୍ଞାନ,
କେବଳ ଭରସା ଜାଣ ଏକ ରାମ ନାମ ।
କାଳନେମି ସମ କଳି କପଟ-ଭବନ,
ତହିଁ ତ କୁଶଳୀ ନାମ ପବନ-ନନ୍ଦନ । ୧୮୦

ରାମ ନାମ ନରସିଂହ, କଳି ହିରଣ୍ୟକ,
ପ୍ରହଲ୍ଲାଦ ପରି ଜାଣ ଜପିବା ଭକତ
ଦେବତା-ଅରି-କଳି-ଦୈତ୍ୟଙ୍କୁ ଏ ଦଳି,
ଜପିବା ଲୋକଙ୍କୁ ପାଳେ ଅତି ଶ୍ରଦ୍ଧା କରି । ୧୮୧

ଭାବେ ବା ଅଭାବେ କ୍ରୋଧେ ଅବା ଆଳସ୍ୟରେ,
ଶୁଭ ହୁଏ ଦଶ ଦିଗ ନାମ ଜପ କଲେ ।
ସୁମରି ସେ ନାମ ନୋଇଁ ରାମ ପଦେ ମଥା,
ଲେଖି ଯାଉଅଛି ମୁହିଁ ରଘୁନାଥ କଥା । ୧୮୨

ସେହି ସୁଧାରିବେ ମୋତେ ସକଳ ପ୍ରକାରେ,
କୃପା କରି କୃପା କାହିଁ ସରିଛି ସଂସାରେ ?

ଶ୍ରୀରାମ ସୁସ୍ୱାମୀ ମୁହିଁ ତାଙ୍କ କୁସେବକ,
ସ୍ୱଗୁଣେ ପାଳନ୍ତି ମୋତେ କରୁଣାନାୟକ । ୧୮୩

ଲୋକେ ବେଦେ ସୁସ୍ୱାମୀଙ୍କ ଏହି ପରି ରୀତି,
ବିନୟେ ଜାଣନ୍ତି ସେହୁ ହୃଦୟର ପ୍ରୀତି ।
ଧନୀକ ଗରିବ ଗାଆଁ ଲୋକ ସହରିଆ,
ଜ୍ଞାନୀ ମୂର୍ଖ କୋଟିଏ ବା ଧୋବ ଧାଉଳିଆ—୧୮୪

ସୁକବି କୁକବି ନିଜ ମନରେ ବିଚାରି,
କରନ୍ତି ରାଜାଙ୍କ ସ୍ତୁତି ସବୁ ନରନାରୀ ।
ସୁଜାଣ ସୁଶୀଳ ସାଧୁ ଅବନୀ ନରେଶ,
ଈଶ୍ୱରଙ୍କ ଅଂଶେ ଜାତ ଦୟାଳୁ ଅଶେଷ । ୧୮୫

ଶୁଣି ସମସ୍ତଙ୍କୁ ପ୍ରେମେ କରନ୍ତି ସମ୍ମାନ,
ଚିହ୍ନି ଗତିଭକ୍ତି ନତି ଭଣନ୍ତି ବିଧାନ ।
ସାଧାରଣ ରାଜାଙ୍କର ସ୍ୱଭାବ ଏସନ,
ସେ ତ ଜ୍ଞାନୀ ଶିରୋମଣି କୋଶଳ ରାଜନ । ୧୮୬

ଅତୁଟ ସ୍ନେହରେ ରାମ ହୁଅନ୍ତି ପ୍ରସନ୍ନ,
କିନ୍ତୁ ମୋ'ଠୁଁ ବଳି କିଏ ମୂର୍ଖ ମନ୍ଦ ମନ । ୧୮୭

ଏ ଶଠ ସେବକ ଜନ ରୁଚି ଆଉ ପ୍ରୀତି,
ରଖିବେ ଦୟାଳୁ ରାମ ହେଉଛି ପ୍ରତୀତି ।
ଯେଣୁ ସେ ଜାହାଜ କଲେ ପଥରକୁ ନେଇ,
ଜ୍ଞାନୀ କଲେ କପି ରକ୍ଷେ ମନ୍ତ୍ରୀ ପଦ ଦେଇ । ୧୮୮

ସମସ୍ତେ କହନ୍ତି, ମୁଁ ଯେ କହି ହୁଏ ସଦା,
ସ୍ନେହେ ପ୍ରଭୁ ସହନ୍ତି ଏ ଉପହାସ କଥା ।
ସୀତାନାଥ ସମ ସ୍ୱାମୀଙ୍କର ନିତ୍ୟ ଦାସ,
ସେବକ କିଙ୍କର ଯାହା ଏ ତୁଳସୀ ଦାସ । ୧୮୯

ମୋ ପକ୍ଷେ ଧୃଷ୍ଟତା ଏହା ଶୁଣି ମୋର ପାପ,
ରୌରବ ନରକ ମଧ୍ୟ ଟେକୁ ଅଛି ନାକ ।

ବୁଦ୍ଧି ତା' ଆପଣା ଭଯେ ମାଡ଼ ଅଛୁ ଡର,
ସ୍ୱପ୍ନେ ନ ଧରନ୍ତି କନ୍ତୁ ପ୍ରଭୁ ଦୋଷ ମୋର । ୧୯୦

ଦେଖି ଶୁଣି ଦୋଷ ମୋର ବଗୃଚ ଚତ୍ତରେ
ପ୍ରଭୁ ମୋ ଭକତ ମତ ନେଲେ ହୃଦଯ୍ରେ ।
କଥା ମୋ ଖରାପ ହେଉ ନିର୍ମଳ ତ ମନ
ହୃଦ ଭାବ ଜାଣି ରାମ ହୁଅନ୍ତି ପ୍ରସନ୍ନ । ୧୯୧

କଲ୍ଲ ଅପରାଧ ପ୍ରଭୁ ନ ରଖନ୍ତି ମନେ,
ହୃଦ ଭାବ ଶତବାର ଆଣନ୍ତି ସ୍ମରଣେ ।
ବ୍ୟାଧ ପରି ବଧ କଲେ ବାଳକୁ ଯେ ପାପେ,
ସେହି ପାପ କଲେ ପୁଣି ସୁଗ୍ରୀବ ତ ଆପେ । ୧୯୨

ବିଭୀଷଣ କରିଥିଲେ ସେହି ହୀନ କାମ,
ହୃଦେ ନ ରଖିଲେ ତାହା ସପନେ ଶ୍ରୀରାମ ।
ବରଂ ଭରତଙ୍କ ଆଗେ ଦେଲେ ସନମାନ,
ଗାଇଲେ ସଭାରେ ତାଙ୍କ ଯଶ ଗୁଣମାନ । ୧୯୩

ଏହି ପ୍ରଭୁ ତରୁ ତଳେ ବସିଥିବା କାଳେ,
ଡେଇଁଥାନ୍ତି ଯେ ବାନରଗଣ ବୃକ୍ଷ ଡାଳେ ।
ଆପଣା ସମାନ ତାଙ୍କୁ କରିଲେ ଗୋସାଇଁ,
ତୁଳସୀ କହଇ ତାଙ୍କ ସମ ଶୀଳ କାହିଁ ? । ୧୯୪

ଆହେ ରାମ ଆପଣଙ୍କ ସୁଖଦ ସ୍ୱଭାବେ,
ସଭଙ୍କ କଲ୍ୟାଣ ହୋଇଥାଏ ସବୁ ଭାବେ ।
ସତ୍ୟ ସତ୍ୟ ଏହି କଥା—ତେବେ ତୁଳସୀର,
ସକଳ କଲ୍ୟାଣ ହେବ ଆହେ ରଘୁବୀର । ୧୯୫

ଏ ରୂପେ ନିଜର ସବୁ ଦୋଷ ଗୁଣ ଗାଇ,
ସମସ୍ତଙ୍କ ପଦ ପ୍ରାନ୍ତେ ପ୍ରଣତି ଜଣାଇ
ଲେଖୁଅଛୁ ରଘୁବର ଯଶ ସୁବିମଳ,
ଯାହା ଶୁଣି ନାଶ ହେବ କଳି-ପାପ-ମଳ । ୧୯୬

ଯାଜ୍ଞବଲ୍କ୍ୟ ଯେଉଁ ରମ୍ୟ କଥା ପ୍ରୀତି ଭରେ,
ଶୁଣାଇଲେ ପୂର୍ବେ ଭରଦ୍ୱାଜ ମୁନିବରେ ।
ବଖାଣି କହୁଛି ସେହି ସମ୍ବାଦ ସକଳ,
ସୁଜନେ ଶୁଣନ୍ତୁ ତାହା ହୋଇ ସୁଖଭର । ୧୯୭

ପ୍ରଥମେ ରଚିଲେ ଶମ୍ଭୁ ଏ କଥା ସୁନ୍ଦର,
ଶୁଣାଇଲେ କୃପା କରି ଉମାଙ୍କୁ ସତ୍ୱର ।
ପରେ ଭୁଷୁଣ୍ଡିଙ୍କୁ ଶିବ କଲେ ତା' ପ୍ରଦାନ,
ସେ ତ ଅଧିକାରୀ, ରାମ ଭକତ ପ୍ରଧାନ । ୧୯୮

ତାଙ୍କଠାରୁ ଲଭିକଲେ ଯାଜ୍ଞବଲ୍କ୍ୟ ମୁନି,
ସେ ଭରଦ୍ୱାଜଙ୍କ ଆଗେ ବଖାଣିଲେ ପୁଣି ।
ବେନିଏ ତ ଶ୍ରୋତା ବକ୍ତା ସମ ଶୀଳବନ୍ତ,
ସମଦର୍ଶୀ ହରିଲୀଳା ଜାଣନ୍ତି ସମସ୍ତ । ୧୯୯

ଜାଣନ୍ତି ସେ ତ୍ରିକାଳ କଥା ନିଜ ଜ୍ଞାନେ,
ହାତ ପାପୁଲିରେ ଥିବା ଅଁଳା ସମାନେ ।
ଆଉ ହରିଲୀଳା-ଜ୍ଞାନୀ ଶ୍ରୀହରି ଭକତେ,
କହନ୍ତି, ଶୁଣନ୍ତି ବୁଝିଥାନ୍ତି ନାନା ମତେ । ୨୦୦

ପୁଣି ମୋର ଗୁରୁମୁଖୁଁ ବରାହ ତୀର୍ଥରେ,
ଶୁଣିଲି ମୁଁ ଏହି କଥା ବାଳ ବୟସରେ ।
ସେତେବେଳେ ନ ଥିଲା ମୋ ବୁଝିବା ଶକତି,
ତେଣୁ ରାମକଥାରେ ମୋ ନ ବଳିଲା ମତି । ୨୦୧

ରାମ ଗୂଢ଼ କଥା, ବକ୍ତା ଶ୍ରୋତା ବେନିଜନ,
ଉଭୟେ ତ ଏ ସଂସାରେ ଜ୍ଞାନର ଭବନ ।
କଳି ପାପ ଗ୍ରସ୍ତ ଜଡ଼ ଜୀବ ମନ୍ଦମତି,
କେମନ୍ତେ ଏ କଥା ଅବା ବୁଝି ମୁଁ ପାରନ୍ତି । ୨୦୨

ତଥାପି ତ ବହୁବାର ଗୁରୁ କହିବାରେ,
ବୁଝିହେଲା ତହୁଁ କିଛି ବୁଦ୍ଧି ଅନୁସାରେ ।

ଏବେ ତା' ମୋ' ଦ୍ୱାରା ହେବ ଭାଷାରେ ରଚିତ,
ତହିଁରେ ମନକୁ ଶାନ୍ତି ମିଳିବ ନିଶ୍ଚିତ । ୧୦୩

ଯାହା କିଛି ବୁଦ୍ଧିବଳ ବିବେକ ମୋହର,
ହୃଦେ ହରି ପ୍ରେରଣାରେ କହିବି ସେପରି ।
ମୋ ନିଜ ସନ୍ଦେହ ଭ୍ରମ ଅଜ୍ଞତା-ନାଶିନୀ
କଥା ରଚେ, ଯାହା ଭବ-ସରିତେ ତରଣୀ । ୧୦୪

ରାମ କଥା କଳିକାଳ ପାପ ନାଶକାରୀ,
ସଜ୍ଜନଙ୍କ ଶାନ୍ତିଦାତା ଜନ ମନୋହାରୀ ।
କଳି-ବିଷଧର ସର୍ପ, ରାମକଥା କେକୀ,
ଜ୍ଞାନାଗ୍ନି ପ୍ରକାଶ ପାଇଁ ଏହା ଚକମକି । ୧୦୫

ରାମକଥା କଳିଯୁଗ କାମଧେନୁ ସମ,
ସୁଜନଙ୍କ ସଞ୍ଜୀବନୀ ଔଷଧି ପରମ ।
ଧରଣୀରେ ଏ ଯେସନେ ସୁଧା-ତରଙ୍ଗିଣୀ,
ଭୟ ଧ୍ୱଂସୀ, ଭ୍ରମ-ଭେକ ପାଇଁ ଭୁଜଙ୍ଗିନୀ । ୧୦୬

ଏହା ଦୈତ୍ୟ ସେନାସମ ନରକ ନାଶିନୀ,
ସାଧୁ ସୁରକୁଳ ହିତେ ପର୍ବତ-ନନ୍ଦିନୀ ।
ସଜ୍ଜନ-ସମାଜ-ସିନ୍ଧୁ କୋଳେ ଲକ୍ଷ୍ମୀରୂପ,
ଏ ସଂସାର ବୋଝ ବହେ ପୃଥିବୀ ସ୍ୱରୂପ । ୧୦୭

ଯମ ଦୂତଗଣ ମୁଖେ ବୋଳିବାକୁ କଳା,
ଜଗତ-ଯମୁନା ରାମନାମ ଏହି ପରି ।
କାଶୀ କ୍ଷେତ୍ରପରି ଦିଏ ଜୀବକୁ ମୁକତି,
ରାମକୁ ତୁଳସୀ ପରି ମୋତେ ମା' ତୁଳସୀ । ୧୦୮

ଶିବଙ୍କୁ ଏ ପ୍ରିୟ ବିନ୍ଧ୍ୟ-ନନ୍ଦିନୀ ଯେସନେ,
ସବୁ ସିଦ୍ଧି ସୁଖରାଶି ସମ୍ପତ୍ତି ଭୁବନେ ।
ସଦ୍‌ଗୁରୁ ରୂପକ ଦେବଗଣେ ଏ ଅଦିତି,
ଏ ପରମ ପ୍ରେମସୀମା ରାମଭକ୍ତି ପ୍ରତି । ୧୦୯

ଶ୍ରୀରାମ ଚରିତ ରମ୍ୟ ମନ୍ଦାକିନୀ ସମ,
ଚିତ୍ତ-ଚିତ୍ରକୂଟ ତହିଁ ପବିତ୍ର ପରମ ।
ଯହିଁ ନିରମଳ ସ୍ନେହ ଶୁଚି ଉପବନ,
ବିହରନ୍ତି ତହିଁ ସୀତା ଶ୍ରୀ ରଘୁନନ୍ଦନ । ୨୧୦

ଶ୍ରୀରାମ-ଚରିତ-ଚିନ୍ତାମଣି ସୁଶୋଭନ,
ଯେତେ ସାଧୁ ସନ୍ମତି-ରମଣୀ ଭୂଷଣ ।
ରାମ ଗୁଣଗ୍ରାମ ବିଶ୍ୱ କଲ୍ୟାଣ କାରକ,
ମୁକତି ଧରମ ଧନ ଧାମ ପ୍ରଦାୟକ । ୨୧୧

ଏ ଜ୍ଞାନ ବୈରାଗ୍ୟ ଯୋଗ ସଦ୍‌ଗୁରୁ ଅଟଇ,
ଦେବ ବୈଦ୍ୟ ପ୍ରାୟେ ଭବ-ରୋଗ ବିନାଶଇ ।
ସୀତାରାମ ପ୍ରେମର ଏ ଜନକ ଜନନୀ,
ନିୟମ ଧରମ ବ୍ରତ ମୂଳ ବୀଜ ମଣି । ୨୧୨

ରାମକଥା ପାପ ଶୋକ ସନ୍ତାପ ନାଶକ,
ଇହ ପରଲୋକର ଏ ଉତ୍ତମ ପାଳକ ।
ବିବେକ ରାଜାର ଶୂରବୀର ମନ୍ତ୍ରୀ ପୁଣି,
ଲୋଭ-ସିନ୍ଧୁ ଶୋଷିବାରେ ଏ ଅଗସ୍ତି ମୁନି । ୨୧୩

କାମ କ୍ରୋଧ କଳି-ମଳ-କରୀଗଣ ରିପୁ,
ଭକ୍ତଜନ-ମନ-ବନେ ଏ କେଶରୀ ଶିଶୁ ।
ଏ ଶିବଙ୍କ ପ୍ରିୟତମ ଅତିଥି ପ୍ରସିଦ୍ଧ,
ଦାରିଦ୍ର୍ୟ-ଦାବାଗ୍ନି ପାଇଁ କାମଦ-ବାରିଦ । ୨୧୪

ବିଷୟ-ସର୍ପକୁ ଏହି ମନ୍ତ୍ର ମହାମଣି,
ଭାଲ ଲେଖା ଦୁର୍ଭାଗ୍ୟକୁ କାଟେ ତତକ୍ଷଣି ।
ମୋହ ତମ ବିନାଶନେ ଯେସନେ ରବିକର,
ସେବକ-ଧାନକୁ ପାଳେ ଯଥା ଜଳଧର । ୨୧୫

କଳ୍ପତରୁ ସମ ହିଏ ବାଞ୍ଛିତ ଦରବ,
ସେ ବି ହରିହର ସମ ସୁଖଦ ସୁଲଭ ।

ସୁକବି ଶାରଦାକାଶ-ମନ ଗଗନରେ,
ଶ୍ରୀରାମ ଚରିତ ତାରା-ଗଣ ରୂପଧରେ ।
ରାମଭକ୍ତ ଜନଙ୍କର ପ୍ରାଣଧନ ପରି,
ରାମକଥା ଅବିରତ ହୃଦେ ଥାଏ ଭରି । ୨୧୬

ଏ ସକଳ ପୁଣ୍ୟ ଫଳ ମହାଭୋଗ ସମ,
ବିଶ୍ୱହିତେ ଛଳହୀନ ଏ ସାଧୁ-ଉତ୍ତମ ।
ଭକ୍ତଜନ ମାନସର ଏହି କି ମରାଳ,
ପୂତ କରିବାକୁ ଏ କି ଗଙ୍ଗା ବୀଚିମାଳ । ୨୧୭

କଳିର କପଟ ଦମ୍ଭ କୁତର୍କ କୁପଥ,
ପୁଣି ପାଷାଣ୍ଡର ଯେତେ ହୀନ ମନୋରଥ,
ରାମ ଗୁଣଗ୍ରାମ ଜାଳି ପକାଏ ତେସନେ,
ଇନ୍ଧନକୁ ଜାଳିଦିଏ ଅନଳ ଯେସନେ । ୨୧୮

ଶ୍ରୀରାମ ଚରିତ ରାକାରଜନୀ କିରଣ,
ସକଳଙ୍କୁ କରିଥାଏ ସୁଖ ବିତରଣ ।
ମାନବ ସଜ୍ଜନ-ରୂପ କୁମୁଦ, ଚକୋର—
ଚିତ୍ତ-ହିତ-ଅବିରତ, ଅତି ଲାଭକର । ୨୧୯

ଯେପରି ଭାବରେ ପ୍ରଶ୍ନ ପଚାରିଲେ ସତୀ,
ବଖାଣି କହିଲେ ଯେଉଁ ଭାବେ ଉମାପତି,
ଗାଇ ଶୁଣାଉଛି ମୁହିଁ ସେ ସବୁ କାରଣ,
ଭାଷାରେ ବିଚିତ୍ର କଥା ହୋଇବ ବର୍ଣ୍ଣନ । ୨୨୦

ଏ କଥା ନାହାନ୍ତି ଶୁଣି ଯେଉଁ ଲୋକମାନେ,
ବିସ୍ମିତ ହୁଅନ୍ତୁ ନାହିଁ ଶୁଣିଲେ ସେ କାନେ ।
ଯେଉଁ ଜ୍ଞାନୀ ଶୁଣନ୍ତି ଏ ବିଚିତ୍ର ଚରିତ,
ଆଶ୍ଚର୍ଯ୍ୟ ହୁଅନ୍ତି ନାହିଁ ଏ କଥା ବିଦିତ—୨୨୧

ରାମକଥା ସମ କଥା ନାହିଁ ଜଗତରେ,
ଏ ବିଶ୍ୱାସ ଥାଏ ସଦା ତାଙ୍କର ମନରେ ।

ଦେହାଇଅଛି ନାନା ଭାବେ ରାମ ଅବତାର,
ଶତକୋଟି ରାମାୟଣ ରଚିତ ଅପାର । ୨୨

କଳ୍ପଭେଦେ ରାମଙ୍କର ସୁନ୍ଦର ଚରିତ;
ନାନାଭାବେ ଗାଇ ଯାଇଛନ୍ତି ମୁନିଗଣ ।
ହୃଦୟେ ବିଚାରି ଏହା ନ କରନ୍ତୁ ଶଙ୍କା,
ସମାଦରେ ସାଧୁଜନେ ଶୁଣନ୍ତୁ ଏ କଥା । ୨୨୩

ଅନନ୍ତ ଶ୍ରୀ ରାମଚନ୍ଦ୍ର, ଗୁଣ ବି ଅନନ୍ତ,
କଥାର ବିସ୍ତାର କେତେ କହିବ କେମନ୍ତ ।
ନିର୍ମଳ ବିଚାର ବୁଦ୍ଧି ଯୁକ୍ତ ଯେଉଁଜନ,
ସେମାନେ ବିସ୍ମିତ ହେବେ ନାହିଁ କଦାଚନ । ୨୨୪

ସକଳ ସନ୍ଦେହ ଦୂର କରି ଏହିପରି,
ଗୁରୁ-ପାଦ-ପଦ୍ମ-ରଜ ମସ୍ତକରେ ଧରି
ହାତଯୋଡ଼ି ସମସ୍ତଙ୍କୁ କରୁଛି ବିନତି,
ମୋ ଲେଖାରେ କିଛି ଦୋଷ ନ ରହୁ ଯେମିତି । ୨୨୫

ସାଦରେ ଶିବଙ୍କ ପଦେ ନତ କରି ମଥା,
କହୁଅଛି ନିରମଳ ରାମଗୁଣ କଥା ।
ସମ୍ବତ ଷୋହଳ ଶହ ଏକତିରିଶିରେ,
କଥା ଆରମ୍ଭଇ ହରି ପଦ ଧରି ଶିରେ । ୨୨୬

ଚଇତ ନବମୀ ତିଥି ସେ ମଙ୍ଗଳବାର,
ଅଯୋଧ୍ୟାରେ ଏ ଚରିତ କରୁଛି ପ୍ରଚାର ।
ବେଦମତେ ଯେଉଁ ଦିନ ରାମ ଜନ୍ମତିଥି,
ଅଯୋଧ୍ୟାରେ ତୀର୍ଥସବୁ ହୁଅନ୍ତି ଅତିଥି । ୨୨୭

ଦୈତ୍ୟ ଖଗ ନାଗ ନର ମୁନି ଦେବାଦେବୀ,
ସର୍ବେ ତହିଁ ଆସି ରଘୁନାଥେ' ଥାନ୍ତି ସେବି ।
ସୁଜନେ ଏ ଜନ୍ମୋତ୍ସବ କରନ୍ତି ପାଳନ,
ରାମଙ୍କ ସୁନ୍ଦର ଯଶ କରନ୍ତି କୀର୍ତ୍ତନ । ୨୨୮

ସେ ଦିନ ଦଳକୁ ଦଳ ସଜ୍ଜନ ନିକରେ,
ସ୍ନାନ କରି ପୁଣ୍ୟମୟୀ ସରଯୂର ଜଳେ,
ରାମ ଚାରୁ ଶ୍ୟାମ ତନୁ ଧ୍ୟାୟି ଏକ ଲୟେ,
ଅବିରତ ରାମନାମ ଜପନ୍ତି ହୃଦୟେ । ୨୨୯

ସରଯୂ ଦର୍ଶନ ସ୍ପର୍ଶ ସ୍ନାନ ପାନ ଫଳେ,
ବେଦ ଓ ପୁରାଣ କହେ ପାପ ଅପସରେ ।
ଏ ନଦୀ ପବିତ୍ର ଅତି ମହିମା ଅପାର,
କହି ନ ପାରନ୍ତି ବାଣୀ ମାହାତ୍ମ୍ୟ ତାହାର । ୨୩୦

ରାମ ଧାମ-ପ୍ରଦାୟିନୀ ପୁରୀ ମନୋହର,
ତ୍ରିଲୋକେ ବିଦିତ ଖ୍ୟାତି, ଅତି ପୂତକର ।
ଜଗତର ଅସୁମାରି ଜୀବ ଚାରିଜାତି,
ଅଯୋଧ୍ୟାରେ ତେଜି ତନୁ ମୁକତି ପାଆନ୍ତି । ୨୩୧

ସବୁ ଭାବେ ଜାଣି ଏହି ପୁରୀ ମନୋହର,
ସର୍ବ ସିଦ୍ଧି ପ୍ରଦ ପୁଣି ମଙ୍ଗଳ-ଆକର ।
ବିମଳ ଚରିତ ଏବେ କରୁଛି ଆରମ୍ଭ,
ଯାହା ଶୁଣି ନାଶଯାଏ କାମ ମଦ ଦମ୍ଭ । ୨୩୨

ଏ କଥାର ନାମ "ରାମ ଚରିତ ମାନସ"
ଶୁଣିଲେ ଶ୍ରବଣ ବେନି ଲଭନ୍ତି ହରଷ ।
ସଂସାର ବିଷୟ ରୂପ ଘୋର ଦାବାନଳେ,
ମନ-ହସ୍ତୀ ଯେତେବେଳେ ପଡ଼ି ପୋଡ଼ି ଜଳେ,
ସେତେବେଳେ ଏ ମାନସ ରୂପ ସରୋବରେ,
ପଶି ସୁଖ ଶାନ୍ତି ପାଇ ହୁଏ ହୃଦୟରେ । ୨୩୩

ମୁନିଗଣ ପ୍ରିୟ ରାମଚରିତମାନସ,
ଶମ୍ଭୁ ବିରଚିତ ଅତି ପବିତ୍ର ସରସ ।
ଦାରିଦ୍ର୍ୟ ତ୍ରିବିଧ ଦୋଷ ଦୁଃଖ ବିନାଶକ,
ଯେତେ କଳି ଦୁରାଚାର କଳୁଷ-ହାରକ । ୨୩୪

ରଚି ଏ ଚରିତ ଶିବ ରଖିଲେ ହୃଦୟେ,
ଶିବାଙ୍କୁ କହିଲେ ତାହା ପରେ ସୁସମୟେ ।
ନିଜ ହୃଦେ ଲଭି ତାର ମହିମା ପରଶ,
ହର୍ଷେ ନାମ ଦେଲେ, "ରାମଚରିତମାନସ" । ୨୩୫

କହୁଚି ସେ ସୁଖଦାୟୀ କଥା ମନୋହର,
ମନ ଦେଇ ଶୁଣିବ ହେ ସଜ୍ଜନ ପ୍ରବର । ୨୩୬

ଯେପରି ଏ କଥା ହେଲା ଯେପରି ରଚିତ,
ଯେ ପାଇଁ ଜଗତେ ପୁଣି ହେଲା ପ୍ରଚରିତ
ସେ ସକଳ କଥା ମୁହିଁ କହୁଛି ଏଥର,
ଚିତ୍ତେ ଅବିରତ ସ୍ମରି ଉମା ମହେଶ୍ୱର । ୨୩୭

ହର କୃପା ହେତୁ ହୃଦେ ସୁବୁଦ୍ଧି ବିକାଶ,
ଯା' ଫଳେ ମାନସ କବି ଏ ତୁଳସୀ ଦାସ ।
ମୋ ବୁଦ୍ଧିରେ କରିଅଛି ଏହା ମନୋହାରୀ,
ସ୍ୱଜନେ ସୁଚିତ୍ତେ ଶୁଣି ଦେଇବେ ସୁଧାରି । ୨୩୮

ସୁମତି ଯେ ଭୂମି, ହୃଦ ସୁଗଭୀର ସ୍ଥଳ,
ନିଗମ ପୁରାଣ ସିନ୍ଧୁ ସନ୍ଥେ ଜଳଧର ।
ବରଷନ୍ତି ରଘୁପତି ସୁଯଶ-ସୁବାରି,
ସୁମଧୁର ମନୋହର ସୁମଙ୍ଗଳକାରୀ । ୨୩୯

ସେ ଯେଉଁ ସଗୁଣ ଲୀଳା କହନ୍ତି ବିସ୍ତାରି,
ଯଶ-ଜଳ-ସ୍ୱଚ୍ଛତା ସେ କଳିମଳହାରୀ ।
କହି ନ ହୁଅଇ ଯେଉଁ ପ୍ରେମ ଭକ୍ତି କଥା,
ତାହା ତ ଜଳର ମଧୁରତା ଶୀତଳତା । ୨୪୦

ସତ୍‌କର୍ମ-ଧାନକୁ ସେହି ଜଳ ହୁଏ ହିତ
ଜୀବନ ସଦୃଶ ରାମଭକ୍ତଙ୍କ ସେହିତ ।
ବୁଦ୍ଧି-ମହୀ ପରେ ପଡ଼ି ସେ ପବିତ୍ର ଜଳ,
ଏକତ୍ର ବହିଲା କର୍ଣ୍ଣ-ପଥେ ନିରନ୍ତର । ୨୪୧

ଶେଷେ ତାହା ହୋଇ ସ୍ଥିର ହୃଦ-ଗର୍ଭେ ଭରି
ହୋଇଗଲା ସୁଖପ୍ରଦ ଗୁରୁ ଶୁଭଙ୍କରୀ । ୨୪୨

ବିବେକ ବୁଦ୍ଧିରେ ମୋର ଏ କଥା ବିଗୃରି,
ରଚିଚି ସୁନ୍ଦର ଶ୍ରେଷ୍ଠ-ସମ୍ବାଦ ଏ ଗୃରି ।
ପୂତ ସୁନିର୍ମଳ ରାମକଥା ସରୋବର,
ଏ ଗୃରି ସମ୍ବାଦ ଗୃରି ଘାଟ ମନୋହର । ୨୪୩

(ଭୁଶୁଣ୍ଡି-ଗରୁଡ଼, ଶିବ-ପାର୍ବତୀ ସମ୍ବାଦ,
ଋଷି ଶ୍ରେଷ୍ଠ ଯାଜ୍ଞବଲ୍କ୍ୟ ମୁନି ଭରଦ୍ୱାଜ ।
ଶେଷରେ ତୁଳସୀ ଦାସ ସନ୍ତ ଓ ସଜ୍ଜନେ,
ଗୃରିଶ୍ରେଣୀ ଶ୍ରୋତା ବକ୍ତା ଯେ ଯାର ଆସନେ । )

ରାମାୟଣ ସାତକାଣ୍ଡ ସାତୋଟି ସୋପାନ,
ଜ୍ଞାନନେତ୍ରେ ନିରେଖିଲେ ଖୁସି ମନ ପ୍ରାଣ ।
ଗୁଣାତୀତ ଶ୍ରୀରାମଙ୍କ ମହିମାର କଥା,
ଯେ ବର୍ଣ୍ଣିତ ହେବ ତାହା ଜଳ ଗଭୀରତା । ୨୪୪

ସୀତାରାମ ଯଶ-ଜଳ ଜାଣ ସୁଧାସମ,
ଉପମା ତରଙ୍ଗମାଳା ବିଳାସ ସୁଷମ ।
ଚିକ୍କଣିତ କମଳସୀ ଚଉପାଇମାନ,
କବିତା ଯୁକତି ମୋତି ଶାମୁକା ସମାନ । ୨୪୫

ସୋରଠା, ସୁନ୍ଦର ଦୋହା ଛନ୍ଦ ମନୋହର,
ସରୋବରେ ସତେ ନାନା ବର୍ଣ୍ଣର କମଳ ।
ଅନୁପମ ଭାବ ଅର୍ଥ ଭାଷା ସୁତରଳ,
ଯେ ପରାଗ ମକରନ୍ଦ ସୁଗନ୍ଧ ଶୀତଳ । ୨୪୬

ସୁକୃତ ସକଳ ତହିଁ ମଞ୍ଜୁ ଅଳିମାଳ,
ବୈରାଗ୍ୟ ବିଗୃର ଜ୍ଞାନ ଯେସନେ ମରାଳ ।
କବିତା ବକ୍ରୋକ୍ତି ଧ୍ୱନି ଗୁଣ ଆଉ ଜାତି,
ସବୁ ତାର ନାନା ବିଧ ମୀନ ରହିଥାନ୍ତି । ୨୪୭

ଧର୍ମ ଅର୍ଥ କାମ ମୋକ୍ଷ ଜ୍ଞାନ ଓ ବିଜ୍ଞାନ,
ନବରସ, ଜପ ତପ ଯେତେ ଯୋଗମାନ ।
ବିଗ୍ରହ ବିରାଗ ଆଦି ଏହି ସରୋବରରେ,
ରହିଛନ୍ତି ନାନା ଜଳଚର ସ୍ୱରୂପରେ । ୨୪୮

ପୁଣ୍ୟାତ୍ମା ସଜ୍ଜନ ରାମ-ନାମ ଗୁଣମାନ,
ନାନା ବର୍ଣ୍ଣ ଜଳଚର ବିହଙ୍ଗ ସମାନ ।
ସନ୍ଥସଭା ଚଉପାଶ ଆମ୍ରବନ ପ୍ରାୟେ,
ଶ୍ରଦ୍ଧା ଯେ ବସନ୍ତ ଋତୁ ସମ ଶୋଭା ପାଏ । ୨୪୯

ଭକତି ନିର୍ଣ୍ଣୟ ଏଥି ନାନାଦି ବିଧାନେ,
କ୍ଷମା ଦମ ଦୟା ଲତା ସମୂହ ବିତାନେ ।
ସମ ଯମ ଓ ନିୟମ ଫୁଲ, ଫଳ ଜ୍ଞାନ,
ହରି ପଦେ ରତିରସ, ଏ ବେଦ ପ୍ରମାଣ । * ୨୫୦

ଆଉ ଯେ ଅନେକ କଥା, ଅନେକ ପ୍ରସଙ୍ଗ,
ସେହି ସବୁ ଶୁକ ପିକ ପକ୍ଷୀ ବହୁରଙ୍ଗ । ୨୫୧

ଯେତେକ ପୁଲକାବଳି ଭରି ଏଇ ଗ୍ରନ୍ଥେ,
ସେ ସବୁ ବାଟିକା ବନ ଉପବନ ସତେ ।
ଏଥି ଯେଉଁ ସୁଖ ତାହା ପକ୍ଷୀଙ୍କ ବିହାର,
ମନ-ମାଳୀ ସିଞ୍ଚେ ନେବେ ସ୍ନେହ ବାରିଧାର । ୨୫୨

ସାବଧାନେ ଏ ଚରିତ ଯେ କରନ୍ତି ଗାନ,
ସରସୀର ସେହି ଦକ୍ଷ ରକ୍ଷକ ସମାନ ।
ଆଦରେ ଶୁଣନ୍ତି ଏହା ଯେଉଁ ନରନାରୀ,
ସେ ଦେବତା ମାନସର ଶ୍ରେଷ୍ଠ ଅଧିକାରୀ । ୨୫୩

---

* ଶମ (ମନର ନିଗ୍ରହ), ଯମ (ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ), ନିୟମ (ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ ଈଶ୍ୱର ପ୍ରଣିଧାନ) ହିଁ ସେହି ତୋଟାର ଫୁଲ ଓ ଜ୍ଞାନ ଫଳ ଓ ଶ୍ରୀହରି ଚରଣରେ ପ୍ରେମ ଭକ୍ତି ଜ୍ଞାନ ରୂପୀ ଫଳର ରସ । ଏହା ବେଦରେ ପ୍ରମାଣିତ ।

ଅଛି ଖଳ ଯେ ବିଷୟୀ ସେ ତ ବଗ କାଉ—
ଅଭଗା ସେ ସର ପାଖେ ନ ଯାଆନ୍ତି ଆଉ ।
ଗେଣ୍ଡା ବେଙ୍ଗ ପୋକ ଆଉ ଶିଉଳ ସଦୃଶ,
ଏଥି ନାହିଁ ସେ ବିଷୟ-କଥା ନାନା ରସ । ୨୫୪

ସେ କାରଣୁ ଆସିବାକୁ ନିରୁତ୍ସାହ ମନ,
ହୁଅନ୍ତି ବଚରା କାମୀ-କାକ-ବକ-ଜନ ।
ଏ ସରକୁ ଆସିବାକୁ କଷ୍ଟକର ଅତି,
ରାମ କୃପା ବିନା କେହି ଆସି ନ ପାରନ୍ତି । ୨୫୫

ଅତ୍ୟନ୍ତ କୁସଙ୍ଗ ଭୟାନକ ମନ୍ଦ ପଥ,
କୁସଙ୍ଗୀଙ୍କ କଥା ବ୍ୟାଘ୍ର କେଶରୀ ଓ ସର୍ପ ।
ନାନାବିଧ ଜଞ୍ଜାଳ ଆଉ ନାନା ଗୃହକର୍ମ,
ସୁବିଶାଳ ଗିରି ସମ ଅତ୍ୟନ୍ତ ଦୁର୍ଗମ । ୨୫୬

ବିଷମ ବନ୍ଧୁର ବନ ମୋହ ମଦ ମାନ,
ନାନାବିଧ କୁତର୍କ ଭ୍ରମ ସରିତ ସମାନ । ୨୫୭

ଯେ ଶ୍ରଦ୍ଧା ସମ୍ବଳ ହୀନ, ନାହାନ୍ତି ସଙ୍ଗତେ
ସାଧୁ ଓ ସଜ୍ଜନେ କେହି ଏ ଦୁର୍ଗମ ପଥେ;
ଯାହାକୁ ଶ୍ରୀ ରଘୁପତି ସୁପ୍ରିୟ ନୁହନ୍ତି,
ତାହା ପାଇଁ ଏ ମାନସ ଦୁରାଗମ୍ୟ ଅଛି । ୨୫୮

ଯଦି କେହି କଷ୍ଟକରି ଯାଏ ସର ପାଶେ,
ସେଠାରେ ତାହାକୁ ଗାଢ଼ ନିଦ୍ରାଜ୍ୱର ଆସେ ।
ହୃଦୟେ ଜଡ଼ତା-ଜାଡ଼ ଜାତ ହୁଏ ତହିଁ,
ଯାଇ ମଧ୍ୟ ସେ ଅଭଗା ସ୍ନାନ ନ ଲଭଇ । ୨୫୯

ଏ ମାନସ-ସରେ ସ୍ନାନ ଅବା ଜଳପାନ,
ନ କରି ବାହୁଡ଼ି ଆସେ ଘେନି ଅଭିମାନ ।
ଯଦି କେହି ଆସେ ତାକୁ ପଚାରିବା ପାଇଁ,
ସରୋବର ନିନ୍ଦା କରି କହେ ସେ ବୁଝାଇ । ୨୬୦

କୃପାରେ ଯାହାଙ୍କୁ ରାମ ଚିଅନ୍ତି ଅନାଇ,
ବାଧା ବିଘ୍ନ ନ ଉପୁଜେ କିଛି ତାହା ପାଇଁ ।
ସାଦରେ ସେ କରେ ସ୍ନାନ ସରୋବର ଜଳେ
ସଂସାର ତ୍ରିତାପାନଳେ ଆଉ ସେ ନ ଜଳେ । ୨୬୧

ଶ୍ରୀରାମ-ଚରଣ-ପଦ୍ମେ ଯାହାଙ୍କର ରତି,
ସେମାନେ ଏ ସରୋବର କେବେ ନ ଛାଡ଼ନ୍ତି ।
ଯେ ଇଚ୍ଛନ୍ତି କରିବାକୁ ସରୋବରେ ସ୍ନାନ,
ହେ ଭାଇ କରନ୍ତୁ ସେହି ସତ୍‌ସଙ୍ଗ ବିଧାନ । ୨୬୨

ମାନସ-ନୟନେ ମାନସରୋବରେ ଗୃହିଁ,
କବି ବୁଦ୍ଧି ହେଲା ଶୁଦ୍ଧ ତହିଁ ଅବଗାହି ।
ଉପୁଜିଲା ହୃଦୟରେ ଆନନ୍ଦ ଉଛାହ,
ଉଚ୍ଛୁଳି ଉଠିଲା ପ୍ରେମ ପ୍ରମୋଦ ପ୍ରବାହ । ୨୬୩

ତହିଁରୁ ଛୁଟିଲା ଶୁଚି କବିତା-ସରିତ,
ଶ୍ରୀରାମ ନିର୍ମଳ ଯଶ-ସଲିଳେ ପୂରିତ ।
ତା' ନାମ ସରଯୂ, ସେ ତ ସୁମଙ୍ଗଳ ମୂଳ,
ଲୋକ ବେଦମତ ବେନି ସୁମଞ୍ଜୁଳ କୂଳ । ୨୬୪

ପରମ ପବିତ୍ର ନଦୀ ମାନସ-ନନ୍ଦିନୀ,
କଳିମଳ-ତୃଣ ତରୁ ମୂଳ ବିନାଶିନୀ । ୨୬୫

ନଦୀ ବେନିଘାଟରେ ପୁରପଲ୍ଲୀ ଓ ନଗରେ,
ତିନି ପ୍ରକାରର ଶ୍ରୋତା-ସମାଜ ପ୍ରସରେ ।
ଅନୁପମ ସନ୍ଥ-ସଭା ଅଯୋଧ୍ୟା ନଗରୀ,
ସବୁ ସୁମଙ୍ଗଳ ମୂଳ ସବ ହିତକରୀ । ୨୬୬

ରାମଭକ୍ତି ରୂପା ଦିବ୍ୟ ସୁର ସରିତରେ,
ମିଶିଲା ସୁକୀର୍ତ୍ତି ରୂପୀ ସରଯୂ ସାଦରେ ।
ଶ୍ରୀରାମ ଲକ୍ଷ୍ମଣ-ରଣ-ଯଶ ମହାନଦ—,
ଶୋଣ ମିଶିଗଲା ଏଥି, ପରମ ସୁଖଦ । ୨୬୭

ବେଦ ମଧ୍ୟେ ଭକ୍ତିରୂପୀ ସୁରଧୁନୀ ଧାର,
ବିବେକ ବୈରାଗ୍ୟ ସହ ଶୋଭିତ ଅପାର ।
ତ୍ରିତାପ-ନାଶିନୀ ଏହି ତ୍ରିମୁହାଣୀ ନଦୀ,
ବହଇ ମିଶିବା ପାଇଁ ଶ୍ରୀରାମ-ଉଦଧି । ୨୬୮

କୀର୍ତ୍ତିରୂପୀ ସରଯୂର ଏ ମାନସ ମୂଳ,
ରାମଭକ୍ତି ରୂପ ଗଙ୍ଗା ମାଥେ ହୋଇ ମେଳ
ଶୁଣିବା ଲୋକର ମନ କରିବ ପାବନ,
ଶ୍ରୀରାମ ଚରିତ ଜନ-ମନ-ବିମୋହନ ।
ମଝିରେ ମଝିରେ କଥାବଳି ସୁଶୋଭନ,
ଯେସନ୍ତ ନଦୀ ତୀରେ ତୀରେ ବନ ଉପବନ । ୨୬୯

ଉମା-ହର ବିବାହର-ବରଯାତ୍ରୀ ଦଳ,
ତହିଁ ନାନାବିଧ ଅଗଣିତ ଜଳଚର ।
ରାମ ଶୁଭଜନ୍ମ ଅଭିନନ୍ଦନ ଉତ୍ସାହ,
ସେ ନଦୀ ଭଉଁରୀ ଅତି-ରମ୍ୟତା ପ୍ରବାହ । ୨୭୦

ଚାରି ଭାଇଙ୍କର ବାଳଲୀଳା ଯେ ବର୍ଣ୍ଣିତ,
ଯେହ୍ନେ ତ ବିବିଧ ବର୍ଣ୍ଣ କମଳ ଶୋଭିତ ।
ରାଜାରାଣୀ ପରିଜନ ସତ୍‌କର୍ମୀ ସକଳ,
ସେମାନେ ମଧୁପ ଆଉ ଜଳ ପକ୍ଷୀ ଦଳ । ୨୭୧

ମହାରାଣୀ ସୀତାଙ୍କର ଚାରୁ ସ୍ୱୟମ୍ବର,
ଏହି ନଦୀର ସେ ଛବି ଛଟା ମନୋହର ।
ନଦୀ ନାବ ପ୍ରାୟେ ପଟୁ ପ୍ରଶ୍ନ ଅଛି ଭରି,
ଜ୍ଞାନଯୁକ୍ତ ଉତ୍ତର ଯେ ନାବିକ କୁଶଳୀ । ୨୭୨

ଶ୍ରୋତାଗଣ ପରସ୍ପର ଆଲୋଚନା ରତ,
ସେମାନେ ପଥିକ କୂଳ ତଟେ ଗତାଗତ ।
ପର୍ଶୁରାମଙ୍କର କ୍ରୋଧ ତୀଖ ଧାର ସମ,
ନଦୀ ଘାଟ ଶ୍ରୀରାମଙ୍କ ବାଣୀ ଅନୁପମ । ୨୭୩

ସାନୁଜ ରାମଙ୍କ ବିବାହ ଉତ୍ସବ ଆନନ୍ଦ,
ଶୁଭଙ୍କରୀ ବନ୍ୟା, ତାହା ଜନ ପ୍ରୀତିପ୍ରଦ ।
ଏହାକୁ ଯେ କହି ଶୁଣି ହରଷ ହୁଅନ୍ତି,
ପୁଣ୍ୟାତ୍ମା ସେ ଏ ନଦୀରେ ସ୍ନାହାନ କରନ୍ତି । ୨୭୪

ରାମ ଅଭିଷେକେ ଯେଉଁ ସୁମଙ୍ଗଳ ସାଜ,
ପର୍ବ ପାଇଁ ଯେସ୍ନେ ଜମି ଅଛନ୍ତି ସମାଜ ।
ନଦୀର ଶିଉଳି ପ୍ରାୟେ କୈକେୟୀ କୁମତି,
ପଡ଼ିଲ ଯାହାର ଫଳେ ବିଷମ ବିପତ୍ତି । ୨୭୫

ଅମିତ ଉତ୍ପାତନାଶୀ ଭରତ ଚରିତ,
ନଦୀ ତୀରେ ଯେସ୍ନେ ଜପ ଯଜ୍ଞ ଆଚରିତ ।
ଯେତେ ଖଳ ଅବଗୁଣ କଳିମଳ ପାପ,
ଏ ନଦୀର ସେ ସବୁତ ପଙ୍କ ବଗ କାକ । ୨୭୬

ଏ କୀର୍ତ୍ତି-ସରିତ ଷଡ଼ ଋତୁରେ ଶୋଭିତ,
ସବୁ ସମୟରେ ପୁଣି ପରମ ଲଳିତ ।
ଏଥି ଶିବ ପାର୍ବତୀଙ୍କ ବିବାହ ହେମନ୍ତ,
ରାମ ଜନ୍ମ ମହୋତ୍ସବ ଶିଶିର ସୁଖଦ । ୨୭୭

ରାମବିବାହ ସମାଜର ଅପୂର୍ବ ବର୍ଣ୍ଣନା,
ଆନନ୍ଦ ମଙ୍ଗଳମୟ ବସନ୍ତ ଭାବନା ।
ଦୁଃସହ ଗ୍ରୀଷ୍ମ ଋତୁ ରାମ ବନବାସ,
ପଥ କଥା ଖର ରଶ୍ମି ଝଞ୍ଜା ଓ ବତାସ । ୨୭୮

ବର୍ଷାକାଳ ରାକ୍ଷସଙ୍କ ସହିତେ ସମର,
ସୁରକୁଳ-ଧାନକୁ ଯେ ଅତି ହିତକର ।
ରାମ ରାଇଜର ସୁଖ ବଢ଼ାଇ ବିନୟ,
ସେହି ତ ସୁଖଦ ଶୁଭ୍ର ଶରତ ସମୟ । ୨୭୯

ସତୀ ଶିରୋମଣି ସୀତାଙ୍କର ଗୁଣ କଥା,
ତାହା ଜଳ ଗୁଣ ଅନୁପମ ନିର୍ମଳତା ।

ଭରତ ସ୍ୱଭାବ ସୁଶୀତଳତା ଅଟଇ,
ସ୍ଥିର ଏକରସ ଯାହା ବର୍ଣ୍ଣି ନ ହୁଅଇ । ୨୮୦

ପରସ୍ପର ଦେଖା ଦୁହାଁ ସ୍ନେହ ଭାଇଙ୍କର,
କଥା ଭାଷା ମିଳାମିଶା ପୁଲକ ଅନ୍ତର
ହାସ ପରିହାସ ଆଦି ଯେ ଭାଇପଣିଆ,
ଏ ଜଳର ମଧୁରତା ସୁବାସ ଭଳିଆ । ୨୮୧

ଆରତି, ବିନତି ଯେତେ ଦୀନତା ମୋହର,
ଲଘୁତା ଲଳିତ୍ୟ ଗୁଣ ଅଟେ ଯେ ଜଳର ।
ଅଦ୍‌ଭୁତ ସେ ଜଳ ଶୁଣୁ ଶୁଣୁ ହିତକାରୀ,
ଆଶା-ତୃଷା ମନ-ମଳିନତା ନାଶକାରୀ । ୨୮୨

ଏ ଜଳ ଶ୍ରୀରାମ ପ୍ରେମ କରଇ ପୋଷଣ,
କଳି ପାପ ଗ୍ଲାନି ଯେତେ କରେ ବିନାଶନ ।
ଭବ-ଶ୍ରମ-ଶୋଷକ ଏ, ସନ୍ତୋଷେ ତୋଷକ
ଦାରିଦ୍ର୍ୟ ଦୂଷଣ ଦୁଃଖ ଦୁରିତ ନାଶକ । ୨୮୩

କାମ କ୍ରୋଧ ମଦ ମୋହ ଆଦି ବିନାଶକ,
ନିର୍ମଳ ବିବେକ ଜ୍ଞାନ ବୈରାଗ୍ୟ ବର୍ଦ୍ଧକ ।
ଆଦରେ କରିଲେ ସ୍ନାନ ପାନ ଏହି ଜଳ,
ପାପ ତାପ ଯାଏ ଧୂଇଁ ହୃଦୟୁ ସକଳ । ୨୮୪

ରାମ-ପଦ-ଜଳେ ଧୋଇ ନାହାନ୍ତି ଯେ ଚିତ୍ତ,
ସେହି ଖାରୁ କଳି କାଳ ହାରି ପ୍ରତାରିତ ।
କରେଣି ତୃଷିତ ମୃଗ ମରୀଚିକା-ବାରି
ତା' ପଛେ ଭ୍ରମିଲା ପରି ଜୀବ ଦୁଃଖୀ ଭାରି । ୨୮୫

ଏହି ଜଳ ଗୁଣ ଗୁଣି ମୋ ନିଜ ବୁଦ୍ଧିରେ,
ମନକୁ କରାଇ ସ୍ନାନ ତାର ପୂତ ନୀରେ
ସୁମରି ହୃଦୟେ ପୁଣି ଭବାନୀ ଶଙ୍କର,
କହଇ ତୁଳସୀ କବି କଥା ମନୋହର । ୨୮୬

ରଘୁନାଥ ପାଦ-ପଦ୍ମ ହୃଦୟରେ ଧରି,
ପ୍ରଭୁଙ୍କ ପ୍ରସାଦେ ନିଜ ଚିତ୍ତ ସ୍ଥିର କରି ।
ବେନି ମୁନିଙ୍କର ଶୁଭ ମିଳନ ଚରିତ,
କହୁଅଛି ହେ ସୁଜନେ ହୋଇ ପୁଲକିତ । ୨୮୭

ଭରଦ୍ୱାଜ ମୁନି ବାସ କରନ୍ତି ପ୍ରୟାଗେ,
ରାମ ପଦେ ରଖି ମତି ଅତି ଅନୁରାଗେ ।
ତାପସ ସେ ଶମ ଦମ ଦୟାର ନିଧାନ,
ପରମାର୍ଥ ପଥେ ପଟୁ ଅତି ଜ୍ଞାନବାନ । ୨୮୮

ମାଘ ମାସେ ରବି ଯେବେ ମକରେ ଆସନ୍ତି,
ତୀର୍ଥରାଜ ପ୍ରୟାଗରେ ସରବେ ମିଳନ୍ତି ।
ଦେବତା ଦାନବ ନର କିନ୍ନର ସକଳେ,
ସାଦରେ କରନ୍ତି ସ୍ନାନ ତ୍ରିବେଣୀର ଜଳେ । ୨୮୯

ଶ୍ରୀ ବେଣୀମାଧବ ପାଦ-ପଦ୍ମେ ପୂଜା କରି,
ଛୁଅନ୍ତି ଅକ୍ଷୟ ବଟ ହୃଦେ ହର୍ଷ ଭରି ।
ଭରଦ୍ୱାଜ ମୁନିଙ୍କର ପବିତ୍ର ଆଶ୍ରମ,
ଅତି ରମଣୀୟ ମୋହେ ମୁନି ଜନ ମନ । ୨୯୦

ମୁନିଙ୍କର ତହିଁ ବସେ 'ସମାଜ' ବିଧାନ,
ଯାଆନ୍ତି ପ୍ରୟାଗେ ଯେତେ କରିବାକୁ ସ୍ନାନ ।
ପ୍ରଭାତ ସମୟେ ସ୍ନାନ ସାରି ଉତ୍ସାହରେ,
ହରିଗୁଣ ଗାଇଥାନ୍ତି ସେତେ ପରସ୍ପରେ । ୨୯୧

ବ୍ରହ୍ମ ନିରୂପଣ, ଧର୍ମ ବିଧି, ତତ୍ତ୍ୱ ଭେଦ,
ବର୍ଣ୍ଣନା କରନ୍ତି କେତେ ମତେ ଭେଦାଭେଦ ।
ଜ୍ଞାନ ଓ ବୈରାଗ୍ୟଯୁକ୍ତ ଭଗବତ ଭକ୍ତି,
କେ କେତେ ପ୍ରକାରେ ଜଣ ଜଣକେ କହନ୍ତି । ୨୯୨

ଏ ରୂପେ ସମ୍ପୂର୍ଣ୍ଣ ମାଘ ମାସ କରି ସ୍ନାନ,
ନିଜ ନିଜ ଆଶ୍ରମକୁ କରନ୍ତି ପ୍ରସ୍ଥାନ ।

ପ୍ରତିବର୍ଷ ଏହିପରି ହୁଅଇ ଆନନ୍ଦ,
ମକର ସ୍ନାନାନ୍ତେ ଫେରିଯାନ୍ତି ମୁନିବୃନ୍ଦ । ୧୯୩

ଥରେ ମାଘ ଶେଷେ କରି ମକର ସ୍ନାହାନ,
ସବୁ ଋଷି କଲେ ଯେଝା ଆଶ୍ରମେ ପ୍ରସ୍ଥାନ ।
ପରମ ବିବେକୀ ଯାଜ୍ଞବଲ୍କ୍ୟ ମୁନିବରେ,
ପଦେ ପଡ଼ି ଭରଦ୍ୱାଜ ରଖିଲେ ସାଦରେ । ୧୯୪

ଆଦରେ ପଯୂର-ପଦ୍ମ କରି ପ୍ରକ୍ଷାଳନ,
ବସାଇଲେ ଦେଇ ଏକ ପବିତ୍ର ଆସନ ।
ପୂଜାକରି, ମୁନିଙ୍କର ସୁଯଶ ବଖାଣି,
କହିଲେ ଅଶେଷ ମୃଦୁ ସୁମଧୁର ବାଣୀ । ୧୯୫

"ହେ ନାଥ ସଂଶୟ ବଡ଼ ଏକ ମନେ ମୋର,
ସବୁ ବେଦ ତନ୍ତ୍ର କରଗତ ତ ତୁମ୍ଭର ।
କିନ୍ତୁ କହିବାକୁ ଲାଜ ଭୟ ଜାଗେ ମନେ,
ଯଦି ନ କହୁଛି କ୍ଷତି ହେବ ଅକାରଣେ । ୧୯୬

ସନ୍ଥଜନେ କହନ୍ତି ଏ ନୀତି ସବୁଠାରେ,
ମୁନି ବେଦ ପୁରାଣାଦି ତେସନ ପ୍ରକାରେ ।
ଗୁରୁଙ୍କ ପାଖରେ ଗୁପ୍ତ ରଖିଲେ ହୃଦୟ,
ବିମଳ ବିବେକ କେବେ ହେବନି ଉଦୟ । ୧୯୭

ଏସନ ବିଚାରି କରେ ଅଜ୍ଞତା ପ୍ରକାଶ,
ଦୟାକରି ମୋ ଅଜ୍ଞତା ପ୍ରଭୁ କର ନାଶ ।
ସନ୍ଥଜନେ ବେଦ ଉପନିଷଦ ପୁରାଣ,
ରାମ ନାମ ପ୍ରଭାବକୁ କରୁଛନ୍ତି ଗାନ । ୧୯୮

ସତତ ଜପନ୍ତି ଶିବ, ଜ୍ଞାନ ଗୁଣ ରାଶି,
ପରାତ୍ପର ଭଗବାନ ଶମ୍ଭୁ ଅବିନାଶୀ ।
ଯେଉଁ ଚାରି ଜାତି ଜୀବ ଅଛନ୍ତି ଜଗତେ,
ଲଭନ୍ତି ପରମ ଗତି ଏଥି ମୃତ୍ୟୁ ଅନ୍ତେ । ୧୯୯

ତାହା ପୁଣି ରାମ ନାମ ମହିମା ଅଟଇ,
ଦିଅନ୍ତି ଏ ଉପଦେଶ ଶିବ ଦୟାବହି ।
ଏହି ରାମ କିଏ ପ୍ରଭୁ ତୁମକୁ ପଚାରେ,
କହ କୃପାନିଧି ମୋତେ ବୁଝାଇ ତାହାରେ । ୩୦୦

ଏକ ରାମ ଅଯୋଧ୍ୟାର ରାଜାଙ୍କ କୁମାର,
ତାହାଙ୍କ ଚରିତ ଜଣା ସମସ୍ତ ସଂସାର ।
ପତ୍ନୀ ବିରହରେ ଲଭି ଅଶେଷ କଷଣ,
ମାରିଲେ ରାବଣ ରାଗେ କରି ଘୋର ରଣ । ୩୦୧

ପ୍ରଭୁ, ଏ କି ସେହି ରାମ ଅଥବା ଅପର,
ଯାହାଙ୍କୁ ଜପନ୍ତି ସଦାକାଳେ ମହେଶ୍ୱର ।
ତୁମ୍ଭେ ତ ସର୍ବଜ୍ଞ ପୁଣି ସତ୍ୟପରାୟଣ,
ଜ୍ଞାନ ଓ ବିବେକ ମତେ କହନ୍ତୁ ଆପଣ । ୩୦୨

ମୋ ମନର ଭ୍ରମ ଯେତେ ମେଣ୍ଟିବ ଯେସନେ,
ବିସ୍ତାରି କହନ୍ତୁ ମୋତେ ହେ ପ୍ରଭୁ ତେସନେ ।"
କହିଲେ ଅଳପ ହସି ମୁନି ମହାମନା—
"ଶ୍ରୀରାମ ପ୍ରଭୁତା କଥା ତୁମକୁ ତ ଜଣା । ୩୦୩

କାୟ ମନ ବାକ୍ୟେ ତୁମ୍ଭେ ଶ୍ରୀରାମ ଭକତ,
ମୋତେ ଜଣା ତୁମ ଚତୁରତା, ଅକପଟ ।
ଗୂଢ଼-ରାମ-ଗୁଣ-ଗାଥା ଶୁଣିବାକୁ ମନ,
ଏଣେ ମୂଢ଼ ପରି ପଚାରୁଛ ସବୁ ପ୍ରଶ୍ନ । ୩୦୪

ହେ ବତ୍ସ ସାଦରେ ଶୁଣ ଏବେ ଦେଇ ମନ,
କହୁଛି ମୁଁ ରାମ କଥା ଅତି ସୁଶୋଭନ ।
ମହାମୋହ ଅତିକାୟ ମହିଷା ବିନାଶେ,
କରାଳ କାଳିକା ରାମ ନାମ ସେ ପ୍ରକାଶେ । ୩୦୫

ଶ୍ରୀରାମ ଚରିତ ଚନ୍ଦ୍ର କିରଣ ସମାନ,
ସଜ୍ଜନ-ଚକୋର ସଦା କରିଥାନ୍ତି ପାନ ।

ଏପରି ସଂଶୟ ଥରେ କରିଲେ ପାର୍ବତୀ,
ସୁବିସ୍ତାର କହିଥିଲେ ତାଙ୍କୁ ପଶୁପତି । ୩୦୬

ଉମା ଶିବ ସମ୍ବାଦକୁ ମୋର ବୁଦ୍ଧି ମତେ,
କହୁଛି ଯେ କାଳେ ହେଲା ପୁଣି ଯେଉଁ ଅର୍ଥେ ।
ତାହାର କାରଣମାନ ଶୁଣ ଦେଇ ମନ,
ତେବେ ତ ତୁମର ହେବ ବିଷାଦ ମୋଚନ । ୩୦୭

ତ୍ରେତୟା ଯୁଗରେ ଥରେ ଶମ୍ଭୁ କ ସକାଶେ,
ଯାଇଥିଲେ ମହାଋଷି ଅଗସ୍ତିଙ୍କ ପାଶେ ।
ସଙ୍ଗେ ଥିଲେ ତାଙ୍କ ଜଗଜ୍ଜନନୀ ଭବାନୀ,
ପୂଜିଲେ ମୁନୀଶ ତାଙ୍କୁ ବିଶ୍ୱନାଥ ଜାଣି । ୩୦୮

କହିଲେ ମୁନୀଶ ରାମକଥା ମନୋହର,
ପରମ ସୁଖରେ ତାହା ଶୁଣିଲେ ଶଙ୍କର ।
ପରେ ପଚାରିଲେ ମୁନି ସାର ହରିଭକ୍ତି,
କହିଲେ ମହେଶ ତାଙ୍କୁ ଜାଣି ଯୋଗ୍ୟ ବ୍ୟକ୍ତି । ୩୦୯

କହି ଶୁଣି ରଘୁନାଥ ସୁଯଶ କୀରତି,
କିଛି ଦିନ ରହିଗଲେ ତହିଁ ଉମାପତି ।
ମୁନିଙ୍କ ପାଶରୁ ବିଦା ହୋଇ ତ୍ରିପୁରାରି,
ଫେରିଲେ ଭବନେ ସଙ୍ଗେ ଦକ୍ଷଙ୍କ କୁମାରୀ । ୩୧୦

ସେତିକ ବେଳକୁ ହରିବାକୁ ମହୀଭାର,
ରଘୁବଂଶେ ହରି ହୋଇଥିଲେ ଅବତାର ।
ପିତା ସନ୍ତୋଷେ ରାଜ୍ୟ ତେଜି ତପସ୍ୱୀ ବେଶରେ
ବିଚରଣ କରୁଥିଲେ ଦଣ୍ଡକ ବଣରେ । ୩୧୧

ଶିବ ଯାଉ ଯାଉ ବନେ ଚିନ୍ତା କଲେ ମନେ,
କିପରି ଦର୍ଶନ ଟିକେ ହୁଅନ୍ତା ନୟନେ ।
ଅବତାର ହୋଇଛନ୍ତି ପ୍ରଭୁ ତ ଗୁପତେ,
ଭେଟିଲେ ମୁଁ ତାଙ୍କୁ ସିନା ଜାଣିବେ ସମସ୍ତେ । ୩୧୨

ଶିବଙ୍କ ହୃଦୟ ହେଲା ଆଲୋଡ଼ିତ ଅତି,
ଏ କଥା ମରମ ତିଳେ ନ ଜାଣିଲେ ସତୀ ।
ତୁଳସୀ କହନ୍ତି ଶିବ ହୃଦେ ଡର ସତ,
ମାସକ ଦର୍ଶନ ଲୋଭେ ନେତ୍ର ଛଟପଟ । ୩୧୩

ନର ହସ୍ତେ ମୃତ୍ୟୁ ମାଗିଲା ରାବଣ,
ବିଧି ବାକ୍ୟ ସତ୍ୟ କରୁଛନ୍ତି ନାରାୟଣ ।
ନ ଯାଉଛି ଯେବେ ହେବ ଅନୁତାପ ସାର,
ଯେତେ ବି ଭାବିଲେ କିଛି ନ ବଶେ ବିଶ୍ୱର । ୩୧୪

ଏ ପ୍ରକାରେ ଚିନ୍ତାମଗ୍ନ ଯେବେ ମହେଶ୍ୱର,
ସେ ସମୟେ ଗଲା ତହିଁ ଲଙ୍କ ଅଧୀଶ୍ୱର ।
ନେଇଥିଲା ମାରମତ ମାରୀଚକୁ ସାଥେ,
ହୋଇଲା କପଟ ମୃଗ ସେ ପଲକ ପାତେ । ୩୧୫

ହରିଲା ରାବଣ ମୂଢ଼ କପଟେ ବୈଦେହୀ,
ପ୍ରଭୁଙ୍କ ପ୍ରଭାବ ଜାଣି ନ ଥିଲା ତ ସେହି ।
ମୃଗ ମାରି ଭାଇ ସହ ବାହୁଡ଼ିଲେ ହରି,
ଆଶ୍ରମକୁ ଦେଖି ନେତ୍ର ନୀରେ ଗଲା ଭରି । ୩୧୬

ବିରହ ବିକଳ ନର ପ୍ରାୟେ ଦାଶରଥୀ,
ଖୋଜି ଖୋଜି ବେନିଭାଇ ବନସ୍ତେ ବୁଲନ୍ତି ।
ମିଳନ ବିରହ ଦୁଃଖ ନାହିଁ ଯାହାଙ୍କର,
ପ୍ରତ୍ୟକ୍ଷ ବିରହ ଦୁଃଖ ଆଜି ତ ତାଙ୍କର । ୩୧୭

ଶ୍ରୀରାମ ଚରିତ ଭାଇ ଅଣିବ ବିଚନ,
କେବଳ ସୁଜ୍ଞାନୀ ଜନେ ତାହା ସୁବିଦିତ ।
ଯେହୁ ମନ୍ଦମତି ହୋଇ ଅତି ମୋହବଶ,
ହୃଦେ ଆଉ କିଛି ଆନ ବୁଝଇ ଅବଶ୍ୟ । ୩୧୮

ଦେଖିଲେ ରାମଙ୍କୁ ଶିବ ସେହି ଅବସରେ,
ଅଶେଷ ହରଷ ଜାତ ହେଲା ହୃଦୟରେ ।

ଦେଖିଲେ ପୂରାଇ ନେତ୍ର ଶୋଭା-ରତ୍ନାକର,
ଚିହ୍ନା ଦେଲେ ନାହିଁ ଜାଣି ମନ୍ଦ ଅବସର । ୩୧୯

ଜୟ ଶ୍ରୀ ସଚ୍ଚିଦାନନ୍ଦ ଜଗତ ପାବନ,
କହି ଏହା ଗଲେ ଚଳି ମନୋଜ-ନାଶନ ।
ଯାଉଥିବା କାଳେ ଶିବ ସତୀଙ୍କ ସହିତ,
ବାରମ୍ବାର ହେଉଥିଲା ତନୁ ପୁଲକିତ । ୩୨୦

ଶମ୍ଭୁଙ୍କର ସେହି ଦଶା ନିରେଖିଲେ ସତୀ,
ସନ୍ଦେହ ହୃଦୟ ପୁରେ ଉପୁଜିଲା ଅତି ।
ଶଙ୍କର ତ ବିଶ୍ୱ ବନ୍ଦ୍ୟ ଜଗତ ଈଶ୍ୱର,
ସକଳେ ନୁଆନ୍ତି ଶିର ସୁର ମୁନି ନର । ୩୨୧

ସେ ଏକ ରଜାର ପୁତ୍ରେ କରିଲେ ପ୍ରଣାମ,
ଉଚ୍ଚାରି ସଚ୍ଚିଦାନନ୍ଦ ପରମ ନିଧାନ ।
ଛବି ଦେଖି ହେଲେ ଏତେ ପ୍ରେମରେ ଆସକ୍ତ,
ଏବେ ବି ରୋକିଲେ ହୃଦେ ନ ରହେ ଗୁପତ । ୩୨୨

ଯେ ମାୟା ରହିତ ବ୍ରହ୍ମ, ଅଜ, ଅଗୋଚର,
ଇଚ୍ଛାହୀନ ଭେଦହୀନ ବ୍ୟାପ୍ତ ଚରାଚର ।
ଯାହାଙ୍କୁ ନ ଜାଣେ ବେଦ, ସେ ଅବା କିପରି,
ଜନମିବେ ଏ ମରତେ ନର ଦେହ ଧରି । ୩୨୩

ଦେବହିତ ଲାଗି ଯେଉଁ ବିଷ୍ଣୁ ନର ରୂପ,
ମହେଶ ସମାନ ସେ ତ ସର୍ବଜ୍ଞ ସ୍ୱରୂପ ।
ଜ୍ଞାନ ଧାମ, ଲକ୍ଷ୍ମୀପତି ସେ ତ ଦଇତାରି,
ଅଜ୍ଞାନ ପରାୟେ କିଆଁ ଖୋଜିବେ ସେ ନାରୀ । ୩୨୪

ଶିବଙ୍କ ବଚନ ପୁଣି ମିଥ୍ୟା ନୋହି ପାରେ,
ସର୍ବଜ୍ଞ ବୋଲି ତ ତାଙ୍କୁ ଜାଣନ୍ତି ସଂସାରେ ।
ଏପରି ସତୀଙ୍କ ମନେ ସନ୍ଦେହ ଅପାର,
ତିଳେ ହେଲେ ହୃଦେ ଜ୍ଞାନ ନୋହିଲା ସଞ୍ଚାର । ୩୨୫

ପ୍ରକାଶ୍ୟେ ସନ୍ଦ ବା ସତୀ ନ କଲେ ବ୍ୟକତ,
ଅନ୍ତର୍ଯ୍ୟାମୀ ଶିବ ଜାଣି ପାରିଲେ ସମସ୍ତ ।
କହିଲେ, "ଗୋ ସତୀ, ନାରୀ ସ୍ୱଭାବ ତୁମର,
ଏପରି ସଂଶୟ ହୃଦେ ପୋଷଣ ନ କର । ୩୨୬

ଅଗସ୍ତି ଯାହାଙ୍କ କଥା ଶୁଣାଇଲେ ଗାଇ,
ଯାହାଙ୍କ ଭକତି ତାଙ୍କୁ ଥିଲି ମୁଁ ଶୁଣାଇ ।
ସେ ଅଟନ୍ତି ମୋର ଇଷ୍ଟ ଦେବ ରଘୁବୀର,
ସେବନ୍ତି ଯାହାଙ୍କୁ ସଦା ଯେତେ ମୁନି ଧୀର । ୩୨୭

ଯେତେ ଧୀର ମୁନି ଋଷି ସିଦ୍ଧ ଯୋଗୀବରେ,
ଯାହାଙ୍କୁ କରନ୍ତି ଧ୍ୟାନ ନିର୍ମଳ ଅନ୍ତରେ,
ନେତି ନେତି କହି ବେଦ ପୁରାଣାଦିମାନ,
ଯାହାଙ୍କର କୀର୍ତ୍ତି ଉଚ୍ଚେ କରୁଛନ୍ତି ଗାନ,
ବ୍ରହ୍ମାଣ୍ଡର ସ୍ୱାମୀ ପୁଣି ଅଖିଳ ବ୍ୟାପକ,
ବ୍ରହ୍ମରୂପ ମାୟାପତି ସ୍ୱତନ୍ତ୍ର ପାଳକ,
ସେହି ଭଗବାନ ରାମ ଭକ୍ତଙ୍କ ନିମନ୍ତେ,
ରଘୁକୁଳେ ଜନ୍ମିଛନ୍ତି ନିଜ ଇଚ୍ଛାମତେ ।" ୩୨୮

ବହୁବାର କହିଲେ ବି ତାହାଙ୍କୁ ମହେଶ,
ତଥାପି ସତୀଙ୍କ ଶିକ୍ଷା ନ ହୋଇଲା ଲେଶ ।
ତହୁଁ ଶିବ ହରିମାୟା ବଳ ହୃଦେ କଷି,
ମୋହିତା ସତୀଙ୍କୁ ପୁଣି କହିଲେ ବିହସି । ୩୨୯

"ମନରେ ହେଉଛି ଯେବେ ସନ୍ଦେହ ତୁମର,
ତହିଁ ଯାଇ ତେବେ କାହିଁ ପରୀକ୍ଷା ନ କର ।
ମୋ ପାଶକୁ ନ ଫେରନ୍ତି ଯେ ଯାଏଁ ଗୋ ସତୀ,
ସେ ଯାଏଁ ଏ ବର ଗଛ ତଳେ ଥିବି ବସି । ୩୩୦

ତୁମ ମୋହ ଭ୍ରମ ଦୂର ହେବ ଯେ ପ୍ରକାରେ,
ସେହି ଯତ୍ନ କର ସତୀ ବିବେକ ବିଚାରେ ।"

ଶିବଙ୍କ ଆଦେଶ ପାଇ ଚଳୁଁ ଗଲେ ସତୀ,
କପଟ ପରୀକ୍ଷା ନେବେ ମନେ ବିଚାରନ୍ତି । ୩୩୧

ଏଣେ ଶିବ ମନେ ମନେ କଲେ ଅନୁମାନ,
ଦକ୍ଷ ସୁତାଙ୍କର ଆଉ ହେବନି କଲ୍ୟାଣ ।
ମୁହିଁ ବୁଝାଇଲି ଭ୍ରମ ଗଲା ନାହିଁ ଯେବେ,
ବିଧି ବିପରୀତ, ଆଉ ଭଲ ନାହିଁ କେବେ । ୩୩୨

ଶ୍ରୀରାମଙ୍କ ଯାହା ଇଚ୍ଛା ତାହା ହିଁ ହୋଇବ,
ତର୍କ କରି କିଏ ତା'ର ଶାଖା ବଢ଼ାଇବ ।
ଭାବି ଏହା ହର ଜପ କଲେ ହରିନାମ,
ସତୀ ଗଲେ ତହିଁ, ଯହିଁ ସୁଖଧାମ ରାମ । ୩୩୩

ବାରବାର ହୃଦୟରେ କେତେ ଚିନ୍ତା କରି,
ଶେଷକୁ ସେ ଅବିକଳ ସୀତା ରୂପ ଧରି ।
ସେହି ପଥେ ଆଗେ ବଢ଼ି ଚାଲିଲେଟି ସତୀ,
ଯେଉଁ ପଥେ ଆସୁଥିଲେ ରାମ ରଘୁପତି । ୩୩୪

ଉମାଙ୍କ କପଟ ବେଶ ନିରେଖି ଲକ୍ଷ୍ମଣ,
ହୋଇଲେ ଚକିତ, ହୃଦେ ଭ୍ରାନ୍ତ ଅକଳନ ।
ଗମ୍ଭୀର ହୋଇଲେ କିଛି କହି ନ ପାରନ୍ତି,
ସେ ତ ଧୀର ମତି ପ୍ରଭୁ ପ୍ରଭାବ ଜାଣନ୍ତି । ୩୩୫

ସତୀଙ୍କ କପଟ ଜାଣିଗଲେ ସୁରସ୍ୱାମୀ,
ସେ ତ ସର୍ବଦର୍ଶୀ ସର୍ବ ଜୀବ ଅନ୍ତର୍ଯାମୀ ।
ଯାହାଙ୍କୁ ସ୍ମରଣ କଲେ ତୁଟଇ ଅଜ୍ଞାନ,
ସେହି ତ ସର୍ବଜ୍ଞ ରାମ ସ୍ୱୟଂ ଭଗବାନ । ୩୩୬

ତାହା ବି ଲୁଚାଇବାକୁ ଇଚ୍ଛା କଲେ ସତୀ
ନାରୀ ସ୍ୱଭାବର ଦେଖ ପ୍ରବଳତା ଅତି ।
ନିଜ ମାୟା ବଳ ହୃଦେ ଶ୍ରୀରାମ ପ୍ରଶଂସି,
କହିଲେ କୋମଳ ଭାଷା ଅଳ୍ପ ହସି ହସି । ୩୩୭

ଯୋଡ଼ି ବେନି କର ପ୍ରଭୁ କରିଲେ ପ୍ରଣାମ,
ଜଣାଇଲେ ପିତା ସହ ଆପଣାର ନାମ ।
ପଚାରିଲେ ପୁଣି, "କାହିଁ ଗଲେ ବୃଷକେତୁ,
ଏକାକୀ ବନସ୍ତେ ମାତ ଭ୍ରମୁନ୍ତି କି ହେତୁ ? ।" ୩୩୮

ଅଶେଷ ରହସ୍ୟ ଭରା ରାମ ମୃଦୁ ବାଣୀ,
ଶୁଣି ତା' ଲଭିଲେ ହୃଦେ ସଙ୍କୋଚ ଭବାନୀ ।
ସଭୟେ ସେ ମହେଶଙ୍କ ପାଶେ ଗଲେ ଚଳି,
ହୃଦୟରେ ଅତିଶୟ ଚିନ୍ତା ଗଲା ଭରି । ୩୩୯

ଶିବଙ୍କ କହିବା କଥା ମୁହିଁ ନ ମାନିଲି,
ଶ୍ରୀରାମଙ୍କ ପରେ ନିଜ ଅଜ୍ଞତା ଢାଳିଲି ।
ଏବେ ଫେରିଯାଇ ତାଙ୍କୁ କି ଦେବି ଉତ୍ତର,
ହୃଦେ ଉପୁଜିଲା ଦାହ ଦାରୁଣ ପ୍ରଖର । ୩୪୦

ଶ୍ରୀରାମ ପାରିଲେ ଜାଣି ସତୀଙ୍କ କଷଣ,
ନିଜ ମାୟା ତହୁଁ କିଛି କଲେ ବିରଚନ ।
କୌତୁକ ଦେଖିଲେ ସତୀ ପଥେ ଯାଉ ଯାଉ,
ଜାନକୀ ଲକ୍ଷ୍ମଣ ସହ ଆଗେ ମହାବାହୁ । ୩୪୧

ପଛକୁ ସେ ଫେରି ପୁଣି ପ୍ରଭୁଙ୍କୁ ଦେଖିଲେ,
ମନୋହର ବେଶେ ସୀତା ଲକ୍ଷ୍ମଣ ସାଥିରେ ।
ଯେଣିକି ଚାହିଁଲେ ତେଣେ ପ୍ରଭୁ ସମାସୀନ,
ସେବନ୍ତି ସାଧକେ ସିଦ୍ଧ ମୁନୀଶ ପ୍ରବୀଣ । ୩୪୨

ଦେଖିଲେ ଅନେକ ବ୍ରହ୍ମା ବିଷ୍ଣୁ ମହାଦେବେ,
ଅମିତ ପ୍ରଭାବେ ଏକୁ ଏକେ ବଳି ହେବେ ।
ପ୍ରଭୁ ସେବା କରୁଛନ୍ତି ବନ୍ଦି ଶ୍ରୀଚରଣ,
ନାନା ମନୋହର ବେଶେ ସର୍ବ ଦେବଗଣ । ୩୪୩

ବ୍ରହ୍ମାଣୀ ଇନ୍ଦିରା ସତୀ ଅତୁଳ ଅମିତ
ଦେଖିଲେ ସେ ସେମାନଙ୍କ ପାଶେ ଉପସ୍ଥିତ ।

ଯେ ରୂପେ ବ୍ରହ୍ମାଦି ସୁରେ ରହିଥିଲେ ତହିଁ,
ଅନୁକୂଳ ରୂପେ ସବୁ ଶକ୍ତି ଥିଲେ ରହି । ୩୪୪

ଯହିଁ ତହିଁ ଦେଖିଲେ ସେ ଯେତେ ରଘୁପତି,
ଶକ୍ତି ସହିତରେ ସେତେ ଦେବଙ୍କୁ ଦେଖନ୍ତି ।
ଚରାଚର ଯେତେ ଜୀବ ଅଛନ୍ତି ସଂସାରେ,
ଦେଖିଲେ ସେ ସକଳଙ୍କୁ ନାନାବିଧ ପ୍ରକାରେ । ୩୪୫

ନାନା ବେଶ ଧରି ସୁରେ ପ୍ରଭୁଙ୍କୁ ପୂଜନ୍ତି,
ସେ ଦ୍ୱିତୀୟ ରାମ ରୂପ କାହିଁ ନ ଦେଖନ୍ତି ।
ଦର୍ଶନ କଲେ ସେ ରଘୁସୁତ ଅସୁମାରି,
ଜାନକୀ ସହିତ ସର୍ବେ ଏକା ବେଶଧାରୀ । ୩୪୬

ସେହି ରଘୁନାଥ ସେହି ଲକ୍ଷ୍ମଣ ସେ ସୀତା,
ଦେଖି ସତୀ ଅତିଶୟ ହେଲେ ଭୟଭୀତା ।
କମ୍ପେ ହିଆ, ଦେହ ସତେ ଚେତନା ରହିତ,
ପଥେ ବସିଗଲେ ଆଖି ବୁଜି ସେ ଭ୍ରମିତ । ୩୪୭

ପୁଣି ଆଖି ଖୋଲି ଯେବେ ବସିଲେ ଅନାଇ,
ଦକ୍ଷ କୁମାରୀଙ୍କୁ କିଛି ନ ଦିଶିଲା କାହିଁ ।
ତହିଁ ରାମ ପଦେ ନୋଇଁ ଶିର ଥରି ଥରି,
ଚଳିଲେ ସେଠାରୁ ଯହିଁ ଥିଲେ ମହେଶ୍ୱର । ୩୪୮

ପାଶେ ପହଞ୍ଚିବା ମାତ୍ରେ ହସି ହସି ହର,
ପଚାରିଲେ ସକୁଶଳ ସମ୍ବାଦ ସକଳ ।
"କିପରି ପରୀକ୍ଷା ନେଲ କହ କି ଭାବରେ,
ସବୁ କଥା ସତ ସତ କହ ମୋ ଆଗରେ ।" ୩୪୯

ମାସ ପାରାୟଣ, ଦ୍ୱିତୀୟ ବିଶ୍ରାମ ।

# ତିନି

ରାମଙ୍କ ପ୍ରଭାବ ଶୁଣି ସତୀ ଭୟ ଭରେ,
ଲୁଚାଇଲେ ସବୁ କଥା ଶିବଙ୍କ ଆଗରେ ।
"କିଛି ହିଁ ପରୀକ୍ଷା ମୁହିଁ ନେଇନି ଗୋସାଇଁ,
ତୁମ ପରି କେବଳ ମୁଁ ପ୍ରଣମିଲି ଯାଇ । ୩୫୦

ମିଥ୍ୟା ନୋହିପାରେ ଯାହା ତୁମେ ଥିଲ କହି,
ସମ୍ପୂର୍ଣ୍ଣ ବିଶ୍ୱାସ ମୋର ମନରେ ହୁଅଇ ।"
ତା'ପରେ ଶଙ୍କର ବସି ଧ୍ୟାନରେ ଦେଖିଲେ,
ସତୀ କୃତ କର୍ମମାନ ସକଳ ଜାଣିଲେ । ୩୫୧

ଶ୍ରୀରାମ ମାୟାକୁ ପୁଣି ନୁଆଁଇଲେ ମଥା,
ସତୀ ମୁଖେ କୁହାଇଲେ ଯେଣୁ ମିଥ୍ୟା କଥା ।
ହରି ଇଚ୍ଛା ଭବିତବ୍ୟ ଅତି ବଳବାନ,
ସୁଜ୍ଞାନୀ ଶଙ୍କର ଭାବି ନେଲେ ଏ ପ୍ରମାଣ । ୩୫୨

ସତୀ ଯେ ଧାରଣ କଲେ ସୀତାଙ୍କର ବେଶ,
ତହିଁ ହର ହୃଦେ ହେଲା ବିଷାଦ ଅଶେଷ ।
ଯେବେ ମୁଁ କରିବି ଏବେ ସତୀ ସଙ୍ଗେ ପ୍ରୀତି,
ଭ୍ରଷ୍ଟ ହେବ ଭକ୍ତି ପଥ ହୋଇବ ଅନୀତି । ୩୫୩

ପରମ ପବିତ୍ର ସତୀ ନ ହେଉଛି ଛଡ଼,
ଆଉ ପୁଣି ପ୍ରୀତି କଲେ ପାପ ହେବ ଘୋର ।
ପାଟି ଖୋଲି କିଛି କହି ନ ପାରନ୍ତି ଈଶ,
କେବଳ ହୃଦୟେ ଭରେ ସନ୍ତାପର ବିଷ । ୩୫୪

ତହୁଁ ଶିବ ପ୍ରଭୁ ପଦେ ନତ କଲେ ମଥା,
ସ୍ମରନ୍ତେ ରାମଙ୍କୁ ହୃଦେ ଆସିଲା ଏ କଥା—
ଏ ଦେହରେ ସତୀ ସଙ୍ଗେ ଭେଟ ନ ହୋଇବ,
ମନରେ ସଂକଳ୍ପ କରି ନେଲେ ସଦାଶିବ । ୩୫୫

ଏମନ୍ତ ବିଚାରି ଉମାପତି ସ୍ଥିର ମତି,
କୈଳାସେ ଚଳିଲେ ସ୍ମରି ହୃଦେ ସୀତାପତି ।
ଯିବା କାଳେ ହେଲା ଦିବ୍ୟ ଆକାଶରୁ ବାଣୀ,
ଜୟ ହେ ମହେଶ ଦୃଢ଼ କଲ ଭକ୍ତି ଜାଣି । ୩୫୬

ତୁମ ବିନା ଏ ପଣ କେ କରିପାରେ ଆନ,
ତୁମେ ରାମଭକ୍ତ, କ୍ଷମ, ତୁମେ ଭଗବାନ ।
ଶୁଣି ନଭ ବାଣୀ ସତୀ ଅନ୍ତରେ ଚିନ୍ତିତ;
ପଚାରିଲେ ମହେଶଙ୍କୁ ସଙ୍କୋଚ ସହିତ । ୩୫୭

କେଉଁ ପଣ କଲ ପ୍ରଭୁ କହନ୍ତୁ କୃପାଳୁ,
ସତ୍ୟ ନିକେତନ ତୁମେ ହେ ଦୀନ ଦୟାଳୁ ।
ଯଦ୍ୟପି ବହୁତ କରି ସତୀ ପଚାରିଲେ,
ତଥାପି ତ ତ୍ରିପୁରାରି କିଛି ନ କହିଲେ । ୩୫୮

ସତୀ ନିଜ ମନେ ମନେ କଲେ ଅନୁମାନ—
ଜାଣିଲେ ସର୍ବଜ୍ଞ ଶିବ ସବୁ କଥାମାନ ।
ପ୍ରଭୁଙ୍କ ନିକଟେ କାହିଁ କଲି ମୁଁ କପଟ,
ଧିକ ନାରୀଜାତି ଜଡ଼ ଅଜ୍ଞାନ ନିପଟ । ୩୫୯

ପ୍ରୀତିର ସୁନ୍ଦର ରୀତି ଦେଖ କେହ୍ନେ ନୀର,
କ୍ଷୀର ସାଥେ ମିଶି ବିକା ହୁଏ ଯେହ୍ନେ କ୍ଷୀର ।
କିନ୍ତୁ ଯେ କପଟ ରୂପୀ ଖଟା ମିଶି ତହିଁ,
କ୍ଷୀର ଛିଡ଼େ ରସ ଭାଗ ଅଲଗା ହୁଅଇ । ୩୬୦

ନିଜ କର୍ମ ସ୍ମରି ହୃଦେ ଦୁଃଖ ଚିନ୍ତା ଏତେ,
ଅମିତ ଅପାର କିଏ ବର୍ଣ୍ଣିବ କେମନ୍ତେ ।

ଭାବିଲେ ସେ, ଶିବ କୃପା ଅଗାଧ ସାଗର,
ଆହା ଖୋଲି ନ କହିଲେ ଅପରାଧ ମୋର । ୩୬୧

ଶଙ୍କରଙ୍କ ମନୋଭାବ ନରେଖି ଭବାନୀ,
ବ୍ୟାକୁଳ ହୋଇଲେ ପ୍ରଭୁ ତ୍ୟାଗ କଲେ ଜାଣି ।
ନିଜ ପାପ ବୁଝି କିଛି ନ ପାରନ୍ତି କହି,
ଜହ୍ନା ପରି ହୃଦେ ତାପ ଅଧିକ ହୁଅଇ । ୩୬୨

ଅତ୍ୟନ୍ତ ଚିନ୍ତିତ ସତୀ ଜାଣିଲେ ଗୋସାଇଁ,
କହିଲେ ସେ କଥା ତେଣୁ ତାଙ୍କ ସୁଖ ପାଇଁ ।
ପଥେ କହି କହି ନାନାବିଧ ଇତିହାସ,
ଯାଇ ପହଞ୍ଚିଲେ ବିଶ୍ୱନାଥ କଇଲାସ । ୩୬୩

ତହିଁ ପୁଣି ଶମ୍ଭୁ ନିଜ ପ୍ରତିଜ୍ଞା ସ୍ମରଣେ,
ବଟବୃକ୍ଷ ତଳେ ବସିଗଲେ ପଦ୍ମାସନେ ।
ନିଜ ସ୍ୱାଭାବିକ ରୂପ ସେ କରି ଧାରଣ,
ଅପାର ଅଖଣ୍ଡ ସମାଧିରେ ହେଲେ ମଗ୍ନ । ୩୬୪ ।

କୈଳାସ ପର୍ବତେ ଏଣେ ରହିଗଲେ ସତୀ,
ଭରିଥିଲା ହୃଦୟରେ ଦୁଃଖ ଅସରନ୍ତି ।
ଏହାର ରହସ୍ୟ କେହି କିଛି ନ ଜାଣଇ,
ଏକ ଏକ ଦିନ ଯୁଗ ସମାନ ଲାଗଇ । ୩୬୫

ନିତି ନୂଆ ନୂଆ ଚିନ୍ତା ହୃଦୟରେ ଭରେ,
କିପରି ହୋଇବି ପାରି ଏ ଦୁଃଖ-ସାଗରେ ।
ରଘୁପତିଙ୍କୁ ମୁଁ କଆଁ କଲି ଅପମାନ,
ମିଥ୍ୟା ମଣିଲି ମୁଁ ପୁଣି ପତି କଥାମାନ । ୩୬୬

ତା' ଫଳ କେବଳ ମୋତେ ବିଧାତା ଦେଇଛି,
ଯା' କିଛି ଉଚିତ ଥିଲା ତାହା ସେ କରିଛି ।
ମାତ୍ରକ ହେ ବିଧି ଏବେ ନୁହଇଁ ଉଚିତ
ଶଙ୍କର-ବିମୁଖ-ମୋତେ ରଖିବା ଜୀବିତ । ୩୬୭

କହି ହୁଏ ନାହିଁ କିଛି ହୃଦୟର ବ୍ୟଥା,
କେବଳ ଭାବନ୍ତି ମନେ ଶ୍ରୀରାମଙ୍କ କଥା—
ଯେବେ ବୋଲିଅଛ ପ୍ରଭୁ ଦୀନ ଦୟାନିଧି,
ଆର୍ତ୍ତିହର ବୋଲି ଯେବେ ବେଦରେ ପ୍ରସିଦ୍ଧି । ୩୬୮

ହାତ ଯୋଡ଼ି ବିନତି ମୁଁ କରୁଅଛି ଏବେ,
ଏହି ଦେହ-ଘଟ ମୋର ଛୁଟିଯାଉ ବେଗେ ।
ଯଦି ସତ୍ୟ ମୋର ପ୍ରେମ ଶଙ୍କର ଚରଣେ,
ଏହି ସତ୍ୟ ବ୍ରତ ମନ କର୍ମ ଓ ବଚନେ ?, ୩୬୯

ତେବେ ସର୍ବଦର୍ଶୀ ପ୍ରଭୁ ଶୁଣ ମୋ ବଚନ,
ଏ ଉପାୟ କର ଯହିଁ ହେବ ମୋ ମରଣ ।
ବିନା ପରିଶ୍ରମେ ମୋର ଦାରୁଣ କଷଣ,
ଯେପରି ଭବରେ ହୋଇ ପାରେ ନିବାରଣ । ୩୭୦

ଦକ୍ଷ ସୁତା ସତୀ ଥିଲେ ଦୁଃଖିନୀ ଏପରି,
ସେ ଦାରୁଣ ଦୁଃଖ କିଏ କହିବ କିପରି ।
ସତାଶୀ ହଜାର ବର୍ଷ ଗତ ହେଲା ଆସି,
ତେଜିଲେ ସମାଧି ତହୁଁ ଶମ୍ଭୁ ଅବିନାଶୀ । ୩୭୧

ଜପନ୍ତେ ଶ୍ରୀରାମ ନାମ ଜାଣିନେଲେ ସତୀ,
ଭାବିଲେ ଜାଗ୍ରତ ଏବେ ଜଗତର ପତି ।
ତହୁଁ ଯାଇ ଶମ୍ଭୁ ପଦ କରିଲେ ବନ୍ଦନ,
ସମ୍ମୁଖେ ଶଙ୍କର ଦେଲେ ତାହାଙ୍କୁ ଆସନ । ୩୭୨

କହିଲେ ଶ୍ରୀହରି କଥା ରସମୟ ଅତି,
ଏହି ସମୟରେ ଦକ୍ଷ ହେଲେ ପ୍ରଜାପତି ।
ବିଚାରିଲେ ବିଧି, ଦକ୍ଷ ଯୋଗ୍ୟ ସବୁ ଭାବେ,
ତେଣୁ ପ୍ରଜାପତି ପଦ ଦେଲେ ଅନୁରାଗେ । ୩୭୩

ଦକ୍ଷ ଯେବେ ଗଲେ ପାଇ ବଡ଼ ଅଧିକାର,
ହୃଦୟେ ଭରିଲା ଅଭିମାନ ଅହଂକାର ।

ଜଗତେ ଏପରି କେହି ଜନ୍ମ ହୋଇ ନାହିଁ,
ହୃଦେ ମଦ ନାହିଁ ଯାର ପ୍ରଭୁ ପଣ ପାଇ । ୩୭୪

ସକଳ ମୁନିଙ୍କୁ ଦକ୍ଷ ଡକାଇ ଆଣିଲେ,
ତାଙ୍କ ଦ୍ୱାରା ଏକ ବଡ଼ ଯଜ୍ଞ ଆରମ୍ଭିଲେ ।
ପାଆନ୍ତି ଯେ ଦେବଗଣେ ଯଜ୍ଞରୁ ଯଜ୍ଞ ଭାଗ,
ନିମନ୍ତ୍ରଣ କଲେ ତାଙ୍କୁ କରି ଅନୁରାଗ । ୩୭୫

ଗନ୍ଧର୍ବ କିନ୍ନର ନାଗ ଯେତେ ସିଦ୍ଧଗଣ
ନିଜ ପତ୍ନୀ ସହ ଦେବେ କରିଲେ ଗମନ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନିଙ୍କ ବ୍ୟତୀତ
ଅନ୍ୟ ଦେବେ ଗଲେ କରି ରଥ ସୁସଜ୍ଜିତ । ୩୭୬

ନଭେ ନିରେଖିଲେ ସତୀ ନାନାଦି ବିମାନ,
ଉଡ଼ି ଉଡ଼ି ଯାଉଥିଲା ବହୁ ଶୋଭମାନ ।
ସୁର ନାରୀଗଣ କରୁଥିଲେ କଳଗାନ,
ଯା' ଶୁଣି ଭୁଟଇ କ୍ଷଣେ ମୁନି ଋଷି ଧ୍ୟାନ । ୩୭୭

ସତୀ ପଚାରିଲେ, ଶିବ ବୁଝାଇ କହିଲେ,
ପିତା ଯଜ୍ଞ ଶୁଣି ଟିକେ ହରଷ ହୋଇଲେ ।
ଭାବିଲେ ସେ, ଯଦି ଆଜ୍ଞା ଦେବେ ମହେଶ୍ୱର,
କିଛି ଦିନ ମୁଁ ରହନ୍ତି ଯାଇ ବାପଘର । ୩୭୮

ପତି ପରିତ୍ୟକ୍ତା ଯେଣୁ ହୃଦୟେ ବିଷାଦ,
କିଛି ନ କହନ୍ତି ଭାବି ନିଜ ଅପରାଧ ।
ଶେଷରେ କହିଲେ ସତୀ ବଚନ ଲଳିତ,
କରି ଲଜ୍ୟା ଭୟ ପ୍ରୀତିରସେ ରସାଣିତ । ୩୭୯

"ବାପଘର ହୁଏ ଯାଗ ମଙ୍ଗଳବ ଭାରି,
ଅନୁମତି ଯେବେ ଦେବ ହେ ପିନାକଧାରୀ ।
ଆଦରେ ଯାଆନ୍ତି ଯଜ୍ଞ ଦେଖିବା ନିମନ୍ତେ,
ଦୟା-ନିକେତନ ଦୟା କରିବ କି ସତେ ।" ୩୮୦

ସେ କହିଲେ, "ଭଲ କଥା ପାଏ ମୋ ମନକୁ,
କିନ୍ତୁ ଘୋର ଅନୁଚିତ ନ ଡାକି ଆମକୁ ।
ସକଳ କନ୍ୟାଙ୍କୁ ଦକ୍ଷ କଲେ ନିମନ୍ତ୍ରଣ,
ବୈରତାରୁ ନ କଲେ ସେ ତୁମକୁ ସ୍ମରଣ । ୩୮୧

ବ୍ରହ୍ମାଙ୍କ ସଭାରେ ଥରେ ହୋଇ କ୍ରୋଧମାନ,
ସେବେଠୁଁ ସେ ମୋତେ କରୁଛନ୍ତି ଅପମାନ ।
ବିନା ନିମନ୍ତ୍ରଣେ ସତୀ ତୁମେ ଯଦି ଯିବ,
ସ୍ନେହ କି ମର୍ଯ୍ୟାଦା ତହିଁ କିଛି ନ ପାଇବ । ୩୮୨

ବିନା ନିମନ୍ତ୍ରଣେ ସ୍ୱାମୀ, ପିତା ଗୁରୁ ମିତ,
ଗୃହେ ଯିବା କଦାପି ତ ନୁହେ ଅନୁଚିତ ।
ତଥାପି ଯେଉଁଠି ଥାଏ ବିରୋଧ କଳୁଷିତ,
ସେ ସ୍ଥାନକୁ ଯିବା ନୋହେ କଲ୍ୟାଣ ନିଶ୍ଚିତ ।" ୩୮୩

ବୁଝାଇ କହିଲେ ଶିବ ବହୁତ ପ୍ରକାରେ,
ବିଧି ବଶେ ହୃଦେ ଜ୍ଞାନ ନୋହେ ସେ କଥାରେ ।
ମହେଶ କହିଲେ, 'ବିନା ଡାକରାରେ ଗଲେ,
ଭଲ କଥା ହେବ ନାହିଁ ଜାଣ ମୋ ମତରେ ।' ୩୮୪

ବହୁ ଯତ୍ନ କରି ହର ଦେଖିଲେ ଶେଷରେ,
ନ ରହନ୍ତି ଦକ୍ଷସୁତା ସତୀ ଏ ମତରେ ।
ତହୁଁ ଶିବ ତାଙ୍କ ମୁଖ୍ୟଗଣେ ସଙ୍ଗେ ଦେଇ,
ନିଜ ବାପଘରେ ଦେଲେ ତାହାଙ୍କୁ ପଠେଇ । ୩୮୫

ସତୀ ପହଞ୍ଚିଲେ ଯେବେ ପିତାଙ୍କ ନିଳୟେ,
ସମ୍ମାନ ନ କଲେ କେହି ଦକ୍ଷଙ୍କର ଭୟେ ।
କେବଳ ଜନନୀ ପାଶେ ଆସିଲେ ଆଦରେ,
ମୁରୁକି ହସିଲେ ଭଗିନୀଏ ବେଖାତରେ ୩୮୬

ଦକ୍ଷ ତ ପଚାରିଲେନି କୁଶଳ ଖବର,
ଓଲଟି ସତୀଙ୍କୁ ଦେଖି ଜଳିଲା ଅନ୍ତର ।

ତା ପରେ ଦେଖିଲେ ସତୀ ଯହିଁ ହୁଏ ଯାଗ,
ମାତ୍ର କାହିଁ ନ ଦେଖିଲେ ଈଶ୍ୱରଙ୍କ ଭାଗ । ୩୮୭

ଶଙ୍କରଙ୍କ କଥା ଏବେ ଚେତାରେ ପଶିଲା,
ସ୍ୱାମୀ ଅପମାନେ ସତୀ ହୃଦୟ ଜଳିଲା ।
ପଛ ଦୁଃଖ ହୃଦେ ଘାରି ନ ଥିଲା ଏପରି,
ଏହି ମହା ପରିତାପ ଘାରିଲା ଯେପରି । ୩୮୮

ଯଦ୍ୟପି ଜଗତେ ଥାଏ ମହା ଦୁଃଖମାନ,
ସବୁଠୁଁ କଠିନ କିନ୍ତୁ ଜାତି ଅପମାନ ।
ଭାବି ଏହିପରି ସତୀ କଲେ ଅତି କ୍ରୋଧ,
ବହୁତ ପ୍ରକାରେ ମାତା ଦେଲେ ତାଙ୍କୁ ବୋଧ । ୩୮୯

ଶିବ ଅପମାନ ହୃଦ ନ ପାରଇ ସହି,
କିଛି ହିଁ ସାନ୍ତ୍ୱନା କେଉଁ ଭାବେ ନ ମିଳଇ ।
ସକଳ ସଭାକୁ ତେଣୁ ଧିକ୍‌କାରି ବହନ,
କହିଲେ ଆବେଗ ଭରେ ସମ୍ବୋଧ ବଚନ । ୩୯୦

"ଶୁଣ ସଭାସଦ ବର୍ଗ ଶୁଣ ମୁନି ଧୀରେ,
ଏଥି ଶିବ ଅପମାନ ଯେ କଲେ, ଶୁଣିଲେ,
ତା'ର ଫଳ ଏହିକ୍ଷଣି ସମସ୍ତେ ପାଇବେ,
ଭଲ ଭାବେ ଅନୁତାପ ମୋ ପିତା କରିବେ । ୩୯୧

ସନ୍ଥ ଶମ୍ଭୁ ବିଷ୍ଣୁ ନିନ୍ଦା ଯେ ସ୍ଥାନେ ହୁଅଇ,
ସେ ସ୍ଥାନର ଜାଣ ଏହି ମର୍ଯ୍ୟାଦା ଅଟଇ ।
କାଟିବ ଜିଭକୁ ତାର ଯଦି ଥାଏ ବଳ,
ନତୁବା କାନକୁ ମୁଦି ଛାଡ଼ିବ ସେ ସ୍ଥଳ । ୩୯୨

ଏ ଜଗତ ଆତ୍ମା ମହେଶ୍ୱର ତ୍ରିପୁରାରି,
ଜଗତ ଜନକ ସର୍ବ ଜୀବ ହିତକାରୀ ।
ତାହାଙ୍କୁ ନିନ୍ଦନ୍ତି ମୋର ପିତା ମନ୍ଦମତି,
ତାଙ୍କରି ବୀର୍ଯ୍ୟରୁ ପୁଣି ମୋ ଦେହ ଉତ୍ପତ୍ତି । ୩୯୩

ତେଜିବ ସତୀର ଏହି ଶରୀର ସେ ହେତୁ,
ହୃଦୟରେ ଧ୍ୟାୟୀ ଚନ୍ଦ୍ରମୌଳୀ ବୃଷକେତୁ ।"
ଏହା କହି ତନୁ ଭସ୍ମ କଲେ ଯଜ୍ଞାନଳେ,
ପଡ଼େ ହାହାକାର ଭୟେ ସଭିଙ୍କ ମୁଖରେ । ୩୯୪

ସତୀଙ୍କ ମରଣ ଶୁଣି ଶିବଙ୍କର ଗଣ,
ସେ ଯଜ୍ଞସ୍ଥଳକୁ ଧ୍ୱଂସ କଲେ ତତକ୍ଷଣ ।
ଯଜ୍ଞ ଧ୍ୱଂସ ହେବା ଦେଖି ଭୃଗୁ ମୁନିଶ୍ୱର
ସେ ପବିତ୍ର ଯଜ୍ଞେ ରକ୍ଷା କରିଲେ ସତ୍ୱର । ୩୯୫

ଏହି ସବୁ ସମାଚାର ଶଙ୍କର ପାଇଲେ,
ଅତି ବେଗେ ବୀରଭଦ୍ରେ ତହିଁ ପଠାଇଲେ ।
ଯାଇ ସେହିମାନେ ଧ୍ୱଂସ କଲେ ଯଜ୍ଞସ୍ଥଳ
ସମସ୍ତ ଦେବଙ୍କୁ ଦେଲେ ସମୁଚିତ ଫଳ । ୩୯୬

ଜଗତରେ ଶିବଦ୍ରୋହୀ ଲଭେ ଯେ ଦୁର୍ଦ୍ଦଶା
ପ୍ରଜାପତି ଦକ୍ଷଙ୍କର ହେଲା ସେ ଅବସ୍ଥା ।
ଜଗତ ବିଦିତ ଏହି ସକଳ କାହାଣୀ
ସଂକ୍ଷେପେ କହିଲି ତେଣୁ ତାହା ନ ବଖାଣି । ୩୯୭

ହରିଙ୍କୁ ମାଗିଲେ ସତୀ ମୃତ୍ୟୁକାଳେ ବର,
ଶିବ ପଦେ ରହୁ ପ୍ରୀତି ଜନ୍ମ ଜନ୍ମାନ୍ତର ।
ସେହି କାରଣରୁ ହିମ ଗିରି ଗୃହେ ଯାଇ,
ଜନ୍ମିଲେ ପାର୍ବତୀ ରୂପେ ନୂଆ ତନୁ ପାଇ । ୩୯୮

ଯେ ଦିନୁଁ ଜନ୍ମିଲେ ଉମା ଗିରି ଗୃହେ ଯାଇ
ସେ ଦିନୁଁ ସେଠାରେ ସିଦ୍ଧି ଋଦ୍ଧି ଗଲା ଛାଇ ।
ସୁଆଶ୍ରମ ଏଣେ ତେଣେ କଲେ ମୁନିବର
ଉଚିତ ନିବାସ ଦେଲେ ହିମ ମହୀଧର । ୩୯୯

ନାନାବିଧ ନବ ବୃକ୍ଷେ ଫଳ-ପୁଷ୍ପବନ୍ତ
ହୋଇ ଶୋଭାଯୁକ୍ତ ହେଲେ ସେହି ପରବତ ।

ପ୍ରକଟ ହୋଇଲା ପୁଣି ରମ୍ୟ ଗିରି ପରେ
ନାନା ରକମର ମଣି ଆକର ନିକରେ । ୪୦୦

ନଦୀ ସକଳରେ ବହେ ଅତି ପୂତ ଜଳ,
ଖୁସି ହେଲେ ଖଗ ମୃଗ ମଧୁପ ସକଳ ।
ଭୁଲି ନିଜ ନିଜ ସ୍ୱାଭାବିକ ଶତ୍ରୁପଣ
ସପ୍ରେମେ ରହିଲେ ଗିରି ପରେ ଜୀବଗଣ । ୪୦୧

ଗିରିଜା ଆସନ୍ତେ ଗୃହେ ଶୋଭନ୍ତି ପର୍ବତ,
ରାମ ଭକ୍ତି ଲଭି ହୃଦେ ଯେସନେ ଭକତ ।
ଗୃହେ ତାଙ୍କ ହୁଏ ନିତ୍ୟ ମଙ୍ଗଳ ଉତ୍ସବ,
ଯା' ଯଶ ବ୍ରହ୍ମାଦି ସୁରେ କରୁଥାନ୍ତି ସ୍ତବ । ୪୦୨

ନାରଦ ଏ କଥା ଜାଣି ଗିରିରାଜ ଘରେ
ତୁରତେ ମିଳିଲେ ଯାଇ କଉତୁକ ଭରେ ।
ଅଶେଷ ଆଦର କଲେ ତାଙ୍କୁ ମହୀଧର,
ଉତ୍ତମ ଆସନ ଦେଲେ ପଖାଳି ପୟର । ୪୦୩

ସସ୍ତ୍ରୀକ ସେ ମୁନିପଦେ ମଥା ନୁଆଁଇଲେ,
ପାଦୋଦକ ପ୍ରତି ଗୃହେ ଯତ୍ନେ ସିଞ୍ଚାଇଲେ ।
ନିଜ ସୌଭାଗ୍ୟକୁ ଗିରି ବହୁତ ବଖାଣି,
ମୁନି ପଦେ ରଖାଇଲେ ଦୁହିତାକୁ ଆଣି । ୪୦୪

କହିଲେ ସେ ପୁଣି, ପ୍ରଭୁ ତୁମେ ତ ସର୍ବଜ୍ଞ
ସବୁ ସ୍ଥାନେ ଗତି ତବ, ତୁମେ ତ୍ରିକାଳଜ୍ଞ ।
ସେହି ହେତୁ ତୁମେ କରି ହୃଦୟେ ବିଚାର,
ଯେତେ ସବୁ ଦୋଷ ଗୁଣ କହ ଏ କନ୍ୟାର । ୪୦୫

ହସି ମୁନି କହିଲେ ଏ ଗୂଢ଼ ମୃଦୁ ବାଣୀ,
ତୁମର ଦୁହିତା ହେବ ସର୍ବ ଗୁଣ ଖଣି ।
ସ୍ୱଭାବେ ସୁଶୀଳା ହେବ ସୁଶ୍ରୀ ବୁଦ୍ଧିମତୀ,
ନାମ ତା ଅମ୍ବିକା ଉମା ଭବାନୀ ପାର୍ବତୀ । ୪୦୬

କନ୍ୟା ସର୍ବ ସୁଲକ୍ଷଣୀ ପରମ ସୁହାଗିନୀ;
ହାତ କାତ ବଜ୍ର ହେବ ସୌଭାଗ୍ୟଶାଳିନୀ ।
ଏହ୍ବ କନ୍ୟା ଲାଗି ତାର ଜନକ ଜନନୀ,
ଯଶ କୀର୍ତ୍ତି ସଉଭାଗ୍ୟ ଲଭିବେ ଅବନୀ । ୪୦୭

ଜଗତରେ ପୂଜନୀୟା ଏ କନ୍ୟା ହୋଇବ,
ଏହାକୁ ପୂଜିଲେ କିଛୁ ଦୁର୍ଲ୍ଲଭ ନୋହିବ ।
ଏହାର ନାମକୁ କଲେ ସ୍ମରଣ ସଂସାରେ,
ଯୁବତୀ ଚଢ଼ିବେ ପାତିବ୍ରତ୍ୟ ଅସିଧାରେ । ୪୦୮

ତୁମ କନ୍ୟା ସୁଲକ୍ଷଣୀ ଗିରି ଦଣ୍ଡଧାରୀ,
ଶୁଣ ତାର ଅବଗୁଣ ଯାହା ଦୁଇ ଚାରି ।
ଗୁଣହୀନ ମାନହୀନ ପିତାମାତାହୀନ,
ସଂଶୟ ବିହୀନ ପୁଣି ସଦା ଉଦାସୀନ । ୪୦୯

ଯୋଗୀ ଜଟାଧାରୀ ନଗ୍ନ ନିଷ୍କାମ ହୃଦୟ,
ଅମଙ୍ଗଳ ବେଶୀ ହେବେ ତା ପତି ନିଶ୍ଚୟ ।
କନ୍ୟା ହସ୍ତରେଖାରୁ ଏ ହୁଅଇ ସୂଚୀତ,
ସବୁ ଗୁଣ ଅବଗୁଣ ବିଧି ବିଡ଼ମ୍ବିତ । ୪୧୦

ମୁନିଙ୍କ ବଚନ ଶୁଣି ତାକୁ ସତ୍ୟ ଜାଣି,
ଦମ୍ପତି ଦୁଃଖିତ ହେଲେ, ହରଷ ଭବାନୀ ।
ନାରଦ ବି ଜାଣିଲେନି ମରମ ତାହାର,
ଦଶା ଏକ, ବୁଝିବାକୁ ବିଭିନ୍ନ ପ୍ରକାର । ୪୧୧

ଗିରିଜା ଗିରୀଶ ମେନା ସଖୀଏ ସକଳ,
ପୁଲକିତ ତନୁ, ଭରେ ନୟନରେ ଜଳ ।
ମିଛ ନ ହୋଇବ କେବେ ଦେବର୍ଷି ବଚନ,
ରଖିଲେ ପାର୍ବତୀ ହୃଦେ ସେ କଥା-ରତନ । ୪୧୨

ଶିବ ପଦ-କମଳରେ ବଢ଼ଇ ସେନେହ,
ମିଳନ କଠିନ ତେଣୁ ଲାଗଇ ସନ୍ଦେହ ।

ସୁସମୟ ନୁହେଁ ଜାଣି ଲୁଚାଇ ପୀରତି,
ସଖୀଙ୍କର କୋଳେ ଯାଇ ବସିଲେ ପାର୍ବତୀ । ୪୧୩

ମିଥ୍ୟା ନ ହୁଅଇ କେବେ ଦେବର୍ଷି ବଚନ,
ଚିନ୍ତିତ ଦମ୍ପତି ସୁଚତୁରା ସଖୀଜନ ।
ପୁଣି ଧୈର୍ଯ୍ୟ ଧରି ପଚାରିଲେ ଗିରିରାଜ,
'ଏଥିକୁ ଉପାୟ କହ ଆହେ ମୁନିରାଜ ।' ୪୧୪

କହିଲେ ମୁନୀଶ ଶୁଣ "ହେ ଗିରି ରାଜନ,
ବିଧାତା ଲଲାଟେ ଯାହା କରନ୍ତି ଲିଖନ ।
ଦେବତା ଦାନବ ନର ନାଗ ଋଷିଗଣ,
କାହାର କ୍ଷମତା ଅଛି କରିବ ଖଣ୍ଡନ । ୪୧୫

ତଥାପି ଉପାୟ ଏକ କହୁଛି ଏଠାରେ,
ଦୈବ ସାହା ହେଲେ ଅବା ସିଦ୍ଧ ହୋଇପାରେ ।
ବର୍ଣ୍ଣନା କରିଲି ମୁହିଁ ବର ଯେଉଁପରି,
ନିଃସନ୍ଦେହେ ଉମା ନିଶ୍ଚେ ଲଭିବ ସେପରି । ୪୧୬

ବର ଦୋଷ ଯାହା ସବୁ କହିଲି ବୁଝାଇ,
ମୋର ଅନୁମାନେ ସବୁ ଶିବ ପାଶେ ଥାଇ ।
ଏ ବିବାହ ହେବ ଯଦି ଶିବଙ୍କ ସଙ୍ଗତେ,
ଦୋଷକୁ ସୁଗୁଣ ବୋଲି କହିବେ ସମସ୍ତେ । ୪୧୭

ଯେପରି ସାପରି ଶେଯେ ଶୁଅନ୍ତି ଶ୍ରୀହରି,
ତଥାପି ପଣ୍ଡିତେ ଦୋଷ ନ ଥାଆନ୍ତି ଧରି ।
ଅଗ୍ନି ସୂର୍ଯ୍ୟ ଯେତେ ସବୁ ରସ ଥାନ୍ତି ନେଇ,
ତଥାପି ଖରାପ ତାଙ୍କୁ କହନ୍ତି କି କେହି । ୪୧୮

ଗଙ୍ଗାରେ ଅଶୁଭ ଶୁଭ ଜଳ ପ୍ରବାହିତ,
କିନ୍ତୁ କେହି କେବେ କହେ ଗଙ୍ଗା ଅପବିତ୍ର ?
ବିଷ୍ଣୁ ବିଷ୍ଣୁପଦୀ ସୂର୍ଯ୍ୟ ଅନଳଙ୍କ ପରି,
ସମର୍ଥଙ୍କୁ କେବେ ଦୋଷ ନ ଲାଗେ ସେପରି । ୪୧୯

ଜ୍ଞାନ ଅଭିମାନେ ଯଦି କେଉଁ ମୂର୍ଖ ନର,
ଦୋଷ ଗୁଣ ବାଛି ବସେ ସେ ପିନା କେବଳ,
କଳପକ ଯାଏ ଘୋର ନରକେ ପଡ଼ଇ,
ଈଶ୍ୱରଙ୍କ ସମ କେବେ ଜୀବ କି ହୁଅଇ ? ୪୨୦

ଗଙ୍ଗାଜଳେ ଧୋଇଲେ ମଧ ମଦିରା ରନ୍ଧନ,
ଜାଣିବି ପିଅନ୍ତି ନାହିଁ କେବେ ସନ୍ଥ ଜନ ।
କିନ୍ତୁ ସେ ଗଙ୍ଗାରେ ମିଶି ପବିତ୍ର ହୁଅଇ,
ଜୀବ ଈଶ୍ୱରଙ୍କ ମଧ୍ୟେ ଏ ଭେଦ ଅଟଇ । ୪୨୧

ସହଜେ ସମର୍ଥ ଯେଣୁ ଶିବ ଭଗବାନ,
ଏ ବିବାହେ ହେବ ତେଣୁ ସକଳ କଲ୍ୟାଣ ।
ଅତୀବ କଠିନ କିନ୍ତୁ ଶିବ ଆରାଧନା,
ପୂର୍ଣ୍ଣ ତପେ ସେ ହୁଅନ୍ତି ଆଶୁତୋଷ ମନା । ୪୨୨

ତପସ୍ୟା କରିବ ଯେବେ କୁମାରୀ ତୁମର,
ଭାଗ୍ୟ ଓଲଟାଇ ଦେଇ ପାରନ୍ତି ଶଙ୍କର ।
ଯଦିବା ଅଛନ୍ତି ବର ବହୁତ ସଂସାରେ,
ତେବେ ଶିବ ବିନା ବର କେ ହୋଇ ନ ପାରେ । ୪୨୩

ସେ ବର ଦାୟକ ଭକ୍ତ ବିପତ୍ତି ଭଞ୍ଜନ,
କୃପାସିନ୍ଧୁ ସେବକର ମାନସ-ରଞ୍ଜନ ।
ଶିବ ଆରାଧନା ବିନା ମନୋବାଞ୍ଛା ଫଳ,
ନ ମିଳଇ କୋଟି ଯୋଗ ଜପରେ କେବଳ ।" ୪୨୪

ନାରଦ ଏସନ କହି ଶ୍ରୀହରି ସୁମରି,
ସ୍ନେହ ଭରେ ଗିରିଜାଙ୍କୁ ଆଶୀର୍ବାଦ କରି ।
କହିଲେ, 'ଗିରୀଶ ହେବ ମଙ୍ଗଳ ନିଶ୍ଚୟ,
ମୋ କଥାରେ ତିଳେ ମାତ୍ର ନ ଅଛି ସଂଶୟ ।' ୪୨୫

ଏହା କହି ମୁନି ଗଲେ ବ୍ରହ୍ମାଙ୍କ ଭବନେ,
ଆଗକୁ ଯେ କଥାମାନ ଶୁଣନ୍ତୁ ସୁଜନେ ।

ପତିଙ୍କୁ କହିଲେ ମେନା ଏକାନ୍ତରେ ପାଇ,
'ନାଥ ମୁଁ ମୁନିଙ୍କ କଥା ଅର୍ଥ ବୁଝୁ ନାହିଁ । ୪୨୬

ଦେଖି ଅନୁକୂଳ ଘର ବର ଆଉ କୁଳ,
ବିଭା ଦିଅ ସ୍ୱାମୀ ଏହି ଦୁହିତା ଅତୁଳ ।
ନୋହିଲେ ସେ ଅବିଆଡ଼ୀ ହୋଇ ରହୁ ଘରେ,
ଜାଣ ପ୍ରାଣ ସମ ପ୍ରିୟ ଉମା ମୋ ପାଖରେ । ୪୨୭

ଯେବେ ଗିରିଜାକୁ ଯୋଗ୍ୟ ନ ମିଳିବ ବର,
ସମସ୍ତେ କହିବେ ଗିରି ସ୍ୱଭାବ ତ ଜଡ଼ ।
ଏ କଥା ବିଚାରି ପତି କରିବ ବିବାହ,
ଯେସନେ ଆଗକୁ ହୃଦେ ନ ରହିବ ଦାହ ।' ୪୨୮

ଏହା କହି ମେନା ପତି ପଦେ ଗଲେ ପଡ଼ି,
କହିଲେ ତାହାଙ୍କୁ ଗିରିରାଜ ସ୍ନେହ ଭରି ।
'ଚନ୍ଦ୍ରମା ଦେହରୁ ଅବା ଅନଳ ଝରିବ,
ନାରଦଙ୍କ କଥା କେବେ ଅନ୍ୟଥା ନୋହିବ । ୪୨୯

ତେଜ ସବୁ ଦୁଃଖ ପ୍ରିୟା ଚିନ୍ତ ଭଗବାନ,
ଉମା ସ୍ରଷ୍ଟା ଉମାର ତ କରିବେ କଲ୍ୟାଣ । ୪୩୦

ସୁତା ପ୍ରତି ଯଦି ଥାଏ ତୁମରି ମମତା
ଏବେ କହ ଯାଇ ଏହି ଉପଦେଶ କଥା ।
ତପ କରୁ ସେ ଯେମନ୍ତେ ମିଳିବେ ମହେଶ,
ଅନ୍ୟ ଉପାୟରେ କେବେ ନ ମେଣ୍ଟିବ କ୍ଳେଶ । ୪୩୧

ନାରଦ ବଚନ ଜାଣ ସଗର୍ଭ ସହେତୁ,
ସକଳ ସୁନ୍ଦର ଗୁଣନିଧି ବୃଷକେତୁ ।
ଏହାକୁ ବିଚାରି ମନୁ ଶଙ୍କା ପରିହର,
କଳଙ୍କ ରହିତ ସବୁ ପ୍ରକାରେ ଶଙ୍କର । ୪୩୨

ପତିଙ୍କ ବଚନ ଶୁଣି ମନ ହରଷିତେ,
ଗଲେ ଉଠି ପାର୍ବତୀଙ୍କ ସମୀପେ ତୁରିତେ ।

ଉମାଙ୍କୁ ବିଲୋକି ନେତ୍ର ଭରଇ ଲୋତକେ,
ସ୍ନେହେ ବସାଇଲେ କୋଳେ ପରଣ ପୁଲକେ । ୪୩୩

ବାରମ୍ବାର ହୃଦୟରେ ନେଇ ଲଗାଇଲେ,
ଗଦ ଗଦ କଣ୍ଠେ କଥା କହି ନ ପାରିଲେ ।
ଜଗତ ଜନନୀ ଉମା ସର୍ବଜ୍ଞ ଭବାନୀ
କହିଲେ ଜନନୀ-ସୁଖ-ପ୍ରଦ ମୃଦୁ ବାଣୀ । ୪୩୪

"ମାତା ଗୋ ଦେଖିଲି ମୁହିଁ ଏପରି ସପନ,
ତୁମକୁ କହୁଛି ତାହା ଶୁଣ ଦେଇ ମନ ।
ସୁନ୍ଦର ଗଉର ଏକ ବିପ୍ରବର ଆସି,
ଦେଇଛନ୍ତି ମୋତେ ଏହି ଉପଦେଶ ରାଶି । ୪୩୫

ତପସ୍ୟା କର ତୁ ଯାଇ ଗିରିଶ କୁମାରି,
ମୁନିଙ୍କ କଥାକୁ ସତ୍ୟ ହୃଦୟେ ବିଚାରି ।
ଏଥିରେ ସମ୍ମତ ତୋର ଜନନୀ ଜନକ,
ତପ ସୁଖପ୍ରଦ ଦୁଃଖ ଦୋଷ ବିନାଶକ । ୪୩୬

ରଚନ୍ତି ତପସ୍ୟା ବଳେ ପ୍ରପଞ୍ଚ ବିଧାତା,
ତପ ବଳେ ବିଷ୍ଣୁ ସର୍ବ ଜଗତର ତ୍ରାତା ।
ତପ ବଳେ ଶମ୍ଭୁ ସୃଷ୍ଟି କରନ୍ତି ସଂହାର,
ଅନନ୍ତ ଧରନ୍ତି ତପ ବଳେ ମହୀଭାର । ୪୩୭

ତପକୁ ଆଧାର କରେ ସମସ୍ତ ଜଗତ,
ଯାଇ ତପ କର ଏବେ ବିଚାରି ସମସ୍ତ ।"
ଶୁଣି ଏହି କଥା ମାତା ବିସ୍ମିତ ହୋଇଲେ,
ଗିରିଶଙ୍କୁ ଡାକି ସୁତା ସ୍ୱପ୍ନ ଶୁଣାଇଲେ । ୪୩୮

ପିତାମାତାଙ୍କୁ ବୁଝାଇ ଉମା ନାନା ମତେ,
ଚଳିଲେ ହରଷ ମନେ ତପସ୍ୟା ନିମନ୍ତେ ।
ଜନକ ଜନନୀ ଆଦି ପ୍ରିୟ ପରିଜନ,
ହୋଇଲେ ବିକଳ, ମୁଖେ ନ ଆସେ ବଚନ । ୪୩୯

ବେଦଶିରା ମୁନି ଆସି ସେହି ସମୟରେ,
ବୁଝାଇ କହିଲେ କେତେ ସଭିଙ୍କୁ ଆଦରେ ।
ତାଙ୍କ ମୁଖୁଁ ଶୁଣି ଉମା ମହିମା ଅମିତ,
ଆଶ୍ୱାସନା ପାଇ ସର୍ବେ ହୋଇଲେ ନିଶ୍ଚିନ୍ତ । ୪୪୦

ହୃଦେ ଧରି ଉମା ପ୍ରାଣପତିଙ୍କ ଚରଣ,
ବନେ ଯାଇ ଘୋର ତପ କଲେ ଆଚରଣ ।
ଅତି ସୁକୁମାରୀ ତପ ଯୋଗ୍ୟ ନୁହେଁ ତନୁ,
ପତି ପଦ ସ୍ମରି ଭୋଗ ତ୍ୟାଗ କଲେ ମନୁ । ୪୪୧

ପତି ପଦେ ହେଲା ନିତ୍ୟ ନବ ଅନୁରାଗ,
ତପେ ମନ ଦେଲେ କରି ଦେହ କଥା ତ୍ୟାଗ ।
ସହସ୍ର ବରଷ ଫଳ ମୂଳ ସେ ଖାଇଲେ,
ଶାଗ ପତ୍ର ଖାଇ ଶତ ବର୍ଷ ବିତାଇଲେ । ୪୪୨

ପାଣି ଓ ପବନ ପିଇ କିଛି କାଳ ଗତ,
କିଛି କାଳ ଗଲା କରି ଉପବାସ ବ୍ରତ ।
ବେଲପତ୍ର ଶୁଖି ଭୂଇଁ ଉପରେ ପଡ଼ିଲେ,
ତାକୁ ଖାଇ ତିନି ଶହ ବର୍ଷ କଟାଇଲେ । ୪୪୩

ଶୁଖିଲା ପତର ଖିଆ ପୁଣି କଲେ ମନା,
ଜଗତେ ସେ ବୋଲାଇଲେ ସେ ଲାଗି ଅପର୍ଣ୍ଣା ।
ତପକ୍ଷୀଣ ଉମାଙ୍କର ତନୁ ଦରଶନେ,
ସୁଗମ୍ଭୀର ବ୍ରହ୍ମବାଣୀ ହୋଇଲା ଗଗନେ । ୪୪୪

"ଶୁଣ ଗୋ ଗିରୀଶ ସୁତା ଅପର୍ଣ୍ଣା ପାର୍ବତୀ,
ତୁମ ମନୋରଥ ଏବେ ହେଲା ଫଳବତୀ ।
ସକଳ ଦୁଃସହ କ୍ଲେଶ ଏବେ ପରିହରି,
ଅଚିରେ ତୁମକୁ ପ୍ରାପ୍ତ ହେବେ ମହେଶ୍ୱର । ୪୪୫

ଏପରି ତପ କେ କରି ନାହାନ୍ତି ଭବାନୀ,
ଯଦ୍ୟପି ବା ଅଛନ୍ତି ବହୁ ଧୀର ମୁନି ଜ୍ଞାନୀ ।

ଜାଣି ସଦା ସତ୍ୟ ପୂତ ଏହି ବ୍ରହ୍ମବାଣୀ,
ହୃଦୟେ ସାଇତି ରଖ ସତତ ଭବାନୀ । ୪୪୬

ଡାକିବାକୁ ଯେବେ ପିତା ଆସିବେ ତୁମର,
ହଠ ପରିହରି ଯିବ ସଙ୍ଗତେ ତାଙ୍କର ।
ସପ୍ତର୍ଷି ତୁମକୁ ଯେବେ ଭେଟିବେ ଭବାନୀ,
ତେବେ ତ ଜାଣିବ ସତ୍ୟ ହେବ ଦେବ ବାଣୀ । ୪୪୭

ଆକାଶରୁ ଶୁଣି ଉମା ବିଧାତା ବଚନ,
ହେଲା ତନୁ ପୁଲକିତ ହରଷିତ ମନ ।
କହିଲି ସୁନ୍ଦର ଏହି ପାର୍ବତୀ ଚରିତ,
ଶୁଣ ଏବେ ଶିବଙ୍କର କଥା ସୁଲଳିତ । ୪୪୮

ଯେଉଁଦିନୁଁ ସତୀ କଲେ ଯଜ୍ଞେ ତନୁ ତ୍ୟାଗ,
ସେ ଦିନୁ ଶିବଙ୍କ ମନେ ଜନ୍ମିଲା ବିରାଗ ।
ଜପିଲେ ସତତ ରଘୁନାୟକଙ୍କ ନାମ,
ଶୁଣିଲେ ନାନାଦି ସ୍ଥାନେ ରାମ ଗୁଣଗ୍ରାମ । ୪୪୯

ଚିଦାନନ୍ଦ ସୁଖଧାମ, ମୋହ ମଦ କାମ,
ରହିତ ଯେ ଶିବ ସେହୁ ସଂସାରଭିରାମ ।
ଭଗବାନ ଶ୍ରୀରାମଙ୍କୁ ଧରି ହୃଦଗତେ,
ବିଚରଣ କଲେ ଏହି ନିଖିଳ ଜଗତେ । ୪୫୦

ମୁନିଙ୍କୁ ଦିଅନ୍ତି କାହିଁ ଜ୍ଞାନ ଉପଦେଶ,
କାହିଁ ରାମ ଗୁଣ ଗାନ କରନ୍ତି ଅଶେଷ ।
ସୁଜ୍ଞ ଶିବ ଯଦି ଅବା ନିଷ୍କାମ ଅନ୍ତର,
ତଥାପି ସେ ପ୍ରଭୁ ଭକ୍ତ ବିରହେ କାତର । ୪୫୧

ଏସନ ପ୍ରକାରେ ଗଲା ବହୁକାଳ ବିତି,
ରାମ ପଦେ ଉପୁଜିଲା ନିତ୍ୟ ନବ ପ୍ରୀତି ।
ଶିବଙ୍କ ଅତୁଳ ପ୍ରେମ ନିୟମ ନିରେଖି,
ହୃଦଗତ ସ୍ଥିର ଭକ୍ତି ଭାବଧାରା ଦେଖି । ୪୫୨

କୃତଜ୍ଞ କୃପାଳୁ ରୂପ ଶୀଳ-ନିକେତନ
ମହାତେଜା ରାମ ଉଭା ହୋଇ ତତକ୍ଷଣ
ଶିବଙ୍କୁ ପ୍ରଶଂସି ବହୁ କହିଲେ ଆଦରେ
ତୁମ ବିନା ଏ କଠୋର ବ୍ରତ କେ ଆଚରେ ? । ୪୫୩

ଶିବଙ୍କୁ ନାନାଦି ଭାବେ ରାମ ବୁଝାଇଲେ,
ପାର୍ବତୀଙ୍କ ଜନ୍ମ କଥା ସବୁ ଶୁଣାଇଲେ ।
ବିସ୍ତାରି କହିଲେ କୃପାନିଧି ରଘୁମଣି,
ପାର୍ବତୀଙ୍କ ଯେତେ ସବୁ ପବିତ୍ର କରଣୀ । ୪୫୪

ଆଉ କହିଲେ ସେ, 'ଶିବ ଶୁଣ ମୋ ବିନତି,
ମୋହଠାରେ ଥିଲେ ତବ ଶରଧା ଭକତି,
ତେବେ ତ ବିବାହ କର ଗିରିଜାଙ୍କୁ ଯାଇ,
ଏତିକ ମାଗୁଣି ମୋର ଆଉ କିଛି ନାହିଁ ।' ୪୫୫

"ଏ ନୁହେଁ ଉଚିତ ତବ,—କହିଲେ ମହେଶ,
ତଥାପି ନ ହୁଏ ଏଡ଼ ସ୍ୱାମୀଙ୍କ ଆଦେଶ ।
ପାଳିବା ପ୍ରଭୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି,
ହେ ନାଥ ପରମ ଧର୍ମ ଅଟଇ ମୋହରି । ୪୫୬

ଜନନୀ ଜନକ ଗୁରୁ ପ୍ରଭୁଙ୍କର ବାଣୀ,
ଅବିଚାରେ କରଣୀୟ ଶୁଭପ୍ରଦ ଜାଣି ।
ପ୍ରଭୁ ତୁମେ ସବୁମତେ ମୋର ହିତକାରୀ,
ତବାଦେଶ ଶିରୋଧାର୍ଯ୍ୟ ମୋର ନ ବିଚାରି ।" ୪୫୭

ଜ୍ଞାନ ଧର୍ମ ଭକ୍ତି ଭରା ଶିବଙ୍କ ବଚନ,
ଶୁଣି ତୋଷ ହେଲା ରଘୁପତିଙ୍କର ମନ ।
"ହେ ହର,—କହିଲେ ପ୍ରଭୁ, ପୂର୍ଣ୍ଣ ତବ ପଣ,
ଏବେ ହୃଦେ ରଖ ମୋର କହିବା ବଚନ ।" ୪୫୮

ଏହିପରି କହି ପ୍ରଭୁ ହେଲେ ଅନ୍ତର୍ଦ୍ଧାନ,
ସାଇତିଲେ ଶିବ ହୃଦେ ସେ ରୂପ ମହାନ ।

ତା' ପରେ ଶିବଙ୍କ ପାଶେ ସପ୍ତର୍ଷି ଆସିଲେ,
ମଧୁର ବଚନେ ପ୍ରଭୁ ତାହାଙ୍କୁ କହିଲେ— । ୪୫୯

"ପାର୍ବତୀଙ୍କ ପାଶେ ଯାଇ ଏବେ ତୁମ୍ଭେମାନେ,
ପ୍ରେମର ପରୀକ୍ଷା ନିଅ ଉଚିତ ବିଧାନେ ।
ଗିରୀଶଙ୍କୁ କହି ତାଙ୍କୁ ନିଅନ୍ତୁ ଭବନେ,
ଦୂର କରି ଅଛି ଯେତେ ସଂଶୟ ମୋ ମନେ ।" ୪୬୦

ଋଷିଏ ଦେଖିଲେ ଯାଇ ଗୌରୀଙ୍କୁ ଏମନେ,
ମୂର୍ତ୍ତିମନ୍ତ ହୋଇଛନ୍ତି ତପସ୍ୟା ଯେସନେ ।
ମୁନିଏ କହିଲେ, "ଶୁଣ ହେ ଶୈଳ କୁମାରୀ,
କମ୍ପା ଏ କଠୋର ତପ କର ସୁକୁମାରୀ ? ୪୬୧

କା'ରେ କର ଆରାଧନା କି ଅବା ଚାହୁଁଚ
ଆମକୁ ଫିଟାଇ ମର୍ମ କିଆଁ ନ କହୁଚ ?"
"ମୋତେ କହିବାକୁ ଲାଜ—କହିଲେ ପାର୍ବତୀ,
ହସିବେ କେବଳ ଶୁଣି ମୋର ମୂଢ଼ମତି । ୪୬୨

ମନ ହଠ ବଶ କିଛି ଶିକ୍ଷା ନ ଶୁଣଇ,
ଜଳ ଉପରେ ଭିତ୍ତି ତୋଳିବାକୁ ତ ଇଚ୍ଛଇ ।
ସତ ମଣି ନାରଦଙ୍କ କହିବା କଥାକୁ,
ପକ୍ଷ ବିନା ଇଚ୍ଛା କରୁଅଛି ଉଡ଼ିବାକୁ । ୪୬୩

ଦେଖ ମୁନିବରେ ମୋର ଅବିବେକ ପଣ,
ପତି ରୂପେ ମହେଶଙ୍କୁ ପାଇବାକୁ ମନ ।" ୪୬୪

ମୁନିଏ ଏ କଥା ଶୁଣି ହସି ପକାଇଲେ,
ଗିରି ଜାତ ତୁମ ଦେହ ବୋଲି ସେ କହିଲେ ।
କହିଲେ, 'ନାରଦ ଶିକ୍ଷା ମାନି କିଏ କୁହ,
ରହିଅଛି ଏ ସଂସାରେ ତା'ର ସୁଖ ଗୃହ ? । ୪୬୫

ସେ ତ ଉପଦେଶ ଦେଲା କେତେ ଦକ୍ଷ ସୁତେ,
ବାହୁଡ଼ିଲେ ନାହିଁ ଆଉ ସେହି ଘରମୁଖେ ।

ଚନ୍ଦ୍ରକେତୁ ଘର ପର୍ଯ୍ୟ ସେ ଉଜାଡ଼ ଦେଲା,
ହିରଣ୍ୟକଶିପୁର ତ ସେହି ଦଶା ହେଲା । ୪୭୬

ଶୁଣନ୍ତି ନାରଦ ଶିକ୍ଷା ଯେଉଁ ନରନାରୀ,
ଘର ଛାଡ଼ି ସେ ଅବଶ୍ୟ ହୁଅନ୍ତି ଭିକାରି ।
ମନ କପଟିଆ, ବେଶ ସାଧୁ ସନ୍ଥ ପ୍ରାୟେ,
ନିଜ ପରି ଅନ୍ୟଙ୍କୁ ସେ କରିବାକୁ ଚାହେଁ । ୪୭୭

ଏପରି କଥାକୁ ତା'ର କରି ଗୋ ବିଶ୍ୱାସ,
ତୁମେ ଚାହିଁ ପତି, ଯିଏ ସହଜେ ଉଦାସ ।
ଗୁଣହୀନ ଲଜ୍ଜାହୀନ କୁବେଶ କପାଳୀ,
ଅକୁଳ ଅଘର ନଗ୍ନ ଦେହେ ସାପ ମାଳି । ୪୭୮

କହ କେଉଁ ସୁଖ, ପାଇ ବର ଏହିପରି,
ଭଲ ଭୁଲିଅଛ ଠକ ଠକାମିରେ ପଡ଼ି ।
ପଞ୍ଚମତେ ସତୀଙ୍କୁ ସେ ବିଭା ହୋଇଥିଲେ,
ତାଙ୍କୁ ପରିତ୍ୟାଗ କରି ଶେଷେ ମରାଇଲେ । ୪୭୯

ଏବେ ସେ ନିଶ୍ଚିନ୍ତ ହୋଇ କରନ୍ତି ଶୟନ,
ଏ ସଂସାରେ ଭିକ୍ଷା ମାଗି କରନ୍ତି ଭୋଜନ ।
ଏକାକୀ ରହିବା ଯା'ର ସହଜ ସ୍ୱଭାବ,
କେବେ କେଉଁ ନାରୀ ତହିଁ ପାଇବ କି ଠାବ ? ୪୮୦

ଏବେ ବି ଆମର କଥା ମାନ ପାର୍ବତୀ,
ତୁମ ପାଇଁ ବାଛିଅଛୁ ଆମେ ଯୋଗ୍ୟ ପତି,
ସୁଶୀଳ ସୁଖଦ ଶୁଚି ଅତି ଶୋଭମାନ,
ଯାହାର ସୁଯଶ ଲୀଳା ବେଦ କରେ ଗାନ । ୪୮୧

ଦୂଷଣ ରହିତ ସେହି ସର୍ବ ଗୁଣରାଶି,
ଲକ୍ଷ୍ମୀପତି ବଇକୁଣ୍ଠ ପୁର ଅଧିବାସୀ ।
ଏହିପରି ବର ଆମେ ମିଳାଇବୁ ଆଣି ।"
ଶୁଣି ମୃଦୁ ହସ ହସି କହିଲେ ଭବାନୀ । ୪୮୨

"କହୁଅଛ ସତ୍ୟ, ମୋର ତନୁ ଗିରି ଜାତ,
ପଣ ନ ତେଜିବି ହେଉ ଶରୀର ନିପାତ ।
ପାଷାଣରୁ ଉତପନ୍ନ ହୁଅଇ ସୁବର୍ଣ୍ଣ,
ପୋଡ଼ିଲେ ବି ନ ତେଜେ ତା ସ୍ୱଭାବ ଲକ୍ଷଣ । ୪୭୩

ମୁନି ବାକ୍ୟ ନ ତେଜିବି କଦାପି ମାତର,
ଉଜୁଡ଼ୁ ଉନ୍ନତ ହେଉ ଘର ନାହିଁ ଡର ।
ବିଶ୍ୱାସ ନ ରଖେ ଯେହୁ ଗୁରୁଙ୍କ ବଚନେ,
ସୁଖ ସିଦ୍ଧି ନ ଲଭଇ ସେହି ତ ସ୍ୱପନେ । ୪୭୪

ମାନୁଛି ମୁଁ ଅବଗୁଣ ଘର ପଞ୍ଚେ ହର,
ସକଳ ଗୁଣର ଘର ହୁଅନ୍ତୁ ଶ୍ରୀଧର ।
ମାତ୍ରକ ଯା'ଠାରେ ଯା'ର ମନ ରମେ ଯାଇ,
ତାହାର ତା' ପାଖେ ସିନା କାର୍ଯ୍ୟ ରହିଥାଇ । ୪୭୫

ଆଗେ ମିଳିଥାନ୍ତ ଯେବେ ମୋତେ ମୁନିଗଣ,
ଶିରେ ଧରି ଶୁଣିଥାନ୍ତି ତୁମରି ବଚନ ।
ଏବେ ଜନ୍ମ କାଳୁ ଶିବେ ଅର୍ପିଛି ଜୀବନ,
ଦୋଷ ଗୁଣ ବାଛିବା କି ଆଉ ପ୍ରୟୋଜନ ? ୪୭୬

ଯଦି ତୁମେ ବହୁ ହଂ ହୃଦେ ଥାଅ ବନ୍ଧି,
ସମ୍ବନ୍ଧ ଯୋଡ଼ିବା ବିନା ନ ପାରୁଛ ରହି ।
ତେବେ ବହୁ ବର କନ୍ୟା ଅଛନ୍ତି ଜଗତେ,
ଆଳସ୍ୟ ନ ଥାଏ ଖେଳୁଆଡ଼ଙ୍କ ନିକଟେ । ୪୭୭

କୋଟି ଜନ୍ମ ଯାଏଁ ମୋର ଏ ପ୍ରତିଜ୍ଞା ପାଳି,
ବରିବି ଶିବଙ୍କୁ ଅବା ରହିବି କୁମାରୀ ।
ତ୍ୟାଗ ନ କରିବି କେବେ ମୁନିଙ୍କ ଆଦେଶ,
ଶତାଧିକ ବାର ପଞ୍ଚେ କହନ୍ତୁ ମହେଶ । ୪୭୮

କହିଲେ ପାର୍ବତୀ ପୁଣି-ତୁମ ପାଦେ ପଡ଼େ,
ଉତ୍ତର ହେଲଣି ଯାଅ ନିଜ ନିଜ ଘରେ ।"

ସୁଜ୍ଞାନୀ ମୁନିଏ ଦେଖି ଏ ପ୍ରୀତି ଅଟଳ,
କହିଲେ, "ଭବାନୀ ହେଉ ଜୟ ଗୋ ତୁମର । ୪୭୯

ତୁମେ ଅଟ ମାୟା ଆଉ ଶିବ ଭଗବାନ,
ଏ ନିଖିଳ ଜଗତର ପିତାମାତା ଜ୍ଞାନ ।"
ପଦେ ଶିର ନୋଇଁ ଗଲେ ଏହି ମୁନିଗଣ,
ବାରମ୍ବାର ପୁଲକିତ ହୁଏ ଅଙ୍ଗଘନ । ୪୮୦

ମୁନିବୃନ୍ଦେ ଯାଇ ହିମବନ୍ତେ ପଠାଇଲେ,
ସେ ବିନତି କରି ତାଙ୍କୁ ଗୃହେ ଅଣାଇଲେ ।
ପରେ ସପ୍ତଋଷି ଯାଇ ଶିବଙ୍କର ପାଶ,
ଶୁଣାଇଲେ ଯେତେ ସବୁ ପାର୍ବତୀ ବୃତ୍ତାନ୍ତ । ୪୮୧

ପାର୍ବତୀଙ୍କ ପ୍ରେମେ ଶିବ ଆନନ୍ଦେ ମଗନ,
ଋଷିଏ ହରଷେ ଗଲେ ନିଜର ଭବନ ।
ସୁଜ୍ଞାନୀ ଶଙ୍କର ତହୁଁ ମନ କରି ସ୍ଥିର,
ଧ୍ୟାନ ଆରମ୍ଭିଲେ ହୃଦେ ଚିନ୍ତି ରଘୁବୀର । ୪୮୨

ଏ କାଳେ ତାରକାସୁର ହୋଇଲା ପ୍ରବଳ,
ସୁବିକ୍ରମ ତେଜ ତା'ର ଶ୍ରମ ଭୁଜବଳ ।
ସବୁ ଲୋକ, ଲୋକପତି ହୋଇଲେ ବିଜିତ,
ଦେବତାଏ ହେଲେ ସୁଖ ସମ୍ପତ୍ତି ବଞ୍ଚିତ । ୪୮୩

ଅଜର ଅମର ସେ ତ ଜିତହେଲା ନାହିଁ,
ହାରିଗଲେ ଦେବେ କରି ଅନେକ ଲଢ଼ାଇ ।
ତହୁଁ ସେ ବ୍ରହ୍ମାଙ୍କୁ ଯାଇ କରିଲେ ପ୍ରାର୍ଥନା,
ଦେଖିଲେ ବିରଞ୍ଚି ଦେବେ ଅତି ଦୁଃଖମନା । ୪୮୪

ସଭିଙ୍କୁ ବୁଝାଇ ବିଧି କହିଲେ ଏସନ,
ଯେଉଁ ପରକାରେ ହେବ ତାରକ ନିଧନ ।
"ଶିବଙ୍କ ଔରସୁଁ ଜାତ ପୁତ୍ର କଲେ ରଣ,
କେବଳ ତାରକ ସିନା ଲଭିବ ମରଣ । ୪୮୫

ମୋର କଥା ଶୁଣି କର ଏଥିକୁ ଉପାୟ,
ଈଶ୍ୱର ତୁମକୁ ନିଶ୍ଚେ ହୋଇବେ ସହାୟ ।
ଦକ୍ଷ ଯଜ୍ଞେ ତନୁ ତ୍ୟାଗ କରିଥିଲେ ସତୀ,
ସେ ତ ଏବେ ଗିରି ଗୃହେ ଜନମି ଅଛନ୍ତି । ୪୮୬

ସେ ତପ କରନ୍ତି ଯେହ୍ନେ ଶିବ ହେବେ ପତି,
ଏଣେ ସବୁ ଛାଡ଼ି ଶିବ ସମାଧିରେ ଛ'ନ୍ତି ।
ଯଦ୍ୟପି ସଙ୍ଗତହୀନ କଠିନ ସମସ୍ୟା,
ତଥାପି କହୁଛି ମୁହିଁ ଶୁଣ ଏକ କଥା । ୪୮୭

କାମଙ୍କୁ ପଠାଅ ଏବେ ଶିବ ପାଶେ ଯାଉ,
ମହେଶ୍ୱରଙ୍କର ଚିତ୍ତେ କ୍ଷୋଭ ଉପୁଜାଉ ।
ତେବେ ଆମ୍ଭେ ଯାଇ ତହିଁ ପ୍ରଣାମ ଜଣାଇ,
ବିବାହ କରାଇ ଦେବା ତାଙ୍କୁ ବଳଆଇ । ୪୮୮

ଏ ପ୍ରକାରେ ହେଉ ଭଲ ତୁମ ଉପକାର",
ଏ ଅତି ଉତ୍ତମ, ସର୍ବେ କରିଲେ ସ୍ୱୀକାର ।
ତହୁଁ ଦେବତାଏ କଲେ ଆକୁଳ ଜଣାଣ,
ତହିଁ ଉଭା ହେଲେ ଝଷକେତୁ ପଞ୍ଚବାଣ । ୪୮୯

କହିଲେ ଦେବତା ସବୁ ନିଜର ବିପତ୍ତି,
ଶୁଣି ବିଚାରିଲେ ମନେ ମନେ ରତିପତି ।
କହିଲେ ସେ ହସି ହସି ଆହେ ଦେବଗଣ,
"ହେବନି ମୋ ଶୁଭ ଶମ୍ଭୁ ଦ୍ରୋହେ କଦାଚନ । ୪୯୦

ତଥାପି କରିବି ତୁମ କାର୍ଯ୍ୟ ସମାପନ,
ଉପକାର ଶ୍ରେଷ୍ଠ ଧର୍ମ—ଏ ବେଦ ବଚନ ।
ପରହିତ ଲାଗି ଯେହୁ ତେଜନ୍ତି ଶରୀର,
ପ୍ରଶଂସା କରନ୍ତି ତାଙ୍କୁ ସଦା ସନ୍ଥଧୀର ।" ୪୯୧

ଏହା କହି ସମସ୍ତଙ୍କୁ ନମସ୍କାର କରି,
ଚଳିଲେ ସାଥୀଙ୍କୁ ନେଇ ପୁଷ୍ପ ଧନୁ ଧରି ।

ଯିବା କାଳେ କାମଦେବ ଭାବନ୍ତ ହୃଦୟେ,
ଶିବଙ୍କୁ ବିରୋଧ କଲେ ମରଣ ନିଶ୍ଚୟେ । ୪୯୨

ଆପଣା ପ୍ରଭାବ ତହୁଁ ସେ କରି ବିସ୍ତାର,
ନିଜ ବଶୀଭୂତ କଲେ ସମସ୍ତ ସଂସାର ।
କୋପ କଲେ ଯେବେ କାମ ମକର-କେତନ,
କ୍ଷଣକେ ଛୁଟିଲା ବେଦ ମର୍ଯ୍ୟାଦା ବନ୍ଧନ । ୪୯୩

ଦୃଢ଼ ବ୍ରହ୍ମଚର୍ଯ୍ୟ ବ୍ରତ ନାନାବିଧ ସଂଯମ,
ଜ୍ଞାନ ଓ ବିଜ୍ଞାନ ଯେତେ ଧଇର୍ଯ୍ୟ ଧରମ ।
ସଦାଚାର ଜପ ଯୋଗ ବୈରାଗ୍ୟ ସାଥିରେ,
ବିବେକର ସେନାଗଣ ଭୟେ ପଳାଇଲେ । ୪୯୪

ସେହି ଅବସରେ ସର୍ବେ ଭୟେ ଲୁଚିଗଲେ,
ସଦ୍‌ଗ୍ରନ୍ଥ ରୂପକ ଗିରି ଗୁହାମାନଙ୍କରେ ।
ଜଗତେ ଗୃଞ୍ଜଳି ଖେଳେ କହନ୍ତି ସରବେ,
ବିଧାତା କି ହେବ କିଏ ରଖିବ ବା ଏବେ ।
ସହଚର ସାଥେ ଗଲା ବିବେକ ପଳେଇ,
ତା'ର ଯୋଦ୍ଧାଗଣ ଗଲେ ପଛଘୁଞ୍ଚା ଦେଇ ।
ଦୋ'ମୁଣ୍ଡିଆ ଲୋକ କିଏ ଯାହା ପାଇଁ ସ୍ଥିର,
କୋପ କରେ ହାତେ ଧରି ଫୁଲ ଧନୁଶର । ୪୯୫

ସ୍ତ୍ରୀ-ପୁରୁଷ ସଜ୍ଞାଧାରି ଯେତେ ଏ ଜଗତେ,
ଚରାଚର ଜୀବ ଥିଲେ ସେ କାଳେ ସମସ୍ତେ ।
ଉଜାଡ଼ି ଆପଣା ମାନ ମର୍ଯ୍ୟାଦା ସର୍ବସ୍ୱ,
କ୍ଷଣକେ ପାଲଟି ଗଲେ ହୋଇ କାମବଶ । ୪୯୬

ସଭିଙ୍କ ହୃଦୟେ ଜାଗେ କାମ ମନୋରଥ,
ଲତାଙ୍କୁ ନିରେଖି ତରୁଶାଖା ଅବନତ ।
ସରିତେ ମିଶିଲେ ଧାଇଁ ମହୋଦଧି ବୁକେ,
ସଙ୍ଗମ କରିଲେ ବନ୍ଧ-ତଡ଼ାଗ ଉତ୍ସୁକେ । ୪୯୭

ଜଡ଼ଙ୍କ ଅବସ୍ଥା ଯଦି ହୁଅଇ ଏପରି,
ଚେତନଙ୍କ କର୍ମ କିଏ ବର୍ଣ୍ଣିବ କପରି ?
ପଶୁ ପକ୍ଷୀ ଯେତେ ଜଳ ସ୍ଥଳ ନଭଚର,
ସର୍ବେ କାମବଶ ବେଳ କାଳ ନ ବିଚାରି । ୪୯୮

ବ୍ୟାକୁଳ ସକଳ ଜୀବେ କାମେ ଅନ୍ଧ ହୋଇ,
ଦିନ ରାତି ନ ଜାଣିଲେ ଚକୁଆ ଚକୋଇ ।
ମାନବ ଦାନବ ଦେବ ଗନ୍ଧର୍ବ ବେତାଳ,
ଯକ୍ଷ ଭୂତ ପ୍ରେତ ସର୍ପ ସର୍ବେ ମତୁଆଳ । ୪୯୯

ବଖାଣି ନ କହେ ଦଶା ଏସମାନଙ୍କର,
ସହଜେ ତ ଏ ସମସ୍ତେ କାମ ଅନୁଚର ।
କିନ୍ତୁ ମୁନି ମହାଯୋଗୀ ସିଦ୍ଧ ବଇରାଗୀ,
ହୋଇ କାମ ବଶ ହେଲେ ସାଧନା ବିରାଗୀ । ୫୦୦

ଯେଉଁଠି ଯୋଗୀଶ ତପୀ ସର୍ବେ କାମାତୁର,
ଛାର ପାମରଙ୍କ କଥା କହିଁବା କି ତୁଳ ?
ଜଗତକୁ ଦେଖୁଥିଲେ ଯିଏ ବ୍ରହ୍ମମୟ,
ଚରାଚରେ ଦେଖିଲେ ସେ ସବୁ ନାରୀମୟ ।
ଜଗତ ପୁରୁଷମୟ ନାରୀଙ୍କୁ ଦିଶଇ,
ପୁରୁଷଙ୍କୁ ନାରୀମୟ ସବୁ ଆଭାସଇ ।
ଦୁଇ ଘଡ଼ି ଯାଏଁ ସାରା ବ୍ରହ୍ମାଣ୍ଡ ବିସ୍ତରଇ,
କାମକୃତ ଏ କୌତୁକ ରହିଲା ଘନାଇ । ୫୦୧

କେହି ହେଲେ ହୃଦେ ଧୈର୍ଯ୍ୟ ନ ପାରିଲେ ଧରି,
ମନସିଜ ସଭିଙ୍କର ମନ ନେଲା ହରି ।
କେବଳ ଯାହାଙ୍କୁ ରକ୍ଷା କଲେ ରଘୁନାଥ,
ସେହି ନ ଲଭିଲେ ଯାହା କନ୍ଦର୍ପ ଆଘାତ । ୫୦୨

ଏ କାମ କୌତୁକ ହେଲା ଦୁଇ ଘଡ଼ି କାଳ,
ଏ ଭିତରେ ଶିବ ପାଶେ ପହଞ୍ଚିଲେ ମାର ।

ଶିବଙ୍କୁ ନିରେଖି କାମ ଭୟେ ଗଲେ ଡରି,
ସେତେବେଳେ ସାରା ସୃଷ୍ଟି ନିଷ୍ଫଳ ଯେପରି । ୫୦୩

ସୁଖୀ ହେଲେ ଚରାଚର ଜୀବ ସେହିକାଳେ,
ମଦ ନିଶା ଅନ୍ତେ ଯେହ୍ନେ ହୁଅନ୍ତି ମାତାଲେ ।
ରୁଦ୍ର ରୂପ ଦେଖି ଭୟ କଲେ ପଞ୍ଚବାଣ,
ଦୁର୍ଦ୍ଧର୍ଷ ଦୁର୍ଗମ ଜାଣି ଶିବ ଭଗବାନ । ୫୦୪

ଫେରିବାକୁ ଲଜ୍ୟା, କରି ନ ହୁଅଇ କିଛି,
ମରଣ ନିଶ୍ଚିତ ଜାଣି ଉପାୟେକ ରଚି ।
ପ୍ରକାଶିଲେ ଋତୁରାଜ ବସନ୍ତ ତୁରିତ,
ହେଲା ନବ ନବ ତରୁ ଲତା କୁସୁମିତ । ୫୦୫

ବାପିକା ତଡ଼ାଗ ପୁଣି ବନ ଉପବନ,
ସକଳ ଦିଗରେ ହେଲେ ରମ୍ୟ ସୁଶୋଭନ ।
ଚଉଦିଗୁ ଅନୁରାଗ ବନ୍ୟା ଉଚ୍ଛୁଳଇ,
ଦେଖି ମଡ଼ା ମନେ ମଧ କାମନା ଜାଗଇ । ୫୦୬

ମଡ଼ାଙ୍କ ମନରେ ଜାଗେ ମଦନ ଜୁଆର,
ବନ ଉପବନେ ଶୋଭା ଫୁଟେ ଅନିବାର ।
ସୁଗନ୍ଧ ଶୀତଳ ମନ୍ଦ ମଳୟ ପବନ,
କାମାନଳ ସଖା ତୁଲ୍ୟ ବଢ଼ଇ ଯେସନ ।
ଶୋଭିଲେ ସରସୀ ବୁକେ ବିକଚ କମଳ,
ମଧୁ ଗୁଞ୍ଜରଣ କଲେ ଭୃଙ୍ଗ ଦଳ ଦଳ ।
ଗୀତ ଗାଇ ଗାଇ ସୁର ଅପସରାଗଣ,
ପ୍ରକୃତିର ତାଳେ ତାଳେ କରିଲେ ନର୍ତ୍ତନ । ୫୦୭

ସେନା ସହଚର ସହ ମକର-କେତନ,
କୋଟିଏ ପ୍ରକାରେ ଲୀଳା କଲେ ବିରଚନ ।
ଅଟଳ ସମାଧି ସନ୍ତୁ ତଥାପି ନ ଟଳେ,
ତହୁଁ କାମ ହୃଦୟରେ ବହୁ କୋପ କଲେ । ୫୦୮

ରସାଳ ବିଟପେ ଦେଖି ଏକ ଗୁରୁ ଶାଖ,
କୋପେ ଚଢ଼ିଗଲେ କାମ ଦେଖାଇ ପ୍ରତାପ ।
କୁସୁମ ବଶିଖେ ଖଚି ତାଙ୍କ ପଞ୍ଚଶର,
କର୍ଣ୍ଣପାଏ ଆକର୍ଷିଲେ ଲକ୍ଷ୍ୟ କରି ସ୍ମର । ୫୦୯

ଗୁଡ଼ନ୍ତେ ବିଷମ ଶର ହୃଦୟେ ବାଜିଲା,
ଜାଗିଲେ ଶଙ୍କର ତାଙ୍କ ସମାଧି ଭାଜିଲା ।
ମହେଶଙ୍କ ମନେ କ୍ଷୋଭ ଉପୁଜିଲା ଅତି,
ନେତ୍ର ମେଲି ଚଉଦିଗେ ଚାହୁଁ ନଥେଖନ୍ତି । ୫୧୦

ପଲ୍ଲବ ଉହାଡ଼େ ଦେଖି କାମକୁ ଶଙ୍କର,
କ୍ରୁଦ୍ଧ ହେଲେ, ତିନି ଲୋକ ଭୟେ ଥରହର ।
ତାହା ପରେ ମେଲି ଶିବ ତୃତୀୟ ନୟନ,
ଗୃହିଁଦେଲା ମାତ୍ରେ ଭସ୍ମ ହୋଇଲେ ମଦନ । ୫୧୧

ଜଗତରେ ପଡ଼ିଗଲା ଘୋର ହାହାକାର,
ଦେବତା ଡରିଲେ, ଦୈତ୍ୟେ ଆନନ୍ଦ ଅପାର ।
କାମ ସୁଖ ସ୍ମରି ଚିନ୍ତା କଲେ କାମୀଜନେ,
ସାଧକ ଯୋଗୀଏ କଣ୍ଟା ଶୂନ୍ୟ ହେଲେ ମନେ । ୫୧୨

ଯୋଗୀଗଣେ ନିଷ୍କଣ୍ଟକ, କାମ-ବଧୂ-ରତି,
ମୂର୍ଚ୍ଛିତ ହୋଇଲେ ଶୁଣି ପତିଙ୍କର ଗତି ।
ସେ କାନ୍ଦି ବୋବେଇ କେତେ କାରୁଣ୍ୟ ବିକଳେ,
ଉପଗତ ହେଲେ ଯାଇ ଶିବଙ୍କ ଆଗରେ ।
ହାତଯୋଡ଼ି ଉଭା ହୋଇ ଅନେକ ପ୍ରକାରେ,
ମିନତି କରିଲେ ରତି ପ୍ରେମ ସହକାରେ ।
ଆଶୁତୋଷ କୃପାମୟ ଅବଳା କଷଣେ,
କହିଲେ ସାନ୍ତ୍ୱନା ଦେଇ କୋମଳ ବଚନେ । ୫୧୩

"ବହିବେ ଅନଙ୍ଗ ନାମ ଆଜଠୁଁ ତୋ ପତି,
ଅଦେହେ ବ୍ୟାପିବେ ସାରା ଜଗତେ ଗୋ ରତି ।

ଶୁଣ ଏବେ ତାଙ୍କ ଭୁଲେ ତୋହର ମିଳନ—
ପ୍ରସଙ୍ଗ ମୁଁ କହୁଅଛି ଥୟ କର ମନ । ୫୧୪

ଯଦୁ ବଂଶେ କୃଷ୍ଣ ଯେବେ ହେବେ ଅବତାର,
ହରଣ କରିବା ପାଇଁ ଅବନୀର ଭାର ।
ତହିଁ ତାଙ୍କ ପୁତ୍ର ରୂପେ ଜନ୍ମିବେ ତୋ ପତି,
ମୋ କଥା ଅନ୍ୟଥା କେବେ ନୋହିବ ଗୋ ରତି ।" ୫୧୫

ରତି ଗୃହେ ଗଲେ ଶୁଣି ଶଙ୍କରଙ୍କ ବାଣୀ,
ଅପର ପ୍ରସଙ୍ଗ ଏବେ କହୁଛି ବଖାଣି ।
ସରଗେ ଦେବତାଗଣ ପାଇ ଏ ଖବର,
ବ୍ରହ୍ମା ସହ ଗଲେ ସର୍ବେ ବୈକୁଣ୍ଠେ ସତ୍ୱର । ୫୧୬

ବ୍ରହ୍ମା ବିଷ୍ଣୁ ସହ ଯେତେ ଅନ୍ୟ ଦେବମାନେ,
ଗଲେ କୃପା-ନିକେତନ ଶିବ ସନ୍ନିଧାନେ ।
ପ୍ରଶଂସା କରିଲେ ସର୍ବେ ପୃଥକ ପୃଥକ,
ଶୁଣି ଶଶିମୌଳୀ ହେଲେ ଅଶେଷ ପୁଲକ । ୫୧୭

କହିଲେ କରୁଣା ସିନ୍ଧୁ ଶିବ ବୃଷକେତୁ,
'ଦେବତାଏ କହ ଏଥି ଆସିଲ କି ହେତୁ ?'
କହିଲେ ବିଧାତା ତାଙ୍କୁ, "ତୁମେ ଅନ୍ତର୍ଯାମୀ,
ତଥାପି ଭକ୍ତିରେ କରେ ପ୍ରାର୍ଥନା ହେ ସ୍ୱାମୀ । ୫୧୮

ହେ ଶଙ୍କର ଦେବତାଙ୍କ ହୃଦ ଅନ୍ତପୁରେ,
ଏବେ ଅଦଭୁତେ ଅତି ଉତ୍ସାହ ଉଛୁଳେ ।
ଗୃହାନ୍ତ ସେ ଦେଖିବାକୁ ନିଜ ନେତ୍ର ଭରି,
ଆହେ ପ୍ରଭୁ ବୃଷକେତୁ ବିବାହ ତୁମରି । ୫୧୯

କାମ-ମଦ-ନାଶୀ କର କିଛି ଏହିପରି,
ନେତ୍ର ଭରି ଏ ଉତ୍ସବ ଦେଖିବୁ ଯେପରି ।
କନ୍ଦର୍ପକୁ ଜାଳି, ଦେଇ ରତିକୁ ଯେ ବର,
ତହିଁରେ ବହୁତ ଭଲ କଲ ମହେଶ୍ୱର । ୫୨୦

ପ୍ରଥମେ ଶାସନ କରି ପରେ ଦୟା ଭାବ,
ଦେଖାଇବା ସ୍ୱାମୀଙ୍କର ସହଜ ସ୍ୱଭାବ ।
କଠିନ ତପସ୍ୟା କରି ଅତ୍ୟନ୍ତ ପାର୍ବତୀ,
ଏବେ ଦୟାକରି ତାଙ୍କୁ ହଅନ୍ତୁ ସମ୍ମତ ।" ୫୨୧

ବିଧି ବଚନକୁ ମଣି ପ୍ରଭୁଙ୍କ ଆଦେଶ,
"ଏହିପରି ହେବ" ବୋଲି କହିଲେ ମହେଶ ।
ସେତେ ଦେବଗଣ ତହୁଁ ଦୁନ୍ଦୁଭି ବଜାଇ
କଲେ ଜୟକାର କହି ଜୟ ସୁର ସାଇଁ । ୫୨୨

ସପ୍ତର୍ଷି ଆସିଲେ ତହିଁ ସେହି ଶୁଭକ୍ଷଣେ,
ପଠାଇଲେ ବିଧି ତାଙ୍କୁ ଗିରୀଶ ଭବନେ ।
ପ୍ରଥମେ ସେମାନେ ଯାଇ ଉମାଙ୍କ ନିକଟେ,
କହିଲେ ମଧୁରେ ଛଳ ବଚନ କପଟେ । ୫୨୩

"ଆମ୍ଭର କହିବା କଥା ଶୁଣିଲ ତ ନାହିଁ,
କରିଲ ଯା' କହିଥିଲେ ନାରଦ ଗୋସାଇଁ ।
ତୁମର ପ୍ରତିଜ୍ଞା ଏବେ ମିଥ୍ୟା ହେଲା ଜାଣ,
ମହାଦେବ ଭସ୍ମ କରି ଦେଲେ ପଞ୍ଚବାଣ ।" ୫୨୪

ମାସ ପାରାୟଣ, ତୃତୀୟ ବିଶ୍ରାମ ।

# ଚାରି

ପାର୍ବତୀ କହିଲେ ଶୁଣି ଅଳ୍ପ ଅଳ୍ପ ହସି,
"ଉଚିତ କହିଲ ତୁମେ ହେ ଜ୍ଞାନୀ ମହର୍ଷି ।
ତୁମେ ଜାଣିବାରେ ଶିବ କାମକୁ ଜାଳିଲେ,
ସତେ କି ସେ ଆଜଯାଏଁ କାମାଧୀନ ଥିଲେ । ୫୨୫

କିନ୍ତୁ ମୁଁ ବୁଝିଛି ଶିବ ସଦାକାଳେ ଯୋଗୀ,
ଅଜନ୍ମା ଅନିନ୍ଦ୍ୟ ସେ ତ ଅକାମ ଅଭୋଗୀ ।
ଏହିପରି ଜାଣି ତାଙ୍କ ସେବା ପ୍ରୀତି ଭରେ,
ଯତ୍ନ କରିଥାଏ ମନ କର୍ମ ବଚନରେ । ୫୨୬

ତେବେ ହେ ମୁନୀଶ ଶୁଣ ପ୍ରତିଜ୍ଞା ମୋହର,
ସତ୍ୟ କରିବେ ତ କୃପାନିଧି ମହେଶ୍ୱର ।
ତୁମେ ଯା' କହୁଛ ଶିବ ଭସ୍ମ କଲେ ସ୍ମର,
ତାହା ଅତି ଅବିବେକ ଅଟଇ ତୁମ୍ଭର । ୫୨୭

ଅନଳର ଉତ୍ତାପ ଯେ ସହଜ ସ୍ୱଭାବ,
ହିମ ତା'ର ପାଶେ କରି ପାରେ ନାହିଁ ଠାବ ।
ନିକଟକୁ ଗଲେ ସେ ତ ଭଜଇ ବିଲୟ,
ତେସନେ କନ୍ଦର୍ପ ଶିବ ସମ୍ମୁଖେ ନିଶ୍ଚୟ ।" ୫୨୮

ମୁନିଏ ହରଷ ହେଲେ ଶୁଣି ଏ ବଚନ,
ଦେଖି ଏ ବିଶ୍ୱାସ ପୁଣି ପ୍ରୀତି ଅକଳନ ।
ଉମାଙ୍କୁ ପ୍ରଣାମ କରି ମୁନୀଶ୍ୱରମାନେ,
ବିଜେ କଲେ ତହୁଁ ହିମ ଗିରି ସନ୍ନିଧାନେ । ୫୨୯

ଗିରୀଶଙ୍କୁ ଶୁଣାଇଲେ ସକଳ ଚରିତ,
ମଦନ ଦହନେ ସେହି ହୋଇଲେ ବ୍ୟଥିତ ।
ରତି ବରଦାନ କଥା କହିବାରୁ ପୁଣି,
ଗିରିରାଜ ହେଲେ ଅତି ଆନନ୍ଦିତ ଶୁଣି । ୫୩୦

ଶିବଙ୍କ ପ୍ରଭୁତ୍ୱ ହିମବାନ ଭାବି ମନେ,
ଆଦରେ ଡକାଇ ନେଲେ ମୁନି ଋଷିଗଣେ ।
ଶୁଭ ଦିନ ସୁନକ୍ଷତ୍ର ଶୁଭ ଘଡ଼ି ବେଳା,
ବେଦ ବିଧାନରେ ସବୁ ଲଗ୍ନ ସ୍ଥିର ହେଲା । ୫୩୧

ସପ୍ତର୍ଷିଙ୍କୁ ସେ ପତ୍ରିକା ଦେଇ ନରପତି,
ସବିନୟେ କଲେ ତାଙ୍କ ଚରଣେ ମିନତି ।
ବିଧାତାଙ୍କୁ ଦେଲେ ନେଇ ପତ୍ରିକା ସେମାନେ,
ପାଠ କଲା କାଳେ ପ୍ରୀତି ନ ସମ୍ଭାଳେ ପ୍ରାଣେ । ୫୩୨

ବିଧି ଲଗ୍ନ ପଢ଼ି ସମସ୍ତଙ୍କୁ ଶୁଣାଇଲେ,
ଶୁଣି ସବୁ ସୁର ମୁନି ହରଷ ହୋଇଲେ ।
ଆକାଶୁ ବରଷେ ଫୁଲ ବାଜା କେତେ ବାଜେ,
ମଙ୍ଗଳ କଳସମାନ ଚଉଦିଗେ ସାଜେ । ୫୩୩

ସବୁ ଦେବେ ସଜାଇଲେ ନିଜର ବାହନ,
ସୁସଜ୍ଜିତ କଲେ ପୁଣି ନାନାବିଧ ବିମାନ ।
ମଙ୍ଗଳ ଶକୁନ କେତେ ଦିଶିଲା ଗଗନେ,
ଗାଇଲେ ମଙ୍ଗଳ ଗୀତ ଅପସରାଗଣେ । ୫୩୪

ଶିବଙ୍କ ଶୃଙ୍ଗାର କଲେ ତାଙ୍କ ଶମ୍ଭୁଗଣେ,
ଜଟାର ମୁକୁଟେ ଅହି ଖଞ୍ଜିଲେ ଯତନେ ।
ଦେହେ ଭସ୍ମ ବୋଳା ବ୍ୟାଘ୍ର ଛାଲ ଯେ ବସନ,
ପିନ୍ଧାଇଲେ ସେହୁ ସର୍ପକୁଣ୍ଡଳ କଙ୍କଣ । ୫୩୫

ଲଲାଟେ ଚନ୍ଦ୍ରମା, ଶିରେ ଗଙ୍ଗା ସୁଶୋଭିତ,
ତିନି ଗୋଟି ନେତ୍ର ପୁଣି ସର୍ପ ଉପବୀତ ।

କଣ୍ଠେ ବିଷ, ବକ୍ଷେ ଲମ୍ବେ ନର ମୁଣ୍ଡ ହାର,
ଅଶୁଭ ସେ ବେଶ ସିନା ଶୁଭ କୃପାଗାର । ୫୩୬

ହସ୍ତରେ ତ୍ରିଶୂଳ ଖର ଡମ୍ବରୁ ଶୋଭଇ,
ଗଲେ ସେ ବୃଷଭ ଚଢ଼ି, ବାଦ୍ୟ ନନାଦଇ ।
ଦେଖି ଦେବାଙ୍ଗନା ହସି ହେଲେ କୁହାକୁହି,
ଏହି ବର ଯୋଗ୍ୟ କନ୍ୟା ଜାଣେ ନାହିଁ ମୁହିଁ । ୫୩୭

ବ୍ରହ୍ମା ବିଷ୍ଣୁ ଆଦି ଯେତେ ଦେବତା ସକଳେ,
ଯେଝା ବାହନରେ ଗଲେ ବରଯାତ୍ରୀ ଦଳେ ।
ସକଳ ପ୍ରକାରେ ଦେବକୁଳ ଶୋଭମାନ,
ଶୋଭାଯାତ୍ରା କିନ୍ତୁ ନୁହେଁ ଏ ବର ସମାନ । ୫୩୮

ବିଷ୍ଣୁ ଭଗବାନ ଡାକ ସବୁ ଦିଗପାଳେ,
କହିଲେ ଅଳପ ହସି ପରମ ଶ୍ରଦ୍ଧାରେ ।
"ତୁମେମାନେ ଏବେ ସବୁ ନିଜ ନିଜ ଦଳେ,
ଅଲଗା ଅଲଗା ହୋଇ ଚାଲ କୁତୂହଳେ । ୫୩୯

ବର ଅନୁରୂପ ନୁହେଁ ବରଜାତି ଭାଇ,
କହିଲେ ହସିତ ହେବା ପର ପୁରେ ଯାଇ ।"
ବିଷ୍ଣୁଙ୍କ କଥାରେ ତହୁଁ ଦେବତା ନିକରେ,
ହସି ନିଜ ସେନା ସହ ଭିନ୍ନ ହୋଇ ଗଲେ । ୫୪୦

ମୁରୁକି ହସିଲେ ମହାଦେବ ମନେ ମନେ,
ଭାବିଲେ ହରିଙ୍କ ଥଟ୍ଟା ଯାଉନି କେସନେ ।
ପ୍ରିୟଙ୍କର ପ୍ରିୟ କଥା ଯହୁଁ ସେ ଶୁଣିଲେ,
ଭୃଙ୍ଗୀଙ୍କୁ ପଠାଇ ଗଣେ ଡକାଇ ଆଣିଲେ । ୫୪୧

ଶିବଙ୍କ ଆଦେଶ ପାଇ ଆସିଲେ ସକଳେ,
ପ୍ରଣାମ କରିଲେ ପ୍ରଭୁ ଚରଣ କମଳେ ।
ନାନାବିଧ ବାହନ ସହ ନାନାବିଧ ବେଶ,
ନିଜ ସମାଜକୁ ଦେଖି ହସିଲେ ମହେଶ । ୫୪୨

କଏ ମୁଖ ହୀନ, ବହୁ ମୁଖ ବା କାହାର,
କର ପଦ ଶୂନ୍ୟ, ବହୁ କର ପଦ କା'ର ।
ବହୁତ ନୟନ କା'ର କଏ ନେତ୍ର ହୀନ,
କଏ ମୋଟା ସୋଟା କା'ର ତନୁ ଅତି କ୍ଷୀଣ । ୫୪୩

କେ ଦୁର୍ବଳ କଏ ମୋଟା ଧରି ନାନାବେଶ,
କେହି ତ ପବିତ୍ର କେହି ଅପବିତ୍ରେ ଶେଷ ।
ବିକଟାଳ ବେଶ ଭୂଷା ହସ୍ତରେ କପାଳ,
ସର୍ବାଙ୍ଗରେ ତାଜା ରକ୍ତ ବହେ ଧାର ଧାର । ୫୪୪

ଶୂକର ଶୃଗାଳ ଶ୍ୱାନ ଗଧ ମୁଖ ସମ,
ସଭିଙ୍କର ମୁଖାକୃତି ଦିଶଇ ବିଷମ ।
ଗଣମାନଙ୍କର ଏହି ବେଶ ଅଗଣିତ,
ଗଣନା କରିବ କଏ ଲାଗେ ଆଚମ୍ବିତ ।
ପିଶାଚ ଯୋଗିନୀ ଭୂତ ପ୍ରେତ ଦଳ ଦଳ,
ବରଯାତ୍ରୀ ସର୍ବେ ତାଙ୍କୁ ବର୍ଣ୍ଣିବା ଦୁଷ୍କର । ୫୪୫

ଏହି ଭୂତ ପ୍ରେତଗଣ ବିଚିତ୍ର ରୀତିରେ,
ନାଚି ନାଚି ଗୀତ ଗାଇ ଚାଲନ୍ତି ଖୁସିରେ ।
ଦେଖିବାକୁ ରୂପ ବେଶ ବେଢ଼ଙ୍ଗିଆ ଅଛି,
ବିଚିତ୍ର ଢଙ୍ଗରେ ପୁଣି ବଚନ କହନ୍ତି । ୫୪୬

ଯେପରି ବରକୁ ସେହିପରି ବରଯାତ୍ରି,
ନାନା କଉତୁକ କରି ବାଟରେ ଯାଆନ୍ତି ।
ଏଣେ ହିମାଳୟ କଲେ ମଣ୍ଡପ ରଚନା,
ଅତି ମନୋହର କରି ନ ହୁଏ ବର୍ଣ୍ଣନା । ୫୪୭

ଜଗତରେ ଥିଲେ ଯେତେ ଶଇଳ ଭୂଧର,
ସାନ ବଡ଼ ଆଦି କହି ନୋହିବ ସକଳ ।
ସାଗର ସରସୀ ନଦୀ ବନ ଉପବନ
ସମସ୍ତଙ୍କୁ ହିମଗିରି କଲେ ନିମନ୍ତ୍ରଣ । ୫୪୮

କାମରୂପ ସେହି ଧରି ଇଚ୍ଛା କଳେବର,
ସଙ୍ଗେ ଘେନି ସୁସମାଜ ନିଜ ନାରୀବର ।
ଚଳିଲେ ସକଳେ ଗିରି-ନୃପତି ଭବନେ,
ଗାଇ ସୁମଙ୍ଗଳ ଗୀତ ପ୍ରୀତି ଭରି ମନେ । ୫୪୯

ଆଗରୁ ସଜାଇଥିଲେ ଗିରି ବହୁ ବାସ,
ଯଥା ଯୋଗ୍ୟ ସ୍ଥାନେ ସର୍ବେ କରିଲେ ନିବାସ ।
ନିରେଖି ସେ ପୁର ଶୋଭା ଅତି ମନୋହର,
ବିରଞ୍ଚି ନୈପୁଣ୍ୟ ତୁଚ୍ଛ ଲାଗଇ କେବଳ । ୫୫୦

ପୁର ଶୋଭା ଦେଖି ମନେ ଲାଗେ ଏହିପରି,
ବିଧାତା ପଟୁତାହୀନ, ନ ହୋଇବ ସରି ।
ସରିତ ସରସୀ କୂପ ବନ ଉପବନେ,
ଶୋଭା ଶିରୀ ଲୋଟେ କଏ ବର୍ଣ୍ଣିବ କେସନେ । ୫୫୧

ଭବନେ ଭବନେ ଶୋଭେ ମଙ୍ଗଳ ତୋରଣ,
ଧ୍ୱଜା ପତାକାରେ ପ୍ରତି ପୁର ସୁଶୋଭନ ।
ସୁନ୍ଦର ଚତୁର ନର ନାରୀ ଛବି ଦେଖି
ମୁନି ମନ ବିମୋହିତ କେ ପାରିବ ଲେଖି । ୫୫୨

ଯେଉଁ ପୁରେ ଅବତାର ସ୍ୱୟଂ ଜଗଦମ୍ବା,
ସେ ନଗର ବର୍ଣ୍ଣନା କେ କରିପାରେ ଅବା ।
ଋଦ୍ଧି ସିଦ୍ଧି ସୁଖ ବିତ୍ତ ନିତି ନୂଆ ଭାବେ,
ବଢ଼ି ବଢ଼ି ଚାଲିଥାଏ ତାଙ୍କରି ପ୍ରଭାବେ । ୫୫୩

ଶୁଣି ବରଯାତ୍ରୀ ଆସି ହେଲେ ପୁର ପାଶେ,
କୋଳାହଳେ ପୁର ଶୋଭା ଅଧିକ ପ୍ରକାଶେ ।
ସଜବାଜ ହୋଇ ସାଜି ବିବିଧ ବାହନ,
ସାଦରେ ସ୍ୱାଗତ ପାଇଁ ଚଳିଲେ ତତ୍‌କ୍ଷଣ । ୫୫୪

ହରଷିତ ହେଲେ ଦେବ-ସେନାଙ୍କୁ ନିରେଖି,
ଲଭିଲେ ଅପାର ସୁଖ ଶ୍ରୀହରିଙ୍କୁ ଦେଖି ।

କନ୍ତୁ ଶିବ ସମାଜକୁ ଯେ କାଳେ ଦେଖିଲେ,
ଭୟରେ ବାହନ ଯେତେ ତହୁଁ ପଳାଇଲେ । ୫୫୫

ଧୈର୍ଯ୍ୟ ଧରି ସୁଚତୁରେ ରହିଲେ ମାଣକ,
ପ୍ରାଣ ଘେନ ପଳାଇଲେ ସକଳ ବାଳକ ।
ଘରେ ଫେରିବାରୁ ପିତା ମାତା ପଚାରିଲେ
ଥରେ ଯାଇ ଦେହ ସେହୁ ସଭୟେ କହିଲେ । ୫୫୬

"କି କଥା କହିବୁ କିଛି କହି ନ ହୁଅଇ,
ବରଜାତି ନୁହେଁ ଯମସେନା ସେ ଆସଇ ।
ବସିଚ ବାଇଆ ବର ଷଣ୍ଢ ଉପରେ,
ସାପ ମୁଣ୍ଡମାଳ ଭସ୍ମ ଭୂଷଣ ଦେହରେ । ୫୫୭

ଦେହେ ବୋଳା ଭସ୍ମ ସାପ କପାଳ ଭୂଷଣ,
ଉଲଗ୍ନ ସେ ଜଟାଧାରୀ ହରଇ ଖିଷଣ ।
ସଙ୍ଗେ ଭୂତ ପ୍ରେତ ଖିମ ମୁଖା ନଶାଚର,
ବିକଟାଳ ପୈଶାଚ ଯେ ଯୋଗିନୀ ନିକର ।
ଦେଖି ବରଜାତି ଯିଏ ରହିବ ଜୀବନେ,
ବଡ଼ ସୁଖେ ସେ ଦେଖିବ ବିବାହ ନୟନେ ।" ୫୫୮

ସେ ଶିବ ସମାଜ ଜାଣି ସବୁ ପିତା ମାତା,
ମୁରୁକ ମୁରୁକ ହସି କହିଲେ ଏ କଥା—
"ନ ଡର ହୁଅରେ ପିଲେ ଡରୁଛ କମ୍ପାଇ,
ଜାଣ ସେମାନଙ୍କୁ ଡରିବାର କିଛି ନାହିଁ ।" ୫୫୯

ବରଯାତ୍ରୀ ଦଳେ ଅଭ୍ୟର୍ଥନାକାରୀଗଣ,
ପାଶ୍ଚେଛି ଅଣାଇ ଦେଲେ ସୁନ୍ଦର ଭବନ ।
ମଙ୍ଗଳ ଆଳତି ମେନା ସଜାଇଲେ କ୍ଷଣେ,
ଗାଇଲେ ମଙ୍ଗଳ ଗୀତ, ସଙ୍ଗେ ନାରୀଗଣେ । ୫୬୦

ଶୋଭଇ କନକ ଥାଳ ମନୋହର କରେ,
ଶିବ ବନ୍ଦାପନା ପାଇଁ ଗଲେ ହର୍ଷ ଭରେ ।

ଦେଖି ଶିବ ରୁଦ୍ର ରୂପ ସଜମା ନକର,
ଅତି ଭୟ କଲେ ହେଲ ବ୍ୟଥିତ ଅନ୍ତର । ୫୬୧

ଭୟରେ ପଳାଇ ଯାଇ ପଶିଲେ ଭବନେ,
ରହିଲେ ମହେଶ ଯାଇ ବର-ନିକେତନେ ।
ମେନାଙ୍କ ହୃଦୟେ ଜାତ ହେଲ ଦୁଃଖ ଅତି,
ଡାକ୍ତି ସିଏ ନଜ ପାଶେ ଉକାଇ ପାବଣ୍ଟା । ୫୬୨

ବାତ୍ସଲ୍ୟ ମମତା ଯେନ କୋଲରେ ବସାଇ,
ନୀଳ-ସରସିଜ-ନେତ୍ର ଲୋତକ ଗଡ଼ାଇ ।
କହିଲେ, "ଏ ରୂପ ତୋତେ ଦେଲ ଯେ ବିରଞ୍ଚି,
ସେ ଜଡ଼ ବାଉଳ ବର କେମନ୍ତେ ଖଞ୍ଜିଅଛି ? ୫୬୩

ଯେ ବିଧି ତୋ ଅଙ୍ଗେ ଦେଲେ ଏତେ ଶୋଭା ଭରି,
ତୋ ବରକୁ ବାଉଳ ସେ କରିଲେ କପରି ?
ଯେ ଫଳ ଫଳିବା କଥା କଳ୍ପତରୁବରେ,
ସେ ଫଳ ଫଳିଲା କେମନ୍ତେ ବାବୁଲ ଗଛରେ ?
ତୋତେ ଧରି ପଛେ ମୁହିଁ ପାହାଡ଼ୁ ଡେଇଁବି,
ଅଥବା ଅନଳେ ପଶି ଜୀବନ ହାରିବି ।
ମରିବି ସମୁଦ୍ରେ ବୁଡ଼ି ଛାଡ଼ି ଯାଉ ଘରି,
ସଂସାରେ ଅକୀର୍ତ୍ତି ହେଉ ପଛେ, ନାହିଁ ଡର ।
କିନ୍ତୁ ବଞ୍ଚି ଥାଉ ଥାଉ ମୁହିଁ ଏ ଜୀବନେ,
ଏ ବିଭା କରାଇ ଦେବି ନାହିଁ କଦାଚନେ ।" ୫୬୪

ଦେଖି ଗିରନାରୀ ଦୁଃଖ ଅବଳା ସକଳ,
ବିକଳେ କାନ୍ଦିଲେ ଚିନ୍ତି ଉମା କର୍ମଫଳ ।
ବାହୁନିଲେ ମାତା କରି ଆକୁଳେ ରୋଦନ,
ଅଲଅଳ ଉମା ସ୍ନେହ କଲେ ସୁମରଣ । ୫୬୫

ନାରଦଙ୍କ କେଉଁ କଥା ଦେଲ ମୁଁ ବିଗାଡ଼ି,
କାହିଁକି ମୋ ସୁନାଘର ଦେଲେ ସେ ଉଜାଡ଼ି ।

ଉମାଙ୍କୁ ଏପରି ବୁଦ୍ଧି ଦେଲେ ସେ କାହିଁକି,
କହଁ ତପ କରାଇଲେ ପାଗଳ ପାଇଁକି ? ୫୬୬

ସଂସାରରେ କାହାଠି ତା'ର ନାହିଁ ମୋହ ମାୟା,
ସଦା ଉଦାସୀନ, ନାହିଁ ଘର ଧନ ଜାୟା ।
ନାହିଁ ଲଜ ଭୟ ପର ଘର ବିନାଶନେ,
ପ୍ରସବ ବେଦନା ବନ୍ଧ୍ୟା ଜାଣିବ କେସନେ । ୫୬୭

ମାତାଙ୍କ ବିକଳ ଦେଖି କହିଲେ ଭବାନୀ—
ବିବେକ ବିଗୃରବନ୍ତ ସୁମଧୁର ବାଣୀ ।
"ନ ଟଳଇ କେବେ ହେଲେ ବିଧାତା ରଚନା,
ଏମନ୍ତ ବିଗ୍ଭରି ମାତ ନ କର ଶୋଚନା । ୫୬୮

ମୋ କର୍ମେ ବାଉଳ ବର ଲେଖାଅଛି ଯେବେ,
କାହାକୁ କାହିଁକି ଦୋଷ ଦେଉଅଛ ତେବେ ।
ଲିଭିବନି ତୁମ ଦ୍ୱାରା ବିଧାତା ଲିଖନ,
କଳଙ୍କ ଘେନିବ ମାତ କହଁ ଅକାରଣ ? ୫୬୯

କଳଙ୍କ ନ ଘେନ ମାତ ଦୁଃଖ ପରିହରି,
ଏ ନୁହେଁ ସମୟ ଦୁଃଖ କରିବା ତୁମରି ।
ସୁଖ ଦୁଃଖ ଯା' କିଛି ମୋ ଲଲାଟ ଲିଖନ,
ଯହିଁ ଗଲେ ମଧ୍ୟ ମୁହିଁ ଭୋଗିବି ତେସନ ।"
ବିନୀତ କୋମଳ ଧୀର ଉମାର ବଚନ,
ଶୁଣି ଚିନ୍ତା କଲେ ଯେତେ ଥିଲେ ନାରୀଗଣ ।
ନାନାବିଧ ପ୍ରକାରେ ଦୋଷ ଦେଇ ବିଧି ପରେ,
ନୟନୁ ଲୋତକ ଧାର ବୁହାନ୍ତି ବିକଳେ । ୫୭୦

ଶୁଣିବା ମାତ୍ରକେ ସେହି କାଳେ ଏ ଖବର,
ସଙ୍ଗେ ଘେନି ସପ୍ତ ଋଷି ଦେବର୍ଷି ପ୍ରବର ।
ଆପଣା ଭବନେ ଯାଇ ହେଲେ ଉପଗତ,
ଅଶେଷ ଉଦ୍‌ବେଗ ଭରେ ହିମ ପରବତ । ୫୭୧

ସମସ୍ତଙ୍କୁ ବୁଝାଇଲେ ସେଠାରେ ନାରଦ,
ଶୁଣାଇଲେ ଯେତେ ସବୁ ପୂର୍ବକ ପ୍ରସଙ୍ଗ ।
"ହେ ମେନକା ଶୁଣ ତୁମେ ମୋର ସତ୍ୟବାଣୀ,
ସ୍ୱୟଂ ଜଗଦମ୍ବା ତୁମ ତନୟା ଭବାନୀ । ୫୭୨

ଅଜନ୍ମା ଅନାଦି, ଶକ୍ତି ସେ ଅବିନାଶିନୀ,
ସର୍ବଦା ଶଙ୍କର-ଅର୍ଦ୍ଧ-ଅଙ୍ଗ-ନିବାସିନୀ ।
ଜଗତ ଉତ୍ପତ୍ତି ସ୍ଥିତି ପ୍ରଳୟ କାରଣୀ,
ସ୍ୱଇଚ୍ଛାରେ ସେ ତ ଲୀଳା-ଶରୀର-ଧାରିଣୀ । ୫୭୩

ଦକ୍ଷ ଗୃହେ ଜନ୍ମିଥିଲେ ପ୍ରଥମେ ପାର୍ବତୀ,
ପାଇଥିଲେ ଦିବ୍ୟ ତନୁ, ନାମ ଥିଲା ସତୀ ।
ତହିଁ ତାଙ୍କ ବିଭା ହେଲା ଶିବଙ୍କ ସଙ୍ଗତେ,
ପ୍ରସିଦ୍ଧ ଏ କଥା, ଜଣା ନିଖିଳ ଜଗତେ । ୫୭୪

ଶିବଙ୍କ ସାଙ୍ଗରେ ସତୀ ଆସୁ ଆସୁ ଥରେ,
ଦେଖି ପଥେ ରଘୁକୁଳ-କମଳ-ଭାସ୍କରେ ।
ହେଲା ମୋହ ଜାତ ସ୍ୱାମୀ କଥା ନ ମାନିଲେ,
ଭ୍ରମ ବଶ ସୀତା ବେଶ ଧରି ପକାଇଲେ । ୫୭୫

ସୀତା ବେଶ ଯେଣୁ ସତୀ କରିଲେ ଧାରଣ,
ସେହି ଦୋଷେ ଶିବ ତାଙ୍କୁ କରିଲେ ବର୍ଜନ ।
ତହୁଁ ହର ବିରହେ ସେ ପିତା ଯଜ୍ଞେ ଯାଇ,
ଯୋଗାନଳେ ଭସ୍ମ ହେଲେ ମନେ ହର ଧ୍ୟାୟୀ ।
ଏବେ ତବ ଗୃହେ ଜନ୍ମି କରି ପତି ଚିନ୍ତା,
ଘୋର ତପ କରିଛନ୍ତି ଗିରୀଶ ଦୁହିତା ।
ଏହା ଜାଣି ମନୁ ତେଜ ସକଳ ସଂଶୟ,
ସର୍ବଦା ଶଙ୍କର-ପ୍ରିୟା ଗିରିଜା ନିଶ୍ଚୟ ।" ୫୭୬

ତହୁଁ ମେନା ହିମବନ୍ତ ଲଭିଲେ ଆନନ୍ଦ,
ବନ୍ଦିଲେ ଥରକୁ ଥର ପାର୍ବତୀଙ୍କ ପଦ ।

ନରନାରୀ ଶିଶୁ ଯୁବା ଆଦି ବୃଦ୍ଧ ଜନ,
ସକଳ ନଗର ଲୋକ ହୋଇଲେ ପ୍ରସନ୍ନ । ୫୭୭

ଶୁଭିଲା ନଗରେ ଶୁଭ ସଙ୍ଗୀତ ସରସ,
ସଜ୍ଜା ହେଲା ଦ୍ୱାରେ ଦ୍ୱାରେ ସୁବର୍ଣ୍ଣ କଳସ ।
ପାକ ଶାସ୍ତ୍ରେ ଯେତେ ବିଧି ହୋଇଛି ବର୍ଣ୍ଣନ,
ସେଭଳି ରନ୍ଧଣା ଭୋଜି ହେଲା ଆୟୋଜନ । ୫୭୮

ଯେ ଘରେ ରହନ୍ତି ଜଗ-ଜନନୀ ଭବାନୀ,
ସେ ଘର ଭୋଜନ ଦ୍ରବ୍ୟ କେ ପାରେ ବଖାଣି ।
ଆଦରେ ଡକାଇ ନେଲେ ରାଜା ହିମାଚଳ,
ବିଷ୍ଣୁ ବ୍ରହ୍ମା ଆଦି ଦେବେ—ବରଯାତ୍ରୀ ଦଳ । ୫୭୯

ବସିଲା ଭୋଜିର ପନ୍ତି ନାନାଦି ପ୍ରକାରେ,
ଲାଗିଲେ ପରଷିବାକୁ ଚତୁର ସୂଆରେ ।
ଦେବେ ଖାଉଛନ୍ତି ଭୋଜି ଦେଖି ନାରୀଗଣେ,
କଲେ ଗାଳି ପରିହାସ କୋମଳ ବଚନେ । ୫୮୦

ସୁମଧୁର ସ୍ୱରେ ଗାଉଛି ଚତୁରୀ ରମଣୀ,
ଗାଳି ପରିହାସ କଲେ ଛଳ ଉକ୍ତି ଭଣି ।
ଏ ବିନୋଦ ପରିହାସେ ସୁଖ ପାଇ ଅତି,
ଦେବତାଏ ଭୋଜନରେ ବିଳମ୍ବ କରନ୍ତି ।
ଭୋଜ ମଜ୍ଜା କହି ନୋହେ କୋଟିଏ ବଦନେ,
ଆଚମନ ପାନ ଶେଷେ ଗଲେ ସ୍ୱ ଭବନେ । ୫୮୧

ମୁନିଗଣେ ଫେରି ହିମାଳୟ ସନ୍ନିଧାନେ,
ଲଗନ ଜଣାଇ ଦେଲେ ଉଚିତ ବିଧାନେ ।
ବିଭା ଶୁଭ ବେଳା ଜାଣି ହିମଗିରି ସାଇଁ,
ସକଳ ଦେବଙ୍କୁ ତହିଁ ଆଣିଲେ ଡକାଇ । ୫୮୨

ଆଦର ସମ୍ମାନ କରି ହିମାଦ୍ରି ରାଜନ,
ସକଳଙ୍କୁ ଦେଲେ ଯଥାଯୋଗ୍ୟ ସୁଆସନ ।

ବେଦ ବିଧାନରେ ବେଦୀ ହୋଇଲା ରଚନ,
ମଙ୍ଗଳ ସଙ୍ଗୀତ ଗାନ କଲେ ନାରୀଗଣ । ୫୮୩

ବେଦୀ ପରେ ଦିବ୍ୟ ସିଂହାସନ ସୁଶୋଭନ,
କେ ବର୍ଣ୍ଣିବ ଶୋଭା; ସେ ତ ବିରଞ୍ଚି ରଚନ ।
ବିପ୍ରଙ୍କୁ ପ୍ରଣମି ଶିବ ବସିଲେ ତହିଁରେ;
ହୃଦୟେ ସୁମରି ନିଜ ପ୍ରଭୁ ରଘୁବୀରେ । ୫୮୪

ମୁନୀଏ ଉମାଙ୍କୁ ପୁଣି ତହିଁ ଡକାଇଲେ,
ସଖୀଏ ଭୂଷଣ କରି ତାହାଙ୍କୁ ଆଣିଲେ ।
ରୂପ ଦେଖି ଦେବେ ସବୁ ମୁଗ୍‌ଧ ହେଲେ ଅତି,
ସେ ସୌନ୍ଦର୍ଯ୍ୟ ବର୍ଣ୍ଣିବାକୁ କାଏ କବି ଅଛି ? । ୫୮୫

ଜାଣି ଶିବ-ପ୍ରିୟା ଜଗଦମ୍ବା ଜଗମାତ,
ମନେ ମନେ ଦେବତାଏ କଲେ ପ୍ରଣିପାତ ।
ସୌନ୍ଦର୍ଯ୍ୟର ସୀମା ଗିରିନନ୍ଦିନୀ ଭବାନୀ,
କୋଟି ମୁଖେ ସେହି ଶୋଭା ନ ହେବ ବଖାଣି । ୫୮୬

ଜଗତ ଜନନୀ ଅପରୂପ ଶୋଭା ରାଶି,
ଗୋଟିଏ ବଦନେ କେବେ ନ ହେବ ପ୍ରକାଶି ।
ଯହିଁ ସଙ୍କୋଚନ୍ତି ବେଦ ଶେଷ ସରସ୍ୱତୀ,
କହିବାକୁ ଏ ତୁଳସୀ କିନା ଛାରମତି । ୫୮୭

ମଣ୍ଡପେ ଯେଉଁଠି ବସିଥିଲେ ମହେଶ୍ୱର,
ରୂପଖଣି ଗୌରୀ ତହିଁ ଚଳଲେ ସତ୍ୱର ।
ସରମେ ସଙ୍କୋଚେ ପ୍ରଭୁ ଚରଣ କମଳେ,
ଚାହିଁ ନ ପାରନ୍ତି ପ୍ରୀତି ପୁଲକ ଅନ୍ତରେ ।
ନିଜ ମନ-ଭୃଙ୍ଗ ଯାହା ହୋଇ ଭାଗ୍ୟବାନ
ପଦ-କଞ୍ଜ ମକରନ୍ଦ କରୁଥିଲା ପାନ । ୫୮୮

ମୁନିଙ୍କ ଆଦେଶ ପାଇ ଶିବ ପାରବତୀ,
ଭକ୍ତିରେ ପୂଜିଲେ ବିଘ୍ନହର ଗଣପତି ।

ସୁଜନେ ଏ କଥା ଶୁଣି ନ କର ଆଶଙ୍କା,
ଗଣପତି ଅଗ୍ରପୂଜ୍ୟ ଅନାଦି ଦେବତା । ୫୮୯

ବିବାହ ବିଧାନ ବେଦେ ବିହିତ ଯେସନ,
ସେ ସକଳ କରାଇଲେ ମୁନି ଋଷିଗଣ ।
କୁଶ ହସ୍ତେ ହିମାଳୟ ଧରି କନ୍ୟା-ପାଣି,
ଭବଙ୍କୁ ଅରପି ଦେଲେ ଜାଣି ସେ ଭବାନୀ । ୫୯୦

ମହେଶ୍ୱର ଯେବେ ପାଣିଗ୍ରହଣ କରିଲେ,
ଦେବତାଏ ସର୍ବେ ହର୍ଷ-ହୃଦୟ ହୋଇଲେ ।
ବେଦମନ୍ତ୍ର ଉଚ୍ଚାରିଲେ ବହୁ ମୁନିବର,
ଦେବତା କହିଲେ ଜୟ ଜୟ ହେ ଶଙ୍କର । ୫୯୧

ବାଜିଲା ବିବିଧ ବାଦ୍ୟ ଉଚିତ ବିଧାନେ,
ଆକାଶରୁ ପୁଷ୍ପ ବୃଷ୍ଟି ହେଲା ସେହି ସ୍ଥାନେ ।
ଶିବ ପାର୍ବତୀଙ୍କ ହେଲା ମଙ୍ଗଳ ବିବାହ,
ସକଳ ଭୁବନେ ଭରି ଉଠିଲା ଉତ୍ସାହ । ୫୯୨

ଦାସ ଦାସୀ ଅଶ୍ୱ, ହସ୍ତୀ ରଥ ଧେନୁ ପଲ,
ବସନ ରତନ ନାନା ଦେଲେ ହିମାଚଳ ।
ବିବିଧ କନକ ପାତ୍ରେ ଅନ୍ନ ଦ୍ରବ୍ୟ ଭରି,
ଗାଡ଼ି ଗାଡ଼ି ଦେଲେ, କିଏ ବର୍ଣ୍ଣିବ କପରି ? ୫୯୩

ଦେଇ ନାନା ଯଉତୁକ ଯୋଡ଼ି ବେନି କର,
ହିମାଳୟ ନରପତି କହିଲେ, "ହେ ହର ।
ତୁମେ ଦେବ ପୂର୍ଣ୍ଣକାମ ଦେବି ମୁଁ କଅଣ ?"
କହି ରହିଗଲେ ଧରି କମଳ-ଚରଣ ।
କରୁଣାସାଗର ହର ନାନାଦି ଭାବରେ,
ଶଶୁରଙ୍କ ସୁଖ ଆଶେ ନାନା ଯତ୍ନ କଲେ ।
ପ୍ରେମ ଭରି ହୃଦେ ତହୁଁ ମେନକା ସୁନ୍ଦରୀ,
କହିଲେ ବିନୟେ ଶିବ ପାଦ-ପଦ୍ମ ଧରି । ୫୯୪

"ହେ ନାଥ ଏ ଉମା ମୋର ଅଟନ୍ତି ପ୍ରାଣ ପ୍ରିୟ,
ନିଜ ଘର ଦାସୀ କରି ଏବେ ତାଙ୍କୁ ନିଅ ।
ସକଳ ତା' ଦୋଷାଦୋଷ କ୍ଷମିବ ଶଙ୍କର,
ତୋଷ ହୋଇ ମୋତେ ଏବେ ଦିଅ ଏହି ବର । ୫୯୫

ଶାଶୁଙ୍କୁ କହିଲେ ଶିବ ବହୁତ ଭାବରେ,
ପଦ୍ମରେ ପ୍ରଣମି ମେନା ଫେରିଗଲେ ଘରେ ।
ତା'ପରେ ଜନନୀ ପାଶେ ଉମାଙ୍କୁ ଡକାଇ,
ଦେଲେ ଶୁଭ ଉପଦେଶ କୋଳରେ ବସାଇ । ୫୯୬

ଶଙ୍କର ପଦ୍ମର ସଦା ପୂଜିବୁ ପାର୍ବତୀ,
ନାରୀ ଧର୍ମେ ପତି ଦେବ, ଆନ କେ ନୁହନ୍ତି ।
କଥା କହୁ କହୁ ନେତ୍ରେ ଭରଇ ଲୋତକ,
କନ୍ୟାକୁ ଜାକିଲେ କୋଳେ ମାତା ସପୁଲକ । ୫୯୭

ନାରୀ ଜନ୍ମ ଦେଲ କିଆଁ ବିଧାତା ସଂସାରେ,
ସ୍ୱପ୍ନେ ସୁଦ୍ଧା ସୁଖ ନାହିଁ ପରାଧୀନତାରେ ।
ଅତିଶୟ ପ୍ରେମେ ମାତା ହୋଇଲେ ବିକଳ,
ଅସମୟ ଜାଣି ଦମ୍ଭ ଧରିଲେ କେବଳ । ୫୯୮

ବାରମ୍ବାର ମିଳି ପୁଣି ପଡ଼ନ୍ତି ଚରଣେ,
ସେ ଅଲୌକିକ ପ୍ରେମ କିଏ କହିବ କେସନେ ।
ସମସ୍ତ ନାରୀଙ୍କୁ ଯାଇ ଭବାନୀ ଭେଟିଲେ,
ପରେ ଜନନୀଙ୍କ ବକ୍ଷେ ଆଉଜି ପଡ଼ିଲେ । ୫୯୯

ଜନନୀଙ୍କୁ ଭେଟି ସାରି ଚଳିଲେ ପାର୍ବତୀ,
ସଭିଏଁ ତାହାଙ୍କୁ ଯଥା ଆଶୀଷ ଦିଅନ୍ତି ।
ଫେରି ଫେରି ସେ ଚାହାନ୍ତି ମାତାଙ୍କୁ ଅନେକ,
ଶିବ ପାଶେ ନେଇଗଲେ ତହୁଁ ସବୁ ସଖୀ ।
ସବୁ ଯାଚକଙ୍କୁ ତୋଷ କରି ସେହିକ୍ଷଣେ,
ପାର୍ବତୀଙ୍କ ସାଥେ ଶିବ ଗଲେ ସ୍ୱଭବନେ ।

ହରଷେ ଅମରେ କଲେ କୁସୁମ ବରଷା,
ଆକାଶେ ଦୁନ୍ଦୁଭି ବାଜି ଉଠିଲା ସହସା । ୭୦୦

ଶିବଙ୍କୁ ବାହୋଇ ଦେବା ପାଇଁ ହିମାଳୟ,
ପ୍ରେମ ଭରେ କିଛି ବାଟ ଗଲେ ତାଙ୍କ ସହ ।
ସେ ତାଙ୍କୁ ସାନ୍ତ୍ୱନା ଦେଇ ନାନାବିଧ ପ୍ରକାରେ,
ଆଦରେ ବିଦାୟ ଦେଲେ ବିଧି ଅନୁସାରେ । ୭୦୧

ତୁରିତେ ଘରକୁ ଫେରି ହିମ ନୃପବର,
ଡକାଇଲେ ଯେତେ ସବୁ ଗିରି ସରୋବର ।
ସମସ୍ତଙ୍କୁ କରି ବହୁ ବିନୟ ସମ୍ମାନ,
ବିଦା କରି ଦେଲେ ଦେଇ ଯଥୋଚିତ ଦାନ । ୭୦୨

ପହଞ୍ଚିଲେ ଯେତେବେଳେ ମହେଶ କୈଳାସେ,
ଦେବତାଏ ଗଲେ ଫେରି ନିଜ ନିଜ ବାସେ ।
ଯେଣୁ ବିଶ୍ୱ ପିତାମାତା ଶଙ୍କର ଭବାନୀ,
ତାଙ୍କର ଶୃଙ୍ଗାର ତେଣୁ ନ କହେ ବଖାଣି । ୭୦୩

କୈଳାସେ ବିଳାସ ଭୋଗେ ମଜ୍ଜି ବାର ବାର,
କଲେ ନିତ୍ୟ ନବ ନବ ପ୍ରମୋଦ ବିହାର ।
ଶିବ ପାରବତୀ ତାଙ୍କ ଗଣଙ୍କ ସହିତ—
ଏପରି ବହୁତ କାଳ ହୋଇଲା ଅତୀତ । ୭୦୪

ତହୁଁ ଜନମିଲେ କାର୍ତ୍ତିକେୟ ଷଡ଼ାନନ,
ସମରେ ତାରକାସୁର ସେ କଲେ ନିଧନ ।
ପ୍ରସିଦ୍ଧ ଏ କଥା ବେଦ ଶାସ୍ତ୍ରେ ଓ ପୁରାଣେ,
କୁମାରଙ୍କ ଜନ୍ମ କର୍ମ ଏ ଜଗତ ଜାଣେ । ୭୦୫

କାର୍ତ୍ତିକଙ୍କ ଜନ୍ମ କର୍ମ ପ୍ରତାପ ଯେମନ୍ତେ,
ଯେତେ ପୁରୁଷାର୍ଥ ଜଣା ସକଳ ଜଗତେ ।
ତେଣୁ ବୃଷକେତୁ-ସୁତ ଚରିତ ବର୍ଣ୍ଣନା,
ନ କରି ମୁଁ ଏହି ଗ୍ରନ୍ଥେ ଦେଲି ଯା' ସୂଚନା । ୭୦୬

ଶିବ ପାର୍ବତୀଙ୍କ ଏହି ବିବାହ ଚରିତ,
କହିବେ ଗାଇବେ ଯିଏ ଆଦର ସହିତ ।
ସେହି ନର ନାରୀ ସର୍ବ ମଙ୍ଗଳ କର୍ମରେ,
ସଦା କାଳେ ସୁଖ ଲଭ କରିବେ ମର୍ତ୍ତ୍ୟରେ । ୭୦୭

ଶିବଙ୍କ ଚରିତ ଯେତେ ପାରାବାର ସମ,
ଗାନ କରିବାରେ ବେଦ ହୁଅଇ ଅକ୍ଷମ ।
ଅଥଚ ମୁଁ ମନ୍ଦବୁଦ୍ଧି ତୁଳସୀ ଅଧମ,
କେମନେ ତା' କହିବାକୁ ହୋଇବି ସକ୍ଷମ ? । ୭୦୮

ସରସ ସୁଖଦ ଶିବ ଚରିତ ଶ୍ରବଣେ,
ଅତି ଆନନ୍ଦିତ ହେଲେ ଭରଦ୍ୱାଜ ମନେ,
ସେ କଥାରେ ବହୁ ଶ୍ରଦ୍ଧା ଲାଲସା ଜାଗିଲା,
ରୋମାଞ୍ଚିତ ତନୁ, ନେତ୍ରେ ଲୋତକ ଭରିଲା । ୭୦୯

ପ୍ରେମ ବଶେ ନ ସ୍ଫୁରଇ ମୁଖରୁ ବଚନ,
ଏ ଦଶା ନିରେଖି ହୋଇ ହରଷିତ ମନ,
ଯାଜ୍ଞବଲ୍କ୍ୟ ପ୍ରୀତିଭରେ କହିଲେ, "ମୁନୀଶ,
ଆହା ଧନ୍ୟ ଜନ୍ମ, ତବ ପ୍ରାଣ-ପ୍ରିୟ ଈଶ । ୭୧୦

ମହେଶ ଚରଣ-ପଦ୍ମେ ନାହିଁ ଯାର ରତି,
ସ୍ୱପନେ ରାମଙ୍କୁ ସେହୁ ଭଲ ନ ଲାଗନ୍ତି ।
ଶିବ ପଦେ ଅକପଟ ଭକ୍ତି ଆଚରଣ,
ରାମ ଭକ୍ତ ଜନଙ୍କର ଅଟଇ ଲକ୍ଷଣ । ୭୧୧

ଶିବ ସମ କିଏ ରଘୁନାଥ ବ୍ରତଧାରୀ,
ଯେ ତେଜିଲେ ପାପହୀନା ସତୀ ପରି ନାରୀ ।
ଦେଖାଇଲେ ପଣ କରି ଶ୍ରୀରାମ ଭକତି,
ଶିବ ସମ କିଏ ଅଛି ରାମ-ପ୍ରିୟ ଅତି । ୭୧୨

ଆଗେ ଶିବ କଥା କହି ତୁମରି ମରମ,
ବୁଝିନେଲି, ତୁମେ ରାମ ସେବକ ପରମ ।

ତୁମେ ରଘୁପତି ରାମ ପରମ ଭକତ,
ତୁମେ ତ ସକଳ ଭେଦ ଦୋଷରୁ ମୁକତ । ୭୧୩

ଜାଣିଗଲି ମୁହିଁ ତବ ସ୍ୱଭାବଶୀଳ ଗୁଣ,
କହୁଅଛୁ ରଘୁପତି ଲୀଳା ଏବେ ଶୁଣ ।
ଆଜ ତୁମ ସାକ୍ଷାତେ ମୋ ମନେ ଯେ ଆନନ୍ଦ,
ଭାଷାରେ କହିବା ତାହା ହୁଏ ଅସମ୍ଭବ । ୭୧୪

ଶ୍ରୀରାମ ଚରିତ ଅତି ଅପାର ମୁନୀଶ,
କହି ନ ପାରିବେ ଶତ କୋଟିଏ ଫଣୀଶ ।
ତଥାପି ଶୁଣିଛୁ ଯାହା କହୁଛୁ ବଖାଣି,
ହୃଦେ ସ୍ମରି ବାଣୀ-ପତି ପ୍ରଭୁ ଧନୁପାଣି । ୭୧୫

କାଠର କଣ୍ଢେଇ ଯେପରି ଦେବୀ ସରସ୍ୱତୀ,
ସୂତ୍ରଧର ଅନ୍ତର୍ଯାମୀ ସ୍ୱାମୀ ରଘୁପତି ।
ଭକ୍ତ ଜାଣି ଯାହା ପରେ କୃପା କରିଥାନ୍ତି,
ସେ କବି ବାଣୀଙ୍କୁ ହୃଦ-ପ୍ରାଙ୍ଗଣେ ନଚାନ୍ତି । ୭୧୬

ସେହି କୃପାସିନ୍ଧୁ ରଘୁନାଥଙ୍କୁ ନମଇ,
ଯାହାଙ୍କ ନିର୍ମଳ ଗୁଣ ଗାଥା ମୁଁ କହଇ ।
ଅତି ମନୋହର ଗିରିବର କଇଲାସ,
ଯହିଁ ସଦା ଉମା ହର କରନ୍ତି ନିବାସ । ୭୧୭

ସିଦ୍ଧ ତପୀ ଯୋଗୀ ମୁନି ଦେବତା କିନ୍ନରେ,
ସଦା ନିବସନ୍ତି ସେହି ପର୍ବତ ଉପରେ ।
ସକଳେ ସୁକୃତିବନ୍ତ ଅତି ଭାଗ୍ୟବାନ,
ସେବନ୍ତି ସେ ସୁଖଦାତା ଶଙ୍କର ମହାନ୍ । ୭୧୮

ଧର୍ମହୀନ ହରିହର ବିମୁଖ ଯେ ମନେ,
ଯାଇ ପାରେ ନାହିଁ ତହିଁ ସେ ନର ସପନେ ।
ଗିରି ପରେ ଏକ ବଟ ବିଟପ ବିଶାଳ,
ସେ ନିତ୍ୟ ନୂତନ ମନୋହର ସଦା କାଳ । ୭୧୯

ଗ୍ରୀଷ୍ମ ସୁଶୀତଳ, ବହେ ତ୍ରିବିଧ ପବନ,
ସେ 'ଶିବ-ବିଶ୍ରାମ-ତରୁ' ବେଦରେ ବର୍ଣ୍ଣନ ।
ସେ ତରୁ ତଳକୁ ଥରେ ଗଲେ ମହେଶ୍ୱର,
ବିଲୋକି ତାହାକୁ ହେଲେ ହରଷ ଅନ୍ତର । ୭୨୦

ନିଜ ହାତେ ସିଂହ ଚର୍ମ ଆସନ ପକାଇ,
ସହଜ ସ୍ୱଭାବରେ ବସି ମଉଳେ ଗୋସାଇଁ ।
କୁନ୍ଦ ଇନ୍ଦୁ ଶଙ୍ଖ ସମ ଗଉର ଶରୀର,
ପ୍ରଲମ୍ବିତ ବାହୁ ପରିଧାନ ମୁନି ଚୀର । ୭୨୧

ତରୁଣ ଅରୁଣ ସମ କମଳ-ଚରଣ,
ନଖ ଦ୍ୟୁତି ଭକ୍ତ ହୃଦ ତିମିର ନାଶନ ।
ବିଭୂତି, ଭୁଜଙ୍ଗ ବିଭୂଷଣ ତ୍ରିପୁରାରି,
ବଦନ ଶରଦ ସୁଧାକର ଶୋଭାହାରୀ । ୭୨୨

ଜଟାର ମୁକୁଟ, ଶିରେ ଗଙ୍ଗା ସୁଶୋଭନ,
ବିଶାଳ ଲୋଚନ ଶୋଭେ, କମଳ-ଲୋଚନ ।
ନୀଳକଣ୍ଠ ଅନୁପମ ଲାବଣ୍ୟ ରତନ
ଯୋଗୀ ଋଷି ଭକ୍ତଜନ ଚିତ୍ତ-ବିମୋହନ । ୭୨୩

କାମରିପୁ ବସି ଶୋଭା ପାଆନ୍ତି ଏପରି,
ଶୋଭଇ କି ଶାନ୍ତରସ ଅବା ଦେହ ଧରି ।
ଏହିପରି ସମୟକୁ ସୁସମୟ ମଣି,
ଶିବଙ୍କ ସମୀପେ ଯାଇ ମିଳିଲେ ଜନନୀ । ୭୨୪

ନିଜ ପ୍ରାଣପ୍ରିୟା ପତ୍ନୀ ଆସିବାର ଜାଣି,
ଆଦରେ ଆସନ ଦେଲେ ବାମ ପାଶେ ଆଣି ।
ବସିଲେ ପାର୍ବତୀ ତହିଁ ହରଷିତ ମନେ,
ପୂର୍ବ ଜନ୍ମ କଥାମାନ ଆସିଲା ସ୍ମରଣେ । ୭୨୫

ଜାଣି ସ୍ୱାମୀ ହୃଦେ ବହୁ ପ୍ରୀତି ତାଙ୍କ ପ୍ରତି,
ହସି ପ୍ରୀତିଭରି କଥା କହିଲେ ପାର୍ବତୀ ।

ଯେ କଥା ହୋଇବ ସର୍ବ ଜନ ହିତକାରୀ,
ଗୃହାନ୍ତି ପଚାରିବାକୁ ଶଇଳ କୁମାରୀ । ୬୨୬

"ଆହେ ବିଶ୍ୱନାଥ ମମ ନାଥ ମହେଶ୍ୱର,
ତ୍ରିଭୁବନେ ସୁବିଦିତ ମହିମା ତୁମର ।
ଚରାଚର ସୁର ନର ନାଗ ଆଦି ସର୍ବେ,
ତବ ପାଦ-ପଦ୍ମ ସେବା କରିଥାନ୍ତି ଲବେ । ୬୨୭

ହେ ପ୍ରଭୁ ସର୍ବଜ୍ଞ ତୁମେ ସମର୍ଥ ମହାନ୍
କଲ୍ୟାଣ ସ୍ୱରୂପ କଳା ସୁଗୁଣ ନିଧାନ ।
ଯୋଗଜ୍ଞାନ ବୈରାଗ୍ୟର ଭଣ୍ଡାର ଗୋସାଇଁ
ତୁମେ କଳ୍ପବୃକ୍ଷ ତୁମ ଭକତଙ୍କ ପାଇଁ । ୬୨୮

ମୋ ପରେ ପ୍ରସନ୍ନ ଯେବେ ଆହେ ସୁଖରାଶି,
ହୋଇଥିବ ଯେବେ ସତ୍ୟ ମୁଁ ତୁମର ଦାସୀ,
ହରଣ କରନ୍ତୁ ପ୍ରଭୁ ତେବେ ମୋ ଅଜ୍ଞତା,
କହି ରଘୁନାଥଙ୍କର ନାନାବିଧ କଥା । ୬୨୯

କଳ୍ପବୃକ୍ଷ ତଳେ ଯେହୁ ରଚଇ ନିବାସ,
ସହଇ କି କେବେ ସିଏ ଦାରିଦ୍ର୍ୟ ପରାଶ ।
ହେ ଶଶିଭୂଷଣ ମନେ ଭାବି ଏ ମରମ,
ହରନ୍ତୁ ମୋହର ଅତିଶୟ ମତିଭ୍ରମ । ୬୩୦

ପ୍ରଭୁ ପରମାର୍ଥବାଦୀ ଯେତେ ମୁନିଜନ,
ରାମଙ୍କୁ ଅନାଦି ବ୍ରହ୍ମେ କରନ୍ତି ଗଣନ ।
ଶେଷ ସରସ୍ୱତୀ ବେଦ ପୁରାଣ ସକଳ,
ରଘୁପତି ଗୁଣଗାନ କରନ୍ତି କେବଳ । ୬୩୧

ପୁଣି ତୁମେ ଶ୍ରୀରାମଙ୍କ ନାମ ଦିନରାତି,
ଆଦରେ ଜପୁଛ ଆହେ ଅନଙ୍ଗ-ଅରାତି ।
ଅଯୋଧ୍ୟା ନୃପତି ସୁତ ଏ ରାମ କି ସେହି ?
କି ଅଜ ନିର୍ଗୁଣ ଅଗୋଚର ରାମ କେହି ? ୬୩୨

ଯଦି ରାଜପୁତ୍ର ତେବେ କପରି ସେ ବ୍ରହ୍ମ ?
ଯଦି ବ୍ରହ୍ମ ସ୍ତ୍ରୀ ବିରହେ ମତି କିଆଁ ଭ୍ରମ ?
ଏପରି ଚରିତ ଏଣେ, ତେଣେ ଅନୁପମ—
ମହିମା ଶ୍ରବଣେ ମୋର ବୁଦ୍ଧି ହୁଏ ଭ୍ରମ । ୭୩୩

ବ୍ୟାପକ ସମର୍ଥ ପୁଣି କାମନା ରହିତ,
ବ୍ରହ୍ମ ଆଉ କେହି ଯଦି ହେ ପ୍ରିୟ ଦୟିତ ।
କହନ୍ତୁ ବୁଝାଇ ମୋତେ ବିଗୁର ନିବୋଧ,
ନ ବହି ହେ କୃପାସିନ୍ଧୁ ମନେ ତିଳେ କ୍ରୋଧ । ୭୩୪

ଯେପରି ହୃଦୟୁ ମୋର ମୋହ ଯିବ ନାଶ,
ସେପରି କରନ୍ତୁ ପ୍ରଭୁ ଆହେ କୃତ୍ତିବାସ ।
ଶ୍ରୀରାମ ପ୍ରଭୁତା ମୁହିଁ ଦେଖିଥିଲି ବନେ,
ନ କହିଲି ଭ୍ରମ ଆଗେ ଭୟାତୁର ମନେ
ତଥାପି ମଳିନ ମନ ବୋଧ ହେଲା ନାହିଁ,
ଭଲି ହବେ ତା'ର ଫଳ ମୁହିଁ ଗଲି ପାଇ । ୭୩୫

ଏବେ ମଧ୍ୟ ଅଛି କିଛି ମନରେ ସଂଶୟ,
କର କୃପା, କରଯୋଡ଼ି କରୁଛି ବିନୟ ।
ମେତେବେଳେ ବୁଝାଇଛ ବହୁତ ପ୍ରକାରେ,
ତା ଭାବି ମନରେ କୋପ ନ ବହ ମୋ'ଠାରେ । ୭୩୬

ଆଗ ପରି ଆଉ ମୋହ ନାହିଁ ମୋ ମନରେ,
ଶ୍ରୀରାମ କଥାରେ ରୁଚି ଜାଗଇ ଅନ୍ତରେ ।
କହନ୍ତୁ ପବିତ୍ର ରଘୁପତି ଗୁଣଗ୍ରାମ,
ଭୁଜଙ୍ଗ-ଭୂଷଣ ସୁରନାଥ ଅଭିରାମ । ୭୩୭

ଲଗାଇ ଭୂଇଁରେ ଶିର ଯୋଡ଼ି ବେନିକର,
ପ୍ରଣମେ ବିନୟେ ହୋଇ ଆହେ ମହେଶ୍ୱର ।
ଶ୍ରୁତି ସିଦ୍ଧାନ୍ତର ସାର ରଘୁବର ଯଶ ।
କହନ୍ତୁ ସେ ରାମ କଥା ନିର୍ମଳ ସରସ । ୭୩୮

ଯଦି ବା ମୁଁ ନାରୀ ତା'ର ନୁହେଁ ଅଧିକାରୀ,
କିନ୍ତୁ ମନ କର୍ମ ବାକ୍ୟେ ଦାସୀ ମୁଁ ତୁମରି ।
ସାଧୂଏ ଲଭିଲେ ଆର୍ତ୍ତ ଅଧିକାରୀ ଜନ,
ନ ଲୁଚନ୍ତି ଗୂଢ଼ ତତ୍ତ୍ୱ ହେଲେ ବି ଗୋପନ । ୭୩୯

ହେ ମହେଶ, ପଚାରୁଛି ମୁଁ ଅତି ଆରତେ,
ରଘୁପତି କଥା କହ ଦୟାକରି ମତେ ।
ନିର୍ଗୁଣ ଯେ ବ୍ରହ୍ମ ଧରେ ସଗୁଣ ଶରୀର,
ଏହାର କାରଣ ଆଗେ କହନ୍ତୁ ହେ ଧୀର । ୭୪୦

ପୁଣି କହ ପ୍ରଭୁ ମୋତେ ରାମ ଅବତାର,
ପ୍ରଭୁଙ୍କର ଯେତେ ବାଲ ଚରିତ ଉଦାର ।
କହନ୍ତୁ ଜାନକୀ ବିଭା ହୋଇଲା ଯେସନେ,
କି ଦୋଷେ ତେଆଗି ରାଜ୍ୟ ଗଲେ ଘୋର ବନେ । ୭୪୧

ବନେ ରହି କଲେ ଯେଉଁ ଅପାର ଚରିତ,
ହେ ନାଥ ମାରିଲେ ଯେଉଁ ରାବଣ ଦଇତ୍ୟ ।
କଲେ ଯେଉଁ ଲୀଳା ସବୁ ବସି ସିଂହାସନେ,
ସବୁ କହ ସୁଖରାଶି ସ୍ୱାମୀ ସ୍ଥିର ମନେ । ୭୪୨

କହନ୍ତୁ ବୁଝାଇ ପୁଣି କରୁଣା ସାଗର,
କି ଅଦ୍ଭୁତ କର୍ମମାନ କଲେ ରଘୁବର ?
ପ୍ରଜାଙ୍କ ସହିତ କେଉଁ ନେଇ-ଅଭିରାମ—
ରଘୁବର ଗଲେ ଚାଲି ସ୍ୱଦେହେ ସ୍ୱଧାମ ? ୭୪୩

ହେ ପ୍ରଭୋ କହନ୍ତୁ ପୁଣି ସେ ତତ୍ତ୍ୱ ବଖାଣି,
ଯେ ବିଜ୍ଞାନେ ମଗ୍ନ ସଦା ମୁନି ଋଷି ଜ୍ଞାନୀ ।
ବୈରାଗ୍ୟ ବିବେକ ଜ୍ଞାନ ଭକ୍ତି ନିରୂପଣ,
ଭାଗ ଭାଗ କରି ସବୁ ବିସ୍ତାରି ଆପଣ । ୭୪୪

ଏ ସବୁକୁ ଛାଡ଼ି ରାମ ରହସ୍ୟ ଅନେକ,
କହ ତ ତୁମରି ଅତି ନିର୍ମଳ ବିବେକ ।

ପଚୃରି ନ ଅଛୁ ଯାହା ପୁଣି ସଦାଶିବ,
କହିବ କୃପାକୁ ଗୁପ୍ତ କରି ନ ରଖିବ । ୬୪୫

ତ୍ରିଭୁବନ ଗୁରୁ ତୁମେ ବେଦର ବଚନେ,
ଅନ୍ୟ ଯେ ପାମର ଜୀବେ ଜାଣିବେ କେସନେ ?”
ସହଜ ସୁନ୍ଦର ଛଳହୀନ ଉମା ପ୍ରଶ୍ନ,
ଶୁଣି ତୋଷ ହେଲା ଅତି ମହେଶଙ୍କ ମନ । ୬୪୬

ହରି ହୃଦେ ହେଲା ରାମ ଚରିତ ସ୍ଫୁରଣ,
ପୁଲକିତ ତନୁ, ନେତ୍ରୁ ଝରେ ଅଶ୍ରୁକଣ ।
ହୃଦୟେ ନାଚିଲା ରାମ ଛବି ରତିମୋହନ,
ଲଭିଲେ ପରମାନନ୍ଦ ସୁଖ ଅଗଣନ । ୬୪୭

ଦୁଇ ଦଣ୍ଡ କାଳ ଧ୍ୟାନ ରସେ ମଜ୍ଜି ଯାଇ,
ଆଣିଲେ ମନକୁ ପୁଣି ବାହାରେ ଫେରାଇ ।
ତହୁଁ ରଘୁବର ରାମ ଅପାର ଚରିତ,
ବୁଝାଇ କହିଲେ ହର ହୋଇ ହରଷିତ । ୬୪୮

ମିଥ୍ୟା ଜଣାଯାଏ ସତ୍ୟ, ନ ଥିଲେହି ଜ୍ଞାନ,
ରଜ୍ଜୁକୁ ନ ଚିହ୍ନି ସର୍ପ ହୁଏ ଅନୁମାନ ।
ଯାହାକୁ ଜାଣିଲେ ତୁଟେ ଜଗତର ମାୟା,
ଜାଗ୍ରତେ ତୁଟଇ ଯେହ୍ନେ ସ୍ୱପନର ଛାୟା । ୬୪୯

ବନ୍ଦନା କରୁଛି ମୁହିଁ ସେ ବାଳକ ରାମ,
ସୁଲଭ ସକଳ ସିଦ୍ଧି ଜପିଲେ ଯା’ ନାମ ।
ମଙ୍ଗଳର ଭବନ ସେ ଅମଙ୍ଗଳ ହାରୀ,
ଦୟାକର ଦଶରଥ ଅଙ୍ଗନ-ବିହାରୀ । ୬୫୦

ରାମଙ୍କୁ ପ୍ରଣାମ କରି ତ୍ରିପୁର ନାଶନ,
କହିଲେ ହରଷ ଭରେ ଅମିୟ ବଚନ ।
“ଧନ୍ୟ ଧନ୍ୟ ତୁମେ ଆଗୋ ଗିରୀଶ କୁମାରୀ,
ତୁମ ସମ ନାହିଁ ମୋର କେହି ଉପକାରୀ । ୬୫୧

ପଚାରିଲ ଶ୍ରୀରାମଙ୍କ ଯେ କଥା ପ୍ରସଙ୍ଗ,
ସେ'ତ ସର୍ବଲୋକ ପୂତ ଜାହ୍ନବୀ ତରଙ୍ଗ ।
ତୁମେ ତ ଶ୍ରୀରାମଚନ୍ଦ୍ର ପଦ ଅନୁରାଗୀ,
ପଚାରିଅଛ ଏ କଥା ବିଶ୍ୱ ହିତ ଲାଗି । ୭୫୨

ହେ ପାର୍ବତୀ ମୋ ବିଚାରେ ରାମ କୃପା ପାଇ,
ସ୍ୱପ୍ନେ ଶୋକ ମୋହ ଭ୍ରମ ସନ୍ଦେହ ଯେ ନାହିଁ ।
ମନରେ ତୁମରି କଛି—ଏହି ମୋ ବିଶ୍ୱାସ,
ତଥାପି ହୃଦୟେ ତବ ପୂର୍ବ ଅବିଶ୍ୱାସ । ୭୫୩

କହିଲେ ଶୁଣିଲେ ରାମ ଚରିତ ସକଳ,
ହୋଇଥାଏ ସଭିଙ୍କର ଅତି ହିତକର ।
ଭଗବତ କଥା ଶୁଣି ନାହାନ୍ତି ଯେ କାନେ,
ତାଙ୍କ କର୍ଣ୍ଣ-ରନ୍ଧ୍ର ସର୍ପ ବିବର ସମାନେ । ୭୫୪

ନୟନେ ଯେ କରି ନାହାଁ ସାଧୁ ଦରଶନ,
ମୋ ନେଈ ମୟୂର ପୁଚ୍ଛ ସଦୃଶ ଗଣନ ।
ପିତା ଲଉ ପରି ଯେହି ମସ୍ତକ ଅଟଇ,
ହରି ଗୁରୁ ପଦ ମୂଳେ ନତ ଯା' ନୁହଇ । ୭୫୫

ଯାହାର ହୃଦୟେ ହରି ଭକତି ନ ଥାଏ,
ଜୀଇ ଥାଉଁ ଥାଉଁ ଶବ ସମ ସେ ବୋଲାଏ ।
ରଘୁନାଥ ଗୁଣ ଯେହୁ ନ କରନ୍ତି ଗାନ,
ମଣ୍ଡୂକର ଜିହ୍ୱା ସମ ତାଙ୍କ ଜିହ୍ୱା ଜାଣ । ୭୫୬

କୁଳିଶ କଠୋର ଯୁକ୍ତ ନିଠୁର ହୃଦୟ,
ହରି କଥା ଶୁଣି ହର୍ଷ ଯହିଁ ନ ଉଦୟ ।
ଶୁଣ ରଘୁପତି ଲୀଳା ଶଇଳ-ନନ୍ଦିନୀ
ସେତ ସୁରହିତ ଦୈତ୍ୟ ମନ-ବିମୋହିନୀ । ୭୫୭

ଶ୍ରୀରାମ ଚରିତ କାମ-ସୁରଭି ସମାନ,
ସେବିଲେ ଦିଅଇ ସୁଖ ଅଶେଷ ପ୍ରମାଣ ।

ସଜ୍ଜନ ସମାଜ ସଦା ଦେବ ଲୋକ ପରି,
ଜାଣି ଏହା ନ ଶୁଣିବ କିଏ କେଉଁପରି । ୭୫୮

ଶ୍ରୀରାମ ଚରିତ କରତାଳି ମନୋହର,
ଉଡ଼ାଇଦିଏ ମନ-ଭ୍ରମ-ବିହଙ୍ଗ ନିକର ।
ରାମ କଥା କଳିକାଳ ବୃକ୍ଷକୁ କାଟିଣିଆ,
ସାଦରେ ଶ୍ରବଣ କର ଆଗୋ ପ୍ରାଣପ୍ରିୟା । ୭୫୯

ଶ୍ରୀରାମଙ୍କ ନାମ ଗୁଣ ଚରିତ ଶୋଭନ,
ଜନମ କରମ ବେଦ ଗାଏ ଅଗଣନ ।
ଅନନ୍ତ ଅନନ୍ତ ଯେହ୍ନେ ରାମ ଭଗବାନ,
ସେପରି ତାଙ୍କର ଗୁଣ କୀର୍ତ୍ତି କଥାମାନ । ୭୬୦

ତଥାପି ଶୁଣିଛୁ ଯାହା ଯେପରି ମୋ ମତି,
କହିବି ତୁମର ଦେଖି ଅନୁରାଗ ଅତି ।
ପାର୍ବତି ତୁମର ପ୍ରଶ୍ନ ସହଜ ସୁନ୍ଦର,
ସଜ୍ଜନ ସମ୍ମତ ସୁଖଦାୟୀ; ଲାଗେ ଭଲ । ୭୬୧

କେବଳ ଗୋଟିଏ କଥା ନ ଲାଗିଲା ଭଲ,
ମୋହ ବଶେ ହେ ଭବାନି ଯାହା ପ୍ରଶ୍ନ କଲ ।
ତୁମେ ଯେ କହିଲ ଆଉ ଅନ୍ୟ କେ' ଏ ରାମ,
ଯାହାଙ୍କୁ ଗାଆନ୍ତି ବେଦ, ମୁନି କରେ ଧ୍ୟାନ । ୭୬୨

ଯେ ମୋହ-ପିଶାଚ ଗ୍ରସ୍ତ ପାଷାଣ୍ଡ ପାମର,
ହରିପଦ ବିମୁଖ ଯେ ନର ନିରନ୍ତର ।
ସତ ମିଛ ନ ଜାଣନ୍ତି ଏ ସଂସାରେ ତଳ,
ସେ ଶୁଣନ୍ତି ସେ କହନ୍ତି ସିନା ଏଇଭଳି । ୭୬୩

ଅଜ୍ଞାନୀ ମୂରୁଖ ଅନ୍ଧ ଭାଗ୍ୟହୀନ ଜନ,
ବିଷୟାଦି ମୂଳେ ଲିପ୍ତ ଯା' ମନ-ଦର୍ପଣ;
ଲମ୍ପଟୀ କପଟୀ ଯେହୁ କୁଟିଳ ଯେ ଅବା,
ସପନେ ବି ଦେଖନ୍ତିନି ସିଏ ସନ୍ଥ-ସଭା; ୭୬୪

କହନ୍ତି ସେମାନେ ବେଦ ଅସମ୍ମତ ବାଣୀ,
ବୁଝନ୍ତି ନ କେବେ ନିଜ ଲାଭ ଅବା ହାନି ।
ହୃଦ-ଦରପଣ ମଳଯୁକ୍ତ ନେତ୍ରହୀନ,
ଦେଖିବେ କିପରି ରାମ ରୂପ ସେ ବିଚାର ? ୬୬୫

ସଗୁଣ ନିର୍ଗୁଣେ ନାହିଁ ବିବେକ ବିଚାର,
କହନ୍ତି କଳ୍ପନା କଥା ନାନାବିଧ ପ୍ରକାର ।
ହରିମାୟା ବଶ ହୋଇ ଜଗତ ଭ୍ରମନ୍ତି,
ସେମାନେ କହିବା ନୁହେ ଆଚମ୍ବିତ ଅତି । ୬୬୬

ବାତୁଳ ପିଶାଚ-ଗ୍ରସ୍ତ ମତୁଆଲ ଜନ,
ବିଚାରି କହନ୍ତି ନାହିଁ କଦାପି ବଚନ ।
ଯେ କରି ଅଛନ୍ତି ମାୟା-ମୋହ-ମଦ ପାନ,
କଥାରେ ତାଙ୍କର କେବେ ଦେବ ନାହିଁ କାନ । ୬୬୭

ଏମନ୍ତ ବିଚାରି ହୃଦେ ଭ୍ରମ ପରିହରି,
ଗିରିଜା କୁମାରୀ ଭଜ ଶ୍ରୀରାମ ପୟର ।
କରିବାକୁ ଭ୍ରମ-ଅନ୍ଧକାର ବିନାଶନ,
ରବି-କର ପରି ଜାଣ ଏ ମୋର ବଚନ । ୬୬୮

ସଗୁଣ ନିର୍ଗୁଣ ମଧ୍ୟେ ନାହିଁ କିଛି ଭେଦ,
ଗାଆନ୍ତି ପୁରାଣ ମୁନି ପଣ୍ଡିତ ଓ ବେଦ ।
ଅରୂପ ଅଲେଖ ଅଜ ଅବ୍ୟକ୍ତ ନିର୍ଗୁଣ,
ଭକତଙ୍କ ପ୍ରେମବଶେ ହୁଅନ୍ତି ସଗୁଣ । ୬୬୯

ଯେ ଗୁଣ ରହିତ ସେହୁ ସଗୁଣ କିପରି,
କରକା-ପଥର ଜଳ ଅଭିନ୍ନ ଯେପରି ।
ଯାହାଙ୍କର ନାମ ଭ୍ରମ-ତମକୁ ତପନ,
ତାଙ୍କ ବିଷୟରେ ମୋହ ରହିବ କେସନ । ୬୭୦

ଶ୍ରୀରାମ ସଚ୍ଚିଦାନନ୍ଦ ସ୍ୱରୂପ ପାନେଶ,
ତାଙ୍କ ପାଶେ ମୋହ-ନିଶା ନାହିଁ ଲବଲେଶ ।

ସହଜ-ପ୍ରକାଶ-ରୂପ ସେ ତ ଭଗବାନ,
ବିଜ୍ଞାନ-ପ୍ରଭୃତି ତହିଁ ପାଏ ନାହିଁ ସ୍ଥାନ । ୬୬୧

ଜ୍ଞାନ ଓ ଅଜ୍ଞାନ ହର୍ଷ ଶୋକ ଅଭିମାନ,
ଅହମିକା ଆଦି ସବୁ ଜୀବ ଧର୍ମ ଜାଣ ।
ଶ୍ରୀରାମ ବ୍ୟାପକ ବ୍ରହ୍ମ ଜଗତରେ ଜଣା,
ସେ ପରମାନନ୍ଦ ଘନ ପରେଶ ପୁରୁଣା । ୬୬୨

ପୁରାଣ ପୁରୁଷ ପୁଣି ପ୍ରକାଶ ଭଣ୍ଡାର,
ମାୟା ଜୀବ ସ୍ୱାମୀ ଯିଏ ଜଗତ ଆଧାର,
ସେହି ରଘୁମଣି ରାମ ମୋ ସ୍ୱାମୀ କେବଳ ।
(କହି ଏହା ନୁଆଁଇଲେ ମଥା ମହେଶ୍ୱର) । ୬୬୩

ବୁଝେନା ନିଜର ଭ୍ରମ ପାମର ଅଜ୍ଞାନୀ,
ପ୍ରଭୁଙ୍କୁ ଦିଅଇ ଦୋଷ ଏହି ଜଡ଼ ପ୍ରାଣୀ ।
ଯେସନେ ଗଗନେ ଦେଖି ଘନ ଆବରଣ,
ମେଘାଚ୍ଛନ୍ନ ସୂର୍ଯ୍ୟେ ଶଙ୍କା କରେ ମୂର୍ଖ ଜନ । ୬୬୪

ଯେହ୍ନେ ନିରେଖଇ ଦେଇ ଅଙ୍ଗୁଳି ନୟନେ,
ଲାଗେ ତାକୁ ବେନି ଶଶି ଉଦିତ ଗଗନେ ।
ରାମଙ୍କ ବିଷୟେ ଉମା ମୋହ ସେହିପରି,
ତମ ଧୂମ ଧୂଳି ଶୋଭେ ଆକାଶେ ଯେପରି । ୬୬୫

(ଅନ୍ଧକାର ଧୂଆଁ ଧୂଳି ଦେଖିଲେ ଗଗନେ,
ଆକାଶ ଅସ୍ତିତ୍ୱ କଥା ନ ପଡ଼ଇ ମନେ ।
ନଭ ନିରମଳ, ତା'ର ନାହିଁ ମଳିନତା,
ଧୂଆଁ ଧୂଳି ଆଚ୍ଛାଦଇ ଭାବିବା ମୂର୍ଖତା ।
ନିର୍ଲେପ ନିର୍ମଳ ନିତ୍ୟ ରାମ ଅବତାର,
ନ ଯାଏ ସଗୁଣେ ତାଙ୍କ ପ୍ରଭୁତ୍ୱ ବେଭାର ।)

ବିଷୟ ଇନ୍ଦ୍ରିୟ ଆଉ ତାଙ୍କ ଦେବଗଣ,
ଜୀବାତ୍ମା—ଏ ଏକ ବଳେ ଏକ ସଚେତନ ।

ଏ ସଭଙ୍କ ଯେ ପରମ ନିତ୍ୟ ପ୍ରକାଶକ,
ସେହି ତ ଅନାଦି ରାମ ଅଯୋଧ୍ୟା ନାୟକ । ୭୭୬

(ବିଷୟକୁ ଚେତା କରେ ଇନ୍ଦ୍ରିୟ ସକଳ,
ଇନ୍ଦ୍ରିୟ ଦେବଙ୍କ ଦ୍ୱାରା ଇନ୍ଦ୍ରିୟେ ଚଞ୍ଚଳ ।
ଇନ୍ଦ୍ରିୟ ଦେବତାଗଣେ ହୁଅନ୍ତି ଜାଗ୍ରତ,
ଜୀବାତ୍ମାଙ୍କ ସାହାଯ୍ୟରେ ଜାଣ ଅବିରତ ।
ଯେ ଅନାଦି ବ୍ରହ୍ମ ଯେହୁ ନିତ୍ୟ ପ୍ରକାଶକ,

ସେହିଁ ତ ଶ୍ରୀ ରାମଚନ୍ଦ୍ର ଅଯୋଧ୍ୟା ନାୟକ ।)
ଜଗତ ପ୍ରକାଶ୍ୟ ତା'ର ପ୍ରକାଶକ ରାମ,
ମାୟା ଅଧୀଶ୍ୱର ସେହି ଜ୍ଞାନ ଗୁଣ ଧାମ ।
ଯାହାଙ୍କ ସତ୍ତ୍ୱରୁ ମୋହ ସହାୟତା ଫଳେ,
ଜଡ଼ମାୟା ମଧ୍ୟ ସତ୍ୟ ଲାଗଇ ଭୂତଳେ । ୭୭୭

ଶିପେ ରୁପା, ରବି କରେ ଜଳରେ ପ୍ରତୀତି,
ଏ ଜଗତେ ପ୍ରତିଭାତ ହୁଅଇ ଯେମିତି;
ଯଦି ଅବା ଏ ପ୍ରତୀତି ମିଥ୍ୟା ତିନିକାଳେ,
ତଥାପି ଏ ଭ୍ରମ ଟାଳି ପାରେ କେ ସଂସାରେ । ୭୭୮

ଏସନ ପ୍ରକାରେ ହରି ଆଶ୍ରିତ ଜଗତ,
ଅସତ୍ୟ ହେଲେ ବି ଦୁଃଖ ଦିଏ ଅବିରତ ।
ଯେପରି କେ ଶିର କାଟି ନଅଇ ସପନେ,
ଏ ଦୁଃଖ ଯାଏନା କେବେ ବିନା ଜାଗରଣେ । ୭୭୯

(ଅଜ୍ଞାନର ଅନ୍ୟ ନାମ ଦୁଃଖ ଅଟେ ଭାଇ,
ଜ୍ଞାନୋଦୟେ ସୁଖ ଛଡ଼ା ଅନ୍ୟ କିଛୁ ନାହିଁ ।
ଆନନ୍ଦ କେବଳ ରାମ, ରାମହିଁ, ଆନନ୍ଦ,
ଜ୍ଞାନର ଉଦୟେ ଏଥି ନ ରହଇ ଦ୍ୱନ୍ଦ୍ୱ ।)

ଯାହାଙ୍କ କୃପାରେ ଏହି ଭ୍ରମ ହୁଏ ନାଶ,
ଗିରିଜା ! ଶ୍ରୀରାମ ସେହି କରୁଣା-ନିବାସ ।

ଯା'ର ଆଦି ଅନ୍ତ କେହି ନ ଅଛନ୍ତି ପାଇ,
ସ୍ୱବୁଦ୍ଧିରେ ବେଦସବୁ ତା' ସ୍ୱରୂପ ଗାଇ । ୬୮୦

ପାଦ ବିନା ଚାଲନ୍ତି ସେ ଶୁଣନ୍ତି ଅକାନେ,
କର ବିନା କର୍ମ ତାଙ୍କ ନାନାଦି ବିଧାନେ ।
ବଦନ ବିହୀନ କିନ୍ତୁ ସର୍ବ ରସ ଭୋଗୀ,
ବାଣୀ ବିନା ସେ ବକତା ଅତି ବଡ଼ ଯୋଗୀ । ୬୮୧

ଦେଖନ୍ତି ନୟନ ବିନା ଅତନୁରେ ସ୍ପର୍ଶ,
ନାସିକା ବିହୁନେ ଗନ୍ଧ ଘେନନ୍ତି ଅବଶ୍ୟ ।
ଏହିପରି ସବୁ ଭାବେ ଅଦ୍ଭୁତ କରଣୀ,
ମହିମା ତାଙ୍କର ଅବା କେ ପାରିବ ବର୍ଣ୍ଣି । ୬୮୨

ବେଦ ବୁଧେ ଏହିପରି ଯାହାଙ୍କର ଗାନ,
କରନ୍ତି, ମୁନିଗଣେ ପୁଣି ଆଚରନ୍ତି ଧ୍ୟାନ ।
ଭକ୍ତ ହିତକାରୀ ସେହି ଦାଶରଥି ରାମ,
କୋଶଳର ଅଧିପତି ସ୍ୱୟଂ ଭଗବାନ । ୬୮୩

କାଶୀରେ ମରିବା ଜୀବଗଣେ ଗୋ ପାର୍ବତୀ,
ଯେଉଁ ନାମ ବଳେ କରେ ଶୋକରୁ ମୁକତି ।
ସେ ଅନନ୍ତ ପ୍ରଭୁ ମୋର ଚରାଚର ସ୍ୱାମୀ,
ରଘୁବର ସଭିଙ୍କର ହୃଦି ଅନ୍ତର୍ଯ୍ୟାମୀ । ୬୮୪

ନିରୂପାୟେ ନର କଲେ ଯା' ନାମ ସ୍ମରଣ,
ବହୁ ଜନ୍ମକୃତ ପାପ ହୁଅଇ ହରଣ ।
ଆଦରେ ସେ ନାମ ଉଚେ ଯେହୁ ଉଚାରଇ,
ଗୋଷ୍ପଦ ସମାନ ଭବ ସିନ୍ଧୁକୁ ତରଇ । ୬୮୫

ସେହି ରାମ ପରମାତ୍ମା ଶୁଣ ଗୋ ଗିରିଜା,
ଅବିହିତ ଅତି ତାଙ୍କଠାରେ ଭ୍ରମ କରି ।

ହୃଦେ ଉପୁଜିବା ମାତ୍ରେ ଏପରି ସଂଶୟ,
ସବୁ ଜ୍ଞାନ ବଇରାଗ୍ୟ ଗୁଣ ହୁଏ କ୍ଷୟ ।" ୬୮୬

ଶୁଣି ମହେଶଙ୍କ ଭ୍ରମ-ଭଞ୍ଜନ-ବଚନ,
ସକଳ କୁତର୍କ ମୋହ ହେଲା ବିନାଶନ ।
ରଘୁପତି ପଦେ ପ୍ରୀତି ପ୍ରତୀତି ଜନ୍ମିଲା,
ଅଳୀକ କଳ୍ପନା ମିଥ୍ୟା ସଂଶୟ ଛୁଟିଲା । ୬୮୭

ବାର ବାର ଧରି ପ୍ରଭୁ ପଙ୍କଜ-ପୟର,
ଉମାପତି-ପ୍ରିୟା-ଉମା ଯୋଡ଼ି ପଦ୍ମକର ।
କହିଲେ ବଚନ ମଧୁ କୋମଳ ସରସ,
ସତେ ସେ କଥାରେ ବୋଳା ଭକତି-ପୀୟୂଷ । ୬୮୮

"ଶଶିକର ସମ ତବ ଶୀତଳ ବଚନେ,
ମୋ ମୋହ-ଶରଦ-ତାପ ନାଶ ଗଲା କ୍ଷଣେ ।
କୃପାରୁ ହରିଲ ମୋର ମନୁ ଭ୍ରମ ମାନ,
ଶ୍ରୀରାମ ସ୍ୱରୂପେ ଏବେ ଉପୁଜିଲା ଜ୍ଞାନ । ୬୮୯

ନାଥ କୃପା କରି ମୋର ହରିଲ ବିଷାଦ,
ସୁଖୀ ହେଲି ଲଭି ତବ ଚରଣ ପ୍ରସାଦ ।
ନାରୀ ଜାତି ସହଜେ ତ ମୂ଼ ମୁଖ ଅଜ୍ଞାନୀ,
ତଥାପି ମୁଁ ତବ ପଦ-ଦାସୀ ବୋଲି ଜାଣି—୬୯୦

ପ୍ରଥମେ ଯା' ପଚାରିଛି କହନ୍ତୁ ସତ୍ୱରେ,
ହେ ପ୍ରଭୁ ପ୍ରସନ୍ନ ଯେବେ ହେଲ ମୋ ଉପରେ ।
ଶ୍ରୀରାମ ଚିନ୍ମୟ ବ୍ରହ୍ମ ନିତ୍ୟ ଅବିନାଶୀ,
ସକଳ ରହିତ ସର୍ବ ହୃଦୟ ନିବାସୀ । ୬୯୧

କି ଲାଗି ଧାରଣ କଲେ ନର କଳେବର,
ସକଳ ବୁଝାଇ ମୋତେ କହ ମହେଶ୍ୱର ।"
ଉମାଙ୍କ ଉତ୍ତମ ନମ୍ର ବିନୀତ ବଚନ—
ରାମ ପ୍ରୀତି ଭରା ପୁଣି ପରମ ପାବନ । ୬୯୨

ହୃଦୟେ ହରଷ ହେଲେ କାମାରି ଶଙ୍କର,
ସହଜେ ତ ମହାଯୋଗୀ ଶିବ ସୁଜ୍ଞ ବର ।
ଉମାଙ୍କୁ ପ୍ରଶଂସା କରି ନାନା ପରକାରେ,
କହିଲେ ସକଳ କଥା ଅଶେଷ ଶ୍ରଦ୍ଧାରେ । ୭୯୩

**ନବାହ୍ନ ପାରାୟଣ, ପ୍ରଥମ ବିଶ୍ରାମ**
**ମାସ ପାରାୟଣ, ଚତୁର୍ଥ ବିଶ୍ରାମ ।**

## ପାଞ୍ଚ

"ଶୁଣ ଗୋ ପାର୍ବତୀ ରାମ ଚରିତ ମାନସ,
ମଙ୍ଗଳ ଦାୟକ ଶୁଭ ସୁବିମଳ ରସ ।
ବିସ୍ତାର ଯା' କହିଥିଲେ ଭୁଷୁଣ୍ଡି ବାୟସ
ଶୁଣିଥିଲେ ଭକ୍ତରାଜ ଗରୁଡ଼ ସେ ରସ । ୭୧୪

ଯେ ଘଟେ ଘଟିଲା ଏହି ଉଦାର ଚରିତ,
ତାହା ମୁଁ କହିବି ପରେ, ଅତି ଆଚମ୍ବିତ ।
ଏବେ ରାମ ଅବତାର ଚରିତ ଶୋଭନ,
ପରମ ପବିତ୍ର ଅତି ଶୁଣ ଦେଇ ମନ । ୭୧୫

ଶ୍ରୀହରିଙ୍କ ନାମ ଗୁଣ ଗାରିମା ଅପାର,
କଥା ରୂପ ଅଗଣିତ ଅମିତ ଭଣ୍ଡାର ।
କହୁଛି ମୋ ବୁଦ୍ଧି ମତେ ଆଦର ସହିତ,
ଶୁଣ ଗୋ ପାର୍ବତୀ ଏବେ ଦେଇ ସ୍ଥିର ଚିତ୍ତ । ୭୧୬

ହରି କଥା ସୁବିମଳ ସୁନ୍ଦର ପାବନ,
ଶତମୁଖେ ଗାଇଛନ୍ତି ବେଦ ଶାସ୍ତ୍ରଗଣ ।
ହରି ଅବତାର ଯେଉଁ ହେତୁ ହୋଇଥିବ,
"ତାହା ଏହା" ବୋଲି କୁହା ଯାଇ ନ ପାରିବ । ୭୧୭

ଶ୍ରୀରାମ ଅତର୍କ୍ୟ ମନ ବୁଦ୍ଧି ଓ ବଚନେ,
ଏହି ଆମ୍ଭ ମତ ଜାଣ ତନୁଜା ଗୋ ମନେ ।
ତଥାପି ପୁରାଣ ବେଦ ସନ୍ଥ ସାଧୁ ଯତି,
ବୁଦ୍ଧିମତେ କଳ୍ପିତରେ ଯା କିଛି କହନ୍ତି— । ୭୧୮

ପୁଣି ଯାହା କହୁଛ ମୁହିଁ ବୁଝିଛୁ ସୁମୁଖୀ,
ସେ ସବୁ କାରଣ ତୁମ ଆଗରେ କହୁଚି ।
ଯେବେ ଯେବେ ହୋଇଥାଏ ଧରମର ହାନି,
ବଢ଼ିଯାନ୍ତି ନିଶାଚରେ ଅଧମାଭିମାନ । ୬୯୯

କରନ୍ତି ଅକଥନୀୟ ଅନୀତି ସଂସାରେ,
ପୀଡ଼ନ୍ତି ଗୋମାତା ବିପ୍ର ପୃଥିବୀ ହିଂସାରେ ।
ସେହି ସେହି ସମୟରେ କରୁଣା ସାଗର,
ହରନ୍ତି ସଜ୍ଜନ ପୀଡ଼ା ଧରି କଳେବର । ୭୦୦

ଅସୁରେ ନିଧନ କରି ଦେବତା ପାଳନେ,
ବେଦ ମର୍ଯ୍ୟାଦାକୁ ରକ୍ଷା କରିବା କାରଣେ ।
ନିଜର ନିର୍ମଳ ଯଶେ ଗୁହିବା ଭୁବନ,
ରାମ ଅବତାରର ତ ଅଟଇ କାରଣ । ୭୦୧

ଏ ସବୁ ଚରନ୍ତି ଭକ୍ତେ ସେହି ଯଶ ଗାଇ,
ଶରୀର ଧରନ୍ତି ପ୍ରଭୁ ଭକ୍ତ ହିତ ପାଇଁ ।
ରାମ ଜନ୍ମ ହୋଇବାର ଅନେକ କାରଣ,
ସବୁ ଏକୁ ଏକେ ବଳି ବିଚିତ୍ର ରକମ । ୭୦୨

ଗୋଟିଏ ଦୁଇଟି ଜନ୍ମ ବୃତ୍ତାନ୍ତ ବଖାଣି,
କହେ ସାବଧାନେ ଶୁଣ ସୁମତି ଭବାନୀ ।
ହରିଙ୍କର ଥିଲେ ଦୁଇ ପ୍ରିୟ ଦ୍ୱାରପାଳ,
ଜୟ ଓ ବିଜୟ ନାମେ ବିଦିତ ସଂସାର । ୭୦୩

(ଯାଇଥିଲେ ଦିନେ ସନକାଦି ଋଷିଗଣେ,
ବୈକୁଣ୍ଠ ପୁରକୁ ମିଳି ହରି ଦରଶନେ ।
ଜଗିଥିଲେ ଦ୍ୱାରପାଳ ଏହି ଦୁଇ ଭାଇ,
ଭିତରେ ଯିବାକୁ ଅନୁମତି ଦେଲେ ନାହିଁ ।
ଋଷି ଦେଲେ ଅଭିଶାପ ଅତି କ୍ରୋଧ ଭରେ,
ତିନି ଜନ୍ମେ ଜନ୍ମ ଲଭ ଅସୁର ଦେହରେ ।)

ବିପ୍ର ଅଭିଶାପ ଯୋଗୁଁ ସେହି ବେନି ଭାଇ,
ହୋଇଲେ ଅସୁର ତମ-କଳେବର ପାଇ ।
ଜଣେ ହିରଣ୍ୟକଶିପୁ ଆନ ହିରଣାକ୍ଷ,
ଇନ୍ଦ୍ର ଗର୍ବ ଖର୍ବକାରୀ ଜଗତେ ବିଖ୍ୟାତ । ୭୦୪

ସମରେ ବିଜୟୀ ବେନି ପରାକ୍ରମୀ ବୀରେ,
ଜଣକୁ ବଧିଲେ ହରି ବରାହ ଶରୀରେ ।
ହୋଇ ନରସିଂହ ରୂପ ଅନ୍ୟକୁ ମାରିଲେ,
ଭକ୍ତ ପ୍ରହଲାଦ ଯଶ ବିଶ୍ୱେ ବିସ୍ତାରିଲେ । ୭୦୫

ପରେ ନିଶାଚର କୁଳେ ବେନି ହେଲେ ଜାତ,
ବଳବାନ ଯୋଦ୍ଧା ବୀରବର ସୁବିଖ୍ୟାତ ।
ରାବଣ ଓ କୁମ୍ଭକର୍ଣ୍ଣ, ଦେବତା ବିଜୟୀ,
ଯାହାଙ୍କର ନାମ ବଳ ଜଗତ ଜାଣଇ । ୭୦୬

ହରି ହସ୍ତେ ହତ ହୋଇ ନ ହେଲେ ମୁକତ,
ବିପ୍ର ଶାପ ଥିଲା ତିନି ଜନମ ପର୍ଯ୍ୟନ୍ତ ।
ଆଉ ଥରେ ସେ ବେନିଙ୍କ ଉପକାର ଲାଗି,
ଶରୀର ଧରିଲେ ପ୍ରଭୁ ଭକ୍ତ ଅନୁରାଗୀ । ୭୦୭

କଶ୍ୟପ ଅଦିତି ସେହି ଜନ୍ମେ ପିତାମାତ,
ପର ଜନ୍ମେ ଦଶରଥ କଉଶଲ୍ୟା ଖ୍ୟାତ ।
ଏକ କଳ୍ପେ ଏହିପରି ନାନା ଅବତାରେ,
କରିଲେ ପବିତ୍ର ଲୀଳା ପ୍ରଭୁ ଏ ସଂସାରେ । ୭୦୮

ଆଉ ଏକ କଳ୍ପେ ଯୁଦ୍ଧି ଜଳନ୍ଧର ସହ,
ସବୁ ଦେବତାଏ ଦୁଃଖ ଲଭିଲେ ଅସହ୍ୟ ।
ଘୋର ଯୁଦ୍ଧ କଲେ ତାହା ସଙ୍ଗେ ମହେଶ୍ୱର,
ମାରିଲେ ନ ମରେ ମହାବଳୀ ନିଶାଚର । ୭୦୯

କପଟେ ତା ବ୍ରତ ଭଙ୍ଗ କରି ନାରାୟଣ,
ଦେବତାଙ୍କ କାର୍ଯ୍ୟ ସବୁ କରିଲେ ପୂରଣ ।

ଯେବେ ଏ କପଟ କଥା ସତୀ ଜାଣିଗଲେ,
ପ୍ରଭୁଙ୍କୁ ସେ ଅଭିଶାପ ଦେଲେ କ୍ରୋଧଭରେ । ୭୧୦

ଲୀଳାମୟ ଭଗବାନ କୃପା-ପାରାବାର,
ସାଦରେ ସତୀଙ୍କ ଶାପ କଲେ ଅଙ୍ଗୀକାର ।
ସେ କଳ୍ପେ ଏ ଜଳନ୍ଧର ହୋଇଲା ରାବଣ,
ମୁକ୍ତି ଦେଲେ ରାମ କରି ସମରେ ନିଧନ । ୭୧୧

ଏକ ଜନମର ଏହି ଅଟଇ କାରଣ,
ଯେ ପାଇଁ ମାନବ ରୂପ ହେଲେ ନାରାୟଣ ।
ଶୁଣ, ମୁନି କବିଗଣ ନାନା ପରକାରେ,
ପ୍ରଭୁ ଅବତାର କଥା ଗାଆନ୍ତି ସଂସାରେ । ୭୧୨

ଦେବର୍ଷି ନାରଦ ଦେଲେ ଶାପ ଏକବାର,
ସେ ଲାଗି ସେ ଏକ କଳ୍ପେ ହେଲେ ଅବତାର ।
ଗିରିଜା ଏ କଥା ଶୁଣି ହେଲେ ଆଚମ୍ବିତ,
କହିଲେ, 'ନାରଦ ବିଷ୍ଣୁ ଭକତ ପଣ୍ଡିତ । ୭୧୩

କି କାରଣେ ତେବେ ଶାପ ଦେଲେ ମୁନିବର,
କିବା ଅପରାଧ ଅବା କଲେ ଚକ୍ରଧର ?
ମୋ ଆଗେ ଏ କଥା କହ ଆହେ ତ୍ରିପୁରାରି,
ମୁନି ମନେ ମୋହ ହେବା ଆଚମ୍ବିତ ଭାରି ।' ୭୧୪

କହିଲେ ମହେଶ ହସି, 'ଶୁଣ ଗୋ ଭବାନୀ,
କେହି ନାହିଁ ଏ ସଂସାରେ ମୂର୍ଖ ଅବା ଜ୍ଞାନୀ ।
ଯାହାକୁ ଯେପରି ଭାବେ କରନ୍ତି ଶ୍ରୀହରି,
ସେକ୍ଷଣି ତ ସେହି ଜନ ହୁଅଇ ସେପରି । ୭୧୫

କହିଲେ ମୁନୀଶ ଭରଦ୍ୱାଜ ମୁନିବର,
ଶୁଣ ରାମ ଗୁଣ କଥା କରି ସମାଦର ।
ତୁଳସୀ କହନ୍ତି ତେଜି ମନୁ ମାନ ମଦ,
ଭଜ ଭବ-ବିଭଞ୍ଜନ ରଘୁପତି ପଦ । ୭୧୬

ହିମାଳୟେ ଏକ ଅତି ପବିତ୍ର କନ୍ଦର,
ସମୀପେ ତା’ ବହେ ସୁର ସରିତ ସୁନ୍ଦର ।
ତହିଁ ଦେଖି ଏକ ରମ୍ୟ ଆଶ୍ରମ ନାରଦ,
ଲଭିଲେ ହୃଦୟ ପୂରେ ପରମ ଆନନ୍ଦ । ୭୧୭

ଦେଖି ନଦୀ ବନ ଗିରି ସୁଷମା ବିଭାଗ,
ଉପୁଜିଲା ରମାପତି ପଦେ ଅନୁରାଗ ।
ହରିଙ୍କ ସ୍ମରଣେ ଶାପ ବନ୍ଧନ ତୁଟିଲା,
ସହଜ ନିର୍ମଳ ମନେ ସମାଧି ଜାଗିଲା । ୭୧୮

(ଦେଇଥିଲେ ଅଭିଶାପ ଦକ୍ଷ ପ୍ରଜାପତି,
ନାରଦ ହୋଇବେ ସଦା ସୁଚଞ୍ଚଳ ମତି ।
ଦ୍ୱ’ ଘଡ଼ିରୁ ବେଶୀକାଳ ସେ ତ କେଉଁ ସ୍ଥାନେ,
ରହି ନ ପାରିବେ କେବେ ଶାପର ବିଧାନେ ।)
ଦେବର୍ଷିଙ୍କ ଗତି ଦେଖି ଭୟେ ସୁରେଶ,
କାମଙ୍କୁ ଡକାଇ କଲେ ସମ୍ମାନ ଅଶେଷ ।
ସଙ୍ଗେ ସଖା ଘେନ ଯାଅ କାମ ମୋର ହିତେ,
ମକର କେତନ ଗଲେ ଶୁଣି ଫୁଲ୍ଲ ଚିତ୍ତେ । ୭୧୯

ସୁନାଶୀର ମନ ମଧ୍ୟେ ଉପୁଜଇ ତ୍ରାସ,
ଦେବର୍ଷି ଗୃହାନ୍ତି ଅବା ମୋ ପୁରେ ନିବାସ ।
ଯେତେ କାମୀ ଲୋଭୀଜନ ଜଗତେ ଅଛନ୍ତି,
କୁଟିଳ ବାୟସ ସମ ସଭିଙ୍କୁ ଡରନ୍ତି । ୭୨୦

ଶଠ ଶ୍ୱାନ ଯେସ୍ନେ ଶୁଷ୍କ ଅସ୍ଥି ଖଣ୍ଡେ ପାଇ,
ଧାଏଁ ସିଂହ ଦେଖି କାଳେ ନେବ ସେ ଛଡ଼ାଇ ।
ତେସ୍ନେ ନାରଦଙ୍କୁ ଡରିଗଲେ ଦେବରାଜ,
ଅବା ନେବେ ଇନ୍ଦ୍ରପଦ, ନାହିଁ ତାଙ୍କ ଲାଜ । ୭୨୧

ସେହି ଆଶ୍ରମକୁ ବେଗେ ଚଳିଲେ ମଦନ,
ସ୍ୱମାୟାରେ କଲେ ଋତୁରାଜଙ୍କୁ ଉତ୍ପନ୍ନ ।

ବିଟପେ ନାନାବିଧ ରଙ୍ଗ କୁସୁମ ଫୁଟିଲେ,
ଗୁଞ୍ଜନ କରିଲେ ଭୃଙ୍ଗେ ପିକେ କୁହରିଲେ । ୭୨୨

ଶୀତଳ ସୁଗନ୍ଧ ମନ୍ଦ ପବନ ବହିଲା,
କାମ ଅନଳକୁ ହୃଦେ ପ୍ରବଳେ ତେଜିଲା ।
ରମ୍ଭା ଆଦି ସୁରନାରୀ ଚତୁରୀ ନବୀନା,
ସର୍ବେଁ ସକଳ କାମ କଳାରେ ପ୍ରବୀଣା । ୭୨୩

ଗାଆନ୍ତି ନାନାବିଧ ସ୍ୱର-ତରଙ୍ଗେ ସେମାନେ,
କନ୍ଦୁକେ ବିବିଧ କ୍ରୀଡ଼ା କରି ସେହି ସ୍ଥାନେ ।
ନିଜ ସହଚରେ ଦେଖି ହରଷିତ ମନେ,
କନ୍ଦର୍ପ ରଚିଲେ ନାନା ପ୍ରପଞ୍ଚ ସେ ବନେ । ୭୨୪

ମାଧବକ ଏ କାମ କଳା ନାରଦଙ୍କ ଠାରେ,
ପକାଇ ପାରିଲା ନାହିଁ ପ୍ରଭାବ କାହିଁରେ ।
ତହୁଁ ନିଜ ପାପ ଭୟେ କାମ ଗଲେ ଡରି,
ତାକୁ କେ ଛୁଇଁବ ଯାର ରକ୍ଷକ ଶ୍ରୀହରି । ୭୨୫

ସଖାଙ୍କ ସହିତେ କାମ ହୋଇ ଭୟଭୀତ,
ମନେ ମନେ ହାରି ମାନି କାରୁଣ୍ୟ ସହିତ ।
ଅତି ସବିନୟେ କହି କୋମଳ ବଚନ,
ଧରି ପକାଇଲେ ଯାଇ ଋଷିଙ୍କ ଚରଣ । ୭୨୬

ମହର୍ଷିଙ୍କ ମନେ କିଛି ନ ହୋଇଲା ରୋଷ,
ପ୍ରିୟବାଣୀ କହି କଲେ କାମେ ପରିତୋଷ ।
ମୁନିଙ୍କ ଆଦେଶ ଲଭି ପ୍ରଣମି ଚରଣେ,
କାମ ଗଲେ ଫେରି ନେଇ ସାଥେ ସଖାଗଣେ । ୭୨୭

ଇନ୍ଦ୍ରଙ୍କ ସଭାରେ କାମ କହିଲେ ସକଳ,
ମୁନିଙ୍କ ଶୀଳତା ନିଜ କର୍ମର ଫଳ ।
ଶୁଣି ତା ବିସ୍ମୟ ଭରେ ସର୍ବଙ୍କର ମନେ,
ପ୍ରଶଂସି ମୁନିଙ୍କୁ ପ୍ରଣମିଲେ ନାରାୟଣେ ।

ନାରଦ ଚଳିଲେ ତହୁଁ ଶିବଙ୍କର ପାଶେ,
କାମଜିତ ବୋଲି ମନେ ଅଭିମାନ ଆସେ ।
ଶୁଣାଇଲେ ତାଙ୍କୁ ସବୁ ମଦନ କାହାଣୀ,
ଶିବ ଶିକ୍ଷା ଦେଲେ ତାଙ୍କୁ ନିଜ ଲୋକ ଜାଣି । ୭୨୯

"କହୁଚି ବହୁତ କରି ମୁନି ବାରବାର,
ମୋ ଆଗେ କହିଲ ଏହି କଥା ଯେ ପ୍ରକାର,
କେବେ ଶୁଣାଇବ ନାହିଁ ହରିଙ୍କୁ ସେପରି,
ପ୍ରସଙ୍ଗ ପଡ଼ିଲେ ଲୁଚାଇବ ମନେକରି ।" ୭୩୦

ଯଦ୍ୟପି ହିତରୁ ଶିବ ଦେଲେ ଉପଦେଶ,
ଭଲ ନ ଲାଗିଲା କିନ୍ତୁ ମୁନିଙ୍କୁ ବିଶେଷ ।
ଶୁଣ ଭରଦ୍ୱାଜ ଏହି କଉତୁକ କଥା,
"ହରି ଇଚ୍ଛା ବଳବତୀ ଅଟଇ ସର୍ବଥା । ୭୩୧

ଶ୍ରୀରାମ ଚାହାନ୍ତି ଯାହା ତାହା ହୋଇଥାଇ,
ଅନ୍ୟଥା କରିବା ଲୋକ ଏପରି କେ ନାହିଁ ।
ମୁନିଙ୍କୁ ଶିବଙ୍କ କଥା ନ ଲାଗିଲା ଭଲ,
ବ୍ରହ୍ମଲୋକେ ତହୁଁ ସେହି ଚଳିଲେ ଚଞ୍ଚଳ । ୭୩୨

ଏକଦା ସୁମନୋହର ବୀଣା କରେ ଧରି,
ପରମ ପ୍ରବୀଣ ହରିଗୁଣ ଗାନ କରି ।
କ୍ଷୀର-ସମୁଦ୍ରକୁ ଯାତ୍ରା କଲେ ମୁନିନାଥ,
ଯହିଁ ନିବସନ୍ତି ଶ୍ରୁତି ଶିର ଶ୍ରୀନିବାସ । ୭୩୩

ଶ୍ରୀନିବାସ ଉଠି କଲେ ଦେଖା ହର୍ଷମନେ,
ମୁନିଙ୍କ ସହିତେ ଯାଇ ବସିଲେ ଆସନେ ।
ଚରାଚର ସ୍ୱାମୀ ପୁଣି କହିଲେ ବିହସି,
"ବହୁ ଦିନ ପରେ ଦୟା କଲ ହେ ମହର୍ଷି ।" ୭୩୪

କହିଲେ ନାରଦ ସବୁ କନ୍ଦର୍ପ ଘଟଣା,
ଯଦ୍ୟପି ମହେଶ ତାଙ୍କୁ କରିଥିଲେ ମନା ।

ରଘୁପତିଙ୍କର ମାୟା ପ୍ରଚଣ୍ଡ ବିଷମ,
ନ ମୋହେ ଏପରି କିଏ ହୋଇଛି ଜନମ । ୭୩୫

ଶ୍ରୀମୁଖ ଶୁଖାଇ ହରି କୋମଳ ବଚନେ,
କହିଲେ, "ହେ ମୁନି ତବ ନାମ ସୁମରଣେ ।
ଯେତେ ମୋହ କାମ ମଦ ଅଭିମାନ ବିଷ,
ମେଣ୍ଟଇ ସକଳ କ୍ଷଣେ, କୁହ ଆଉ କିସ ? ୭୩୬

ବିବେକ ବୈରାଗ୍ୟ ନାହିଁ ହୃଦୟେ ଯାହାର,
ହେ ମୁନି, କେବଳ ମୋହ ଜାତ ହୁଏ ତାର ।
ତୁମେ ବ୍ରହ୍ମଚର୍ଯ୍ୟ ବ୍ରତ ପୁଣି ଧୀର ମତି,
ତୁମକୁ କି ଦେଇ ପାରେ ପୀଡ଼ା ରତିପତି ?" । ୭୩୭

କହିଲେ ନାରଦ ତହୁଁ ଅଭିମାନ ସହ,
"ଏ ସକଳ ଅଟେ ପ୍ରଭୁ ତୁମ ଅନୁଗ୍ରହ ।"
ଜାଣିଲେ କରୁଣାନିଧି ବିଚାରି ମନରେ
ଗର୍ବତରୁ ଗଜା ଏବେ ହୋଇଛି ହୃଦରେ । ୭୩୮

ତାହା ମୂଳୁଁ ଉପାଡ଼ିବା କର୍ତ୍ତବ୍ୟ ମୋହର,
ମୋ ବ୍ରତ, ଭକତ ହିତ ସେବକ ଜନର ।
ମୋର କଉତୁକ ପୁଣି ମୁନିଙ୍କ କଲ୍ୟାଣ,
ସେହିପରି ଉପାୟ ମୁଁ କରିବି ଭିଆଣ । ୭୩୯

ହରିଙ୍କ ପୟରେ ମୁନି କରି ନମସ୍କାର,
ଚଳିଲେ ହୃଦୟେ ବହି ବହୁ ଅହଙ୍କାର ।
ପଛେ ପଠାଇଲେ ନିଜ ମାୟାକୁ ଶ୍ରୀହରି,
କଠିନ କରଣୀ ତାର ଗୁଣ ଏହିପରି । ୭୪୦

ମାର୍ଗେ ସେ ରଚିଲା ଏକ ସୁରମ୍ୟ ନଗରୀ,
ଶତେକ ଯୋଜନ ଲମ୍ବ ବହୁ ଶୋଭା ଧରି ।
ବଇକୁଣ୍ଠ ପୁରଠାରୁ ଅଧିକ ସୁନ୍ଦର,
ଶୋଭା ପାଉଥିଲା ସେହି ମାୟାର ନଗର । ୭୪୧

ବହୁ ସୌମ୍ୟ ନରନାରୀ ନିବସନ୍ତି ତହିଁ
ଶତ ରତି ରତିପତି ଅବା ଦେହ ବହି ।
ଶୀଳନିଧି ନାମେ ରଜା ଥିଲେ ସେ ନଗରେ
ବହୁ ଅଶ୍ୱ ହସ୍ତୀ ସୈନ୍ୟ ସାମନ୍ତ ସଙ୍ଗରେ । ୭୪୨

ବିଳାସ ବିଭବେ ସେ ତ ସୁରପତି ସମ,
ରୂପ ତେଜ ବଳଶୀଳ ମଣ୍ଡିତ ପରମ ।
ଥିଲା ଏକ କନ୍ୟା, ନାମ ତା ବିଶ୍ୱମୋହିନୀ,
ରୂପର ଶୋଭାରେ ଲକ୍ଷ୍ମୀ ହୋଇଯିବେ କିଣି । ୭୪୩

ହରି ମାୟା ମାତ୍ର ଜାଣ ସବୁ ରୂପ ଖଣି,
ତାହାର ଶୋଭାକୁ ଅବା କେ ପାରିବ ବର୍ଣ୍ଣି ।
ସ୍ୱୟଂବର ରଚିଥିଲା ସେ ରାଜକୁମାରୀ
ତହିଁ ଆସିଥିଲେ ତେଣୁ ନୃପ ଅସୁମାରୀ । ୭୪୪

କଉତୁକୀ ମୁନିବର ଗଲେ ସେ ନଗରେ,
ପଚାରିଲେ ସବୁ କଥା ସେହି ପୁର ନରେ ।
ସବୁ ଶୁଣି ମୁନି ରାଜ ଭବନେ ଆସିଲେ,
ପୂଜା କରି ନୃପ ମୁନିବରେ ବସାଇଲେ । ୭୪୫

ଦେଖାଇଲେ ଆଣି ନାରଦଙ୍କୁ ନରପତି,
ନିଜର କନ୍ୟାକୁ ହୋଇ ବିହ୍ୱଳିତ ମତି ।
କହିଲେ, 'ହେ ନାଥ ବୁଝ ବିଚାରି ମନରେ
ମୋ କନ୍ୟାର ଦୋଷ ଗୁଣ ସବୁ ନିର୍ଭୟରେ ।' ୭୪୬

ବୈରାଗ୍ୟ ଭୁଲିଲେ ମୁନି କନ୍ୟା ରୂପ ଦେଖି,
ବହୁ ବେଳଯାଏଁ ତାକୁ ରହିଲେ ନିରେଖି ।
ଆପଣାକୁ ଭୁଲିଗଲେ ଦେଖି ତା ଲକ୍ଷଣ,
ହୃଦେ ହର୍ଷ, ପ୍ରକାଶେ୍ୟ ତା' ନ କଲେ ବର୍ଣ୍ଣନ । ୭୪୭

ଏହାକୁ ବରିବ ଯେହୁ ସେ ହେବ ଅମର,
ଜିଣି ନ ପାରିବେ କେହି କଲେ ବି ସମର ।

ଦେଖୁଥିବେ ଚରାଚର ସମସ୍ତେ ତାହାଙ୍କୁ,
ବରିବ ଏ ଶୀଳନଧି ଦୁହିତା ଯାହାଙ୍କୁ । ୭୪୮

ବଗୃର ଲକ୍ଷଣ ସବୁ ହୃଦୟେ ରଖିଲେ,
ମନୁ ଏଣୁ ତେଣୁ ଗଢ଼ି ରଜାଙ୍କୁ କହିଲେ ।
ସୁତା ସୁଲକ୍ଷଣି ବୋଲି ନୃପ ଆଗେ କହି,
ନାରଦ ଚଳିଲେ ମନେ ଅତି ଚିନ୍ତା ବହି । ୭୪୯

ଭାବ ଚିନ୍ତି କରିବ ମୁଁ ଏପରି ଯତନ,
ରାଜ କନ୍ୟା ମୋତେ ଯେହ୍ନେ କରିବ ବରଣ ।
ଜପ ତପ ଏ ସମୟେ ନୁହେଁ ପ୍ରୟୋଜନ,
ହେ ବିଧି ମିଳିବ କେହ୍ନେ ସେ କନ୍ୟା ରତନ । ୭୫୦

ଏ କାଳେ ପରମ ଶୋଭା ରୂପ ମନୋହର,
ରହୁଁ ଅଛୁ ମୁହିଁ, ଲୋଡ଼ା ସୌନ୍ଦର୍ଯ୍ୟ ମୋହର ।
ଯା' ଦେଖି ସେ କନ୍ୟା ହୋଇ ପ୍ରସନ୍ନ ମୋ ପରେ,
ଲମ୍ବାଇବ ଜୟମାଳି ଖୁସିରେ ମୋ ଗଳେ । ୭୫୧

ମାଗନ୍ତି ସୌନ୍ଦର୍ଯ୍ୟ ଅବା ହରି ପାଶେ ଯାଇ,
ଉଚ୍ଚୁର ହୋଇବ ଆଉ ବେଳ କାଳ ନାହିଁ ।
ହରିଙ୍କ ସମାନ ହିତକାରୀ କେ ମୋହର,
ନାହାନ୍ତି, ଏ ବେଳେ ସାହା ହୁଅନ୍ତୁ ଶ୍ରୀଧର । ୭୫୨

ବହୁତ ମିନତି କଲେ ଯେ ହେତୁ ସେ କାଳେ,
କୃପାଳୁ କୌତୁକୀ ଉଭା ହେଲେ ତତକାଳେ ।
ପ୍ରଭୁଙ୍କୁ ବିଲୋକି ନେତ୍ର ହେଲା ସୁଶୀତଳ,
କାର୍ଯ୍ୟ ସିଦ୍ଧି ଭାବି ହେଲେ ହରଷ ଅନ୍ତର । ୭୫୩

ଅତି ଆର୍ତ୍ତି ହୋଇ ମୁନି ଶୁଣାଇଲେ ସବୁ,
ଦୟା ବହି କର ମୋର ସହାୟତା ପ୍ରଭୁ ।
ଆପଣଙ୍କ ରୂପ ମୋତେ ଦିଅନ୍ତୁ ଗୋସାଇଁ,
ଅନ୍ୟ ଉପାୟରେ ତାକୁ ନ ପାରିବ ପାଇ । ୭୫୪

ଯେପରି ମଙ୍ଗଳ ହେବ ହେ ପ୍ରଭୁ ମୋହର,
ସେପରି ତୁରିତେ କର ଦାସ ମୁଁ ତୁମର ।
ନରେଖି ନିଜର ମାୟା ପ୍ରଭାବ ପ୍ରବଳ,
କୃପାଳୁ କହିଲେ ହସି, ଆହେ ମୁନିବର,—
ତୁମର ଅଶେଷ ହିତ ହୋଇବ ଯେପରି,
ହେ ନାରଦ ଶୁଣ ଆମ୍ଭେ କରିବୁ ସେପରି ।
ଏଥୁଁ ଆନ କିଛୁ ଆମ୍ଭେ ନ କରିବୁ ଜାଣ,
ମିଥ୍ୟା ନ ହୋଇବ ମୋର ବଚନ ପ୍ରମାଣ । ୨୫୫

କୁପଥ୍ୟ ମାଗିଲେ ରୋଗେ ବ୍ୟସ୍ତାକୁଳ ରୋଗୀ,
ବୈଦ୍ୟ ନ ଦିଅଇ କେବେ ଶୁଣ ଭକ୍ତ ଯୋଗୀ ।
ସେହିପରି ଜଣାଅଛି ମୋତେ ତବ ହିତ,
ଏହା କହି ପ୍ରଭୁ ତହୁଁ ହେଲେ ଅନ୍ତର୍ହିତ । ୨୫୬

ଘୋର ମାୟାବଶେ ମୂଢ଼ ହୋଇଥିଲେ ଋଷି,
ତେଣୁ ହରି କଥା ପାରିଲେନି ବୁଝି ।
ତରବରେ ଋଷିରାଜ ଚଳିଗଲେ ତହିଁ,
ସ୍ୱୟଂବର ସ୍ଥଳୀ ସଜା ହୋଇଥିଲା ଯହିଁ । ୨୫୭

ବସିଥିଲେ ନିଜ ନିଜ ଆସନେ ନରେଶ,
ସମାଜ ସହିତେ ସାଜି ବହୁବିଧ ବେଶ ।
ମୁନି ମନ ଖୁସି ନିଜ ରୂପ ଦରଶନେ,
ମୋତେ ଛାଡ଼ି କନ୍ୟା କେବେ ନ ବରିବ ଅନ୍ୟେ । ୨୫୮

ମୁନିଙ୍କ ମଙ୍ଗଳ ପାଇଁ କୃପା ନିକେତନ,
ତାହାଙ୍କୁ କୁରୂପ କଲେ ଅତି ଅବର୍ଣ୍ଣନ ।
କେହି ଜାଣି ନ ପାରିଲେ ଏ ସକଳ କଥା,
ସକଳେ ନାରଦ ଭାବି ନୁଆଁଇଲେ ମଥା । ୨୫୯

ପାଶେ ଦୁଇ ରୁଦ୍ରଗଣ ଥିଲେ ଉପସ୍ଥିତ,
ଏ ସକଳ ଭେଦ ତାଙ୍କୁ ଥିଲା ସୁବିଦିତ ।

ସବୁ ଦେଖୁଥିଲେ ବୁଲି ବୁଲି ବିପ୍ର ବେଶେ,
ସ୍ୱଭାବ ସୁଲଭ ନିଜ କୌତୁକ ଆବେଶେ । ୭୬୦

ନିଜ ରୂପ ଅଭିମାନ ଭରି ହୃଦୟରେ,
ବସିଲେ ନାରଦ ଯାଇ ଯେଉଁ ସମାଜରେ ।
ତହିଁ ଦୁଇଜଣ ଶିବଗଣ ଯେ ବସିଲେ,
ବିପ୍ରବେଶେ, ଗତି କେହି ବୁଝି ନ ପାରିଲେ । ୭୬୧

ଥଟ୍ଟା କରୁଥାନ୍ତି କେତେ ମୁନିଙ୍କୁ ଶୁଣାଇ,
ହରି ଦେଇଛନ୍ତି ଭଲ ରୂପ ଭଲି ଭାଇ ।
ରୂପେ ମୁଗ୍‌ଧ ହୋଇ ନିଶ୍ଚେ ବରିବ କୁମାରୀ,
ହରଷରେ 'ହରି' ବୋଲି ମନରେ ବିଚାରି । ୭୬୨

ମୁନି ବିମୋହିତ ପୁଣି ମନ ପର ହାତେ,
ହସନ୍ତି ଶିବଙ୍କ ଗଣ ଅତି ଆସ୍ତେ ଆସ୍ତେ ।
ଯେତେ ଶୁଣିଲେ ବି ମୁନି ଥଟ୍ଟା ପରିହାସ,
ବୁଝି ନ ପାରିଲେ ବୁଦ୍ଧି ହୋଇଥିଲି ନାଶ । ୭୬୩

କେହି ନ ଜାଣିଲେ ସେହି ରହସ୍ୟ ବିଶେଷ,
କେବଳ ଦେଖିଲେ ନୃପ କନ୍ୟା ସେହି ବେଶ ।
ମର୍କଟ ବଦନ ତନୁ ଅତି କଦାକାର,
ଦେଖିଲି ମାତ୍ରକେ କ୍ରୋଧ ହୃଦେ ହେଲି ତା'ର । ୭୬୪

ସଖୀ ସଙ୍ଗେ ନେଇ ରାଜକୁମାରୀ ଚଳଇ,
ସତେ କି ଅପୂର୍ବ ରାଜମରାଳ ଆସଇ ।
ସରସିଜ-କରେ ବାଳା ବରମାଳି ଧରି,
ବୁଲି ବୁଲି ଦେଖେ ସେ'ତ ରାଜନ୍ୟ ମଣ୍ଡଳୀ । ୭୬୫

ଯେଉଁ ଦିଗେ ମୁନିବର ବସିଥିଲେ ଫୁଲି,
ସେ ଦିଗକୁ ରାଜକନ୍ୟା ନ ଚାହାନ୍ତି ଭୁଲି ।
ବାର ବାର ଉଠି ମୁନି ଆକୁଳ ହୁଅନ୍ତି,
ଦଶା ଦେଖି ଶିବଗଣ ମୁରୁକି ହସନ୍ତି । ୭୬୬

ଧରି ନର ଦେହ ତହିଁ କୃପାନିଧି ଗଲେ,
ହର୍ଷେ ଲମ୍ଭାଇଲା ବାଳା ବରମାଳା ଗଳେ ।
ଘେନି ଦୁଲଣୀକୁ ଚାଲିଗଲେ ଶ୍ରୀନିବାସ,
ରାଜନ୍ୟ ମଣ୍ଡଳୀ ସର୍ବେ ହୋଇଲେ ନିରାଶ । ୭୬୭

ମୋହେ ନଷ୍ଟ ମୁନିମତି ହେଲା ବ୍ୟାକୁଳିତ,
ଗଣ୍ଠି ଫିଟି ମଣି ସତେ ପଡ଼ିଲା ଖସିତ ।
କହିଲେ ମୁରୁକି ହସି ବେନି ଶିବଗଣ,
ଦରପଣେ ନିଜ ମୁଖ କର ଦରଶନ । ୭୬୮

ଏହା କହି ଅତି ଭୟେ ଦୁହେଁ ପଳାଇଲେ,
ନିଜର ମୁଖକୁ ମୁନି ପାଣିରେ ଦେଖିଲେ ।
ବେଶ ଦେଖି ଅତି କ୍ରୋଧ ବଢ଼ିଗଲା ମନେ,
ନିଦାରୁଣ ଅଭିଶାପ ଦେଲେ ବେନି ଗଣେ । ୭୬୯

ରେ କପଟୀ ପାପୀ ବେନି ହୁଅ ନିଶାଚର,
ଥଟ୍ଟା କରିବାର ଫଳ ଭୋଗିବ ଏଥର ।
ଆଉ କେଉଁ ମୁନିଙ୍କର ପାଶେ ଏବେ ଯାଅ,
ଦେଖି ଦେଖି ଥଟ୍ଟା କରି ତାଙ୍କୁ ହସୁଥାଅ । ୭୭୦

ପୁଣି ଜଳେ ଚାହିଁ ନିଜ ସ୍ୱରୂପ ଦେଖିଲେ,
ତଥାପି ହୃଦୟେ ଶାନ୍ତି ତିଳେ ନ ପାଇଲେ ।
କମ୍ପିଲା ଅଧର ହୃଦେ କ୍ରୋଧ ଗଲା ଭରି,
କମଳାପତିଙ୍କ ପାଶେ ବେଗେ ଗଲେ ଚଳି । ୭୭୧

ଭାବନ୍ତି ସେ ଦେବେ ଶାପ ଅବା ଦେବେ ପ୍ରାଣ,
ଲୋକହସା କରାଇଲା ଏ ଜଗତେ ଜାଣ ।
ଯାଉ ଯାଉ ପଥେ ଦେଖା ହେଲେ ନାରାୟଣ,
ସଙ୍ଗେ ଥିଲେ ରମା ଆଉ ସେ କନ୍ୟା ରତନ । ୭୭୨

ପ୍ରଭୁ ପଚାରିଲେ ହସି, ବଚନେ କୋମଳ,
କାହିଁ ଯାଉଅଛ ମୁନି ମନ ଯେ ବିକଳ ।

କଥା ଶୁଣି ମୁନିରାଜ ହେଲେ କ୍ରୋଧବାଣ,
ସେ ତ ମାୟାବଶ ହୃଦେ ଥିଲା ନାହିଁ ଜ୍ଞାନ । ୨୨୩

କହିଲେ ସେ, "ପର ଶିରୀ ନ ସହୁ ତୁ ଟଳେ,
କେବଳ କପଟ ଈର୍ଷା ତୋ ହୃଦୟ-ତଳେ ।
ସାଗର ମନ୍ଥନ କାଳେ ଶିବେ ଭୁଲାଇଲୁ ,
ପଠାଇ ଦେବତାଗଣେ ବିଷ ପିଆଇଲୁ । ୨୨୪

ଶିବେ ହଳାହଳ ଦେଲୁ ଅସୁରେ ମଦିରା,
ନିଜେ ନେଲୁ କଉସ୍ତୁଭ ମଣି ଓ ଇନ୍ଦିରା ।
ଅତି ସ୍ୱାର୍ଥପର ତୁହି ମିଛ ବ୍ୟବହାର,
କେବଳ କପଟପୂର୍ଣ୍ଣ ତୋର କାରବାର । ୨୨୫

ପରମ ସ୍ୱତନ୍ତ୍ର ତୁହି, କେହି ତୋ' ଉପରେ,
ନାହିଁ ବୋଲି କରୁ ଯାହା ଆସଇ ମନରେ ।
ଭଲକୁ ତୁ ମନ୍ଦ କରୁ ମନ୍ଦକୁ ଯେ ଭଲ,
ବିଷାଦ ବିସ୍ମୟ ହର୍ଷ ନାହିଁ ଯେ ତୋହର । ୨୨୬

ସମସ୍ତଙ୍କୁ ଠକାଇବା କରିଛୁ ଅଭ୍ୟାସ,
ପୁଣି ତୁ ନିଃଶଙ୍କ, ମନେ ଅପାର ସାହାସ ।
ଶୁଭାଶୁଭ କର୍ମ ତୋତେ ବାଧା ଦଉନାହିଁ,
ଆଜଯାଏଁ ତୋତେ ସାଧି କେହି କରୁନାହିଁ !! ୨୨୭

ଭଲ ଘରେ ଆସି ଏବେ ଦେଇଛୁ ବଞ୍ଚଣା,
ଯାହା କଲୁ କଲୁ ଫଳ ପାଇଯିବୁ ସିନା ।
ବଞ୍ଚନା କରିଛୁ ମୋତେ ଯେଉଁ ଦେହ ଧରି,
ସେହି ତନୁ ଧର ଅଭିଶାପ ଏ ମୋହରି । ୨୨୮

ବାନର ସମାନ ରୂପ କଲୁ ତୁ ମୋହରି,
ଏଣୁ କପିକୁଳ ହେବେ ସହାୟ ତୋହରି ।
ଯେ ହେତୁ ତୁ କଲୁ ମୋର ଅତି ଅପକାର,
ନାରୀ ବିରହେ ତୋ' ଦୁଃଖ ହୋଇବ ଅପାର ।" ୨୨୯

ଶିରୋଧାର୍ଯ୍ୟ କରି ଶାପ ହରଷ ଅନ୍ତରେ,
ଅଶେଷ ବିନୟେ କଲେ ପ୍ରଭୁ ମୁନିବରେ ।
ପରେ ସେ ନିଜର ମାୟା ବଳ ପ୍ରବଳତା,
ଟାଣି ନେଲେ ସେତ କୃପାନିଧି ବଳବନ୍ତା । ୭୮୦

ହରି ଯେବେ ନିଜ ମାୟା ନେଲେ ଅପସାରି,
ନ ରହିଲେ ରମା ଆଉ ସେ ରାଜକୁମାରୀ ।
ତହୁଁ ମୁନି ଭୟେ ଧରି ଶ୍ରୀହରି ପୟର,
କହିଲେ, "ପ୍ରଣତାରତ୍ତି ମୋତେ ରକ୍ଷାକର । ୭୮୧

ମିଥ୍ୟା ହେଉ ଶାପ ମୋର ହେ କୃପାନିଧାନ,
"ଏହି ମୋର ଇଚ୍ଛା" ଉତ୍ତରିଲେ ଭଗବାନ ।
କହିଲେ ମୁନୀଶ, "ପାପ ମେଣ୍ଟିବ କପରି,
କହିଅଛି ବହୁ କଟୁ କଥା ମୁଁ ଶ୍ରୀହରି ?" ୭୮୨

ଶଙ୍କରଙ୍କ ଶତନାମ ଯାଇ ଜପ କରି,
ହୃଦୟେ ସାନ୍ତ୍ୱନା ଲଭ ହୋଇବ ସତ୍ୱର ।
ମୋର ପ୍ରିୟ ନାହିଁ କେହି ଶିବଙ୍କ ସମାନ,
ଭ୍ରମେ ସୁଦ୍ଧା ଏ ବିଶ୍ୱାସ ନ ତେଜିବ ଜାଣ । ୭୮୩

କୃପା ନ କରନ୍ତି ଯାହାଠାରେ ତ୍ରିଲୋଚନ,
ସେହି ହୋଇ ନ ପାରଇ ମୋ ଭକ୍ତ ସଜନ ।
ହୃଦେ ଧରି ଏହା କରି ଜଗତେ ଭ୍ରମଣ,
ମୋର ମାୟା ପାଶେ ଯିବ ନାହିଁ କଦାଚନ ।" ୭୮୪

ବୁଝାଇ ଅନେକ ମୁନିବରେ ଭଗବାନ,
ସ୍ୱସ୍ଥାନରୁ ତହୁଁ ହୋଇଗଲେ ଅନ୍ତର୍ଦ୍ଧାନ ।
ରାମ ଗୁଣ ଗାନ କରି ନାରଦ ପୁଲକେ,
ଧୀର ସ୍ଥିର ଚିତ୍ତେ ଚଳିଗଲେ ସତ୍ୟଲୋକେ । ୭୮୫

ମଦ ମୋହମୁକ୍ତ ମନ ପ୍ରସନ୍ନ ବଦନ,
ମୁନି ଯାଉଥିବା ଦେଖି ପଥେ ଶିବଗଣ ।

ତାହାଙ୍କ ନିକଟେ ସେହୁ ଆସିଲେ ସଭୟେ,
ପାଦ ଧରି ଅତି ଦୁଃଖେ କହିଲେ ବିନୟେ । ୨୮୬

"ଆମ୍ଭେ ଶିବଗଣ ବିପ୍ର ନୋହୁଁ ମୁନିବର,
ବଡ଼ ଅପରାଧ କରି ପାଇଲୁଣି ଫଳ ।
କୃପାକୁ ଶାପରୁ ମୁକ୍ତ କରନ୍ତୁ ଆପଣ"
ଦୟାକୁ ନାରଦ ତହୁଁ କହିଲେ ବଚନ । ୨୮୭

"ତୁମେ ଯାଇ ନିଶାଚର ଉଭୟେ ହୋଇବ,
ବିପୁଳ ପ୍ରତାପ ବଳ ଐଶ୍ୱର୍ଯ୍ୟ ଲଭିବ ।
ଜିଣିଥିବ ଯେବେ ବିଶ୍ୱ ନିଜ ବାହୁ ବଳେ,
ଜନ୍ମିବେ ସେକାଳେ ପ୍ରଭୁ ମଣିଷ ରୂପରେ । ୨୮୮

ସମରେ ହରିଙ୍କ ହସ୍ତେ ହୋଇବ ନିଧନ,
ମୁକ୍ତ ହୋଇ ଆଉ ଭବେ ନ ହେବ ଜନମ ।"
ଚଳିଲେ ସେ ବେନି ତହୁଁ ପ୍ରଣମି ପଦ୍ମରେ,
ଜନ୍ମିଲେ ରାକ୍ଷସ ହୋଇ ଯଥା ସମୟରେ । ୨୮୯

ଦେବତା-ରଞ୍ଜନ ସନ୍ଥ ସୁଖ ବିଧାୟକ,
ଭବ-ଭାର-ବିଭଞ୍ଜନ ଶାନ୍ତି ପ୍ରଦାୟକ—
ବିଷ୍ଣୁ ଭଗବାନ ଏହି ସକଳ କାରଣେ,
ଏକ କଳ୍ପେ ନର ରୂପେ ଜନ୍ମ ଏ ଭୁବନେ । ୨୯୦

ଏସନ ପ୍ରକାରେ ପ୍ରଭୁଙ୍କର ଜନ୍ମ କର୍ମ,
ସୁନ୍ଦର ସୁଖଦ ଅଲୌକିକ ମନୋରମ ।
କଳପେ କଳପେ ପ୍ରଭୁ ହୋଇ ଅବତାର,
ରଚନ୍ତି ଚରିତ ନାନା ବିଚିତ୍ର ପ୍ରକାର । ୨୯୧

ସେହି ସେହି ସମୟର କଥା ମୁନିବରେ,
ଗାଇଛନ୍ତି ନାନା ପୂତ କାବ୍ୟ ନିବନ୍ଧରେ ।
ବହୁ ବିଧ ଅନୁପମ ପ୍ରସଙ୍ଗ ବର୍ଣ୍ଣିତ,
ବିଜ୍ଞ ଜନେ ଯାହା ଶୁଣି ହୁଅନ୍ତି ବିସ୍ମିତ । ୨୯୨

ଅନନ୍ତ ଶ୍ରୀହରି ତାଙ୍କ କାହାଣୀ ଅନନ୍ତ,
କହନ୍ତି ଶୁଣନ୍ତି ନାନା ରୂପେ ସାଧୁ ସନ୍ଥ ।
ଶ୍ରୀରାମ ଚରିତ ରମ୍ୟ ରୁଚିର ଅଶେଷ,
କୋଟି କଲ୍ପେ ଗାଇ ତାହା ନ ହୋଇବ ଶେଷ । ୭୯୩

ଜ୍ଞାନୀ ମୁନି ମଧ୍ୟ ହରି ମାୟାରେ ମୋହିତ,
ତେଣୁ ଏ ପ୍ରସଙ୍ଗ ମୁହିଁ କଲି ଅବହିତ ।
ପ୍ରଭୁ ଲୀଳାମୟ ଶରଣାଗି ହିତକାରୀ,
ସେବାରେ ସୁଲଭ ଗୌରୀ ସର୍ବ ଦୁଃଖହାରୀ । ୭୯୪

ଦେବ ନର ମୁନିକେହି ନାହିଁ ଏ ବିଶ୍ୱରେ,
ଯାହାଙ୍କୁ ହରିଙ୍କ ମାୟା ମୋହିତ ନ କରେ ।
ଏମନ୍ତ ବିଚାରି ମନେ ମହାମାୟାଧର,
ଭଗବାନ ଶ୍ରୀହରିଙ୍କୁ ଭଜ ନିରନ୍ତର । ୭୯୫

ଅନ୍ୟ ଯେ କାରଣ ଶୁଣ ଶଇଳ କୁମାରୀ,
କହୁଅଛି ମୁହିଁ ସେହି ଚରିତ ବିସ୍ତାରି ।
ଯେଉଁ କାରଣରୁ ଅଜ ଅଗୁଣ ଅରୂପ—
ବ୍ରହ୍ମ ଜନମିଲେ ହୋଇ କୋଶଳର ଭୂପ । ୭୯୬

ଭାଇ ସହ ଯେ ପ୍ରଭୁଙ୍କୁ ଦେଖିଥିଲ ବନେ,
ମୁନି ବେଶେ ବୁଲୁଥିଲେ ବିଷାଦିତ ମନେ ।
ଯାହାଙ୍କ ଚରିତ ଦେଖି ଆଗୋ ବିନ୍ଧ୍ୟାଧରି,
ସତୀ ଦେହେ ପରି ତୁମେ ହୋଇଲ ପାଗଳୀ । ୭୯୭

ଏବେ ବି ସେ ଭ୍ରମ ଦୂର ହୋଇନି ତୁମର,
ଶୁଣ ଗୋ ତାଙ୍କର କଥା ଭ୍ରମ ରୋଗ ହର ।
ଯେପରି ସେ କଲେ ଲୀଳା ସେହି ଅବତାରେ,
କହୁଛି ସେ ସବୁ ମୋର ବୁଦ୍ଧି ଅନୁସାରେ । ୭୯୮

ଆହେ ଭରଦ୍ୱାଜ, ଶୁଣି ଶଙ୍କରଙ୍କ ବାଣୀ,
ସଙ୍କୋଚେ ସପ୍ରେମେ ମନ୍ଦେ ହସିଲେ ଭବାନୀ ।

କହିବାକୁ ଆରମ୍ଭିଲେ ତହୁଁ ବୃଷକେତୁ,
ପ୍ରଭୁଙ୍କ ସେ ଅବତାର ହେଲା ଯେଉଁ ହେତୁ । ୭୯୯

କହୁଛି ମୁଁ ତାହା ତୁମ ଆଗେ ମୁନିବର,
ମନ ଦେଇ ଶୁଣ ଏହି ଚରିତ ନିକର ।
ରାମ-କଥା କଳିକାଳ କଳୁଷ-ନାଶିନୀ
ଅତି ମନୋରମ ପୁଣି ମଙ୍ଗଳ ଦାୟିନୀ । ୮୦୦

ସାୟଂଭୁବ ମନୁ ତାଙ୍କ ପତ୍ନୀ ଶତରୂପା,
ଅନୁପମ ନର ସୃଷ୍ଟି ଯାହାଙ୍କର କୃପା ।
ଧର୍ମ ଆଚରଣେ ଶ୍ରେଷ୍ଠ ଥିଲେ ସେ ଦମ୍ପତି,
ଆଜି ବି ଗାଉଛି ବେଦ ତାହାଙ୍କ ପ୍ରଶସ୍ତି । ୮୦୧

ନୃପତି ଉତ୍ତାନପାଦ ତାହାଙ୍କ କୁମର,
ତାଙ୍କ ପୁତ୍ର ଧ୍ରୁବ ବିଶ୍ୱେ ଭକତ ପ୍ରବର ।
ତାହାଙ୍କ କନିଷ୍ଠ ପୁତ୍ର ନାମ ଦେବବ୍ରତ,
ଗାଆନ୍ତି ପୁରାଣ ବେଦ ପ୍ରଶଂସା ନିରତ । ୮୦୨

ଦେବହୂତି ନାମେ ପୁଣି ତାହାଙ୍କ କୁମାରୀ,
କର୍ଦ୍ଦମ ମୁନିଙ୍କ ଯିଏ ପ୍ରିୟତମା ନାରୀ ।
କପିଳ ମୁନିଙ୍କୁ ଗର୍ଭେ କଲେ ସେ ଧାରଣ ।
ସମର୍ଥ ଦୟାଳୁ ଆଦିଦେବ ନାରାୟଣ । ୮୦୩

ଜଗତରେ ସାଂଖ୍ୟ ଶାସ୍ତ୍ର କରିଲେ ବଖାନ,
ତତ୍ତ୍ୱଜ୍ଞାନେ ସୁନିପୁଣ ସେ ପ୍ରଭୁ ମହାନ ।
ରାଇଜ ଶାସନ କଲେ ମନୁ ବହୁକାଳ,
ସବୁ ଭାବେ କରି ପ୍ରଭୁ ଆଦେଶ ଆଧାର । ୮୦୪

ଚତୁର୍ଥ ଅବସ୍ଥା ହେଲା ଘରେ ବସି ବସି,
ବିଷୟ ବାସନା ମନୁ ଗଲା ନାହିଁ ଖସି ।
ହରିଙ୍କ ଭଜନ ବିନା ଏ ଜୀବନ ଗତ,
ଚିନ୍ତି ମନ ମଧ୍ୟେ ଦୁଃଖ ହୋଇଲା ଅତ୍ୟନ୍ତ । ୮୦୫

ପୁତ୍ରଙ୍କୁ ସମର୍ପି ନିଜ ରାଜ୍ୟ ବଳେ ବଳେ,
ପତ୍ନୀ ସହ ନୃପ ଘୋର ବନସ୍ତକୁ ଗଲେ ।
ବିଖ୍ୟାତ ନୈମିଷାରଣ୍ୟ, ତୀର୍ଥେ ତୀର୍ଥବର,
ସାଧକର ସିଦ୍ଧି ଦାତା ପବନ ନିକର । ୮୦୬

ନିବସନ୍ତି ସିଦ୍ଧ ମୁନିବୃନ୍ଦ ସେ ବନରେ,
ମନୁ ରାଜା ଗଲେ ତହିଁ ହରଷ ଅନ୍ତରେ ।
ବେନି ମନ୍ତ୍ର ଧୀର ଶୋଭୁଥିଲେ ଯାତ୍ରା ପଥେ
ରୂପ ଧରି ଅଛନ୍ତି କି ଜ୍ଞାନ ଭକ୍ତି ସତେ । ୮୦୭

ଯାଉ ଯାଉ ପହଞ୍ଚିଲେ ସେ ଗୋମତୀ ତୀରେ,
ହରଷେ କରିଲେ ସ୍ନାନ ସୁବିମଳ ନୀରେ ।
ତାଙ୍କୁ ଧର୍ମ ଧୁରନ୍ଧର ନୃପ ବୋଲି ଜାଣି,
ଆସିଲେ ଭେଟିବା ପାଇଁ ସିଦ୍ଧ ମୁନି ଜ୍ଞାନୀ । ୮୦୮

ମନୋରମ ତୀର୍ଥ ସବୁ ଥିଲା ଯହିଁ ଯାହା,
ଆଦରେ ମୁନିଏ ତାଙ୍କୁ ଦେଖାଇଲେ ତାହା ।
ବଲ୍କଳ ଦୁର୍ବଳ ଦେହେ କରି ପରିଧାନ,
ସନ୍ଥ ସମାଜରେ ନିତି ଶୁଣିଲେ ପୁରାଣ । ୮୦୯

ଦ୍ୱାଦଶ ଅକ୍ଷର ମନ୍ତ୍ର ଅନୁରାଗ ଭରେ,
ଜପକଲେ ରାଜାରାଣୀ ସଭକ୍ତି ଅନ୍ତରେ ।
ଭଗବାନ ବାସୁଦେବ ଚରଣ କମଳେ,
ରହିଲା ତାଙ୍କର ମନ ଲାଗି ନିରନ୍ତରେ । ୮୧୦

ହୃଦେ ଏହି ଅଭିଳାଷ ହୁଏ ନିରନ୍ତର,
ନୟନେ ଦେଖନ୍ତେ କେହ୍ନେ ପରମ ଈଶ୍ୱର ।
ଯେ ନିର୍ଗୁଣ ଯେ ଅଖଣ୍ଡ ଅନନ୍ତ ଅନାଦି,
ଯାହାଙ୍କୁ ସ୍ମରନ୍ତି ନିତ୍ୟ ପରମାର୍ଥ ବାଦୀ । ୮୧୧

"ନେତି ନେତି" ବୋଲି ଯେହ୍ନୁ ବେଦେ ନିରୂପିତ,
ଯେ ଆନନ୍ଦ ଅନୁପମ କାରଣ ରହିତ ।

ଅନେକ ଅନେକ ବ୍ରହ୍ମା ବିଷ୍ଣୁ ମହେଶ୍ୱର,
ଯାହାଙ୍କ ଅଂଶରୁ ଜାତ ହୁଅନ୍ତି ନିକର । ୮୧୨

ସଦା ସେବକର ବଶ ସେ ପ୍ରଭୁ ପରମ,
ଭକ୍ତ ପାଇଁ ଦିବ୍ୟ ଦେହେ ହୁଅନ୍ତି ଜନମ ।
ସତ୍ୟ ଯେବେ ହୋଇଥିବ ଏ ବେଦ ବଚନ,
ଆମ ଅଭିଳାଷ ନିଶ୍ଚେ ହୋଇବ ପୂରଣ । ୮୧୩

ସେ ଏପରି ଭାବେ କଲେ ସଲିଳ ଆହାର,
କ୍ରମେ ଗତ ହୋଇଗଲା ବର୍ଷ ଛ' ହଜାର ।
ସପତ ସହସ୍ର ବର୍ଷ ପବନ ଆଧାରେ,
କଟାଇଲେ ତପ କରି ଅଶେଷ ନିଷ୍ଠାରେ । ୮୧୪

ତାହା ବି ତେଜିଲେ ଦଶ ସହସ୍ର ବରଷ,
ଏକ ପାଦେ ଠିଆ ତପେ ଲଭିଲେ ସୁଯଶ ।
ଅପାର ତପସ୍ୟା ଦେଖି ବ୍ରହ୍ମା ବିଷ୍ଣୁ ହର,
ଆସିଲେ ମନୁଙ୍କ ପାଶେ ବହୁ ବହୁ ଥର । ୮୧୫

ବର ମାଗ ବୋଲି କହି ଲୋଭ ଦେଖାଇଲେ,
ପରମ ଧୀରଙ୍କ ମତ ନ ଟଳେ ତହିଁରେ ।
ମାତ୍ର ଅସ୍ଥି ସାର ହୋଇ ରହିଲା ଶରୀର,
ତଥାପି କିଞ୍ଚିତ ପୀଡ଼ା ନ ପାଆନ୍ତି ଧୀର । ୮୧୬

ନିଜ ଦାସ ବୋଲି ଅନ୍ତର୍ଯାମୀ ଗଲେ ଜାଣି,
ଅନନ୍ୟ ଆଶ୍ରିତ ତପୋରତ ରାଜାରାଣୀ ।
ଗମ୍ଭୀର କରୁଣାମୃତ-ସିକ୍ତ ମନୋହର,
ହେଲା ନଭବାଣୀ ଏବେ ମାଗି ନିଅ ବର । ୮୧୭

ମୃତ-ସଞ୍ଜିବନୀ-ମଧୁ-ବଚନ ବିଶେଷ,
କର୍ଣ୍ଣ ଦେଇ ହୃଦେ ଯେବେ ହୋଇଲା ପ୍ରବେଶ ।
କଳେବର ହେଲା ହୃଷ୍ଟପୁଷ୍ଟ ଦିବ୍ୟ ଅତି,
ସତେ କି ସେମାନେ ଏବେ ଘରୁ ଆସିଛନ୍ତି । ୮୧୮

କର୍ଣ୍ଣାମୃତ ସମ ଶୁଣି ଏ ମଧୁ ବଚନ,
ପ୍ରୀତିପୂର୍ଣ୍ଣ ପ୍ରଫୁଲ୍ଲିତ ହେଲା ତନୁ ମନ ।
ହୃଦ ହେଲା ଅସମ୍ଭାଳ ପ୍ରେମେ ଗଲା ଭରି,
ପ୍ରଣିପାତ କରି ମନୁ କହିଲେ ଏପରି । ୮୧୯

"ଶୁଣ ହେ ଭକତ କଳ୍ପତରୁ କାମଧେନୁ,
ବିଧାତା ମହେଶ ବିଷ୍ଣୁ ବନ୍ଦ୍ୟ ପଦରେଣୁ ।
ସେବାରେ ସୁଲଭ ସର୍ବ ସୁଖ-ପ୍ରଦାୟକ,
ପ୍ରଣତ ପାଳକ ଚର ଅଚର ନାୟକ । ୮୨୦

ହେ ଅନାଥ ନାଥ ଯେବେ ଆମେ ଦୟାକର,
ପ୍ରସନ୍ନ ଚିତ୍ତରେ ତେବେ ଦିଅନ୍ତୁ ଏ ବର ।
ଯେଉଁ ରୂପ ତବ ଶିବ ହୃଦେ କରେ ବାସ,
ଯେ ରୂପ ଦର୍ଶନେ ମୁନି କରନ୍ତି ପ୍ରୟାସ—। ୮୨୧

ଯେ ଭୁଷୁଣ୍ଡି ମନ ମାନସରୋବରରେ ହଂସ,
ସଗୁଣ ଅଗୁଣ କହି ବେଦ ଗାଏ ଯଶ ।
ସେ ରୂପ ଦେଖନ୍ତୁ ଆମେ ନେତ୍ର ପୂର୍ଣ୍ଣକରି,
ଆର୍ତ୍ତି-ଦୁଃଖ-ହାରୀ କରି କରୁଣା ଏପରି । ୮୨୨

ଦମ୍ପତିଙ୍କ ପ୍ରୀତି ସିକ୍ତ କୋମଳ ବଚନେ,
ଅଶେଷ ପ୍ରସନ୍ନ ହେଲେ ପ୍ରଭୁ ମନେ ମନେ ।
ଭକତ ବତ୍ସଳ ବିଷ୍ଣୁ କୃପାଳୁ ପରମ,
ଆବିର୍ଭାବ ହେଲେ ଭଗବାନ ସର୍ବକ୍ଷମ । ୮୨୩

ନୀଳପଦ୍ମ ନୀଳମଣି ନୀଳ ଜଳଧର,
ସମ କାନ୍ତି ଯୁକ୍ତ ପ୍ରଭୁଙ୍କର କଳେବର ।
କୋମଳ ପ୍ରକାଶମୟ ସରସ ସୁନ୍ଦର,
ଶୋଭା ଦେଖି କୋଟି କାମ ଲଜ୍ଜା ଜରଜର । ୮୨୪

ବଦନ ଶରଦ ରାକା ଚନ୍ଦ୍ରମା ଯେସନ,
କପୋଳ ଚିବୁକ କମ୍ବୁ-କଣ୍ଠ ଶୋଭାବନ ।

ଅରୁଣ ଅଧର ଦନ୍ତ ନାସା ମନୋହର,
ହାସ ନିନ୍ଦା କରେ ଶଶି ଜୋଛନା ନିକର । ୮୨୫

ନବ-ସରସିଜ-ନେତ୍ର ଛବି ରମଣୀୟ,
ଲଳିତ ଚାହାଣୀ ଶୋଭା ଲାଗେ ଅତି ପ୍ରିୟ ।
ଭ୍ରୂଲତା କନ୍ଦର୍ପ ଧନୁ ସୁଷମା ହରଇ,
ଲଲାଟ ପଟଳେ ଚାରୁ ତିଳକ ଶୋଭଇ । ୮୨୬

ମକର କୁଣ୍ଡଳ ଶିରେ ବିରାଜେ ମୁକୁଟ,
ଘନ କୃଷ୍ଣକୁଞ୍ଚ କେଶ ଯେହ୍ନେ ଭୃଙ୍ଗ ଯୂଥ ।
ଶ୍ରୀବତ୍ସ ଲାଞ୍ଛନ ବକ୍ଷେ, ଗଳେ ବନମାଳ,
ମନୋହରେ ଝୁଲେ ରତ୍ନ ପଦକର ହାର । ୮୨୭

ରୁଚିର କେଶରୀ ସ୍କନ୍ଧ ଚାରୁ ଉପବୀତ,
ନାନା ଭୁଜ-ବିଭୂଷଣେ ଅତି ସୁଶୋଭିତ ।
କରୀ ଶୁଣ୍ଡ ପରି ଶୋଭେ ବେନି ଭୁଜଦଣ୍ଡ,
କଟିରେ ତୂଣୀର କରେ ଶାୟକ କୋଦଣ୍ଡ । ୮୨୮

ବିଦ୍ୟୁତକୁ କରେ ନିନ୍ଦା ଚାରୁ ପୀତାମ୍ବର,
ଉଦର ତ୍ରିବଳୀ, ନାଭି ଏପରି ସୁନ୍ଦର—
ସତେ କି ଯମୁନା ବୁକୁ ଭଉଁରୀ ସୁଷମା,
ଛଡ଼ାଇ ଆଣଇ, କରିପାରେ କେ ବର୍ଣ୍ଣନା ? ୮୨୯

ଚରଣ-କମଳ ଶୋଭା ବର୍ଣ୍ଣି ନ ହୁଅଇ,
ମୁନିମନ-ମଧୁକର ଯହିଁ ନିବସଇ ।
ସଦା ଅନୁକୂଳା ବିଶ୍ୱ-ମୂଳା ଶୋଭାମୟୀ,
ଆଦ୍ୟ ଶକ୍ତି ସୀତା ବାମ ଭାଗେ ଛନ୍ତି ରହି । ୮୩୦

ଯାହାଙ୍କ ଅଂଶରୁ ଗୁଣଖଣି ଅଗଣନ,
ବ୍ରହ୍ମାଣୀ କମଳା ଉମା ଶକ୍ତି ଉତପନ୍ନ ।
ଜଗତ ରଚନା ଯା'ର ଭ୍ରୂଭଙ୍ଗୀ ବିଳାସେ,
ସେହି ସୀତା ବିରାଜିତା ରାମ ବାମ ପାଶେ । ୮୩୧

ଶୋଭା-ସିନ୍ଧୁ ଶ୍ରୀହରିଙ୍କ ରୂପ ଦରଶନେ,
ସ୍ତବ୍ଧ ଅପଲକେ ବେନି ରହିଗଲେ କ୍ଷଣେ ।
ଆଦରେ ଦେଖନ୍ତି ସେହି ଅନୁପମ ରୂପ,
ମନୁ ଶତରୂପା ତଳେ ନ ହୁଅନ୍ତି ତୃପ୍ତ । ୮୩୨

ହରଷେ ସେ ନିଜ ଦେହ କଥା ପାଶୋରିଲେ,
କରେ ପଦ ଧରି ଦଣ୍ଡ ସମାନ ପଡ଼ିଲେ ।
ଶିରେ ସ୍ପର୍ଶ କରି ପ୍ରଭୁ ସରସିଜ-କରେ,
କୃପା-କଞ୍ଜ ତୋଳି ନେଲେ ବେନିଙ୍କୁ ଆଦରେ । ୮୩୩

କହିଲେ କୋମଳ ମଧୁ କଥା ସୀତାପତି,
ସୁପ୍ରସନ୍ନ ଜାଣି ମୋତେ "ହେ ନୃପ ଦମ୍ପତି ।
ତୁମ ରୁଚି ମତେ ଏବେ ମାଗିନିଅ ବର,
ଭଲ ଭାବେ ବୁଝି ରଖ ମୁଁ ଦାନୀ ପ୍ରବର ।" ୮୩୪

ପ୍ରଭୁଙ୍କ ବଚନ ଶୁଣି ଯୋଡ଼ି ବେନିକର,
କହିଲେ ନୃପତି ଦମ୍ଭେ ବଚନ କୋମଳ ।
"ହେ ନାଥ ନିରେଖି ତବ ଚରଣ-କମଳ,
ହେଲା ପୂର୍ଣ୍ଣ ଏବେ ମୋର କାମନା ସକଳ । ୮୩୫

ତଥାପି ମନରେ ବଡ଼ ଲାଳସା ମୋହର,
ତାହା ପୂର୍ଣ୍ଣ ହେବା ପୁଣି କଠିନ ସରଳ ।
ସେଥିପାଇଁ ତୁମ ଆଗେ କହି ନ ହୁଅଇ,
ତୁମ ପକ୍ଷେ କିନ୍ତୁ ତାହା ସହଜ ଲାଗଇ ।
ମାତ୍ର ମୋତେ ତାହା ମୋର ହୀନତା କାରଣେ,
ଅତ୍ୟନ୍ତ କଠିନ ବୋଲି ଲାଗୁଅଛି ମନେ । ୮୩୬

କଳ୍ପତରୁ ପାଇ ପାଶେ ଦରିଦ୍ର ଯେସନେ,
ବହୁ ଧନ ମାଗିବାକୁ ସଙ୍କୋଚଇ ମନେ ।
କାରଣ ପ୍ରଭାବ ତା'ର ସେହି ନ ଜାଣଇ,
ତେସନେ ହୃଦୟେ ମୋର ସଂଶୟ ଜାଗଇ । ୮୩୭

ତୁମେ ଯେଣୁ ଅନ୍ତର୍ଯାମୀ ତାହା ତୁମେ ଜାଣ,
ପୂର୍ଣ୍ଣ କର ମନୋରଥ ମୋର ଭଗବାନ ।
"ଶଙ୍କା ତେଜ ବର ମାଗ," କହିଲେ ଗୋସାଇଁ,
"ଅଦେୟ ମୋହର କିଛି ନାହିଁ ତୁମ ପାଇଁ ।" ୮୩୮

"ଦାନୀ ଶିରୋମଣି ନାଥ, ହେ କୃପା ନିଧାନ,
ମନ ଖୋଲି କହୁଚି ମୋ ମନ କଥାମାନ ।
ତୁମ ପରି ପୁତ୍ର ଏକ କାମନା ମୋହରି,
ଲୁଚାଇବି ପ୍ରଭୁଙ୍କର ପାଶେ ବା କପରି ?" ୮୩୯

ନିରେଖି ଏ ପ୍ରୀତି, ଶୁଣି ଅମୂଲ୍ୟ ବଚନ,
କହିଲେ, "ତଥାସ୍ତୁ" କୃପାନିଧି ନାରାୟଣ ।
ମୋହ ପରି ପୁତ୍ର ଏକ କେଉଁଠୁ ଖୋଜିବି,
ତେଣୁ ତୁମ ପୁତ୍ର ହୋଇ ନିଜେ ଜନମିବି । ୮୪୦

ଯୋଡ଼ି ହସ୍ତେ ଶତରୂପା ଠିଆ ଦେଖି ହରି,
କହିଲେ, "ଗୋ ମାଗ ବର ଯା' ଇଚ୍ଛା ତୁମରି ।"
"ଯେ ବର ମାଗିଲେ ପ୍ରଭୁ ଚତୁର ନୃପତି,
ସେ ବର କୃପାଳୁ ଜାଣ ମୋର ପ୍ରିୟ ଅତି । ୮୪୧

କିନ୍ତୁ ପ୍ରଭୁ ତାହା ନିଶ୍ଚେ ଧୃଷ୍ଟତା ଆମରି,
ସେ ଧୃଷ୍ଟତା ତବ ପ୍ରିୟ ହେ ଭକ୍ତ ବତ୍ସଳ ।
ବିରଞ୍ଚି ଜନକ ତୁମେ ହେ ଜଗତ ସ୍ୱାମୀ,
ଅଖିଳ ଜଗତ ଜନ ବ୍ରହ୍ମ ଅନ୍ତର୍ଯାମୀ । ୮୪୨

ଏ କଥାକୁ ବୁଝିବାକୁ ମନରେ ସଂଶୟ,
ତଥାପି ତୁମର କଥା ପ୍ରମାଣ ନିଶ୍ଚୟ ।
ମାଗି ବର ତୁମର ଯେ ନିଜର ଅଟନ୍ତି,
ସୁଗତି ଅଖଣ୍ଡ ସୁଖ ସେମାନେ ଲଭନ୍ତି । ୮୪୩

ପ୍ରଭୁ ଏହି ସୁଖ ଏହି ଗତି ଏହି ଭକ୍ତି,
ଏହି ଜ୍ଞାନ ଆପଣଙ୍କ ପଦେ ଏହି ରତି ।

କୃପା କରି ଦିଅ ପ୍ରଭୁ ଏହି ଆଚରଣ,
କେବଳ ଏହି ତ ଆମ ନମ୍ର ନିବେଦନ ।” ୮୪୪

ରାଣୀଙ୍କ ମଧୁର ଗୂଢ଼ କଥା ମନୋହର,
ଶୁଣି କୃପାସିନ୍ଧୁ କଥା କହିଲେ କୋମଳ—
“ତୁମ ମନେ ଯେ ବାସନା ହୋଇଛି ଉଦୟ,
ପୂରଣ କରିଛି ସବୁ ନାହିଁ ତ ସଂଶୟ । ୮୪୫

ଅଲୌକିକ ଜ୍ଞାନ ମା’ଗୋ ଭରିଛି ହୃଦୟେ,
ନଷ୍ଟ ନ ହୋଇବ କେବେ ମୋର ଅନୁଗ୍ରହେ ।”
ତହୁଁ ଶ୍ରୀଚରଣ ବନ୍ଦ କହିଲେ ନୃପତି,
“ଶୁଣ ପ୍ରଭୁ ଅନ୍ୟ ଏକ ମୋହରି ବିନତି । ୮୪୬

ପୁତ୍ର ସ୍ନେହ ସଦା ରହୁ ତୁମରି ପଦ୍ମରେ,
ମୂର୍ଖ ବୋଲି ମୋତେ ପଛେ କହନ୍ତୁ ସକଳେ ।
ମଣି ବିନା ଫଣୀ ଯେହ୍ନେ ଜଳ ବିନା ମୀନ,
ମୋ ଜୀବନ ରହୁ ତେହ୍ନେ ତୁମରି ଅଧୀନ ।” ୮୪୭

ରହିଲେ ଚରଣ ଧରି ମାଗି ଏହି ବର,
‘ତଥାସ୍ତୁ’ କହିଲେ ତାଙ୍କୁ କରୁଣା-ସାଗର ।
“ଏବେ ମୋ ଆଦେଶ ମାନି ତୁମେ ଦୁଇଜଣ,
ଯାଇ ଇନ୍ଦ୍ରଲୋକେ କର ବସତି ସ୍ଥାପନ । ୮୪୮

ସେଠାରେ ସରଗ ସୁଖ ଭୋଗି କିଛି କାଳ,
ତା’ପରେ ହୋଇବ ଯାଇ ଅଯୋଧ୍ୟା ଭୂପାଳ ।
ଜନ୍ମିବି ମୁଁ ସେବେ ହୋଇ ତୁମରି କୁମର,
ମନର ବାସନା ପୂର୍ଣ୍ଣ ହୋଇବ ତୁମର । ୮୪୯

ସ୍ୱଇଚ୍ଛାରେ ମୁହିଁ ନର କଳେବର ଧରି,
ଜନମ ହୋଇବି ତାତ ଭବନେ ତୁମରି ।
ମୋ ଅଂଶମାନଙ୍କ ସହ ଧରି ନର ତନୁ,
ଭକ୍ତ ପ୍ରୀତିକର ଲୀଳା ଆଚରିବି, ମନୁ । ୮୫୦

ଆଦରେ ଶୁଣିବେ ତାହା ଭାଗ୍ୟବନ୍ତ ଜନ,
ଭବୁଁ ତରିଯିବେ କାଟି ମମତା ବନ୍ଧନ ।
ଯେ ଆଦ୍ୟ ଶକତି ସୃଜି ଅଛନ୍ତି ଜଗତ,
ସେ ଅବତରିବେ, ମୋର ମାୟା ଏ ସମସ୍ତ । ୮୫୧

ତୁମ ମନୋବାଞ୍ଛା ନିଶ୍ଚେ କରିବି ପୂରଣ,
ସତ୍ୟ ସତ୍ୟ ସତ୍ୟ ଏହି ମୋ ଦୃଢ଼ ବଚନ ।"
ବାର ବାର କହି ଏହା କରୁଣା ନିଧାନ,
ଭକ୍ତ ସ୍ନେହୀ ଭଗବାନ ହେଲେ ଅନ୍ତର୍ଦ୍ଧାନ । ୮୫୨

ହରି କୃପା ହୃଦେ ଧ୍ୟାୟୀ ସେ ନୃପ ଦମ୍ପତି,
ରହିଲେ ଆଶ୍ରମେ କିଛି କାଳ ପୁଣ୍ୟମତି ।
ଯଥାକାଳେ ଅନାୟାସେ ତେଜି କଳେବର,
ଅମରାବତୀରେ ବାସ କଲେ ସେ ଯୁଗଳ । ୮୫୩

ଏହି ଇତିହାସ ଅତି ପବିତ୍ର ସୁନ୍ଦର,
ଗିରିସୁତା ପାଶେ ଯାହା କହିଥିଲେ ହର ।
ଯାଜ୍ଞବଲ୍‌କ୍ୟ କହିଲେ, "ହେ ଭରଦ୍ୱାଜ ମୁନି,
ଆଉ ଏକ ରାମ ଜନ୍ମ କଥା ଶୁଣ ପୁଣି ।" ୮୫୪

ମାସ ପାରାୟଣ, ପଞ୍ଚମ ବିଶ୍ରାମ ।

# ଛଅ

ସୂତ ପୁରାତନ କଥା ଶୁଣ ମୁନିବର,
ପାର୍ବତୀଙ୍କ ଆଗେ ଯାହା କହିଥିଲେ ହର ।
କୈକେୟ ନାମକ ବିଶ୍ୱେ ସୁପ୍ରସିଦ୍ଧ ଦେଶ,
ସତ୍ୟକେତୁ ଥିଲେ ସେହି ରାଜ୍ୟର ନରେଶ । ୮୫୫

ଧର୍ମ ଧୁରନ୍ଧର ସେହି ସୁମତି-ନିଧାନ,
ତେଜସ୍ୱୀ ପ୍ରତାପୀ ଶୀଳଯୁକ୍ତ ବଳବାନ ।
ଜନ୍ମିଲେ ତାଙ୍କଠୁଁ ବୀର ଯୁଗଳ ତନୟ,
ବଳଶାଳୀ ରଣଧୀର ସର୍ବ ଗୁଣମୟ । ୮୫୬

ଜ୍ୟେଷ୍ଠ ପୁତ୍ର ଯେତ ରାଜ୍ୟ ଉତ୍ତରାଧିକାରୀ,
ନାମ ଯେ ପ୍ରତାପଭାନୁ ପ୍ରଜା ହିତକାରୀ ।
ଦ୍ୱିତୀୟ ତନୟ ଅରିମର୍ଦ୍ଦନ ସୁନ୍ଦର,
ପରାକ୍ରମୀ ବଳଶାଳୀ ରଣେ ଅବିଚଳ । ୮୫୭

ବେନି ଭାଇ ମଧ୍ୟେ ଥିଲା ପରମ ମିତ୍ରତା,
ହୃଦେ ଭରା ପ୍ରୀତି, ନାହିଁ ଛନ୍ଦ କପଟତା ।
ଜ୍ୟେଷ୍ଠ ସୁତେ ରାଜ୍ୟଭାର ସମର୍ପି ରାଜନ,
ହରିଙ୍କୁ ଭଜିବେ ବୋଲି ଗଲେ ଘୋର ବନ । ୮୫୮

ହୋଇଲେ ପ୍ରତାପଭାନୁ ଯେବେ ନରପତି,
ଦେଶେ ଦେଶେ ବ୍ୟାପିଗଲା ସୁଯଶ କୀରତି ।
ପାଳିଲେ ପ୍ରଜାଙ୍କୁ ବେଦ ବିଧି ଅନୁସାରେ,
ନ ରହିଲା ତିଳେ ହେଲେ ପାପ କେଉଁଠାରେ । ୮୫୯

ନୃପ ହିତକାମୀ ମନ୍ତ୍ରୀ ଅତି ବୁଦ୍ଧିମାନ,
ନାମ ଧର୍ମରୁଚି ସେ ତ ଶୁକ୍ରଙ୍କ ସମାନ ।
ଏସନେ ଚତୁର ମନ୍ତ୍ରୀ ଭାଇ ମହାବଳୀ,
ନିଜେ ତ ପ୍ରତାପୀ ରାଜା ସମରକୁଶଳୀ । ୫୬୦

ସଙ୍ଗେ ଚତୁରଙ୍ଗ ସେନା ଯୋଦ୍ଧା ଅଗଣିତ,
ଅମିତ ବିଜୟୀ ସର୍ବେ, ରାଜା ଦେଖି ପ୍ରୀତ ।
ଗର୍ଜି ଉଠେ ଗହ ଗହ ସମର ନାଗରା
କମ୍ପାଇ ଆକାଶ ଜଗ ସସାଗରା ଧରା । ୮୬୧

ଦିଗ୍‌ବିଜୟ ପାଇଁ ରାଜା କଟକ ସଜାଇ,
ଶୁଭଦିନେ ଯାତ୍ରା କଲେ ନିଶାଣ ବଜାଇ ।
ନାନା ସ୍ଥାନେ କରି ସେତୁ ଘନ ଘୋର ରଣ,
ସକଳ ନୃପଙ୍କୁ ବଳେ ଜିଣିଲେ ରାଜନ । ୮୬୨

ଭୁଜବଳେ ବଶୀଭୂତ କରି ସପ୍ତଦ୍ୱୀପେ,
କର ନେଇ ଦେଲେ ଛାଡ଼ି ସକଳ ମହୀପେ ।
କେବଳ ପ୍ରତାପଭାନୁ ନିଜ ଭୁଜବଳେ,
ଏକ ଚକ୍ରବର୍ତ୍ତୀ ଥିଲେ ଅବନୀ ମଣ୍ଡଳେ । ୮୬୩

ନିଜ ଭୁଜବଳେ ବଶ କରି ଭୂମଣ୍ଡଳ,
ସ୍ୱଗୃହେ ଆସିଲେ ଫେରି ନୃପତି ପ୍ରବର ।
ସମୟାନୁସାରେ ଲଭି ବିଶେଷ ସୁଯୋଗ,
କଲେ ଧର୍ମ ଅର୍ଥ କାମ ଆଦି ସୁଖଭୋଗ । ୮୬୪

ପ୍ରତାପଭାନୁଙ୍କ ବଳ ପାଇ ବସୁମତୀ,
ହେଲା କାମଧେନୁ ପ୍ରାୟ ପ୍ରଜାଗଣ ପ୍ରତି ।
ଦୁଃଖ ଶୋକ ହୀନ ହୋଇ ନର ନାରୀଗଣ,
ସର୍ବେ ହେଲେ ସୁଶୋଭନ ଧର୍ମ ପରାୟଣ । ୮୬୫

ମନ୍ତ୍ରୀ ଧର୍ମରୁଚିଙ୍କର ହରି ପଦେ ପ୍ରୀତି
ନୃପ ହିତ ଆଶେ ଶିକ୍ଷା ଦିଅନ୍ତି ସୁନୀତି ।

ଦେବତା ବ୍ରାହ୍ମଣ ଗୁରୁ ସାଧୁ ପିତୃଜନ,
ସଭଙ୍କର ସେବା ସଦା କରନ୍ତି ରାଜନ । ୮୬୬

ବେଦରେ ବର୍ଣ୍ଣିତ ଯଥାବିଧି ରାଜଧର୍ମ,
ସାଦରେ ସେ ବିଧି ରାଜା କରନ୍ତି କରମ ।
ପ୍ରତିଦିନ ନାନା ଭାବେ ଦେଉଥାନ୍ତି ଦାନ,
ଶୁଣନ୍ତି ଉତ୍ତମ ଶାସ୍ତ୍ର ନିଗମ ପୁରାଣ । ୮୬୭

ଖୋଳାଇଲେ କୂପ ବାପି ପୁଷ୍କରଣୀମାନ,
ରଚିଲେ ନାନାବିଧ ପୁଷ୍ପ ବାଟିକା ଉଦ୍ୟାନ ।
ରଚିଲେ ବିପ୍ରଙ୍କ ପାଇଁ ସୁନ୍ଦର ଭବନ,
ତୀର୍ଥେ ତୀର୍ଥେ କଲେ ଦେବ ମନ୍ଦିର ସ୍ଥାପନ । ୮୬୮

ବେଦ ଓ ପୁରାଣେ ଯେତେ ପ୍ରକାରେ କଥିତ,
ଯାଗ ଯଜ୍ଞ ଆଦି ସବୁ ଶାସ୍ତ୍ର ସମର୍ଥିତ ।
ଏକ ଏକ କରି କଲେ ସହସ୍ରେକ ବାର,
ଅନୁରାଗ ଭରି ହୃଦେ ନୃପତି ଅପାର । ୮୬୯

ହୃଦେ ନ ରଖିଲେ କିଛି ଫଳର କାମନା,
ରାଜା ଥିଲେ ଜ୍ଞାନୀ ଗୁଣୀ ସୁବିବେକମନା ।
କାୟ ମନୋ ବାକ୍ୟେ କଲେ ଯେ ପୁଣ୍ୟ ଅର୍ଜନ,
କଲେ ସେ ତା କରି ହରି ପଦେ ସମର୍ପଣ । ୮୭୦

ଏକଦା ଉତ୍ତମ ଅଶ୍ୱ ପରେ ରଜା ଚଢ଼ି,
ସରଞ୍ଜାମ ସହ ଗଲେ ମୃଗୟାକୁ ଚଳି ।
ଉଚ୍ଚ ବିନ୍ଧ୍ୟ ପରବତ ବନ ଘୋରେ ଗଲେ,
ପବିତ୍ର ହରିଣ ବହୁ ସେ ନିଧନ କଲେ । ୮୭୧

ଦେଖିଲେ ବରାହ ଏକ ଫେରିବା ସମୟେ,
ଚନ୍ଦ୍ରମାକୁ ଗ୍ରାସି ରାହୁ ଲୁଚିଛି କି ଭୟେ ।
ବିଶାଳ ଆକାର ଶଶି ନ ଧରେ ବଦନେ,
କ୍ରୋଧେ ନ ପକାଏ ଛଳେ, ଲାଗୁଅଛି ମନେ । ୮୭୨

ବିକଟ ବରାହ ଦାନ୍ତ କରାଳ ଏସନେ,
ଦ୍ୱିତୀୟା ଶଶୀର ଆଭା ବିରାଟ କେସନେ ।
ଘୋଡ଼ା ଟାପୁ ଶବ୍ଦ ଶୁଣି ଘୁଡ଼୍ ଘୁଡ଼୍ କରି,
ଚକିତରେ ଟେକ କର୍ଣ୍ଣ ବିଲୋକଇ ଡରି । ୮୭୩

ନୀଳଗିରି ଶୃଙ୍ଗ ସମ ବରାହ ବିଶାଳ,
ନିରେଖି ତ୍ୱରିତେ ଅଶ୍ୱ ଛୁଟାଇ ଭୂପାଳ,
ସଚେତ କି ଇଙ୍ଗିତ ଦେଲେ ତା' ଆଡ଼କୁ ଚାହିଁ,
"ଆରେ ବନ୍ୟଚର ଆଉ ତୋର ରକ୍ଷା ନାହିଁ ।" ୮୭୪

ଅଶ୍ୱକୁ ଆସିବା ଦେଖି ଉଚ୍ଚେ ରବ କରି,
ପବନ ବେଗରେ ସେ ତ ପଳାଇଲା ଡରି ।
ଧନୁରେ ଯୋଚିଲେ ଶର ନୃପତି ଚଞ୍ଚଳ,
ବାଣ ଦେଖି ବାର୍‌ହା ମିଶିଗଲା ଭୂଇଁ ତଳ । ୮୭୫

ଲକ୍ଷ୍ୟ କରି କରି ଶର ମାରନ୍ତି ନୃପତି,
ଶରୀର ବଞ୍ଚାଏ ସେ ତ କଉଶଳ ରଚି ।
କେବେ ଲୁଚି କେବେ ଦେଖା ଦେଇ ସେ ପଳାଏ ।
ରାଜା ଧାଉଁଥାନ୍ତି ପଛେ—କ୍ରୋଧ ଉପୁଜାଏ । ୮୭୬

ପଶିଲା ବରାହ ଦୂର ଗହନ କାନନେ,
ଗଜ ବାଜିଙ୍କର ରାହା ନାହିଁ ଯେଉଁ ସ୍ଥାନେ ।
ଏକାକୀ ସେ ବନ ପଥେ ସହି ବହୁ କ୍ଲେଶ,
ତଥାପି ତା' ପଛ ତ୍ୟାଗ ନ କଲେ ନରେଶ । ୮୭୭

ଧୈର୍ଯ୍ୟବାନ ରାଜା ପଛେ ଆସୁଥିବା ଚାହିଁ,
ପାହାଡ଼ ଗୁମ୍ଫାରେ ବାର୍‌ହା ପଶିଗଲା କାହିଁ ।
ଅଗମ୍ୟ ସେ ଗୁମ୍ଫା ଦେଖି କରି ଅନୁତାପ,
ବାହୁଡ଼ିଲେ ରାଜା କିନ୍ତୁ ଭୁଲିଗଲେ ବାଟ । ୮୭୮

ଅଶ୍ୱ ସହିତରେ ରାଜା କ୍ଷୁଧିତ ତୃଷିତ,
ବହୁ କ୍ଲେଶ ସହି ଦେହ କ୍ଳାନ୍ତ ସନ୍ତାପିତ ।

ଆତୁରେ ଖୋଜନ୍ତ କାହିଁ ନଦୀ ସର ପାଣି,
ଜଳ ବିନା ତାଙ୍କର ତ ହଂସା ଉଡ଼ିଲାଣି । ୮୨୯

ଦେଖିଲେ ଆଶ୍ରମ ଏକ ବୁଲୁ ବୁଲୁ ବନେ,
ତହିଁ ଥିଲେ ଛଦ୍ମ ମୁନି ବେଶେ ରଜା ଜଣେ ।
ଯା' ଦେଶ ଏ ନୃପ ନେଇଥିଲେ ତ ଛଡ଼ାଇ,
ସମରେ ସୈନ୍ୟଙ୍କୁ ତେଜି ଥିଲା ସେ ପଳାଇ । ୮୮୦

ପ୍ରତାପଭାନୁଙ୍କ ଶୁଭ ବେଳ ଅନୁମାନି,
ପୁଣି ନିଜ ଅସମସ୍ତ କଥା ହୃଦେ ଜାଣି,
ଗ୍ଲାନି ଭରେ ନ ଫେରିଲା ଆଉ ନିଜ ଘରେ,
ଅଭିମାନେ ନ ମିଶିଲା ନୃପଙ୍କ ସାଙ୍ଗରେ । ୮୮୧

ଦରିଦ୍ର ସମାନ ମନେ କ୍ରୋଧ ନ ଘୁଞ୍ଚାଇ,
ତପସ୍ୱୀ ବେଶେ ସେ ବନେ ରହୁଥିଲା ଯାଇ ।
ତାହା ପାଶେ ପହଞ୍ଚିଲେ ଯାଇ ନରପତି ।
କ୍ଷଣେ ସେ ଚିହ୍ନିଲା ଏ ତ ପ୍ରତାପ ଭୂପତି । ୮୮୨

ତୃଷାର୍ତ୍ତ ନୃପତି ତାକୁ ନ ପାରିଲେ ଜାଣି,
ବେଶ ଦେଖି ମହାମୁନି ବୋଲି ଅନୁମାନି,
ଅଶ୍ୱରୁ ଓହ୍ଲାଇ କଲେ ପ୍ରଣାମ ଚରଣେ,
ନ କହିଲେ ନାମ କିନ୍ତୁ ସେ ଚତୁର ପଣେ । ୮୮୩

ନୃପତିଙ୍କୁ ଅତି ତୃଷାତୁର ଦେଖି ସେହି,
ପାଶେ ସରୋବର ଏକ ଦେଖାଇଲେ ନେଇ ।
ଅଶ୍ୱ ସାଥେ ସ୍ନାନ ପାନ କଲେ ନରେଶ୍ୱର,
ଅଶେଷ ହରଷେ ପୂରି ଉଠିଲା ଅନ୍ତର । ୮୮୪

ସୁଖୀ ହେଲେ ନରପତି ଦୂର ହେଲା ଶ୍ରମ,
ସନ୍ନ୍ୟାସୀ ତାହାଙ୍କୁ ନେଲେ ନିଜର ଆଶ୍ରମ ।
ଆସନ ପ୍ରଦାନ କଲେ ରବି ଅସ୍ତ ଜାଣି,
କହିଲେ ତାପସ ପୁଣି ସୁମଧୁର ବାଣୀ । ୮୮୫

"କଏ ତୁମେ ବନେ କାହିଁ ଏକାକୀ ବୁଲୁଛ,
ସୁନ୍ଦର ଯୁବକ, ପ୍ରାଣ ତୁଚ୍ଛ ବିଚାରୁଛ ।
ତୁମଠାରେ ଚକ୍ରବର୍ତ୍ତୀ ଲକ୍ଷଣ ଦିଶଇ,
ଦେଖିଲେ ତୁମ୍ଭଙ୍କୁ ଦୟା ହୃଦୟେ ଜାଗଇ ।" ୮୬

"ପ୍ରତାପୀ ପ୍ରତାପଭାନୁ ନାମେ ନୃପବର,
ତାହାଙ୍କ ସଚିବ ମୁହିଁ ଶୁଣ ତପୀବର ।
ପାରଧିରେ ବୁଲୁ ବୁଲୁ ପଥ ମୁଁ ଭୁଲିଲି,
ସଉଭାଗ୍ୟ ବଶେ ତବ ଚରଣେ ମିଳିଲି । ୮୭

ମୋ ନିମନ୍ତେ ଆପଣଙ୍କ ଦର୍ଶନ ଦୁର୍ଲ୍ଲଭ
ଜଣାଯାଏ କିଛି ଲାଭ ହୋଇବ ସୁଲଭ ।"
ତପସ୍ୱୀ କହିଲେ, "ବତ୍ସ, ନିଶି ଆଗମନ,
ଏଠାରୁ ନଗର ତବ ସତୁରି ଯୋଜନ । ୮୮

ହେ ସୁଜାଣ, ଘନ ଘୋର ଅନ୍ଧକାର ରାତି,
ଗହନ ଏ ବନ ପୁଣି ଥରିଯାଏ ଛାତି ।
ରାସ୍ତାଘାଟ ନାହିଁ କିଛି ବିଚାର ମନରେ,
ରହିଯାଅ ଏଥି, ଯିବ କାଲି ପ୍ରଭାତରେ ।" ୮୯

ତୁଳସୀ କହନ୍ତି ଭାଗ୍ୟ ଯେପରି କରାଏ,
ସାହାଯ୍ୟ ମିଳଇ ସେହିପରି ଠାଏଁ ଠାଏଁ ।
ମଣିଷ ପାଖକୁ ସେ ତ ଆପେ ଆସିଯାଏ,
ଅବା ମଣିଷକୁ ତା'ର ପାଶେ ନେଇଯାଏ । ୯୦

'ହେଉ' ବୋଲି କହି ବହି ମସ୍ତକେ ଆଦେଶ,
ତରୁରେ ତୁରଗ ବାନ୍ଧି ବସିଲେ ନରେଶ ।
ବହୁତ ପ୍ରଶଂସା କରି ଚରଣ ବନ୍ଦିଲେ
ବହୁ ଭାଗ୍ୟ ବୋଲି ଏହା ମନେ ବିଚାରିଲେ । ୯୧

କହିଲେ ମଧୁର କଥା ପୁଣି ନୃପବର,
"ଧୃଷ୍ଟତା କରୁଛି 'ପିତା' ଭାବି ମୁନୀଶ୍ୱର ।

ମୁନୀଶ ହେ, ମୋତେ ସୁତ ସେବକ ବିଚାରି,
କହନ୍ତୁ ନିଜର ନାମ ଧାମ ସୁବିସ୍ତାରି ।" ୮୧୨

ନୃପ ତାଙ୍କୁ ନ ଜାଣନ୍ତି, ନୃପେ ସେ ଜାଣଇ,
ନିର୍ମଳ ହୃଦୟ ରଜା, ସେ ଖଳ ଅଟଇ ।
ସେ ଶତ୍ରୁ କ୍ଷତ୍ରିୟ ପୁଣି ତହିଁ ନରପତି,
ଛଳେ ନିଜ କାମ ଗୃହୁଁ ଥିଲା ମନ୍ଦମତି । ୮୧୩

ହୃତ ରାଜ୍ୟ ସୁଖ ସ୍ମରି ବ୍ୟଥିତ ହୁଅଇ,
କୁମ୍ଭାର ଉହାଗ୍ନି ସମ ଗୁପ୍ତ କରଚଇ ।
ଶୁଣି ନୃପତିଙ୍କ ଧୀର କୋମଳ ବଚନ,
ଶତ୍ରୁତା ଲୁଚାଇ ହୃଦେ ହେଲା ସୁପ୍ରସନ୍ନ । ୮୧୪

କପଟରେ ବୁଡ଼ ବଡ଼ ଯୁ କ୍ତିର ସହିତ
କହିଲା କୋମଳ କଥା ହୋଇ ହରଷିତ—
"ଯେଣୁ ମୁଁ ନିର୍ଦ୍ଧନ ମୋର ନାହିଁ ନିକେତନ,
ମୋ ନାମ ଭିକାରି ତେଣୁ ଜାଣିବ ରାଜନ ।" ୮୧୫

କହିଲେ ନୃପତି, "ଯିଏ ବିଜ୍ଞାନ-ନିଧାନ,
ତୁମ ପରି ସେ ରହିତ ମାନ ଅଭିମାନ ।
ଲୁଚାଇ ରଖନ୍ତି ସେହୁ ନିଜକୁ ଗୋପନେ,
ଭାବନ୍ତି କୁବେଶେ ସବୁ ଶୁଭ ବୋଲି ମନେ । ୮୧୬

ତେଣୁ ବେଦ ସନ୍ଥ ଜନେ କହନ୍ତି ଉଚରେ,
ହରିଙ୍କ ପରମ ପ୍ରିୟ ଅକଞ୍ଚନ ନରେ ।
ବାସ-ଧନ-ହୀନ ତୁମ ସମ ଯେ ଭିକାରି,
ତାଙ୍କୁ ଦେଖି ବ୍ରହ୍ମା ଶିବ ମନେ ଶଙ୍କା ଧରି । ୮୧୭

ହେ ପ୍ରଭୁ ଯେ କେହି ପଛେ ହୁଅନ୍ତୁ ଆପଣ,
ପ୍ରଣମୁଛି ମୋ'ରେ କୃପା କର ବିତରଣ ।''
ନୃପଙ୍କ ସହଜ ପ୍ରୀତି ଦେଖି ଭଣ୍ଡ ମୁନି,
ନିଜ ପରେ ତାଙ୍କ ବହୁ ଆସ୍ଥା ଦେଖି ପୁଣି—। ୮୧୮

ସବୁମନ୍ତ୍ରେ ବଶୀଭୂତ କରି ନୃପବରେ,
କହିଲେ ମଧୁର କଥା ଅତି ସ୍ନେହ ଭରେ ।
"ଆହେ ମହୀପାଳ ଶୁଣ ସତ୍ୟ ମୋ ବଚନ,
ଏଠାରେ ମୁଁ ବହୁକାଳ କଲିଣି ଯାପନ । ୮୯୯

ଆଜି ଯାଏଁ ମୋତେ କେହି କରିନ ସାକ୍ଷାତ,
କାହା ପାଶେ ନିଜକୁ ମୁଁ କରିନାହିଁ ଜ୍ଞାତ ।
ଲୋକରେ ପ୍ରତିଷ୍ଠା ଯେଣୁ ଅନଳ ପରାୟେ,
ତପ ରୂପ ଘନ ବନସ୍ତକୁ ଦହି ଥାଏ ।" ୯୦୦

ତୁଳସୀ କହନ୍ତି, ମୂଢ଼ ନୁହିଁ, ସୁଚତୁରେ
ଭୁଲନ୍ତି ନିରେଖି ଏହି ବେଶ ଜଗତରେ ।
ସୁନ୍ଦର ମୟୂର କହେ ଅମୃତ ବଚନ,
ଆଉ ଦେଖ ତାର କେହ୍ନେ ଭୁଜଙ୍ଗ ଭୋଜନ । ୯୦୧

ତପୀ କହେ, "ତେଣୁ ରହେ ଜଗତେ ଗୋପନେ,
ହରି ତେଜି ପ୍ରୟୋଜନ ନ ରଖଇ ଅନ୍ୟେ ।
ନ ଜଣାଇ ମଧ୍ୟ ପ୍ରଭୁ ଜାଣନ୍ତି ସକଳ,
ସଂସାର ପ୍ରସନ୍ନ ହେଲେ ଅବା କେଉଁ ଫଳ ? ୯୦୨

ତୁମେ ତ ସୁମତି ପୂତ ସୁପ୍ରିୟ ମୋହର,
ଶ୍ରଦ୍ଧା ଓ ବିଶ୍ୱାସ ଅଛି ମୋ ଠାରେ ତୁମ୍ଭର ।
ଏବେ ତୁମ ପାଶେ କିଛି କଲେ ମୁଁ ଗୋପନ
ବଡ଼ ଦୋଷୀରେ ମୁଁ ପୁଣି ହୋଇବ ଗଣନ ।" ୯୦୩

ତପସ୍ୱୀ କହଇ ଯେତେ ଉଦାସ ବଚନ,
ସେତିକି ହୁଅଇ ନୃପ ବିଶ୍ୱାସ ଭାଜନ ।
ମନ କର୍ମ ବଚନରେ ବଶୀଭୂତ ଜାଣି,
ରାଜାଙ୍କୁ କହିଲା ତହୁଁ ମୁନି ବକଧ୍ୟାନୀ । ୯୦୪

"ଏକତନୁ ବୋଲି ନାମ ହେ ଭାଇ ମୋହର,"
ଶୁଣି ନୃପ ପଚାରିଲେ ନମସ୍କାର କରି ।

"ବୁଝାଇ କହନ୍ତୁ ନାମ-ଅର୍ଥ ମୁନୀବର,
ସ୍ୱଗୃହଣ ମୋତେ ନାଥ ନିଜ ଅନୁଚର ।" ୯୦୫

"ସୃଷ୍ଟି ଆଦ୍ୟ କାଳୁ ଜାଣ ମୋହର ଉତ୍ପତ୍ତି,
ଆନ ଦେହ ଧରି ନାହିଁ ଆଉ ନରପତି ।
ତେଣୁ ଏକତନୁ ନାମ ହୋଇଛି ମୋହର,
ଏଥିରେ ସଂଶୟ ତ୍ୟଜ ନାହିଁ ନୃପବର । ୯୦୬

ଆଶ୍ଚର୍ଯ୍ୟ ନ ହୁଅ ପୁତ୍ର ଶୁଣି ମୋ ବଚନ,
ଦୁର୍ଲ୍ଲଭ ନୁହଇ କିଛି ତପେ ହେ ରାଜନ ।
ଜଗତ କରନ୍ତି ସୃଷ୍ଟି ଧାତା ତପ ଫଳେ,
ବିଷ୍ଣୁ ଜଗତର ତ୍ରାତା ଜାଣ ତପ ବଳେ । ୯୦୭

କରନ୍ତି ସଂହାର ଶମ୍ଭୁ ଏହି ତପ ବଳେ,
ତପେ ନ ମିଳିବା ବସ୍ତୁ ନାହିଁ ଏ ଭୂତଳେ ।"
ନୃପଙ୍କର ଅତି ଅନୁରାଗ ହେଲା ଶୁଣି,
କହିଲା ପୁରୁଣା କଥା ଭଣ୍ଡ ତପୀ ପୁଣି । ୯୦୮

ଧର୍ମ କର୍ମ ଆଉ ନାନା ଇତିହାସ କହି,
ଜ୍ଞାନ ଓ ବୈରାଗ୍ୟ ନିରୂପଣ ସେ କରଇ ।
ସୃଷ୍ଟିର ଉତ୍ପତ୍ତି ପୁଣି ପାଳନ ସଂହାର—
କାହାଣୀ କହିଲା ସେହି ଆଶ୍ଚର୍ଯ୍ୟ ପ୍ରକାର । ୯୦୯

ସବୁ ଶୁଣି ରଜା ହେଲେ ତପୀରାଜ ବଶ,
କହିବାକୁ ଲାଗିଲେ ସେ ନିଜ ନାମ ବଂଶ ।
ତପସ୍ୱୀ କହିଲା, "ରଜା ତୁମକୁ ମୁଁ ଜାଣେ,
ଯେ କପଟ କଲ ସୁଖ ଲାଗିଲା ପରାଣେ । ୯୧୦

ଯହିଁ ତହିଁ ରଜା କେବେ ନିଜ ପରିଚୟ;
ଦିଅନ୍ତି ନି, ଏ ତ ରାଜନୀତି ସୁନିଶ୍ଚୟ ।
ତୁମ୍ଭର ଏ ଚତୁରତା ବଡ଼ିଶ ମନରେ,
ତୁମ୍ଭ ପ୍ରତି ଅତି ପ୍ରୀତି ଜାଗଇ ଅନ୍ତରେ । ୯୧୧

ତୁମେ ତ ପ୍ରତାପଭାନୁ ତୁମର ଜନକ,
ମହାରାଜ ସତ୍ୟକେତୁ ଜଗତ ପାଳକ ।
ସକଳ ଜାଣେ ମୁଁ ଲଭି ଗୁରୁ କୃପା କଣ,
ନ କହଇ କିଛି ହେବ ମୋ କ୍ଷତି ସାଧନ । ୯୧୨

ହେ ବତ୍ସ ତୋହର ସ୍ୱଭାବିକ ସରଳତା,
ପ୍ରୀତି ଓ ବିଶ୍ୱାସ ପୁଣି ନୀତି ନିପୁଣତା ।
ନିରେଖି ମମତା ଜାତ ହୁଏ ମୋ ମନରେ,
ପଚାରିବା ତୋର କଥା କହେ ତୋ' ଆଗରେ । ୯୧୩

ପ୍ରସନ୍ନ ମୁଁ ନିଃସନ୍ଦେହ—ମାଗ ନରପତି,
ମନରେ ତୁମର ଯାହା ଅଭିଳାଷ ଅଛି ।"
ମଧୁର ବଚନେ ତୃପ୍ତ ହେଲେ ନରପତି,
ପାଦ ଧରି ବହୁ ଭାବେ କରିଲେ ମିନତି । ୯୧୪

"ହେ ଦୟାସାଗର ମୁନି ଦର୍ଶନେ ତୁମର,
ଚତୁଃବର୍ଗ ଫଳ ହାତେ ମିଳିଲା ମୋହର ।
ତଥାପି ମୁଁ ଜାଣି ପ୍ରଭୁ ପ୍ରସନ୍ନ ମୋହର,
ଅଶୋକ ନୋହିବ କିଆଁ ମାଗି ଶ୍ରେଷ୍ଠ ବର । ୯୧୫

ଜରା ମୃତ୍ୟୁ ଦୁଃଖ ହୀନ ହେଉ କଳେବର,
ନ ଜିଣିବେ କେହି କରି ମୋ ସଙ୍ଗେ ସମର ।
ଏକଛତ୍ର ଅକଣ୍ଟକ ଏ ସାରା ପୃଥିବୀ,
ଶତ କଳ୍ପ ଯାଏଁ ପ୍ରଭୁ ମୁହିଁ ଭୋଗୁଥିବି ।" ୯୧୬

ତପସ୍ୱୀ କହିଲା, "ହେଉ ଏପରି ନୃପତି,
ଏଥିରେ କଠିନ ଯାହା ଥିବ ମନେରଖି ।
କେବଳ ବ୍ରାହ୍ମଣ କୁଳ ଛାଡ଼ି ନୃପ ବୀର,
କାଳ ମଧ୍ୟ ତୁମ ପଦେ ନୁଆଁଇବ ଶିର । ୯୧୭

ତପବଳେ ବଳବାନ ବିପ୍ରେ ଏ ସଂସାରେ,
କୋପ କଲେ ସେହି ଆଉ କିଏ ରଖିପାରେ ?

ଯେବେ ବିପ୍ରେ ନିଜ ବଶ କରିବୁ ନରେଶ,
ତୋ ବଶ ହୋଇବେ ବିଷ୍ଣୁ ବିରଞ୍ଚି ମହେଶ । ୯୧୮

ଜୋର ଜବର୍‌ଦସ୍ତି ବିପ୍ରେ ନ ଚଳିବ ଜାଣ,
ଭୁଜ ଟେକି କହୁଅଛୁ ଏ ସତ୍ୟ ପ୍ରମାଣ ।
ବିପ୍ର ଅଭିଶାପ ବିନା ଶୁଣ ରେ କୁମର,
କେଉଁକାଳେ ନ ହୋଇବ ବିନାଶ ତୋହର ।" ୯୧୯

ହରଷ ହୋଇଲେ ରାଜା ଶୁଣି ତା ବଚନ,
କହିଲେ, "ନୋହିବ ପ୍ରଭୁ ମୋହର ନିଧନ ।
କରୁଣା-ନିଧାନ ନାଥ ତୁମ୍ଭ ଅନୁଗ୍ରହେ,
ସବୁ କାଳ ଶୁଭ ହେବ ମୋହର ନିଶ୍ଚୟେ ।" ୯୨୦

କପଟୀ ତପସ୍ୱୀ ତହୁଁ କହିଲା ବଚନ,
ତୁମ ବାଟ ବଣା ଆଉ ମୋ ସାଥେ ମିଳନ ।
ଯେପରି ଜାଣିବେ ନାହିଁ ଆଉ କେହି ଆନ,
ମୋ ଦୋଷ ଦେବୁନି ପଛେ କଲି ସାବଧାନ । ୯୨୧

କହିଲେ ତୋହରି କ୍ଷତି ହେବା ସିନା ସାର,
ତେଣୁ ମୁଁ କରୁଛି ମନା କହି ବାର ବାର ।
ଷଷ୍ଠ କାନେ ଯେବେ ଏହି ପ୍ରସଙ୍ଗ ବାଜିବ,
ସତ୍ୟ ମୋର କଥା, ତୁମ ବିନାଶ ହୋଇବ । ୯୨୨

ଏ କଥା ପ୍ରକାଶ କଲେ ହେ ନୃପ ପ୍ରତାପ,
ଅଥବା ଲଭିବ ଯଦି ବିପ୍ର ଅଭିଶାପ ।
ତେବେ ମୃତ୍ୟୁ ହେବ ସିନା, ଆଉ ନାହିଁ କାହିଁ,
ବ୍ରହ୍ମା ଶିବ କୋପେ ମଧ୍ୟ କିଛି ହେବ ନାହିଁ । ୯୨୩

ମୁନି ପାଦ ଧରି ରାଜା କହିଲେ, "ହେ ସ୍ୱାମୀ,
ବିପ୍ର ଗୁରୁ କ୍ରୋଧରୁ କେ ରକ୍ଷା କରିଛନ୍ତି ।
ବିଧି କୋପ କଲେ ଗୁରୁ ପାରିବେ ତ ରଖି,
ଗୁରୁ କୋପୁଁ ଜଗତେ କେ ରଖି ପାରିବ କି ? ୯୨୪

ଆପଣଙ୍କ ଆଜ୍ଞା ଯେବେ ନ କରେ ପାଳନ,
ନାଶି ଯିବ ପଛେ, ମୁହେଁ ଚିନ୍ତିତ ମୋ ମନ ।
ମାତ୍ର ଏକ ଡର, ତେଣୁ କମ୍ପେ ମନ ମୋର,
ପ୍ରଭୁ ବିପ୍ର ଅଭିଶାପ ଜାଣେ ଅତି ଘୋର । ୯୨୫

କହ ପ୍ରଭୁ କେଉଁଭେ ବଶ ହୋଇବେ ବ୍ରାହ୍ମଣେ,
ହେ ଦୀନ ଦୟାଳୁ ତୁମ ଛଡ଼ା ଆଉ ଜଣେ
ମୋର ହିତାକାଙ୍‌କ୍ଷୀ ପୁଣି ସର୍ବ ଶୁଭକାମୀ,
ଦେଖି ପାରୁ ନାହିଁ ମୁହିଁ ହେ ତାପସ ସ୍ୱାମୀ ।" ୯୨୬

"ନୃପ ଶୁଣ, ନାନା ପନ୍ଥା ଅଛି ଏ ସଂସାରେ,
କଷ୍ଟସାଧ୍ୟ ପୁଣି ହୋଇପାରେ ବା ନ ପାରେ ।
ସହଜ ଉପାୟ ଏକ ଅଛି ମୋ ମତରେ;
ଅଶେଷ କଠିନ କିନ୍ତୁ କାର୍ଯ୍ୟ ସାଧନରେ । ୯୨୭

ସେହି ଉପାୟ ତ ଜାଣ ମୋହର ହାତରେ,
ମାତ୍ର ଯାଇ ନ ପାରିବି ତୁମର ନଗରେ ।
ଜନ୍ମ କାଳୁଁ ଆଜଯାଏଁ କରିନି ଗମନ,
କାହାର ଗ୍ରାମକୁ ଅବା କାହାର ଭବନ । ୯୨୮

ଯେବେ ନ ଯାଉଛି ତେବେ ତୁମ୍ଭ କାର୍ଯ୍ୟ ହାନି,
ଏ ବଡ଼ ଅଡୁଆ କଥା ଏବେ ହୋଇଲାଣି ।"
କହିଲେ ଏ କଥା ଶୁଣି ରାଜା ମଧୁ ବାଣୀ,
"ନାଥ, ଏହି ନୀତି, ବେଦ ଯାଇଛି ବଖାଣି । ୯୨୯

ବଡ଼ମାନେ କରିଥାନ୍ତି ସାନକୁ ଆଦର,
ଗିରିରାଜ ବହେ ତୃଣ ମସ୍ତକ ଉପର ।
ଶିର ପରେ ମହୋଦଧି ଫେଣ ଧରିଥାଏ,
ସତତ ବସୁଧା ଶିରେ ଧୂଳି ଲୋଟୁଥାଏ ।" ୯୩୦

ଏହା କହି ପଦ ଧରି ବିନୟେ ରାଜନ,
କହିଲେ, "ହେ ମୁନିରାଜ ହେ ସ୍ୱାମୀ ସଜ୍ଜନ ।

ହେ ପ୍ରଭୁ କୃପାଳୁ ଘନ ଦୟାଳୁ ଆପଣ,
ଦୟାକର ମୋହ ଲାଗି ସମ୍ଭବେ କଷଣ ।" ୧୬୧

ଜାଣି ନରପତିଙ୍କୁ ସେ ଆପଣା ଅଧୀନ,
କହିଲେ ତାପସ ମୁନି, କପଟେ ପ୍ରବୀଣ ।
"ଶୁଣ ରାଜା, କହୁଅଛୁ ଏ ସତ୍ୟ ବଚନ,
ଦୁର୍ଲ୍ଲଭ ନୁହଇ ମୋତେ କୌଣସି ରତନ । ୧୬୨

ତନ ମନ ବାକ୍ୟେ ଯେଣୁ ଭକତ ତୁ ମୋର,
ଅବଶ୍ୟ କରିବ ମୁହିଁ ଏହି କାର୍ଯ୍ୟ ତୋର ।
ଯୋଗ ଯୁକ୍ତି ତପ ମନ୍ତ୍ର ଗୋପନେ ସାଧନ,
ଯେବେ କରାଯାଏ ଫଳ ହୁଅଇ ଉତ୍ପନ୍ନ । ୧୬୩

ରାନ୍ଧିବ ମୁଁ ଯାହା, ତୁମେ ପରଶିବ ତାହା,
ମୋତେ କେହି ନ ଜାଣିବେ ଶୁଣ ନରନାହା ।
ସେ ଅନ୍ନକୁ ଯେଉଁମାନେ କରିବେ ଭୋଜନ,
ସେମାନେ ହୋଇବେ ତୁମ ଆଜ୍ଞାବହ ଜନ । ୧୬୪

ପୁଣି ସେମାନଙ୍କ ଘରେ ଆଉ ଯିଏ ଥିବେ,
ସର୍ବେ ତୁମ ବଶୀଭୂତ ଅବଶ୍ୟ ହୋଇବେ ।
ନବରେ ବାହୁଡ଼ି ଯାଇ ଏ ଉପାୟ କର,
ପୂର୍ଣ୍ଣ ବର୍ଷଯାଏଁ ଏହି ସଂକଳ୍ପ ଆଚର । ୧୬୫

ପ୍ରତିଦିନ ନୂଆ ନୂଆ ଲକ୍ଷେ ଦ୍ୱିଜବର,
ସକୁଟୁମ୍ବେ ସମାଦରେ ନିମନ୍ତ୍ରଣ କର ।
ସଂକଳ୍ପ ବର୍ଷକ ଯାଏଁ ତୁମର ରାଜନ,
ନିତି ନିତି କରି ଦେଉଥିବ ମୁଁ ରନ୍ଧନ । ୧୬୬

ଏହି ଭାବେ ନୃପ ଅତି ଅଳପ ପ୍ରୟାସେ,
ସକଳ ବ୍ରାହ୍ମଣ ବଶ ହେବେ ତୁମ ପାଶେ ।
ହୋମ ଯଜ୍ଞ ସେବା ସବୁ କରିବେ ତୁମର,
ତେଣୁ ତ ସହଜେ ତୋଷ ହୋଇବେ ଅମର । ୧୬୭

ଆଜ ମୁଁ ସଙ୍କେତ ଏକ କହୁଚି ରାଜନ,
ଏହି ବେଶେ ନ କରିବ କଦାପି ଗମନ ।
ତୁମ ପୁରୋହିତଙ୍କୁ ମୁଁ ନିଜ ମାୟା କରି,
ଆଣିବି ଏଠାକୁ ଜାଣ ହେ ନୃପତି ହରି । ୯୩୮

ତପ ବଲେ ତାଙ୍କୁ କରି ଆପଣା ସମାନ,
ଏଠାରେ ରଖିବି ପୂର୍ଣ୍ଣ ବର୍ଷ ପରିମାଣ ।
ତାହାର ବେଶକୁ ମୁହିଁ ଧରି ନୃପବର,
ସିଦ୍ଧ କରିଦେବି ସବୁ କାର୍ଯ୍ୟକୁ ତୁମ୍ଭର । ୯୩୯

ହେଲାଣି ବହୁତ ରାତି, ଶୁଅ ଯା' ଏଥର,
ତୃତୀୟ ଦିବସେ ଭେଟ ତୋହର ମୋହର ।
ତପ ବଳେ ମୁହିଁ ତୋତେ ତୁରଗ ସଙ୍ଗରେ,
ନିଦ୍ରିତାବସ୍ଥାରେ ଛାଡ଼ି ଦେବି ତୋ ନିବରେ । ୯୪୦

ତୋର ପୁରୋହିତ ବେଶ ଧରି ମୁଁ ରାଜନ,
ଯିବି ଯେତେବେଳେ ରାଜା ତୋ ରାଜ ଭବନ ।
ସବୁ କଥା ଏକାନ୍ତରେ ଶୁଣାଇଲେ ତୋତେ,
ସେତେବେଳେ ନିଶ୍ଚେ ଚିହ୍ନି ପାରିବୁ ତୁ ମୋତେ ।"୯୪୧

ନୃପତି ଶୟନ କଲେ ଆଜ୍ଞା ତାର ମାନି,
ଆସନେ ବସିଲା ଯାଇ ସେହି ଛଳ ଜ୍ଞାନୀ ।
କ୍ଳାନ୍ତ ନରପତି ଘୋର ନିଦ୍ରା ଅଭିଭୂତ,
ସେ କେମନ୍ତେ ଶୋଇବ, ତାର ଚିନ୍ତା ଯେ ବହୁତ । ୯୪୨

ନିଶାଚର କାଳକେତୁ ମିଳିଲା ସେଠାରେ,
ବାରହା ରୂପେ ଯେ ଭୁଲାଇ ଆଣିଲା ରାଜାରେ ।
ତପସ୍ୱୀ-ରାଜାର ଥିଲା ସେ ବନ୍ଧୁ ପରମ
ଜଣା ତାକୁ ନାନା କୁଟ କପଟ କରମ । ୯୪୩

ଥିଲେ ତାର ଶତ ସୁତ ପୁଣି ଦଶ ଭ୍ରାତା
ସକଳେ ଅଜେୟ ଖଳ ଦେବ-ଦୁଃଖ-ଦାତା ।

ସାଧୁ ବିପ୍ର ସୁରେ ଦେଖି ଦୁଃଖୀ ନିରନ୍ତରେ,
ବଧିଲେ ସଭିଙ୍କୁ ଏହି ନୃପ ପ୍ରଥମରେ । ୯୪୪

ସେହି ଖଳ ଏବେ ସ୍ମରି ଅଗ୍ରାତ ବୈରତା,
କଲା ଷଡ଼ଯନ୍ତ୍ର ତପୀ ସଙ୍ଗେ ହୋଇ କଥା ।
ଶତ୍ରୁ ଯେଉଁଥିରେ ନାଶ ଯିବ ପାଞ୍ଚିଲା ଉପାୟ,
ମନ୍ଦ ଭାଗ୍ୟେ ନ ଜାଣିଲେ କିଛି ନରରାୟ । ୯୪୫

ବଳବାନ ଶତ୍ରୁ ହେଉ ପଛକେ ଏକାକୀ,
ତାହାକୁ ନଗଣ୍ୟ ତୁଚ୍ଛ କହି ପାରିବା କି ?
ରାହୁର କେବଳ ଅଛି ଶିର ଅବଶେଷ,
ଆଜି ବି ଦିଅଇ ଚନ୍ଦ୍ର ସୂର୍ଯ୍ୟେ ବହୁ କ୍ଲେଶ । ୯୪୬

ନିଜର ସଖାକୁ ଦେଖି ତପୀ ନରପତି,
ଆନନ୍ଦରେ ଉଠିଗଲା ହୋଇ ହର୍ଷ ମତି ।
ମିତ୍ର ଆଗେ ଜଣାଇଲା ସକଳ ଖବର,
ହରଷିତ ମନେ ତହୁଁ କହେ ନିଶାଚର । ୯୪୭

"ଶତ୍ରୁକୁ ମୁଁ ଏବେ ସାଧ୍ୟ କରିବି ନରେଶ,
କାର୍ଯ୍ୟକାରୀ କଲ ଯେଣୁ ମୋର ଉପଦେଶ ।
ଏବେ ଶୋଇ ରହ ତୁମେ ଚିନ୍ତା ପରିହରି,
ବିନା ଔଷଧରେ ବିଧି ବ୍ୟାଧି ନେଲା ହରି । ୯୪୮

ରିପୁକୁଳ ମୂଳ ସାଥେ ସବଂଶେ ଉପାଡ଼ି,
ଚତୁର୍ଥ ଦିବସେ ଭେଟ ହେବ ନରସାଇଁ ।
ସାନ୍ତ୍ୱନା ଜଣାଇ ତପୀ-ନୃପେ ଏହିପରି,
ଅନ୍ତର୍ଦ୍ଧାନେ ସେ ମାୟାବୀ ଦୈତ୍ୟ ଗଲା ଚଳି । ୯୪୯

ପ୍ରତାପଭାନୁକୁ ନେଇ ଅଶ୍ୱ ସହିତରେ,
କ୍ଷଣକରେ ପହଞ୍ଚାଇ ଦେଲା ସେ ନବରେ ।
ରାଜାଙ୍କୁ ଶୁଆଇ ରାଣୀ ପାଶେ ତତକାଳେ,
ଘୋଡ଼ାକୁ ବାନ୍ଧିଲା ନେଇ ରାଜ ଘୋଡ଼ାଶାଳେ । ୯୫୦

ଉଠାଇ ସେ ଦୈତ୍ୟ ରାଜ ପୁରୋହିତେ ତହୁଁ
ହରି ନେଇଗଲା ବେଗେ ମାୟା ରଚି ବହୁ ।
ପୁଣି ମାୟାବଳେ କରି ତା'ର ବୁଦ୍ଧି ଧ୍ୱଂସ,
ପାହାଡ଼ ଗୁମ୍ଫାରେ ନେଇ ରଖିଲା ରାକ୍ଷସ । ୯୫୧

ନିଜେ ପୁରୋହିତ ରୂପ ଧରି ନିଶାଚର,
ସୁନ୍ଦର ଶେଯେ ତା' ଯାଇ ଶୋଇଲା ମନ୍ଥର ।
ପ୍ରଭାତ ହୋଇବା ପୂର୍ବୁ ରାଜା ଶେଯରୁ ଉଠିଲେ,
ଆପଣା ଭବନ ଦେଖି ଆଶ୍ଚର୍ଯ୍ୟ ହୋଇଲେ । ୯୫୨

ମୁନିଙ୍କ ମହିମା ମନୋଗତେ ଅନୁମାନି,
ଉଠିଲେ ସର୍ଧାରେ ଯେହ୍ନେ ନ ଜାଣିବେ ରାଣୀ ।
ସେହି ଅଶ୍ୱ ପରେ ନିଜେ ଆରୋହି ରାଜନ,
ବନେ ଗଲେ, ନ ଜାଣିଲେ କେହି ପୁରଜନ । ୯୫୩

ବେଳ ଯାମ ଅନ୍ତେ ରାଜା ଫେରିଲେ ନଅରେ,
ବାଜିଲା ମଙ୍ଗଳ ବାଜା ପ୍ରତି ଘରେ ଘରେ ।
ପୁରୋହିତଙ୍କୁ ଯେ କାଳେ ଦେଖିଲେ ନରେଶ,
ଚକିତେ ଗୃହିଁଲେ ସ୍ମରି ସେ କଥା ବିଶେଷ । ୯୫୪

ଯୁଗ ସମ ବିତାଇଲେ ରାଜା ତିନି ଦିନ,
କପଟୀ ତାପସ ପଦେ ମତି ରହେ ଲୀନ ।
ଯଥାକାଳେ ପୁରୋହିତ ହୋଇ ଉପଗତ,
ପୂର୍ବ କଥା ମନେ ନୃପେ ବୁଝାଏ ସମସ୍ତ । ୯୫୫

ହର୍ଷ ଭରେ ନୃପବର ଗୁରୁଙ୍କୁ ଚିହ୍ନିଲେ,
ବୁଦ୍ଧି ଭ୍ରଂଶ ହେତୁ ସେ ତ ଚେତାରେ ନ ଥିଲେ ।
କୁଟୁମ୍ବ ସହିତେ ଶତ ସହସ୍ର ବ୍ରାହ୍ମଣ,
ପୂର୍ବ କଥା ରଖି ନୃପ କଲେ ନିମନ୍ତ୍ରଣ । ୯୫୬

ରନ୍ଧନ କରିଲା ତହୁଁ ଭୋଜୀ ପୁରୋହିତ,
ଷଡ଼ ରସ ଚାରି ବିଧି ବେଦେ ଯା' ବର୍ଣ୍ଣିତ ।

ମାୟାମୟ ପାକ ପୁଣି ବିବିଧ ବ୍ୟଞ୍ଜନ,
ରନ୍ଧନ କରିଲା, କିଏ କରିବ ଗଣନ । ୯୫୭

ବିବିଧ ପ୍ରକାର ମୃଗ ଆମିଷ ରାନ୍ଧିଲା,
ତହିଁରେ ରାକ୍ଷସ ବିପ୍ର-ମାଂସ ମିଶାଇଲା ।
ଭୋଜନ ସକାଶେ ଡାକି ସବୁ ବିପ୍ରବରେ,
ନେଇ ବସାଇଲା ପାଦ ଧୋଇ ସମାଦରେ । ୯୫୮

ପରଷିଲେ ରାଜା ଯେବେ ଖାଦ୍ୟ ହର୍ଷଭରେ,
ଶୁଭିଲା ଆକାଶବାଣୀ ସେହି ସମୟରେ—
"ଉଠ ଉଠ ବିପ୍ରକୁଳ ନିଜ ଗୃହେ ଯାଅ,
ବଡ଼ ହାନିକର ଏହା—ଏ ଅନ୍ନ ନ ଖାଅ । ୯୫୯

ବ୍ରାହ୍ମଣ ମାଉଁସେ ଏହା ହୋଇଛି ରନ୍ଧନ ।"
ଏ କଥା ବିଶ୍ୱାସେ ଉଠିଗଲେ ବିପ୍ରଗଣ ।
ବିକଳ ନୃପତି ମୋହ ବଶ ଭ୍ରଂଶ ମନ,
ଭବିତବ୍ୟ ଭାବ ମୁଖୁଁ ନ ସ୍ଫୁରେ ବଚନ । ୯୬୦

କିଛି ନ ବିଚାରି କ୍ରୋଧେ କହିଲେ ବ୍ରାହ୍ମଣେ,—
"ଆରେ ମୂର୍ଖ ରାଜା ଏହା କଲୁ ତୁ କେସନେ ?
ତାର ପ୍ରତିଫଳେ ଏବେ ଅଧମ ପାମର,
ପରିବାର ସହ ଯାଇ ହୁଅ ନିଶାଚର । ୯୬୧

କ୍ଷତ୍ରିୟ ଅଧମ ବିପ୍ରେ କଲୁ ନିମନ୍ତ୍ରଣ,
ସଭିଙ୍କୁ ସମୂଳେ ନଷ୍ଟ କରିବା କାରଣ ।
ଈଶ୍ୱର ରଖିଲେ ସିନା ଧରମ ଆମର,
ପରିବାର ସାଥେ ନଷ୍ଟ ହେବୁ ତୁ ସେପର । ୯୬୨

ବର୍ଷକ ଭିତରେ ତୋର ନାଶ ସୁନିଶ୍ଚିତ,
ରହିବେନି କୁଳେ ପାଣି ଦେବାକୁ କେହି ତ ।"
ଶାପ ଶୁଣି ଭୟେ ରାଜା ହୋଇଲେ ବ୍ୟାକୁଳ,
ପୁଣି ଦୈବୀ ବାଣୀ ହେଲା, —"ଆହେ ବିପ୍ରକୁଳ,— । ୯୬୩

ଦେଲ ଅଭିଶାପ ସିନା ତୁମେ ଅବିଚାରେ,
ରାଜାଙ୍କର ଦୋଷ ନାହିଁ କୌଣସି ପ୍ରକାରେ ।”
ବିସ୍ମିତ ହୋଇଲେ ବିପ୍ରେ ଶୁଣି ନଭ ବାଣୀ,
ଭୋଜନ ଶାଳାକୁ ବେଗେ ଗଲେ ରାଜା ଜାଣି । ୯୭୪

ନ ଦେଖି ସେ ଉହିଁ ଖାଦ୍ୟ ସାମଗ୍ରୀ ସୁଆର,
ଫେରିଲେ ନୃପତି, ମନେ ସନ୍ତାପ ଅପାର ।
ଶୁଣାଇ ସକଳ କଥା ବିପ୍ରଙ୍କୁ ମତିରେ,
ମଭୟେ ବିକଳେ ରାଜା ଲୋଟିଲେ ଭୂତଳେ । ୯୭୫

“ଏଥିରେ ଯଦି ବା ତୁମ କିଛି ଦୋଷ ନାହିଁ,
ଭବିତବ୍ୟତା ତ କେବେ ନ ମେଣ୍ଟଇ କାହିଁ ।
ବଡ଼ ଭୟାନକ ବ୍ରହ୍ମଶାପ ହେ ରାଜନ,
ଅନ୍ୟଥା ନୁହଇ ଯେତେ କଲେ ବି ଯତନ ।” ୯୭୬

ଏହା କହି ଗଲେ ଚଳି ଯେତେକ ବ୍ରାହ୍ମଣ,
ପାଇଗଲେ ଏ ସମ୍ବାଦ ସବୁ ପୁରଜନ ।
ନିନ୍ଦନ୍ତି ଦଇବେ, ଚିନ୍ତା କରି ଦୁଃଖ ମନେ,
ହଂସ ଗଢ଼ୁ ଗଢ଼ୁ କାକ କଲି କି କାରଣେ । ୯୭୭

ଦୈତ୍ୟ ପହଞ୍ଚାଇ ପୁରୋହିତେ ନିଜ ଘରେ,
ନୃପ-ଚାପସଙ୍କୁ ଦେଲି ଖବର ଶେଷରେ ।
ଏ ଖଳ ନାନାଦି ସ୍ଥାନେ ପତ୍ର ପଠିଆଇ
ସେନା ସାଜ ଶତ୍ରୁ-ନୃପେ ଆଣିଲି ଡକାଇ । ୯୭୮

ନିଷାଣ ବଜାଇ କଲେ ଘେରାଉ ନଗର,
ନାନା ରୂପେ ନିତି ନିତି ହେଲି ରଣ ଘୋର ।
ଯୁଦ୍ଧ କଲେ ବୀରଗଣେ ନାନା କଉଶଳେ,
ସବଂଶ୍ଚ ନୃପତି ଲୋଟିଗଲେ ମହୀ ପରେ । ୯୭୯

କେହି ନ ବଞ୍ଚିଲେ ଆଉ ସତ୍ୟକେତୁ କୁଳେ,
ଅସତ୍ୟ ହେବ କି ବିପ୍ର ଶାପ କେତେବେଳେ ।

ଶତ୍ରୁ ଜିଣି ନୃପେ କଲେ ନଗର ସ୍ଥାପନ,
ଜୈଉଠିଲେ ଲଭି ଯଶ ବିଜୟ କେତନ । ୯୬୦

ବିଧାତା ବିମୁଖ ଯାର ଶୁଣ ଭରଦ୍ଵାଜ,
ଧୂଳି ହୁଏ ମେରୁ ସମ ପିତା ଯମରାଜ ।
ସାମାନ୍ୟ ଦଉଡ଼ି ହୁଏ ଭୁଜଙ୍ଗ ପରାଏ,
ସବୁ କାଳ ସମ ସିନା ତାକୁ ଲାଗୁଥାଏ । ୯୬୧

ସେ ରାଜା ସପରିବାରେ ଶୁଣ ମୁନିବର,
ଯଥାକାଳେ ଜନମିଲା ହୋଇ ନିଶାଚର ।
ଦଶ ଶିର ତାର ପୁଣି ବିଂଶ ଗୋଟି କର,
ରାବଣ ତା' ନାମ ସେହ୍ନ ପ୍ରଚଣ୍ଡ ପାମର । ୯୬୨

ଅରିମର୍ଦ୍ଦନ ଯା' ନାମ ନୃପ ସାନ ଭାଇ,
ମହାବଳୀ କୁମ୍ଭକର୍ଣ୍ଣ ହୋଇଲା ସେ ଧାଇ ।
ଧର୍ମରୁଚି ନାମେ ଥିଲା ଯେଉଁ ମନ୍ତ୍ରୀ ତାର,
ବିମାତା ଅନୁଜ ସେହ୍ନ ହୋଇଲେ ତାହାର । ୯୬୩

ନାମ ବିଭୀଷଣ, ଯିଏ ଜଗତେ ବିଦିତ,
ଅତିଶୟ ବିଷ୍ଣୁଭକ୍ତ ବିଜ୍ଞାନୀ ପଣ୍ଡିତ ।
ରାଜାଙ୍କର ଯେତେ ପୁତ୍ର ସେବକ ସମସ୍ତେ,
ଦୈତ୍ୟକୁଳେ ଜନ୍ମ ହେଲେ ସକଳେ ଜଗତେ । ୯୬୪

ନାନାବିଧ ଜାତିରେ ଖଳ କାମରୂପ ଧାରୀ,
କୁଟିଳ ବିବେକହୀନ ଭୟଙ୍କର ଭାରି ।
ନୃଶଂସ ନିର୍ଦ୍ଦୟ ଜ୍ଞାନହୀନ ପରତାପୀ,
କେ ବର୍ଣ୍ଣି ପାରିବ, ସର୍ବେ ଜଗତ ସନ୍ତାପୀ । ୯୬୫

ଯଦିବା ପୁଲସ୍ତ୍ୟ ଋଷି ପୂତ ଅନୁପମ—
କୁଳେ ଯଥାକାଳେ ସର୍ବେ ହୋଇଲେ ଜନମ,
ତଥାପି ସେ ହୋଇ ବିପ୍ର ଶାପ ବଶୀଭୂତ,
ପାଲଟିଲେ ନିଶାଚର ଘୋର ପାପରୂପ । ୯୬୬

ଅନେକ ପ୍ରକାରେ ତପ କଲେ ତିନ ଭାଇ,
ଉଗ୍ର ସୁକଠିନ ତା'ର ବର୍ଣ୍ଣନା ଯେ ନାହିଁ ।
ବିଧାତା ମିଳିଲେ ପାଶେ ଦେଖି ତପ ଘୋର,
କହିଲେ ପ୍ରସନ୍ନ ମୁହିଁ, ମାଗ ଏବେ ବର । ୯୭୭

ବିନୟେ ଚରଣ ଧରି କହିଲା ରାବଣ,
ମୋର ନିବେଦନ ଶୁଣ ଜଗତ କାରଣ ।
ମରଣ ନ ହେଉ ମୋର କାହାରି ହାତରେ,
ଛାଡ଼ି ପ୍ରଭୁ ବେନି ଜାତି, ମଣିଷ ବାନରେ । ୯୭୮

"ଏହା ହେଉ"—ଘୋର ତପ ଆଚରିଲ ଯେଣୁ,
ଆମ୍ଭେ ବ୍ରହ୍ମା ଏହି ବର ଦେଉଅଛୁ ତେଣୁ ।
ପୁଣି ପ୍ରଭୁ କୁମ୍ଭକର୍ଣ୍ଣ ପାଶେ ପହଞ୍ଚିଲେ,
ତାକୁ ଦେଖି ମନେ ମନେ ବିସ୍ମିତ ହୋଇଲେ । ୯୭୯

ଏ ଖଳ କରିବ ଯେବେ ପ୍ରତ୍ୟହ ଆହାର,
ତେବେ ତ ଉଜୁଡ଼ି ଯିବ ଏ ସାରା ସଂସାର ।
ବାଣୀଙ୍କୁ ପଠାଇ ତା'ର ଭୁଲାଇଲେ ମନ,
ସେ ବର ମାଗିଲା ହେଉ ଛ'ମାସ ଶୟନ । ୯୮୦

ବିଭୀଷଣ ପାଶେ ଯାଇ କହିଲେ ରେ ସୁତ,
ମାଗ ବର ଯହିଁ ତୋର ଆନନ୍ଦ ବହୁତ ।
"ହରି ପାଦ-ପଦ୍ମେ ରହୁ ନିର୍ମଳ ଭକତି,
ଏ ବର ମାଗିଲା ବିଭୀଷଣ ଉତ୍ତମତି । ୯୮୧

ତାଙ୍କୁ ବର ଦେଇ ବ୍ରହ୍ମା କରିଲେ ପ୍ରସ୍ଥାନ,
ହରଷେ ଫେରିଲେ ତିନ ଭାଇ ନିଜ ଧାମ ।
ମୟସୁତା ମନ୍ଦୋଦରୀ ରମଣୀ ଲଲାମ,
ଅନୁପମ ରୂପ ଶୋଭା ଶିରୀ ଗୁଣଗ୍ରାମ । ୯୮୨

ମୟ ସମର୍ପିଲା ଆଣି ତାହାକୁ ରାବଣେ,
ସେ ହେବ ରାକ୍ଷସକୁଳ ରାଜା ଜାଣି ମନେ ।

ରାବଣ ହରଷ ହେଲା ଲଭି ସେ ସୁନ୍ଦରୀ,
ବେନି ଭାଇଙ୍କୁ ସେ ପୁଣି ଦେଲା ବିଭାକରି । ୯୮୩

ସିନ୍ଧୁ ମଧ୍ୟେ ଥିଲା ଏକ ତ୍ରିକୂଟ ଭୂଧର,
ବିଧାତା ନିର୍ମିତ ସେହି ଦୁର୍ଗମ ଦୁସ୍ତର ।
ତାକୁ ସଜାଡ଼ିଲା ପୁଣି ସେ ମୟ ଦଇତ,
ବହୁ ମଣିମୟ ପୁର କନକେ ଖଚିତ । ୯୮୪

ଭୋଗବତୀ ଯେସନେ ଅହିକୁଳଙ୍କ ନିବାସ,
ଯେସନେ ଅମରାବତୀ ଶଚୀପତି ବାସ ।
ତାଆଠୁ ଅଧିକ ରମ୍ୟ ସୁଦୃଢ଼ ଅପାର,
ଜଗତ ବିଖ୍ୟାତ ନାମ ଲଙ୍କା ଅଟେ ତା'ର । ୯୮୫

ଚଉପାଶେ ମହୋଦଧି ସୁଗଭୀର ଖାଇ,
ସବୁ କାଳ ପାଇଁ ତାକୁ ଘେରି ରହିଥାଇ ।
କନକ ପ୍ରାଚୀର ପୁଣି ମଣି ବିଖଚିତ,
ସୁଦୃଢ଼ ସୁରମ୍ୟ—ହୋଇ ନ ପାରେ ବର୍ଣ୍ଣିତ । ୯୮୬

ବିଧାତାର ରଚନାରେ ଯେଉଁ କଳ୍ପେ ଯିଏ,
ହୁଏ ଦୈତ୍ୟପତି ଦୈତ୍ୟ କୁଳେ, ମାତ୍ର ସିଏ ।
ହୋଇ ଶୂର ବଳଶାଳୀ ପ୍ରତାପୀ ପ୍ରବଳ,
ସସୈନ୍ୟେ ଏ ପୁରେ ବାସ କରଇ କେବଳ । ୯୮୭

ପୂର୍ବେ ତହିଁ ଥିଲେ ବହୁ ବୀର ସୈନ୍ୟଗଣ,
ସମରେ ଦେବତା ତାଙ୍କୁ କରିଲେ ନିଧନ ।
ରହିଥିଲେ ଏବେ ତହିଁ ଇନ୍ଦ୍ରଙ୍କ ଆଜ୍ଞାରେ,
ଯକ୍ଷପତିଙ୍କର କୋଟି ରକ୍ଷକ ସେଠାରେ । ୯୮୮

ପ୍ରତାପୀ ରାବଣ କାହ୍ନୁଁ ପାଇ ଏ ଖବର,
ସେନା ସାଜି ଅବରୋଧ କଲା ସେ ନଗର ।
ଦେଖି ଭୟଙ୍କର ଯୋଦ୍ଧା ବିଶାଳ ତା' ଦଳ
ପ୍ରାଣ ଘେନି ପଳାଇଲେ ଯକ୍ଷେ ଗୁଢ଼ ସ୍ଥଳ । ୯୮୯

ବୁଲି ବୁଲି ଦଶାନନ ଦେଖି ସେ ନଗରେ,
ଚିନ୍ତା ଶୂନ୍ୟ ହୋଇ ସୁଖ ଲଭିଲା ଅନ୍ତରେ ।
ଅଗମ୍ୟ ନଗର ପୁଣି ରମଣୀୟ ଜାଣି,
ରାବଣ ସେ ପୁରୀ କଲା ନିଜ ରାଜଧାନୀ । ୯୯୦

ଯୋଗ୍ୟତାନୁସାରେ କରି ଭବନ ବଣ୍ଟନ,
ଦଶାନନ ସବୁ ଦୈତ୍ୟେ କଲା ସୁପ୍ରସନ୍ନ ।
ଥରେ କୁବେରଙ୍କ ପରେ କରି ଆକ୍ରମଣ,
ପୁଷ୍ପକ ବିମାନ ଜିଣି ଆଣିଲା ରାବଣ । ୯୯୧

ପୁଣି କଉତୁକେ ଥରେ ଦଶାନନ ଯାଇ,
ମୂଳରୁ କୈଳାସ ଗିରି ଆଣିଲା ଉଠାଇ ।
ତଉଲି ନିଜର ବାହୁ ବଳ କଉଶଳ,
ଲଭିଲା ପରାଣେ ସୁଖ ଶାନ୍ତି ଅବିରଳ । ୯୯୨

ସୁଖ ସୁତ ବିତ୍ତ ସେନା ଦଳ ସହାୟକ,
ଜୟ ବଳ ବୁଦ୍ଧି ଶକ୍ତି ବଡ଼ିମା ଯେତେକ ।
ଦିନୁଁ ଦିନ ପାଏ ବୃଦ୍ଧି ଦଶାନନ ମନେ,
ପ୍ରତିଲାଭ ପରେ ଲୋଭ ବଢ଼ଇ ଯେସନେ । ୯୯୩

କୁମ୍ଭକର୍ଣ୍ଣ ପରି ଭାଇ ଅତି ବଳବାନ,
ବିଶ୍ୱେ ପ୍ରତିଯୋଦ୍ଧା ଜନ୍ମି ନାହିଁ ଯା' ସମାନ ।
ପିଇ ମଦ ଛଅ ମାସ ଶୁଏ ନିଧକରେ,
ଉଠିଲେ ସେ ତିନିପୁର ଆତଙ୍କରେ ଥରେ । ୯୯୪

ପ୍ରତିଦିନ କରୁଥାନ୍ତା ଯଦି ସେ ଆହାର,
ଚଉପଟ ହୋଇଯାନ୍ତା ଅଖିଳ ସଂସାର ।
ଜାହ୍ନ ହେବ ନାହିଁ ତା'ର ଧୀରତା ସମରେ,
ତା' ସମ ଅମିତ ବୀର ଥିଲେ ଲଙ୍କାଗଡ଼େ । ୯୯୫

ମେଘନାଦ ନାମେ ଜ୍ୟେଷ୍ଠ ରାବଣର ସୁତ,
ବୀର ମଧ୍ୟେ ଅଗ୍ରଗଣ୍ୟ ବିକ୍ରମ ଅଦ୍ଭୁତ ।

ରଣେ ସମ୍ମୁଖୀନ ତା'ର ନ ହୁଅନ୍ତି କେହି,
ଭୟେ ସ୍ୱର୍ଗ ତେଜି ସୁରେ ଯାଆନ୍ତି ପଳେଇ । ୯୯୬

ପୁଣି ବଜ୍ରଦନ୍ତ ଧୂମକେତୁ ଅକମ୍ପନ,
କୁମୁଖ ଓ ଅତିକାୟ ଆଦି ଯୋଦ୍ଧାଗଣ ।
ଜଣେ ଜଣେ ଜୟ କରି ପାରନ୍ତି ଜଗତ,
ଏକୁ ଏକେ ବଳ ପୁରେ ବୀର ଯେ ଏମନ୍ତ । ୯୯୭

ସର୍ବେ କାମରୂପୀ ମାୟା ଜାଣନ୍ତି ଅନେକ,
ସ୍ୱପ୍ନେ ଯା'ର ନାହିଁ ଦୟା ଧର୍ମ ବା ବିବେକ ।
ଦଶମୁଖ ସଭାସ୍ଥଳେ ବସି ଏକବାର,
ଦେଖିଲ୍ ଅସଂଖ୍ୟ ତା'ର ଜ୍ଞାତି ପରିବାର । ୯୯୮

ପୁତ୍ର ସବୁ ନିଜ ଜନ ପରିଜନ ନାତି,
କଳନା କେ କରିପାରେ ନିଶାଚର ଜାତି ।
ସେ ସହଜେ ଅଭିମାନୀ, ଗୃହିଁ ସେନାଗଣେ,
କହିଲ୍ ସମ୍ବୋଧି ମଦ ଗର୍ବିତ ବଚନେ । ୯୯୯

ନିଶାଚର କୁଳ ସବୁ ଶୁଣ ମୋ ବଚନ,
ବଇରି ଆମ୍ଭର ଜାଣ ଯେତେ ଦେବଗଣ ।
ସେମାନେ କରନ୍ତି ନାହିଁ ସମ୍ମୁଖ ଲଢ଼େଇ,
ବଳଶାଳୀ ଶତ୍ରୁ ଦେଖି ଯାଆନ୍ତି ପଳେଇ । ୧୦୦୦

ଗୋଟିଏ ଉପାୟେ ଜାଣ ତାହାଙ୍କ ମରଣ,
କହୁଛି ବୁଝାଇ ଏବେ କର ତା' ଶ୍ରବଣ ।
ବ୍ରାହ୍ମଣ ଭୋଜନ ହୋମ ଯଜ୍ଞ ଶ୍ରାଦ୍ଧାଦିରେ,
ବିଘ୍ନ ଜାତ କର ଯାଇ ସକଳେ ଅଚିରେ । ୧୦୦୧

କ୍ଷୁଧାକ୍ଷୀଣ ବଳହୀନ ହୋଇ ଦେବଗଣ,
ସହଜେ ମୋ ପାଶେ ଆସି ପଶିବେ ଶରଣ ।
ତେବେ ମୁଁ ମାରିବି ଅବା ଛାଡ଼ିବି ପାମରେ,
ମୋର ପରାଧୀନ କରି ସେ ଦେବ ନିକରେ । ୧୦୦୨

ପରେ ପୁଣି ମେଘନାଦେ ଡକାଇ ରାବଣ,
ବଳ ବୈରୀ ଭାବ ହୃଦେ କଲା ଜାଗରଣ ।
"ଯେଉଁ ସୁରଗଣ ରଣେ ଧୀର ବଳବାନ,
ଯାହାଙ୍କର ହୃଦେ ଅଛି ରଣ ଅଭିମାନ । ୧୦୦୩

ତାଙ୍କୁ ରଣେ ଜିଣି ବାନ୍ଧି ଆଣରେ କୁମର,"
ପିତା ଆଜ୍ଞା ଲଭି ସୁତ ଚଳିଲା ସତ୍ୱର ।
ଏସନ ପ୍ରକାରେ ଆଜ୍ଞା ସକଳଙ୍କୁ ଦେଇ,
ନିଜେ ବାହାରିଲା ରଣେ ହସ୍ତେ ଗଦା ନେଇ । ୧୦୦୪

ଦଶାନନ ଗୃଳିବାରେ କମ୍ପିଲା ଧରଣୀ,
ଗର୍ଜନେ ଖସାଏ ଗର୍ଭ ଅମର ରମଣୀ ।
ରାବଣ ଆସୁଛି କ୍ରୋଧେ ଶୁଣି ଦେବଗଣେ,
ସୁମେରୁ ଗୁହାରେ ଭୟେ ଲୁଚିଲେ ତତ୍‌କ୍ଷଣେ । ୧୦୦୫

ଦିଗପାଳମାନଙ୍କର ସୁନ୍ଦର ଭବନ,
ଶୂନ୍ୟ ହୋଇ ଯାଇଅଛି ଦେଖିଲା ରାବଣ ।
ବାରମ୍ବାର ଘୋର ସିଂହନାଦ ସେ କରଇ,
ପୁଣି ଡାକ ମାରି ସୁରେ ଗାଳି ବରଷଇ । ୧୦୦୬

ରଣ-ମଦ-ମତ୍ତ ହୋଇ ଜଗତ ଭ୍ରମିଲା,
ପ୍ରତିଯୋଦ୍ଧା ଖୋଜି ଜଣେ କାହିଁ ନ ପାଇଲା ।
କୁବେର ବରୁଣ ଅଗ୍ନି ରବି ଶଶି ବାୟୁ,
କାଳ ଯମ ଆଦି ଯେତେ ଅଧିକାରୀ ଆଉ । ୧୦୦୭

ଗନ୍ଧର୍ବ କିନ୍ନର ସିଦ୍ଧ ସୁର ନର ନାଗ,
ଆକ୍ରୋଶରେ ସଭିଙ୍କର ଓଗାଳିଲା ମାର୍ଗ ।
ବ୍ରହ୍ମାଙ୍କ ସୃଷ୍ଟିରେ ଥିଲେ ଯେତେ ତନୁଧାରୀ,
ସଭିଏଁ ତ ଅଧୀନସ୍ଥ ହୋଇଲେ ତାହାରି । ୧୦୦୮

ନିଜ ବଶ କଲା ବିଶ୍ୱ ନିଜ ଭୁଜବଳେ,
ସ୍ୱାଧୀନ ରଖିଲା ନାହିଁ କାହାକୁ ଭୂତଳେ ।

ରାଜନ୍ୟମଣ୍ଡଳେଶ୍ୱର ଦୈତ୍ୟ ଦଶାନନ,
ନିଜ ଇଚ୍ଛା ଅନୁସାରେ କରେ ରାଜପଣ । ୧୦୦୯

ଦେବତା ମନୁଷ୍ୟ ଯକ୍ଷ ଗନ୍ଧର୍ବ କନ୍ନରୀ,
ନାଗ କନ୍ୟା ମଧ୍ୟେ ଯେତେ ପରମା ସୁନ୍ଦରୀ ।
ସୁନ୍ଦରୀ ରୂପସୀ ଯେତେ ଥିଲେ ଭୂମଣ୍ଡଳେ,
ସଭିଙ୍କୁ ବିବାହ କଲା ଜିଣି ବାହୁବଳେ । ୧୦୧୦

ଇନ୍ଦ୍ରଜିତ ଆଗେ ଯାହା କହଇ ରାବଣ,
ପୂର୍ବରୁ ସତେ ସେ କରେ ଆଦେଶ ପାଳନ ।
ରାବଣ ଯାହାଙ୍କୁ ଦେଲା ପ୍ରଥମେ ଆଦେଶ,
ସେମାନେ ଯା' କଲେ ଶୁଣ ତାହା ସବିଶେଷ । ୧୦୧୧

ସକଳେ ତ ଘୋର ରୂପ ପୁଣି ମହାପାପୀ,
ନିଶାଚର ଗଣ ସଦା ଦେବ ପରିତାପୀ ।
ମାୟାରେ ବିବିଧ ରୂପ ସେମାନେ ଧରନ୍ତି,
ନାନାବିଧ ଉପଦ୍ରବ ନିତି ଆଚରନ୍ତି । ୧୦୧୨

ଯେସନେ ନିର୍ମୂଳ ହେବ ସଂସାରୁ ଧରମ,
ସେପରି କରନ୍ତି ବେଦ ପ୍ରତିକୂଳ କର୍ମ ।
ଯେ ଦେଶେ ଦେଖନ୍ତି ଧେନୁପଲ ବିପ୍ରଦଳ,
ତହିଁ ଯାଇ ସେ ନଗରେ ଲଗାନ୍ତି ଅନଳ । ୧୦୧୩

ତାଙ୍କ ଭୟେ ଶୁଭ କର୍ମ କାହିଁ ନ ହୁଅଇ,
ଗୁରୁ ବିପ୍ର ଦେବତାଙ୍କୁ କିଏ ବା ପୂଜଇ ?
ନ ରହିଲା ହରି ଭକ୍ତି ତପ ଯଜ୍ଞ ଜ୍ଞାନ,
ସ୍ୱପ୍ନେ ନ ଶୁଣିଲେ କେହି ନିଗମ ପୁରାଣ । ୧୦୧୪

ଜପ ଯୋଗ ତପ ଅବା ବୈରାଗ୍ୟ ସାଧନେ,
ଦେବ ଯାଗ କଥା ଯେବେ ପଡ଼ଇ ଶ୍ରବଣେ ।
ସହସା ସେ ସ୍ଥଳେ ଯାଏ ବିଶ୍ରବା-ନନ୍ଦନ,
ନଷ୍ଟ ଭ୍ରଷ୍ଟ ସବୁ କରି ପକାଏ ତତ୍‌କ୍ଷଣ । ୧୦୧୫

ଭ୍ରଷ୍ଟାଚାର ବ୍ୟାପିଗଲା ଅଖିଳ ସଂସାରେ,
ଧର୍ମକଥା ନ ଶୁଭିଲା କାହୁଁ କେଉଁଠାରେ ।
ନିଗମ ପୁରାଣ ଶାସ୍ତ୍ର କେହି ଯଦି ପଢ଼େ,
ଦଣ୍ଡ ଦେଇ ଦଶାନନ ତାକୁ ଦେଶୁଁ ତଡ଼େ । ୧୦୧୬

ଯେଉଁ ଅତ୍ୟାଚାର କରୁଥିଲେ ନିଶାଚରେ,
ତାହାର ବର୍ଣ୍ଣନା କିଏ କରିବ ମୁଖରେ ।
ହିଂସା ପ୍ରତି ଏତେ ପ୍ରୀତି ଅନୁରାଗ ଯା'ର,
ଅର୍ଜିତ ପାପର ସୀମା ଅବା କାହିଁ ତା'ର । ୧୦୧୭

## ସାତ

ବଢ଼ିଲେ ଜୁଆଷ୍ଟୀ ଖଳ ଚୌର ଡାକୁ ଖଣ୍ଡ,
ପରଦାର ପର ଧନେ ନିପୁଣ ଲମ୍ପଟ ।
ନ ମାନନ୍ତି ଭଲେ ପିତାମାତା ଦେବଗଣେ,
ସେବା ପଣେ ଖଟାଇଲେ ସାଧୁ ସନ୍ଥ ଜନେ । ୧୦୧୮

ଏପରି ଦୁଷ୍କୃତ ଯା'ର ଜାଣିବ ପାଷଣ୍ଡୀ,
ସେମାନେ ତ ନିଶାଚର ରାକ୍ଷସ ଅଟନ୍ତି ।
ଦେଖି ଏମ୍ବପରି ଧର୍ମ ହାନି ଅତିଶୟ,
ଧରଣୀ ଆକୁଳ ହେଲା, ମନେ ଅତି ଭୟ । ୧୦୧୯

ଯେବେ ଗିରି ନଦୀ ସିନ୍ଧୁ ନୁହେ ତା'ର ଭାର,
ଏକ ପରଦ୍ରୋହୀ ଗୁରୁଭାର ଯେ ପ୍ରକାର ।
ଦେଖିଲା ସକଳ ଧର୍ମ ହେଲା ବିପରୀତ,
ଦଶାନନ ଭୟେ କିଛି ନ ପାରେ କହିତ । ୧୦୨୦

ଚିନ୍ତି ମନେ ବସୁମତୀ ଧେନୁ ରୂପ ଧରି,
ସୁର ମୁନି ଯହିଁ ଥିଲେ ଗଲା ତହିଁ ଚଳି ।
କାନ୍ଦି ନିଜ ଦୁଃଖ କଥା ସବୁ ଜଣାଇଲା,
କାହାହାରି ମାନ କିଛି କାର୍ଯ୍ୟ ନ ହୋଇଲା । ୧୦୨୧

ଦେବତା ଗନ୍ଧର୍ବ ମୁନି ମେଳ ହୋଇ ସର୍ବେ,
ଧେନୁ ରୂପୀ ଦୁଃଖାତୁରା ଧରା ନେଇ ସଙ୍ଗେ ।
ବ୍ରହ୍ମଲୋକେ ଗଲେ, ବ୍ରହ୍ମା ଜାଣିଲେ ସକଳ,
ନିଜ ଅସହାୟତାରେ ହୋଇଲେ ବିକଳ ।

କହିଲେ, "ଗୋ ବସୁମତି, ତୁ ଯାହାଙ୍କ ଦାସୀ,
ଆମର ସେ ସହାୟକ ନିତ୍ୟ ଅବିନାଶୀ । ୧୦୨୨

ବିଧାତା କହିଲେ, ଧୈର୍ଯ୍ୟ ଧରଣୀ ଗୋ ଧର,
ନିୟତ ହୃଦୟେ ସ୍ମର ଶ୍ରୀହରି ପୟର ।
ନିଜ ଦାସ ଜନ ପୀଡ଼ା ଜାଣନ୍ତି ଶ୍ରୀପତି,
ବିନାଶିବେ ସେହୁ ତୋର ଏ ମହା ବିପତ୍ତି ।" ୧୦୨୩

ବିଚାର କରିଲେ ବସି ସକଳ ଦେବତା,
କେଉଁଠି ପ୍ରଭୁଙ୍କୁ ପାଇ ଜଣାଇବା ବ୍ୟଥା ।
ବୈକୁଣ୍ଠ ପୁରକୁ କିଏ ଯିବାକୁ କହନ୍ତି,
କେ କହନ୍ତି ସେ ତ କ୍ଷୀର ସମୁଦ୍ରେ ରହନ୍ତି । ୧୦୨୪

ଯା' ହୃଦୟେ ଥାଏ ଭକ୍ତି ପ୍ରୀତି ଯେପରି,
ତା' ଆଗେ ହୁଅନ୍ତି ପ୍ରଭୁ ପ୍ରକଟ ସେପରି ।
ଶୁଣ ପାର୍ବତୀ, ସେହି କାଳେ ମୁହିଁ ଥିଲି,
ବେଳ ପାଇ କଥା ଏକ ସେଠାରେ କହିଲି—
ଶ୍ରୀହରି ବ୍ୟାପକ ସମ ଭାବେ ସବୁ ସ୍ଥାନେ,
ହୁଅନ୍ତି ପ୍ରକଟ ପ୍ରେମ ପରଶେ ମୁଁ ଜାଣେ ।
ଦେଶ କାଳ ବସ୍ତୁ ଦିଗ ଅବା ବିଦିଗରେ,
କହ ସେ ନାହାନ୍ତି କାହିଁ ଏ ତିନିଲୋକରେ ? ୧୦୨୫

ଚରାଚରମୟ ସେହି ବ୍ୟାପ୍ତ ଏ ଜଗତ,
ସବୁଥିରେ ସେ ନିର୍ଲିପ୍ତ ପୁଣି ଅନାସକ୍ତ ।
ପ୍ରେମେ ପ୍ରକାଶିତ ସେହି ଯେସନେ ଅନଳ,
ପ୍ରକାଶିତ ହୁଏ ଯହିଁ ଅରଣୀ ପଥର ।
ହୁଇଁଲା ସଭିଙ୍କ ମନ ମୋର ଏ ବଚନେ,
ସାଧୁ ସାଧୁ ବୋଲି ବ୍ରହ୍ମା କହିଲେ ତତ୍‌କ୍ଷଣେ । ୧୦୨୬

ମୋ କଥାରେ ବ୍ରହ୍ମା ହେଲେ ହର୍ଷ ପୁଲକିତ,
ନୟନୁ ବହିଲା ପ୍ରେମ ଅଶ୍ରୁ ଅବାରିତ ।

ସେ ତ ଧୀରମତି ହୋଇ ଅତି ସାବଧାନ,
ବିନୟରେ ହାତ ଯୋଡ଼ି କଲେ ସ୍ତୁତି ଗାନ । ୧୦୨୭

"ହେ ସୁର ନାୟକ ଭକ୍ତ ସୁଖ ପ୍ରଦାୟକ,
ଜୟ ଜୟ ଭଗବାନ ଶରଣରକ୍ଷକ ।
ଧେନୁ ବିପ୍ର ହିତକାରୀ ଆହେ ଅସୁରାରି,
ସିନ୍ଧୁ ସୁତା ଲକ୍ଷ୍ମୀକାନ୍ତ ଜୟ ହେ ମୁରାରି ।
ଧରଣୀପାଳକ ସୁରପାଳକ ହେ ନାଥ,
ଅଦଭୁତ ଲୀଳା ତବ ରହସ୍ୟ ଅଜ୍ଞାତ ।
ସହଜେ କୃପାଳୁ ଦୀନ ଦୟାଳୁ ଠାକୁର,
କରୁଥାନ୍ତୁ ଆମ ପ୍ରତି କରୁଣା ପ୍ରଚୁର । ୧୧୨୮

ସର୍ବ ହୃଦ ଅନ୍ତର୍ଯାମୀ ଜୟ ଅବିନାଶୀ,
ବ୍ୟାପକ ପରମାନନ୍ଦ ବୈକୁଣ୍ଠ ନିବାସୀ ।
ଅଜ୍ଞେୟ ଇନ୍ଦ୍ରିୟାତୀତ ସୁଚରିତମୟ,
ମାୟା ମୁକ୍ତ ମୁକୁନ୍ଦଙ୍କ ଜୟ ହେଉ ଜୟ ।
ବିରାଗୀ ବିମୋହ; ମୁନିଗଣେ ହୃଦଭରେ;
ଧାୟନ୍ତି ଯାହାଙ୍କୁ ଦିବା ନିଶି ଅନୁରାଗେ ।
ପୁଣି ଯା' ସୁଯଶ ରାଶି କରିଥାନ୍ତି ଗାନ,
ଜୟ ସେ ସଚ୍ଚିଦାନନ୍ଦ ଜୟ ଭଗବାନ । ୧୦୨୯

ଯେ ନିଜେ ଏକାକୀ ବିନା ସାଥି ସହାୟକେ,
ତ୍ରିବିଧେ ରଚିଲେ ବିଶ୍ୱ ପଲକ ମାତ୍ରକେ ।
ସେ ପାପନାଶନ ଚିନ୍ତା କରନ୍ତୁ ଆମରି,
ଆମେ ତ ନଁ ଜାଣୁ ପୂଜା ଭକତି କପଟି ।
ସେ ଭୟଭଞ୍ଜନ ମୁନି-ମାନସ-ରଞ୍ଜନ,
ସେ ଭବ-ଯାତନା-ଚିନ୍ତା-ବିପତ୍ତି-ଗଞ୍ଜନ ।
ତେଜି ଚତୁରତା ପଣ ଆମେ ଦେବଗଣ,
ମନ କର୍ମ ବାକ୍ୟେ ଗଲୁ ତାଙ୍କର ଶରଣ । ୧୦୩୦

ବାଣୀ ବେଦ ଶେଷ ଦେବ ଋଷି ଅପ୍ରମିତ,
ଜାଣିପାରି ନ ଅଛନ୍ତି ଯାହାଙ୍କୁ କଥିତ ।
ଯାର ଦୀନ-ଜନ ପ୍ରିୟ ବୋଲି କହେ ବେଦ,
ଆମକୁ କରନ୍ତୁ ଦୟା ସେହି ଦେବଦେବ ।
ଭବ-ସିନ୍ଧୁ ମନ୍ଥିବାକୁ ହେ ମନ୍ଦର ଗିରି,
ସବୁ ଭାବେ ମନୋହର ଯୁକ୍ତ ଗୁଣ ଶିରି ।
ତବ ପାଦ-ପଦ୍ମେ ମୁନି ସିଦ୍ଧ ସୁରଗଣ,
ସଭୟେ ପ୍ରଣତ କରୁଛନ୍ତି ନିବେଦନ ।" ୧୦୩୧

ଧରଣୀ ଭୟାର୍ତ୍ତ ଭୟଭୀତ ଦେବଗଣ,
ଜାଣି, ତାଙ୍କଠାରୁ ଶୁଣି ଅମୀୟ ବଚନ ।
ଶୋକ ବିମୋଚନକାରୀ ସଂଶୟନାଶିନୀ,
ହୋଇଲା ଆକାଶବାଣୀ ଆଶା ପ୍ରଦାୟିନୀ । ୧୦୩୨

ସିଦ୍ଧ ମୁନି ସୁର ଇନ୍ଦ୍ର ଡର ନାହିଁ ତୁମେ,
ତୁମ ପାଇଁ ନର ରୂପ ହେବ ମର୍ତ୍ତ୍ୟ ଭୂମେ ।
ମୋ କଳା ସହିତେ ଧରି ନର କଳେବର,
ଅବତରିବି ମୁଁ ସୂର୍ଯ୍ୟ ବଂଶେ ଏଇଥର । ୧୦୩୩

କଶ୍ୟପ ଅଦିତି କରିଥିଲେ ତପ ଘୋର,
ସେମାନଙ୍କୁ ଆଗୁଁ ମୁହିଁ ଦେଇଥିଲି ବର ।
ଦୁହେଁ ଦଶରଥ ଆଉ କୌଶଲ୍ୟା ରୂପରେ,
ରାଜା ରାଜରାଣୀ ଜନ୍ମି ଅଛନ୍ତି କୋଶଳେ । ୧୦୩୪

ଅବତରିବି ମୁଁ ସେହି ରଘୁକୁଳେ ଯାଇ,
ସେ କୁଳ ତିଳକ ହେବୁ ଆମେ ଚାରି ଭାଇ ।
ନାରଦଙ୍କ ବଚନକୁ କରି ପ୍ରମାଣିତ,
ଆଦିଶକ୍ତି ସହ ଅବତରିବି ନିଶ୍ଚିତ । ୧୦୩୫

ଧରଣୀର ସବୁ ଭାର କରିବି ହରଣ,
ନ ଡର ନିର୍ଭୟ ହୁଅ ଆହେ ଦେବଗଣ ।

ଆକାଶ ପଥରୁ ବ୍ରହ୍ମବାଣୀ ଶୁଣି କର୍ଣ୍ଣେ,
ସୁଶୀତଳ ହୃଦେ ଫେରିଗଲେ ଦେବଗଣେ । ୧୦୩୬

ବ୍ରହ୍ମା କେତେ ବୁଝାଇଲେ ଧରଣୀକୁ ଯାଇଁ,
ନିର୍ଭୟ ସେ ହେଲେ ମନେ, ହୃଦେ ଦମ୍ଭ ପାଇ । ୧୦୩୭

"ଧରି କପି କଳେବର ଧରଣୀରେ ଯାଇ,
ଜନ୍ମ ହୁଅ ସର୍ବେ ପ୍ରଭୁ ପଦ ସେବା ପାଇଁ ।"
ଶିଖାଇ ଏସନ କଥା ବ୍ରହ୍ମା ସୁରଗଣେ,
ଚଳିଗଲେ ହର୍ଷଭରେ ଆପଣା ଭୁବନେ । ୧୦୩୮

ତହୁଁ ଦେବତାଏ ଗଲେ ନିଜ ନିଜ ଘରେ,
ଧରା ସହ ଲଭି ସୁଖ ଅଶେଷ ମନରେ ।
ପରାମର୍ଶ ଦେଇଗଲେ ବ୍ରହ୍ମା ଯେଉଁଭଳି,
ପାଳନ କରିଲେ ସର୍ବେ ତୁରିତେ ସେପରି । ୧୦୩୯

ବନଚର ଦେହ ଧରି ଧରଣୀରେ ଯାଇ,
ଜନମିଲେ ଅତୁଳିତ ବଳ ତେଜ ପାଇ ।
ଶସ୍ତ୍ର ତାଙ୍କ ଗିରି ତରୁ ନଖ, ସର୍ବେ ବୀର,
ହରି ଆଗମନ ପ୍ରତୀକ୍ଷାରେ ମତିଧୀର । ୧୦୪୦

ଯହିଁ ତହିଁ ଗିରିବନେ ହୋଇ ଭରପୂର,
ନିଜ ନିଜ ସେନା ସାଜି ହେଉଥିଲେ ଠୁଳ ।
ରୁଚିର ଚରିତ ଏହି ସକଳ କହିଲି,
ଏବେ ଶୁଣ ମଝିରେ ମୁଁ ଯାହା ଛାଡ଼ିଥିଲି । ୧୦୪୧

କୋଶଳେ ସେ କାଳେ ରଘୁକୁଳ ନୃପବର,
ବେଦେ ଖ୍ୟାତ ଦଶରଥ ନାମ ତାହାଙ୍କର ।
ଧର୍ମେ ଧୁରନ୍ଧର ସେ'ତ ଗୁଣବାନ ଜ୍ଞାନୀ,
ଭକ୍ତି ହୃଦେ ଚଳୁଥିଲେ ସେ ଶାରଙ୍ଗପାଣି । ୧୦୪୨

କଉଶଲ୍ୟା ଆଦି ପ୍ରିୟତମା ନାରୀଗଣେ,
ପରମ ପବିତ୍ର ନିଜ ନିଜ ଆଚରଣେ ।

ପତି ଅନୁକୂଳ ମତି ବିନୀତ ହୃଦୟ,
ହରି-ପାଦ-ପଦ୍ମେ ରତି ଥିଲା ଅତିଶୟ । ୧୦୪୩

ନିଜ ମନେ ମନେ ଦିନେ ସେହି ନରପତି,
ପୁତ୍ରହୀନ ବୋଲି ହେଲେ ଅତି ଦୁଃଖମତି ।
ତହୁଁ ସେ ତୁରିତେ ଯାଇ ଗୁରୁଙ୍କ ଭବନେ,
ଅଶେଷ ବିନୟ ହେଲେ ପ୍ରଣମି ଚରଣେ । ୧୦୪୪

ଗୁରୁଙ୍କୁ ସେ ଶୁଣାଇଲେ ନିଜ ସୁଖ ଦୁଃଖ,
ବୁଝାଇ ବଶିଷ୍ଠ ତାଙ୍କୁ କହିଲେ ବହୁତ ।
ଧୈର୍ଯ୍ୟଧର ନୃପ ହେବେ ତବ ପୁତ୍ର ଚାରି,
ତ୍ରିଭୁବନେ ସୁବିଦିତ ଭକ୍ତ-ଭୟହାରୀ । ୧୦୪୫

ବଶିଷ୍ଠ ଡକାଇ ଋଷ୍ୟଶୃଙ୍ଗଙ୍କୁ ବିଧିରେ,
ପୁତ୍ର ଆଶେ ଶୁଭ ଯଜ୍ଞ କର୍ମ କରାଇଲେ ।
ଆହୁତି ଦେବାରୁ ଭକ୍ତିଭରେ ମୁନିବର,
ଚରୁ ଧରି ଆବିର୍ଭୂତ ହେଲେ ବୈଶ୍ୱାନର । ୧୦୪୬

କହିଲେ ସେ ବଶିଷ୍ଠଙ୍କ ଯାହା ମନୋରଥ,
ସିଦ୍ଧ ହୋଇଅଛି ସବୁ ଆହେ ଦଶରଥ ।
ଏହି ଚରୁ ନେଇ ବାଣ୍ଟିଦିଅ ଏବେ ଯାଇ,
ମହିଷୀମାନଙ୍କ ମଧ୍ୟେ ଯେଝା ପ୍ରାପ୍ୟ ଗୁହିଁ । ୧୦୪୭

ସର୍ବ ପାଶେ ଦେବ ଜନେ କହି ସବୁ କଥା,
ଅନ୍ତର୍ଦ୍ଧାନ ହୋଇଗଲେ ଅନଳ ଦେବତା ।
ନିମଜ୍ଜିତ ହେଲେ ନୃପ ଅଶେଷ ଆନନ୍ଦେ,
ଆନନ୍ଦର ସୀମା ଆଉ ନ ରହିଲା ହୃଦେ । ୧୦୪୮

ଡାକିବାରୁ ନରପତି ପାଟରାଣୀ ଗଣେ,
କୌଶଲ୍ୟାଦି ତିନି ରାଣୀ ମିଳିଲେ ତତ୍‌କ୍ଷଣେ ।
ଚରୁଁ ଅଧ ଭାଗ ନେଇ କୌଶଲ୍ୟାଙ୍କୁ ଦେଲେ,
ବାକି ଅଧ ଭାଗକୁ ସେ ଦୁଇ ଭାଗ କଲେ । ୧୦୪୯

ତହିଁରୁ ଗୋଟିଏ ଭାଗ କୈକେୟୀଙ୍କି ଦେଇ,
ବଳାଲା ଚରୁକୁ ଦୁଇଭାଗ କଲେ ନେଇ ।
କୌଶଲ୍ୟା କୈକେୟୀଙ୍କର ହାତ ନୃପ ଧରି,
ସୁମିତ୍ରାଙ୍କୁ ଦେଲେ ତାହା ମନ ଖୁସି କରି । ୧୦୫୦

ଯଥାକାଳେ ରାଣୀମାନେ ହେଲେ ଗର୍ଭବତୀ,
ହୃଦୟେ ହରଷ ଜାତ ସୁଖ ହେଲା ଅତି ।
ଯେ ଦିନୁ ପ୍ରବେଶ କଲେ ଗରଭେ ଶ୍ରୀହରି,
ସବୁ ଲୋକ ଗଲା ସୁଖ ସମ୍ପତ୍ତିରେ ଭରି । ୧୦୫୧

ଶୋଭା ଶୀଳ ଆଉ ତେଜ ଆକର ଏ ତିନି,
ଶୋଭନ୍ତି ନଅରେ ରାଣୀ ମନ-ବିନୋଦିନୀ ।
ସୁଖରେ ଏପରି କିଛି ଦିନ ହେଲା ଗତ,
ପ୍ରଭୁଙ୍କ ପ୍ରକଟ କାଳ ହୋଇଲା ଆଗତ । ୧୦୫୨

ଯୋଗ ଲଗ୍ନ ଗ୍ରହ ବାର ତିଥି ଓ ନକ୍ଷତ୍ର,
ହେଲା ଅନୁକୂଳ ଆଉ ପରମ ପବିତ୍ର ।
ହରଷେ ପୂରିତ ହେଲେ ସ୍ଥାବର ଜଙ୍ଗମ,
ସୁଖର କାରଣ ହେଲା ଶ୍ରୀରାମ ଜନମ । ୧୦୫୩

ଶୁକଳ ନବମୀ ତିଥି ପୂତ ମଧୁମାସ,
ହରିପ୍ରିୟ ଅଭିଜିତ ନକ୍ଷତ୍ର ପ୍ରକାଶ ।
ନାହିଁ ବେଶୀ ଶୀତ ଖରା ଦି'ପହର ବେଳା,
ପବିତ୍ର ସମୟ ଲୋକେ ଶାନ୍ତି ଦେଉଥିଲା । ୧୦୫୪

ଶୀତଳ ସୁଗନ୍ଧ ମନ୍ଦ ବହଇ ପବନ,
ଦେବତାଏ ସାଧୁ ସନ୍ଥେ ହରଷିତ ମନ ।
ବନ କୁସୁମିତ ଗିରି ମଣି ଝଲସଇ,
ସକଳ ସରିତେ ସତେ ଅମୃତ ଝରଇ । ୧୦୫୫

ବିରଞ୍ଚି ସେ ବେଳା ଜାଣି ଦେବଙ୍କ ସହିତ,
ସଜାଇ ବିମାନମାନ ଚଳିଲେ ତ୍ୱରିତ ।

ଦେବଗଣେ ପୂରିଗଲେ ନିର୍ମଳ ଆକାଶ,
ଗନ୍ଧର୍ବେ ଗାଇଲେ ହରିଗୁଣ ସଉଲ୍ଲାସ । ୧୦୫୬

ଅଞ୍ଜୁଳି ମାନ୍ଦାଇ ପୁଷ୍ପ କଲେ ବରଷଣ,
ଗଗନେ ଦୁନ୍ଦୁଭି ବାଜ ଉଠେ ଘନ ଘନ ।
ମୁନି ନାଗ ଦେବେ କରି ସ୍ତୁତି ବାରବାର,
ନାନା ମତେ ଦେଲେ ନିଜ ସେବା ଉପହାର । ୧୦୫୭

ସ୍ତୁତି ଶେଷ କରି ସୁରେ ଗଲେ ନିଜ ଲୋକେ,
ଅଖିଳ ଜଗତ ସାଇଁ ପ୍ରକଟ ଭୂଲୋକେ ।
ଅଖିଳ ଲୋକର ସେ ତ ଆନନ୍ଦ ଭଣ୍ଡାର,
ଜଗତ କରତା ପୁଣି ଜଗତ ଆଧାର । ୧୦୫୮

ପରମ କୃପାଳୁ ଦୀନ ଦୟାଳୁ ଶ୍ରୀରାମ,
କଉଶଲ୍ୟା ହିତକାରୀ ନେଲେ ଅବତାର ।
ମୁନିଜନ ମନୋହାରୀ ଅଦଭୁତ ରୂପ,
ନିରେଖି ଜନନୀ ହେଲେ ଆନନ୍ଦ ବହୁତ ।
ରମଣୀୟ ନେତ୍ର ଘନଶ୍ୟାମ କଳେବର,
ଚାରୁ ଚାରି ଭୁଜେ ନିଜ ଆୟୁଧ ତାଙ୍କର ।
ଯା' ଭୂଷଣ ବନମାଳ ନୟନ ବିଶାଳ,
ଖରାରି ପ୍ରକଟ ହେଲେ ଶୋଭା-ପାରାବାର । ୧୦୫୯

କହିଲେ ଜନନୀ ଧୀରେ ଯୋଡ଼ି ବେନି କର,
"ହେ ଅନନ୍ତ କେହ୍ନେ ସ୍ତୁତି କରିବି ତୁମର ?
ଗାଆନ୍ତି ପୁରାଣ ବେଦ ଉକତି ସହିତ,
ତୁମେ କର୍ମଫଳ ହୀନ ମାୟା ଗୁଣାତୀତ ।
ଶ୍ରୁତି ସନ୍ଥେ ଯା' ମହିମା କରିଥାନ୍ତି ଗାନ,
କହି ସୁଖ କୃପା ସିନ୍ଧୁ, ସର୍ବ ଗୁଣଧାମ ।
ସେହି ଜନ ଅନୁରାଗୀ ପ୍ରଭୁ ଲକ୍ଷ୍ମୀସାଇଁ,
ଆବିର୍ଭୂତ ଏବେ ମର୍ତ୍ତ୍ୟେ ମୋ କଲ୍ୟାଣ ପାଇଁ । ୧୦୬୦

ବେଦ କହେ ତବ ପ୍ରତି ରୋମେ ମାୟାକୃତ,
ବିକଶିତ ହୋଇଅଛି ବ୍ରହ୍ମାଣ୍ଡ ବହୁତ ।
ତୁମେ ସେହି ପ୍ରଭୁ ମୋର ଗର୍ଭେ ଥିଲ ରହି,
ବିବେକୀ ଏ କଥା ଶନ୍ତ ଅଥିର ହୁଅଇ ।
ମାତାଙ୍କର ଜ୍ଞାନୋଦୟେ ହସିଲେ ଶ୍ରୀହରି,
'ସେ ତ ଅଭିଳାଷୀ ବହୁ ଲୀଳା ଯିବେ କରି ।
ବୁଝାଇ ମାତାଙ୍କୁ କହି ପୂର୍ବଜନ୍ମ କଥା,
କଲେ ସେ ମିଳିବ ଯେହ୍ନେ ବାତ୍ସଲ୍ୟ ମମତା । ୧୦୭୧

ବଦଳିଗଲା ସେ ମତି କହିଲେ ଜନନୀ,
"ବାପରେ ଏ ରୂପ ତୋର ତେଜ ଏଇକ୍ଷଣି ।
ମୋର ଅତିଶୟ ପ୍ରିୟ ବାଳ ଲୀଳା କର,
ମୋ' ପାଇଁ ତା' ହେବ ଅନୁପମ ସୁଖକର ।"
ମାତାଙ୍କ ବଚନ ଶୁଣି ସୁରଙ୍କ ରଜନ,
ପାଲଟି ବାଳକ ରୂପ କରିଲେ ରୋଦନ ।
ଯେ ଗାଇବ ଏହି କଥା ମିଳେ ହରିପଦ,
ଦୂରେ ଯିବ ଭବ କୂପେ ପଡ଼ିବା ବିପଦ । ୧୦୭୨

ବିପ୍ର ଗାଭୀ ସୁର ସନ୍ଥ ହିତ ଲାଗି ହରି,
ମାନବର କଳେବରେ ମର୍ତ୍ତ୍ୟେ ଅବତରି ।
ଇନ୍ଦ୍ରିୟ ସକଳ ମାୟା ଗୁଣ ଊର୍ଦ୍ଧ୍ୱେ ରହି,
ସ୍ୱଇଚ୍ଛାରେ ଜନ୍ମ ନେଲେ ଦିବ୍ୟ ତନୁ ବହି । ୧୦୭୩

ଶୁଣି ଶିଶୁ ରୋଦନର ଅତି ପ୍ରିୟ ବାଣୀ,
ଚଞ୍ଚଳେ ଆସିଲେ ତହିଁ ଅନ୍ୟ ସବୁ ରାଣୀ ।
ହରଷେ ଧାଇଁଲେ ଏଣେ ତେଣେ ଯେତେ ଦାସୀ,
ଆନନ୍ଦେ ମଗନ ସବୁ ନଗର ନିବାସୀ । ୧୦୭୪

ପୁତ୍ର ଜନ୍ମ ହେବା ଶୁଣି ଦଶରଥ କାନେ,
ବ୍ରହ୍ମାନନ୍ଦ ଲଭିଲେ କି ନିରମ୍ବ ପରାଣେ ।

ମନରେ ପରମ ପ୍ରୀତି ପୁଲକ ଶରୀର,
ଗୃହିଁଲେ ଉଠିବା ଲାଗି କରି ମତି ସ୍ଥିର । ୧୦୬୫

ଯା' ନାମ ଶୁଣିଲେ ହୁଏ ମଙ୍ଗଳ ଅଶେଷ,
ସେ ଦେବ ଦେବାଧିରାଜ ମୋ ଗୃହେ ପ୍ରବେଶ ।
ତା' ଭାବ ନୃପତି ମନ ପୂର୍ଣ୍ଣ ମହାନନ୍ଦେ,
ଡାକ ସେ କହିଲେ ବାଜା ବଜାଅ ସାନନ୍ଦେ । ୧୦୬୬

ଗୁରୁ ବଶିଷ୍ଠଙ୍କ ପାଶେ ଚଳିଲା ଡଗର,
ସବିପ୍ର ସେ ଆସିଗଲେ ରଜାଙ୍କ ନଅର ।
ଯାର ରୂପ ଗଣି ଗୁଣ ଶେଷ ନୁହେଁ ଗାଇ,
ସେ ଅନୁପ ବାଳକକୁ ଦେଖିଲେ ସେ ଯାଇ । ୧୦୬୭

ନାନ୍ଦୀମୁଖ ଶ୍ରାଦ୍ଧ ଆଦି ଜାତକର୍ମ ବିଧି,
ସମାପନ କଲେ ନରପତି ଯଥାବିଧି ।
ବ୍ରାହ୍ମଣମାନଙ୍କୁ ଦେଲେ ଦାନ ଅକଳନ,
ଧେନୁ ବସ୍ତ୍ର ସୁନା ମଣି ମାଣିକ୍ୟ ରତନ । ୧୦୬୮

ପତାକା ତୋରଣେ ପୁର ହେଲା ଆଚ୍ଛାଦିତ,
ନଗରର ସାଜସଜ୍ଜା ନୁହଇ କହି ତ ।
ଆକାଶୁଁ କୁସୁମ ବୃଷ୍ଟି ହୁଏ ଘନ ଘନ,
ବ୍ରହ୍ମାନନ୍ଦେ ନିମଗନ ହେଲେ ପୁରଜନ । ୧୦୬୯

ସହଜ ସୁବେଶ ହୋଇ ପୁର ବାଳାଗଣ,
ଦଳ ଦଳ ହୋଇ ମିଳି କରିଲେ ଗମନ ।
କନକ କଳସ ଶୁଭ ଦରବ ଥାଳାରେ,
ସଜାଇ ପ୍ରବେଶ ହେଲେ ସର୍ବେ ରାଜଦ୍ୱାରେ । ୧୦୭୦

ବନ୍ଦାପନା କରି ନୁଛି ଯାଆନ୍ତି ଅନ୍ତରେ,
ବାର ବାର ପଡ଼ୁଥାନ୍ତି ବାଳକ ପୟରେ ।
ମାଗଧ ସାରଥୀ ଭାଟ ସୁଗାୟକେ ଆସି,
ଗାଉଥାନ୍ତି ରଘୁପତି ପୂତ ଗୁଣ ରାଶି । ୧୦୭୧

ନୃପତି ସର୍ବସ୍ୱ ଦାନ କରନ୍ତି ପୁଲକେ,
ଯେ ଯାହା ପାଆଇ ସେହୁ ପାଖରେ ନ ରଖେ ।
କସ୍ତୁରୀ ଚନ୍ଦନ ଆଉ କୁଙ୍କୁମର ଜଳ,
କର୍ଦ୍ଦମାକ୍ତ କରେ ପ୍ରତି ଗଳି କନ୍ଧ ଛଳ । ୧୦୭୨

ସ୍ୱାଗତ ମଙ୍ଗଳ ବାଜା ବାଜେ ପ୍ରତି ଘରେ,
ଶୋଭାମୂଳ ଭଗବାନ ପ୍ରକଟ ନବରେ ।
ଅଯୋଧ୍ୟାର ପୁରବାସୀ ନର ନାରୀଗଣ,
ଯହିଁ ତହିଁ ଦଳ ଦଳ ଆନନ୍ଦେ ମଗନ । ୧୦୭୩

କେକୟୀ-ତନୟା ପୁଣି ସୁମିତ୍ରା ଉଭୟେ,
ପ୍ରସବ କରିଲେ ଅତି ସୁନ୍ଦର ତନୟେ ।
ସେ ସୁଖ ସମ୍ପତ୍ତି ସେହି ସମୟ ସମାଜ,
ବର୍ଣ୍ଣି କି ପାରିବେ ବାଣୀ ଅବା ଅହିରାଜ । ୧୦୭୪

ଅଯୋଧ୍ୟା ନଗରୀ ଶୋଭା ଲାଗୁଥିଲା ମନେ,
ରାତି ସତେ ଆସୁଥିଲା ପ୍ରଭୁଙ୍କ ଦର୍ଶନେ ।
ସୂର୍ଯ୍ୟଙ୍କୁ ନିରେଖି ରାତ୍ରି ଶଙ୍କିତେ ସେ ପଥେ,
କି ବିଚାରି ଅବା ସନ୍ଧ୍ୟା ପାଳଟିଛି ସତେ । ୧୦୭୫

ଅଗୁରୁ ଧୂପର ଧୂଆଁ ସନ୍ଧ୍ୟା ଅନ୍ଧକାର,
ଅବୀର ପ୍ରଦୋଷ ଅରୁଣିମା ପରକାର ।
ମନ୍ଦିରର ମଣିରାଜ ତାରକା ଯେସନେ,
ନଅର କଳସ ବୃନ୍ଦ ଉଦାର ଗଗନେ । ୧୦୭୬

ହୁଅଇ ନଅରେ ବେଦ ଧ୍ୱନି ସୁମଧୁର,
ସତେ ସୁଖ ସମୟର ପକ୍ଷୀ କଳ ସ୍ୱର ।
ଏସନ କୌତୁକ ଦେଖି ତପନ ଭୁଲିଲେ,
ମାସେ କାଳ ଗଲା ବିତି ଜାଣି ନ ପାରିଲେ । ୧୦୭୭

ମାସେ ପରିଯନ୍ତ ହେଲା ଦିବସ କେବଳ,
ଜାଣି ନ ପାରିଲେ କେହି ମରମ ସକଳ ।

ରଥ ସହ ରହିଗଲେ ତହିଁ ସୂର୍ଯ୍ୟଦେବ,
କହ କି ପ୍ରକାରେ ଅବା ଆଜି ରାତ୍ରି ହେବ । ୧୦୭୮

କେହି ନ ଜାଣିଲେ ଏହି ରହସ୍ୟ ସକଳ,
ପ୍ରଭୁ ଗୁଣ ଗାନ କରି ଗଲେ ଦିନକର ।
ଦେଖି ଏ ଉତ୍ସବ ଦେବ ନାଗ ମୁନିଗଣେ,
ନିଜକୁ ପ୍ରଶଂସି ଗଲେ ଆପଣା ଭୁବନେ । ୧୦୭୯

ରାମ ପଦେ ଉମା ତବ ମତି ଦୃଢ଼ ଯେଣୁ,
ମୋର ଏକ ଗୁପ୍ତ କଥା କହୁଅଛି ତେଣୁ ।
ମୁଁ ଆଉ ଭୁଷୁଣ୍ଡି କାକ ବେନି ଥିଲୁ ତହିଁ,
ସାଥୀ ହୋଇ ନର ଦେହେ କେହି ନ ଜାଣଇ । ୧୦୮୦

ପରମ ଆନନ୍ଦ ଅତି ପ୍ରେମ ସୁଖେ ଫୁଲି,
ମସ୍ତ ହୋଇ ବୁଲୁଥିଲୁ ପଥେ ସବୁ ଭୁଲି ।
ଶ୍ରୀରାମ କରୁଣା ଯାହା ଉପରେ ଝରଇ,
ଏ ଶୁଭ ଚରିତ ସେହୁ କେବଳ ଜାଣଇ । ୧୦୮୧

ସେ ସମୟେ ଯେ ଆସିଲା ଯେମନ୍ତ ପ୍ରକାରେ,
ବୋଧ କରି ମନ ନୃପ ସବୁ ଦେଲେ ତାରେ ।
ଗଜ ରଥ ଧେନୁ ହୀରା ହେମ ତୁରଙ୍ଗମ,
ନାନାଦି ପ୍ରକାରେ ଦେଲେ ନୃପତି ଉତ୍ତମ । ୧୦୮୨

ମନ ହରଷରେ ସର୍ବେ ସକଳ ସ୍ଥାନରେ,
ବହୁ ଆଶୀର୍ବାଦ କଲେ ସେ ରାଜକୁମରେ ।
ତୁଳସୀ ଦାସଙ୍କ ସ୍ୱାମୀ ସବୁ ପୁତ୍ରଗଣେ,
ଚିରଞ୍ଜୀବୀ ହୋଇ ରହି ଥାଆନ୍ତୁ ଭୁବନେ । ୧୦୮୩

କେତେକ ଦିବସ ଗତ ହେଲା ଏହିପରି,
ନ ଜାଣିଲେ କେହେ ଦିବାରାତ୍ରି ଗଲା ଗଡ଼ି ।
ଜାଣି ନାମ କରଣର ଶୁଭ ଅବସର,
ଡକାଇଲେ ଭୂପ ଗୁରୁ ଜ୍ଞାନୀ ମୁନିବର । ୧୦୮୪

ବଶିଷ୍ଠଙ୍କୁ ପୂଜି ରାଜା କହିଲେ ଏପରି,
ଯେପରି ବାଞ୍ଛିଛ ନାମ ଦିଅନ୍ତୁ ସେପରି ।
ଉତ୍ତରେ କହିଲେ ମୁନି, "ଶୁଣ ନରୋତ୍ତମ,
ଏହାଙ୍କର ଅଛି ବହୁ ନାମ ଅନୁପମ । ୧୦୮୫

ତଥାପି କହୁଛି ଏକ ମୋର ବୁଦ୍ଧିମତେ,
ଯେ ଆନନ୍ଦ ସିନ୍ଧୁ ସୁଖଧାମ ଏ ଜଗତେ ।
ଯା'ର କଣିକରେ ଖୁସି ତ୍ରିଲୋକ ନିବାସୀ,
'ଶ୍ରୀରାମ' ଅଖିଳ ଶାନ୍ତିଦାତା ସୁଖରାଶି । ୧୦୮୬

ବିଶ୍ୱକୁ କରନ୍ତି ଯେହୁ ଭରଣ ପୋଷଣ,
ସେ 'ଭରତ' ନାମେ ଖ୍ୟାତ ହେବେ ତ୍ରିଭୁବନ ।
ଯା' ନାମ ସ୍ମରଣେ ହୁଏ ବଇରି ବିନାଶ,
ସେ ତ 'ଶତ୍ରୁଘ୍ନ' ନାମ ଜଗତେ ପ୍ରକାଶ ।" ୧୦୮୭

ଯେ ଶୁଭ ଲକ୍ଷଣ ଧାମ, ରାମ ପ୍ରିୟ ଯା'ର,
ନିଖିଳ ଜଗତ ପୁଣି ଯାହାଙ୍କ ଆଧାର ।
ବଶିଷ୍ଠ ରଖିଲେ ତାଙ୍କ ନାମକୁ ଲକ୍ଷ୍ମଣ,
ଉଦାର ମନୋଜ୍ଞ ମଧୁ ମାନସ-ରଞ୍ଜନ । ୧୦୮୮

ହୃଦେ ଚିନ୍ତି ଗୁରୁ ଦେଲେ ଏହି ଚାରି ନାମ,
କହିଲେ, "ରାଜା ଏ ପୁତ୍ରେ ବେଦ ତତ୍ତ୍ୱ ଧାମ ।
ମୁନି ଧନ ଶିବ ପ୍ରାଣ ଭକତ ସର୍ବସ୍ୱ,
ବାଳ ଲୀଳା ରସେ ସୁଖ ଲଭନ୍ତି ଅବଶ୍ୟ । ୧୦୮୯

ବାଲ୍ୟକାଳୁ ଜାଣି ନିଜ ପ୍ରଭୁ ହିତକାରୀ,
ରାମପଦେ ସଉମିତ୍ରୀ ଦେଲେ ପ୍ରୀତି ଢାଳି ।
ଭରତ ଶତ୍ରୁଘ୍ନ ବେନି ଭାଇ ପରସ୍ପର
ପ୍ରୀତିଯୁକ୍ତ ହେଲେ ଯେହ୍ନେ ସ୍ୱାମୀ ଅନୁଚର । ୧୦୯୦

ଶ୍ୟାମଳ ଗଉର ବେନି ଯୋଡ଼ି ମନୋହର,
ନିରେଖି ମାତାଏ ତୃଣ ଛିଣ୍ଡାନ୍ତି ସତ୍ୱର ।

ଏହି ଚାରି ଭାଇ ରୂପ ଶୀଳ ଗୁଣଧାମ,
ତଥାପି ଅଧିକ ସୁଖ-ସାଗର ଶ୍ରୀରାମ । ୧୦୯୧

କୃପା-ଶଶି ଉଦେ ସତେ ରାମ ହୃଦାକାଶେ,
ମନୋହର ହାସେ ତା'ର କିରଣ ପ୍ରକାଶେ ।
କେବେ କୋଳେ ନେଇ କେବେ ଶୁଆଇ ଦୋଳାରେ,
ଗେଲ କରୁଥାନ୍ତି ମାତା ମଧୁର ଭାଷାରେ । ୧୦୯୨

ବ୍ୟାପକ ନିର୍ଗୁଣ ବ୍ରହ୍ମ ଆଦି ନିରଞ୍ଜନ,
ବିନୋଦ ରହିତ ଯିଏ ଭୁଜଗ ଶୟନ ।
ଆଜ ସିଏ କୁତୂହଳେ ପ୍ରେମ ଭକ୍ତି ଭୋଳେ,
ବଶ ହୋଇ ଖେଳୁଛନ୍ତି କୌଶଲ୍ୟାଙ୍କ କୋଳେ । ୧୦୯୩

କୋଟି କାମ ସମ ଶୋଭା ଶ୍ୟାମଳ ଶରୀର,
ଯେହ୍ନେ ନୀଳୋତ୍ପଳ ଅବା ନୀରଦ ଗମ୍ଭୀର ।
ଅରୁଣ-ଚରଣ-ସରସିଜ ନଖ ଜ୍ୟୋତି,
କମଳ-ଦଳେ କି ସତେ ଜଡ଼ିଅଛି ମୋତି । ୧୦୯୪

ଧ୍ୱଜ ବଜ୍ରାଙ୍କୁଶ ରେଖା ପଦ ତଳେ ଶୋହେ,
ନୂପୁରର ଧ୍ୱନି ଶୁଣି ମୁନି-ମନ ମୋହେ ।
କଟିରେ କିଙ୍କିଣୀ ରାଜେ ତ୍ରିବଳୀ ଉଦରେ,
ନାଭି ଗଭୀରତା ଜାଣେ ଯେ ଦେଖିଛି ଥରେ । ୧୦୯୫

ସୁବିଶାଳ ଭୁଜେ ନାନା ଭୂଷଣ ଶୋଭିତ,
ହୃଦୟରେ ବାଘ ନଖ ପରମ ଲଳିତ ।
ବକ୍ଷେ ମଣିହାର ଗୁରୁ ପଦକ ଶୋଭନ,
ଲୋଭ ହୁଏ ଦେଖି ବିପ୍ର ଚରଣ-ଲାଞ୍ଛନ । ୧୦୯୬

କମନୀୟ କମ୍ବୁ କଣ୍ଠ ଚିବୁକ ସୁନ୍ଦର,
ରତି ପତି ଶୋଭା ଲୁଟେ ବଦନ ମଣ୍ଡଳ ।
ଅରୁଣ ଅଧର ଦୁଇ ଦୁଇଟି ଦଶନ,
ନାସିକା ତିଳକ କିଏ କରିବ ବର୍ଣ୍ଣନ । ୧୦୯୭

ରୁଚିର କପୋଳ ଦେଶ ସୁନ୍ଦର ଶ୍ରବଣ,
ଅତି ପ୍ରିୟ ଲାଗେ ମଧୁ ଦନ୍ତୋଷ୍ଠି ବଚନ ।
ଜନମ କାଳରୁ କଳା କୁଞ୍ଚ କୁଞ୍ଚ କେଶେ,
କୁଣ୍ଡାନ୍ତି ନାନାଦ୍ଧ ଭଙ୍ଗେ ମାତା ପ୍ରେମ ବଶେ । ୧୦୯୮

ପୀତ ବର୍ଣ୍ଣ ଝିନ ଜାମା ଦେହରେ ଶୋଭଇ,
ଜାନୁ ହସ୍ତେ ଗୁ ରୁଣ୍ଡିବା ମାନସ ମୋହଇ ।
ବେଦ ଶେଷ ନ ପାରିବେ କରି ସେ ବର୍ଣ୍ଣନ,
ସେ ଜାଣେ ସ୍ୱପ୍ନେ ଯେ ବାରେ କରିଛି ଦର୍ଶନ । ୧୦୯୯

ଯିଏ ସୁଖ ପୁଞ୍ଜ ମୋହ ଊର୍ଦ୍ଧ୍ୱେ ଅବସ୍ଥିତ,
ଯିଏ ଜ୍ଞାନ ବାଣୀ ଆଉ ଇନ୍ଦ୍ରିୟ ଅଗୀତ ।
ଯିଏ ଆଜ ମରତରେ ଅତି ପ୍ରେମ ଭୋଳେ,
କରୁଛନ୍ତି ବାଳଲୀଳା ଦମ୍ପତ୍ତିଙ୍କ କୋଳେ । ୧୧୦୦

ଏସନ ପ୍ରକାରେ ରାମ, ବନ୍ଧୁ, ପିତା ମାତା,
ହୋଇଥାନ୍ତି ସେ କୋଶଳ ବାସୀ ସୁଖ ଦାତା ।
ଶ୍ରୀରାମ ଚରଣେ ଯେହୁ ଲଗାନ୍ତି ପୀରତି,
ଲଭନ୍ତି ଏପରି ଗତି ଜାଣ ପାରବତି । ୧୧୦୧

ଶ୍ରୀରାମ-ବିମୁଖ କରୁ କୋଟିଏ ଯତନ,
କେ ନୁହେ ଛେଦନେ କ୍ଷମ ତା' ଭବ-ବନ୍ଧନ ।
ଚରାଚର ଜୀବେ ବଶ କରି ଯେ ରଖଇ,
ସେହି ମାୟା ପ୍ରଭୁ ପାଶେ ସଭୟେ ରହଇ । ୧୧୦୨

ଭୃକୁଟୀ ବିଳାସେ ପ୍ରଭୁ ନଚାନ୍ତି ତାହାକୁ,
ଏମନ୍ତ ପ୍ରଭୁଙ୍କୁ ତେଜି ଭଜିବା କାହାକୁ ?
ମନ କର୍ମ ବଚନରୁ ତେଜି ଚତୁରତା,
ଭଜିଲେ ଶ୍ରୀ ରଘୁପତି ସେ କରିବେ କୃପା । ୧୧୦୩

ଏସନ ପ୍ରକାରେ ପ୍ରଭୁ ବାଳଲୀଳା କରି,
ପୁର ଜନ ମନେ ସୁଖ ଶାନ୍ତି ଦେଲେ ଭରି ।

କେତେବେଳେ କୋଳେ ପୁଣି କେବେ ବା ଦୋଳାରେ,
ଶୁଆଇ ଝୁଲାଉଥାନ୍ତି ମାତା ଶରଧାରେ । ୧୧୦୪

ପ୍ରେମେ ନିମଗନ ହୋଇ କଉଶଲ୍ୟା ମାଏ,
ନ ଜାଣନ୍ତି ଦିବା ନିଶି କେମନ୍ତେ ବିତିଯାଏ ।
ସୁତ ସ୍ନେହ ବଶେ ମାତା ହୋଇ ପୁଲକିତ,
ସଦା କରୁଥିଲେ ଗାନ ସେ ବାଳ ଚରିତ । ୧୧୦୫

କୌଶଲ୍ୟା ପୁତ୍ରକୁ ଦିନେ ସ୍ନାହାନ କରାଇ,
ବେଶ ଭୂଷା କରି ଦେଲେ ଦୋଳାରେ ଶୁଆଇ ।
ତହୁଁ ପୂଜିବାକୁ କୁଳ ଇଷ୍ଟ ଭଗବାନ,
ଚରିତରେ ନିଜେ କରି ପକାଇଲେ ସ୍ନାନ । ୧୧୦୬

ପୂଜା ଶେଷେ ମାତା କରି ନୈବେଦ୍ୟ ଅର୍ପଣ,
ପରେ ନିଜେ କଲେ ରୋଷଶାଳାକୁ ଗମନ ।
ଲେଉଟି ଯେ ଗୃହେ ପୁଣି ଗୁଡ଼ୁ କିଛି କ୍ଷଣ,
ଦେଖିଲେ ପୁତ୍ରକୁ କରେ ନୈବେଦ୍ୟ ଭୋଜନ । ୧୧୦୭

ଦୋଳା ପାଶେ ଗଲେ ମାତା ହୋଇ ଭୟଭୀତ,
ଦେଖିଲେ ଶିଶୁକୁ ପୁଣି ସେଠାରେ ଶାୟିତ ।
ପୁଣି ପୂଜା ସ୍ଥଳେ ଆସି ଦେଖିଲେ ତନୟ !!
ହୃଦୟେ କମ୍ପିଲା ମନ ହୋଇଲା ଅଥୟ । ୧୧୦୮

ଦେଖିଲି ମୁଁ ଏଠି ସେଠି ବାଳକ ରତନ,
ଏ ମୋ ମତିଭ୍ରମ ଅବା ଅନ୍ୟ କି କାରଣ ।
ଶ୍ରୀରାମ ମାତାଙ୍କୁ ଦେଖି ଅଶେଷ ଆକୁଳ,
ହସିଲେ ମୁରୁକି ହସ ମୃଦୁ ସୁମଧୁର । ୧୧୦୯

ଦେଖାଇଲେ ଜନନୀଙ୍କୁ ନିଜର ମହିମା,
ଅନନ୍ତ ଅଦ୍‌ଭୁତ ରୂପ ନାହିଁ ଯାର ସୀମା ।
କୋଟି କୋଟି ବ୍ରହ୍ମାଣ୍ଡ ଯେ ପ୍ରତି ଲୋମ ମୂଳେ,
ଦେଖିଲେ କୌଶଲ୍ୟା ମାତା ବିସ୍ମୟେ ବିହ୍ୱଳେ । ୧୧୧୦

ଅସୁମାରୀ ରବି ଶଶି ବିରଞ୍ଚି ମହେଶ,
ନଦୀ ନଗରୀ ଗିରି ସିନ୍ଧୁ ଅବନୀ ଅଶେଷ ।
କାଳ କର୍ମ ଗୁଣ ଜ୍ଞାନ ସ୍ୱଭାବ କରଣି,
କର୍ଣ୍ଣେ ନ ଶୁଣିବା କଥା ଦେଖିଲେ ଜନନୀ । ୧୧୧୧

ଦେଖିଲେ ସମ୍ମୁଖେ ଠିଆ ମାୟା ଯୋଡ଼ି କର,
ସବୁମନ୍ତେ ବଳବନ୍ତ ଭୟେ ଥରହର ।
ଦେଖିଲେ ଜୀବକୁ ମାୟା ନଚାଏ ଯାହାକୁ,
ଭକ୍ତିକୁ ଦେଖିଲେ ମାୟା-ମୁକ୍ତ କରେ ତାକୁ । ୧୧୧୨

ବଚନ ନ ଫୁଟେ ଓଠେ ପୁଲକ ଶରୀର,
ଆଖି ବୁଜି ଶ୍ରୀଚରଣେ ନୁଆଁଇଲେ ଶିର ।
ବିସ୍ମୟ-ବିହ୍ୱଳା ମାତା ନିରେଖି ଶ୍ରୀହରି,
ପୁଣି ଉଭା ହେଲେ ପ୍ରଭୁ ଶିଶୁରୂପ ଧରି । ୧୧୧୩

ସ୍ତୁତି କରି ନ ପାରନ୍ତି ମନେ ଭରି ଭୟ—
"ଜଗତ ପିତାଙ୍କୁ ଯାହା ମଣିଲି ତନୟ ।"
ନାନା ମତେ ବୁଝାଇଲେ ମାତାଙ୍କୁ ଶ୍ରୀହରି—
"ମାତା ନ କହିବ ଏହା କାହାକୁ ଯେପରି ।" ୧୧୧୪

ପରିନୟେ ବାରମ୍ବାର ଯୋଡ଼ି ବେନି କର,
କହିଲେ ଜନନୀ—ମୋତେ ଏହି ଦୟା କର ।
ଯେପରି ତୁମରି ମାୟା ଆହେ ମହାବାହୁ,
ଛୁଇଁ ନ ପାରିବ ମୋତେ କେତେବେଳେ ଆଉ । ୧୧୧୫

ନାନାବିଧ ପ୍ରକାରେ ବାଲ୍ୟଲୀଳା କରି ହରି,
ଭକ୍ତ ଜନେ ସୁଖ ଦ୍ୱିଶି ଦିଅନ୍ତି ବିତରି ।
କିଛି କାଳ ଗତେ ଏହି ଭାଇମାନେ ସର୍ବେ,
ବଡ଼ ହୋଇ ସୁଖୀ କଲେ ଆତ୍ମୀୟ ବାନ୍ଧବେ । ୧୧୧୬

ଗୁରୁ ଯାଇ ଚୂଡ଼ା କର୍ମ କଲେ ସମାପନ,
ଦକ୍ଷିଣା ପାଇଲେ ବହୁ ବିପ୍ର ଓ ବ୍ରାହ୍ମଣ ।

ଅପାର ଚରିତ ପୁଣି ଅତି ମନୋହର,
ଲୀଳା କରି ବୁଲୁଥାନ୍ତି ଏ ଗୃହ କୁମର । ୧୧୧୭

ଯେହୁ ଅଗୋଚର ମନ କର୍ମ ଓ ବଚନେ,
ସେ ପ୍ରଭୁ ଖେଳନ୍ତି ଦଶରଥଙ୍କ ଅଙ୍ଗନେ ।
ଖାଇବାକୁ ଯେବେ ରାଜା ଆଦରେ ଡାକନ୍ତି,
ଶିଶୁ ମେଳ ପରିହରି ସେହୁ ନ ଆସନ୍ତି । ୧୧୧୮

ଡାକନ୍ତି ଜନନୀ ଯେବେ ଆସିବାର ପାଇଁ,
ଠୁକୁରୁ ଠୁକୁରୁ ପ୍ରଭୁ ଯାଆନ୍ତି ପଳାଇ ।
ବେଦ କହେ ନେତି, ଶିବ ଅନ୍ତ ନ ଲଭନ୍ତି,
ମାତା ଧରିବାକୁ ତାଙ୍କୁ ଗୋଡ଼େଇ ବସନ୍ତି । ୧୧୧୯

ଧୂଳି ଧୂସରିତ ଦେହେ ଆସିଲେ ଦଉଡ଼ି,
ବସାନ୍ତି ନୃପତି ହସି କୋଳରେ ଜାବୁଡ଼ି । ୧୧୨୦

ଭୋଜନ କାଳରେ ପ୍ରଭୁ ଚଞ୍ଚଳ ଚିତ୍ତରେ,
ଦଧି ଲଟପଟ ମୁଖେ ଉଠି ତରତରେ ।
କେତେ କଉତୁକେ ଏଣେ ତେଣେ ବେଳ ପାଇ,
କଳକଳା ହସ ହସି ଯାଆନ୍ତି ପଳାଇ । ୧୧୨୧

ଏ ବାଳ ଚରିତ ଅତି ସରଳ ସୁନ୍ଦର,
ଗାଆନ୍ତି ନିଗମ ଶେଷ ଶାରଦା ଶଙ୍କର ।
ଏସନ ଚରିତେ ଯାର ନ ଲାଗଇ ଚିତ୍ତ,
ବିଧାତା ତାହାଙ୍କୁ ଜାଣ କରେ ପ୍ରତାରିତ । ୧୧୨୨

କୁମାର ହୋଇଲେ ଯେବେ ଏହି ସବୁ ଭାଇ,
ଗୁରୁ ପିତା ମାତା ଦେଲେ ପଇତା ପକାଇ ।
ପଢ଼ିବାକୁ ଗୁରୁଗୃହେ ଗଲେ ରଘୁନାଥ,
ଅଳ୍ପ କାଳେ ସବୁ ବିଦ୍ୟା ହୋଇଲା ସମାପ୍ତ । ୧୧୨୩

ଯାର ସ୍ୱାଭାବିକ ଶ୍ୱାସସମ ବେଦ ଚାରି,
ସେ ପଢ଼ନ୍ତି ପାଠ—ଏ ତ କଉତୁକ ଭାରି ।

ବିଦ୍ୟା ଗୁଣଶୀଳ ତଥା ବିନୟେ କୁଶଳ,
ରାଜ ଜନୋଚିତ ଖେଳ ଖେଳନ୍ତି ସକଳ । ୧୧୨୪

କରେ ଧନୁଶର ଶୋଭେ ଅତି ମନୋହର,
ସେ ରୂପ ଦର୍ଶନ ମାତ୍ରେ ମୁଗ୍ଧ ଚରାଚର ।
ଯେଉଁ ମାର୍ଗେ ବିହରନ୍ତି ଏହି ଭାଇଗଣେ,
ଚକିତ ହୁଅନ୍ତି ନର ନାରୀ ପୁରଜନେ । ୧୧୨୫

କୋଶଳ ନଗରବାସୀ ଯେତେ ନାରୀ ନର,
ବାଳ ବୃଦ୍ଧ ସର୍ବତରେ ପ୍ରଜାଙ୍କୁ ସକଳ,
କୃପାଳୁ ଶ୍ରୀରାମଚନ୍ଦ୍ର ରଘୁବଂଶ କଳ,
ପ୍ରାଣ ଠାରୁ ଅତି ପ୍ରିୟ ଲାଗିଲେ ଯେପରି । ୧୧୨୬

ଭାଇ ସଖା ମିତ୍ର ନେଇ ଶ୍ରୀରାମ ବନରେ,
ମୃଗୟା କରନ୍ତି ନିତି ପ୍ରୀତି ଉଲ୍ଲାସରେ ।
ରାଜ କୁଳେ ମୃଗବଧ ପୂତ କର୍ମ ଜାଣି,
ପ୍ରତିଦିନ ନୃପତିଙ୍କୁ ସେ ଦେଖାନ୍ତି ଆଣି । ୧୧୨୭

ରାମ ଶରେ ଯେଉଁ ମୃଗ ଲଭନ୍ତି ମରଣ,
ତନୁ ତେଜି ସୁର ଲୋକେ କରନ୍ତି ଗମନ ।
ଭୁଜନ୍ତି ମଇତ୍ର ସଖା ଅନୁଜଙ୍କ ସାଥେ,
ପିତା ମାତା ଆଦେଶକୁ ବହିଥାନ୍ତି ମାଥେ । ୧୧୨୮

ଯେପରି ହୋଇବେ ସୁଖୀ ପୁରବାସୀ ଜନେ,
ଶ୍ରୀରାମ କରୁଣାନିଧି କରନ୍ତି ତେସନେ ।
ନିଗମ ପୁରାଣ ଶୁଣି ଏକାଗ୍ର ଚିତ୍ତରେ,
ବୁଝାଇ କହନ୍ତି ନିଜେ ଭାଇଙ୍କ ଆଗରେ । ୧୧୨୯

ସକାଳୁ ଶେଯରୁ ଉଠି ଶ୍ରୀରଘୁନାୟକ,
ପିତା ମାତା ଗୁରୁ ପଦେ ନୁଆନ୍ତି ମସ୍ତକ ।
ଆଦେଶେ କରନ୍ତି ଯାଇ ପୁର କାର୍ଯ୍ୟ ମାନ,
ଦେଖି ଏ ଚରିତ ରାଜା ଅଶେଷ ପ୍ରସନ୍ନ । ୧୧୩୦

ଯେ ବ୍ୟାପ୍ତ ନିର୍ଗୁଣ ଅଜ ଅନାମ ଅରୂପ,
କାମନା ରହିତ, ଧରି ଭବେ ନାନା ରୂପ ।
ତୋଷିବା ପାଇଁକି ପ୍ରିୟ ଭକ୍ତ ଜନ ମନ,
କରନ୍ତି ସେ ଅନୁପମ ଲୀଳା ପ୍ରଦର୍ଶନ । ୧୧୩୧

କହି ଶୁଣାଇଲି ମୁହିଁ ଏ ସବୁ ଚରିତ,
ଏବେ ପରବର୍ତ୍ତୀ କଥା ଶୁଣ ଦେଇ ଚିତ୍ତ ।
ମହାମତି ବିଶ୍ୱାମିତ୍ର ମହାମୁନି ଜ୍ଞାନୀ,
ବନେ ରହୁଥିଲେ ଶୁଭ ଆଶ୍ରମ ନିର୍ମାଣି । ୧୧୩୨

ଯେଉଁ ଯୋଗ ଯଜ୍ଞ ମୁନି ଆଚରନ୍ତି ତହିଁ,
ମାରିଚ ଓ ସୁବାହୁଙ୍କୁ ଡରିଥାନ୍ତି ତହିଁ ।
ଯଜ୍ଞାରମ୍ଭ ଦେଖି ବିଘ୍ନ କରିଥାନ୍ତି ଦୈତ୍ୟେ,
ସେ ଲାଗି ପାଆନ୍ତି ଦୁଃଖ ମୁନି ନାନାମତେ । ୧୧୩୩

ଗାଧିସୁତ ବିଶ୍ୱାମିତ୍ର ମନେ ଚିନ୍ତା ଭରେ,
ହରି ବିନା ନ ମରିବେ ପାପୀ ନିଶାଚରେ ।
ବିଚାର କରିଲେ ତହୁଁ ମୁନିବର ମନେ,
ଅବତରିଛନ୍ତି ପ୍ରଭୁ ଭୂଭାର ହରଣେ । ୧୧୩୪

ଶ୍ରୀପଦ ଦେଖିବି ଏହି ବାହାନାରେ ଯାଇ,
ଆଣିବି ମିନତି କରି ଏଥିଁ ବେନି ଭାଇ ।
ସକଳ ବୈରାଗ୍ୟ ଜ୍ଞାନ ଗୁଣ ନିକେତନ,
ସେ ପ୍ରଭୁଙ୍କୁ ମୁଁ ଦେଖିବି ପୂରାଇ ନୟନ । ୧୧୩୫

ମୁନିରାଜ ବହୁ ଇଚ୍ଛା କରି ଏହିପରି,
ତରତରେ ଗଲେ ଚଳି ଅଯୋଧ୍ୟା ନଗରୀ ।
ସ୍ନାନ ସମାପନ କରି ସରଜୁର ଜଳେ,
ଉପଗତ ହେଲେ ଆସି ନୃପତି ନବରେ । ୧୧୩୬

ମୁନି ଆଗମନ ବାର୍ତ୍ତା ପାଇ ଦଶରଥ,
ବିପ୍ରଗଣ ସାଥେ ଯାଇ କରିଲେ ସ୍ୱାଗତ ।

ପ୍ରଣମି ସେ ଜଣାଇଲେ ବହୁତ ସମ୍ମାନ,
ଡାକି ଆଣି ବସିବାକୁ ଦେଲେ ନିଜ ସ୍ଥାନ । ୧୧୩୭

ପାଦ ଧୋଇ ବହୁ ପୂଜା କଲେ ରାଜା ନେଇ,
କହିଲେ ମୋ ସମ ଧନ୍ୟ ନାହିଁ ଆଉ କେହି ।
ବିବିଧ ଭୋଜନ ଦ୍ରବ୍ୟ ତିଆରି ନୃପତି,
ଖୁଆଇଲେ, ମୁନିଙ୍କର ତୋଷ ହେଲି ମତି । ୧୧୩୮

ପରେ ଗୃହ ସୁତେ ଆଣି ପଦେ ଲୋଟାଇଲେ,
ଶ୍ରୀରାମ ଦର୍ଶନେ ମୁନି ନିଜକୁ ଭୁଲିଲେ ।
ମୁଖ ଶୋଭା ଦେଖି ହେଲେ ମଗନ ଏସନେ,
ମୁଗ୍‌ଧ କି ଚକୋର ପୂର୍ଣ୍ଣ ଚନ୍ଦ୍ରମା ଦର୍ଶନେ । ୧୧୩୯

କହିଲେ ନୃପତି ତହୁଁ ହୃଦେ ହର୍ଷ ଭରି,
ଏ କରୁଣା ମୁନି କେବେ ନ ଥିଲ ତ କରି ।
କହ କି କାରଣେ ଶୁଭ ଆଗମନ ତବ,
ତ୍ୱରିତେ କରିବି ପୂର୍ଣ୍ଣ ନ କରି ବିଳମ୍ବ । ୧୧୪୦
ବହୁତ ଯାତନା ଦେଲେ ମୋତେ ନିଶାଚରେ,
ଏଣୁ ମୁଁ ଆସିଛି କିଛି ମାଗିବାକୁ ଥରେ ।
ଲକ୍ଷ୍ମଣ ସହିତେ ମୋତେ ଦିଅ ରଘୁନାଥ,
ରାକ୍ଷସ ନିଧନେ ମୁହିଁ ହୋଇବି ସନାଥ । ୧୧୪୧

ଆହେ ନରପତି ତେଜି ମୋହ ଅଜ୍ଞାନତା,
ହରଷିତ ମନେ ଦେଇ ରକ୍ଷାକର କଥା ।
ତୁମରି ହୋଇବ ଯଶ ଧରମ ଏଥିରେ,
ଏହିମାନଙ୍କର ପୁଣି କଲ୍ୟାଣ ଅଚିରେ । ୧୧୪୨

ଏ ଅତି ଅପ୍ରିୟ କଥା ଶୁଣି ନରପତି,
ମୁଖଜ୍ୟୋତି ମଳି, ହେଲି ହୃଦୟ କରତି ।
କହିଲେ, "ପାଇଚି ବୃଦ୍ଧକାଳେ ଚାରିପୁଅ,
ହେ ବିପ୍ର ବିଚାରି କଥା କମ୍ପାଇ ନ କୁହ ? ୧୧୪୩

ମାଗ ଭୂମି ଧେନୁ ଧନ ଅବା ରାଜକୋଷ,
ସକଳ ତୁମକୁ ଦେଇ ହୋଇବି ସନ୍ତୋଷ ।
ଏ ଦେହ ଏ ପ୍ରାଣଠାରୁ ଅଧିକ କେ ପ୍ରିୟ,
ତାହା ମାଗି ନିମିଷକେ ମୋହଠାରୁ ନିଅ । ୧୧୪୪

ପ୍ରାଣ ସମ ପ୍ରିୟ ମୋର ତନୟ ମୋହର,
ଶ୍ରୀରାମକୁ ଦେଇ ଅବା ଚଳିବ କପର ?
କାହିଁ ନିଶାଚର ଅତି ଭୀଷଣ କଠୋର,
କାହିଁ ସୁକୁମାର ଏଇ ପରମ କିଶୋର ? ୧୧୪୫

ପ୍ରେମ ରସେ ରସାଣିତ ରାଜାଙ୍କ ବଚନ,
ଶୁଣି ହରଷିତ ହେଲେ ଜ୍ଞାନୀ ମୁନିମନ ।
ବଶିଷ୍ଠ କହିଲେ ଯହୁଁ ବହୁତ ପ୍ରକାରେ,
ନୃପ ମନ ଶଙ୍କା ନାଶ ହେଲା ତତ୍‌କାଳେ । ୧୧୪୬

ଅତ୍ୟନ୍ତ ଆଦରେ ବେନି ପୁତ୍ରେ ଡକାଇଲେ,
ହୃଦୟେ ଲଗାଇ ନାନାମତେ ଶିଖାଇଲେ ।
କହିଲେ, "ହେ ନାଥ, ବେନି ସୁତ ମୋ ଜୀବନ,
ଏବେ ତୁମେ ତାଙ୍କ ପିତା, ନୁହନ୍ତି କେ ଅନ୍ୟ । ୧୧୪୭

ବହୁ ଆଶୀର୍ବାଦ କରି ତନୟେ ନୃପତି,
ପ୍ରାଣ ପ୍ରିୟ ପୁତ୍ରେ ଦେଲେ ଋଷିଙ୍କୁ ସମର୍ପି ।
ଜନନୀ ଭବନେ ଯାଇ ତହୁଁ ନର ରାୟ,
ପଦ ତଳେ ମଥା ନୋଇଁ ଘେନିଲେ ବିଦାୟ । ୧୧୪୮

ପୁରୁଷଙ୍କ ମଧ୍ୟେ ସିଂହ ସମ ବେନି ଭାଇ,
ହରଷେ ଚଳିଲେ ମୁନି ଭୟ ଦୂର ପାଇଁ ।
ସେ ତ କୃପାସିନ୍ଧୁ ଧୀର ବୁଦ୍ଧି ନାରାୟଣ,
ବିଶ୍ୱ କାରଣର ସିଏ ଅଟନ୍ତି କାରଣ । ୧୧୪୯

ବିଶାଳ ହୃଦୟ ବାହୁ ଅରୁଣ ନୟନ,
ଶ୍ୟାମଳ ତମାଳ ନୀଳ-ପଦ୍ମ ଅପଘନ ।

ପୀତାମ୍ବର ପରିଧାନ କଟିରେ ତୂଣୀର,
ବେନି କରେ ଶୋଭେ ଚାପ-ଶାୟକ ରୁଚିର । ୧୧୫୦

ଶ୍ୟାମଳ ଗଉର ମନୋହର ବେନି ଭାଇ,
ବିଶ୍ୱାମିତ୍ର ସତେ କୋଟି ନିଧି'ଛନ୍ତି ପାଇ ।
ପ୍ରଭୁ ତ ବ୍ରହ୍ମଣ୍ୟଦେବ, ବ୍ରାହ୍ମଣ ଭକତ,
ମୋ ପାଇଁ ପିତାଙ୍କୁ କର ଅନ୍ନ୍ୟ ଶାକତ । ୧୧୫୧

ପଥେ ଯାଉ ତାଡ଼କାକୁ ଦେଖାଇଲେ ମୁନି,
କ୍ରୋଧେ ସେ ଆସିଲା ଧାଇଁ ଶବ୍ଦ ମାତ୍ର ଶୁଣି ।
ଗୋଟିଏ ବାଣରେ ପ୍ରାଣ ହରିଲେ ତାହାର,
ଦୀନ ଜାଣି ଦେଲେ ତାକୁ ପଦ ଆପଣାର । ୧୧୫୨

ମୁନିଙ୍କୁ ଯଦବା ଜଣା, ରାମ ବିଦ୍ୟାନିଧି,
ତଥାପି ସେ ଦେଲେ ତାଙ୍କୁ ବିଦ୍ୟା ଆଉ ସିଦ୍ଧି ।
ଯେଉଁଥିରେ କ୍ଷୁଧା ତୃଷା କିଛୁ ନ ଲାଗଇ,
ଦେହେ ଅତୁଳିତ ବଳ ତେଜ ପ୍ରକାଶଇ । ୧୧୫୩

ସବୁ ଅସ୍ତ୍ର ଶସ୍ତ୍ର ଦେଇ ଶ୍ରୀରାମଙ୍କୁ ପୁଣି,
ନିଜ ଆଶ୍ରମକୁ ସଙ୍ଗେ ନେଇ ଗଲେ ମୁନି ।
ଖାଇବାକୁ ଦେଲେ କନ୍ଦମୂଳ ଫଳ ଆଣି,
ସିନେହରେ ତାଙ୍କୁ ଭକ୍ତ ହିତକାରୀ ଜାଣି । ୧୧୫୪

ପ୍ରଭାତେ କହିଲେ ମୁନି ଆଗେ ରଘୁବର,
ଭୟହୀନ ହୋଇ ତୁମ୍ଭେ ଯାଇ ଯଜ୍ଞ କର ।
ଏହା ଶୁଣି ମୁନିଗଣ ଯଜ୍ଞ ଆରମ୍ଭିଲେ,
ଯଜ୍ଞ ରକ୍ଷା କର୍ମେ ସ୍ୱୟଂ ନିଯୁକ୍ତ ରହିଲେ । ୧୧୫୫

ମୁନିଦ୍ରୋହୀ ମାରୀଚ ସେ ପାଇ ଏ ଖବର,
ରାଗରେ ଆସିଲା ନେଇ ସାଥି ସହଚର ।
ମାରିଲେ ଶ୍ରୀରାମ ତାକୁ ଅଫଳକ ବାଣ,
ପଡ଼ିଲା ଯୋଜନ ଶତ ସିନ୍ଧୁ ପାରେ ଜାଣ । ୧୧୫୬

ଅଗ୍ନି ଶରେ ସୁବାହୁକୁ ପୁଣି ଦେଲେ ମାରି,
ଅନୁଜ ରାକ୍ଷସ ସେନା ଥାଟକୁ ସଂହାରି ।
ବ୍ରାହ୍ମଣେ ନିର୍ଭୟ କଲେ ଯେବେ ସେ କୁମରେ,
ଦେବ ମୁନିଗଣ ସ୍ତୁତି କଲେ ଭକ୍ତିଭରେ । ୧୧୫୭

କରି ଦୟା ରଘୁନାଥ ବ୍ରାହ୍ମଣଙ୍କ ପରେ,
ପୁଣି ରହିଗଲେ କିଛି ଦିନ ସେ ସ୍ଥାନରେ ।
ଭକ୍ତି ହେତୁ ବହୁ ବହୁ ପୁରାଣ କାହାଣୀ,
କହିଲେ ବ୍ରାହ୍ମଣେ ତାଙ୍କୁ, ଥିଲେ ହେଁ ସେ ଜାଣି । ୧୧୫୮

ଦିନେ ଆନନ୍ଦରେ ମୁନି କହିଲେ ପ୍ରସଙ୍ଗେ,
ଚରିତ ଦେଖିବ ଏକ ଚାଲ ମୋର ସଙ୍ଗେ ।
ଧନୁ ଯଜ୍ଞ କଥା ଶୁଣି ଶ୍ରୀରଘୁନନ୍ଦନ,
ଚାଲିଲେ ମୁନିଙ୍କ ସଙ୍ଗେ ହୋଇ ସୁପ୍ରସନ୍ନ । ୧୧୫୯

ଦେଖିଲେ ଆଶ୍ରମ ଏକ ପଥେ ଯିବା କାଳେ,
ପଶୁ ପକ୍ଷୀ ଜୀବଜନ୍ତୁ ନ ଥିଲେ ସେଠାରେ ।
କେବଳ ପଥର ଏକ ଦେଖି ପଚାରନ୍ତି;
ମୁନି ସେ ସକଳ କଥା ବିସ୍ତାରି କହନ୍ତି । ୧୧୬୦

ଗଉତମ ନାରୀ ଶାପ ପାଇ ହେ ଶ୍ରୀରାମ,
ପାଷାଣ ପାଲଟି ଯାଇ ଝୁରେ ଅବିରାମ ।
ତୁମ ପାଦ-ପଦ୍ମ ଧୂଳି ଭିକ୍ଷା ସେ କରଇ,
ଦିଅ ରଘୁବୀର ଦିଅ ତା'ରେ କୃପା କରି । ୧୧୬୧

ହେ ପାବନ ଶୋକହାରୀ ଚରଣ ପରଶେ,
ତପୋମୂର୍ତ୍ତି ଗଉତମୀ ପ୍ରକଟ ହରଷେ ।
ଦେଖିଲେ ପୁରତେ ରାମ ଶ୍ରୀରଘୁନନ୍ଦନ,
ଭକ୍ତ ଜନ-ସୁଖଦାୟୀ ପତିତ-ପାବନ ।
ଆଗେ ଆସି ଉଭା ହେଲେ ଯୋଡ଼ି ବେନିକର,
ପୁଲକିତ ତନୁ ଅତି ପ୍ରେମେ ଜରଜର ।

ବଚନ ନ ସ୍ଫୁରେ ମୁଖେ, ଅଶ୍ରୁଳ ନୟନେ,
ଅଲଲ୍ୟା ସୌଭାଗ୍ୟବତୀ ଲୋଟିଲେ ଚରଣେ । ୧୧୬୨

ମନେ ଧୈର୍ଯ୍ୟ ଧରି ତହୁଁ ପ୍ରଭୁଙ୍କୁ ଚାହିଁଲେ,
ରଘୁପତି କୃପା ହେତୁ ଭକତି ଲଭିଲେ ।
ସ୍ତୁତି ଆରମ୍ଭିଲେ ପରେ ନିର୍ମଳ ବଚନେ—
ଜ୍ଞାନଗମ୍ୟ ପ୍ରଭୁ ତବ ଜୟ ତ୍ରିଭୁବନେ ।
ମୁହିଁ ଅପବିତ୍ରା ନାରୀ ଜଗତ ଦୂଷଣ,
ପ୍ରଭୁ ରଘୁନାଥ ତୁମେ ଜଗତ ପାବନ ।
ରାବଣାରି ହେ ଭକତ ସୁଖ ପ୍ରଦାୟକ,
ରାଜୀବଲୋଚନ ଭବ ଭୟ ବିନାଶକ ।
ହେ ପ୍ରଭୁ ଶରଣାଗତ ଏବେ ମୁଁ ତୁମର,
ଦୟାକରି ରକ୍ଷାକର ମୋତେ ରକ୍ଷାକର । ୧୧୬୩

ମୁନି ଅଭିଶାପ ଆଜ ଅନୁଗ୍ରହ ମଣେ,
ଯା' ଫଳେ ଦେଖଇ ମୁହିଁ ଭରି ଏ ନୟନେ—
ସଂସାର ଉଦ୍ଧାରକର୍ତ୍ତା ପରମ ଈଶ୍ୱର,
ଯେ ଦର୍ଶନ ଶ୍ରେଷ୍ଠ ଲଭ ମଣନ୍ତି ଶଙ୍କର ।
ହେ ପ୍ରଭୁ ମିନତି ମୋର ଅଳପ ମୋ ଜ୍ଞାନ,
ତବ ଶ୍ରୀଚରଣେ ମାଗୁ ନାହିଁ ବର ଆନ ।
କେବଳ ଚାହୁଁଛି ପିଉ ମୋ ମନ-ଭ୍ରମର,
ତବ ପାଦ-ପଦ୍ମ-ରଜ-ରସ ନିରନ୍ତର । ୧୧୬୪

ଯେ ପଦୁଁ ପାବନୀ ଗଙ୍ଗା ବହେ ଝର ଝର,
ଯାହାଙ୍କୁ ମସ୍ତକେ ଧରି ଅଛନ୍ତି ଶଙ୍କର ।
ପୂଜନ୍ତି ଯା' ପାଦ-ପଦ୍ମ ବ୍ରହ୍ମା ନିରନ୍ତରେ,
ରଖିଲେ ଶ୍ରୀହରି ତାହା ମୋର ଶିର ପରେ ।
ସ୍ତୁତି କରି, ଏହିପରି ଥରକୁ ନଅ ଥର
ଲୋଟିଲେ ଗୌତମୀ ପ୍ରଭୁ ଶ୍ରୀଚରଣ ତଳ ।

ମନୋ ରୁଚିକର ବର ପାଇ ହର୍ଷ ମନେ,
ଚଳିଲେ ଅହଲ୍ୟା ନିଜ ପତିଙ୍କ ଭବନେ । ୧୧୬୫

ଶ୍ରୀରାମ ଏପରି ଦୀନବନ୍ଧୁ ଏ ଜଗତେ,
ବିନା କାରଣରେ ଦୟା କରନ୍ତି ଭକତେ ।
କହଇ ତୁଳସୀ ଦାସ ଆରେ ଶଠ ମନ,
ଜଞ୍ଜାଳ ବରଜ କର ତାହାଙ୍କୁ ଭଜନ । ୧୧୬୬

**ମାସ ପାରାୟଣ, ସପ୍ତମ ବିଶ୍ରାମ ।**

ଥା।୦

ଶ୍ରୀରାମ ଲକ୍ଷ୍ମଣ ଯାଇ ମୁନିଙ୍କ ସଙ୍ଗତେ,
ହୋଇଲେ ପାବନୀ ଗଙ୍ଗାନଦୀ ସନ୍ନିକଟେ ।
ଗାଧିସୁତ ବିଶ୍ୱାମିତ୍ର କହିଶୁଣାଇଲେ,
ଯେମନ୍ତେ ଆସିଲେ ସୁରଧାର ଧରଣୀରେ । ୧୧୬୭

ଋଷିଙ୍କ ସହିତେ ତହୁଁ ପ୍ରଭୁ କଲେ ସ୍ନାନ,
ଲଭିଲେ ବ୍ରାହ୍ମଣମାନେ ନାନାବିଧ ଦାନ ।
ମୁନିବୃନ୍ଦ ସହ ହର୍ଷେ ହୋଇ ଅଗ୍ରସର,
ମିଳିଲେ ଜନକପୁରୀ ପାଶେ ରଘୁବର । ୧୧୬୮

ସେ ପୁର ରମ୍ୟତା ରାମ ନିରେଖି ନୟନେ,
ଅନୁଜ ଲକ୍ଷ୍ମଣ ସାଥେ ହର୍ଷ ହେଲେ ମନେ ।
ନାନା ବାପି କୂପ ନଦୀ ସର ମନୋରମ,
ମଣିର ସୋପାନ, ଭରି ଜଳ ସୁଧାସମ । ୧୧୬୯

ମଧୁ ପାନେ ମତ୍ତ ଭୃଙ୍ଗେ କରନ୍ତି ଗୁଞ୍ଜନ,
ନାନା ବିଧ ବର୍ଣ୍ଣ ପକ୍ଷୀ ସୁମଧୁର ସ୍ୱନ ।
ସରେ ପ୍ରସ୍ଫୁଟିତ ନାନା ରଙ୍ଗର କମଳ,
ବହଇ ସୁଗନ୍ଧ ମନ୍ଦ ପବନ ଶୀତଳ । ୧୧୭୦

କୁସୁମ ବାଟିକା ଗୃହ ବନେ ଉପବନେ,
ବାସ କରି ବହୁପକ୍ଷୀ ଭରନ୍ତି କୂଜନେ ।
ନାନା ଫୁଲ ଫଳ ପତ୍ରେ ହୋଇ ଭରପୂର,
ବିବିଧେ ଶୋଭଇ ଚଉଦିଗେ ଏହି ପୁର । ୧୧୭୧

ବର୍ଣ୍ଣନା ନ କରି ହୁଏ ଏ ନଗର ଶୋଭା,
ଯେଣିକ ଗୃହିଁଲେ ହେଉଥାଏ ମନଲୋଭା ।
ସୁନ୍ଦର ବଜାର କେତେ ପ୍ରକାରେ ସଜ୍ଜିତ,
ମଣିର ଅଳନ୍ଦ, ବିଧି ହସ୍ତେ କି ନିର୍ମିତ । ୧୧୭୨

କୁବେର ସମାନ ଧନୀ ବଣିକ ଅନେକ,
ବସିଛନ୍ତି ଦ୍ରବ୍ୟ ଘେନି ଏକୁ ବଳି ଏକ ।
କି ସୁନ୍ଦର ଚଉହଟ୍ଟ ଗଳି ସୁଶୋଭିତ,
ଚଉଦିଗେ ସଦା ବାସ ଅତର ସିଞ୍ଚିତ । ୧୧୭୩

ସଭିଙ୍କ ମଙ୍ଗଳମୟ ଚିତ୍ରିତ ଭବନ,
ସତେ କି ସେ ସବୁ ଗୃହ କନ୍ଦର୍ପ ଅଙ୍କନ ।
ପୁର ନରନାରୀ ଶୁଚି ସଜ୍ଜନ ସୁନ୍ଦର,
ଜ୍ଞାନୀ ଧର୍ମଶୀଳ ସର୍ବେ ଗୁଣଜ୍ଞ ପ୍ରବର । ୧୧୭୪

ଅତି ଅନୁପମ ନୃପ ଜନକ ଭବନ,
ରଚନା ପାଟବ ତା'ର ଦେବ ବିମୋହନ ।
ଚିତ୍ତ ଚମକିତ ଦେଖି ନଅର ପାଚେରି,
ସମସ୍ତ ଶୋଭାକୁ ସତେ ରଖିଚି ସେ ଘେରି । ୧୧୭୫

ମଣି-ବିଜଡ଼ିତ ସୁନା ଜରିର ପରଦା,
ଧବଳ ଭବନ ସାରି ଲାଗିଥାଏ ସଦା ।
ଅତ୍ୟନ୍ତ ସୁନ୍ଦର ତହିଁ ଜାନକୀ-ନିବାସ,
ଶୋଭା ବର୍ଣ୍ଣିବାକୁ କେ ବା କରିବ ପ୍ରୟାସ । ୧୧୭୬

ମନୋହର ଦ୍ୱାରେ ସବୁ କୁଳିଶ-କବାଟ,
ରାଜ ଦ୍ୱାରେ ଭିଡ଼ ନଟ ପ୍ରଶଂସକ ଭାଟ ।
ନିର୍ମିତ ବିଶାଳ ଘୋଡ଼ାଶାଳ ହାତୀଶାଳ,
ଗଜ ବାଜି ରଥେ ପରିପୂର୍ଣ୍ଣ ସବୁ କାଳ । ୧୧୮

ବହୁ ଶୂର ବୀର ପାତ୍ର ମନ୍ତ୍ରୀ ସେନାପତି,
ରଜା ଘର ପରି ତାଙ୍କ ବାସ ରମ୍ୟ ଅ

ସେ ପୁର ବାହାରେ ନଦୀ ସରୋବର ତୀରେ,
ବନ୍ଧୁ ନୃପେ ଡେରା ବାନ୍ଧ ଅତ୍ୟନ୍ତ ପ୍ରୀତିରେ । ୧୧୭୮

ଦେଖି ଅନୁପମ ଏକ ରସାଳ କାନନ,
ସମସ୍ତ ସୁବିଧା ଯୁକ୍ତ ପରମ ଶୋଭନ—
କୌଶିକ କହିଲେ ଇଚ୍ଛା ହେଉଛି ମୋହର,
ଏ ସ୍ଥାନେ ରହିବା ଆମେ ସୌମ୍ୟ ରଘୁବର । ୧୧୭୯

"ତାହା ହେଉ" କହି ଦୟାସାଗର ଶ୍ରୀରାମ,
ମୁନିଗଣ ସହ କଲେ ସେ ସ୍ଥାନେ ବିଶ୍ରାମ ।
ବିଶ୍ୱାମିତ୍ର ମୁନିଙ୍କର ତହିଁ ଆଗମନ-
ବାର୍ତ୍ତା ପାଇଗଲେ ବେଗେ ମିଥିଳା ରାଜନ । ୧୧୮୦

ଭେଟିବା ପାଇଁକି ମୁନି-ନାୟକେ ତ୍ୱରିତ,
ସଙ୍ଗେ ନେଇ ସାଧୁ ମନ୍ତ୍ରୀ ବହୁ ଶୂରପତି,
ବିପ୍ରବର ଜ୍ଞାନୀ ଗୁରୁ ଜ୍ଞାତି ପରିଜନ,
ଚଳିଲେ ପ୍ରସନ୍ନ ଚିତ୍ତେ ଜନକ ରାଜନ । ୧୧୮୧

ଚରଣେ ମସ୍ତକ ରଖି କଲେ ପ୍ରଣିପାତ,
ଆନନ୍ଦେ ଆଶୀଷ ଦେଲେ ତାଙ୍କୁ ମୁନିନାଥ ।
ସାଦରେ ସେ ଅନ୍ୟ ମୁନି ବୃନ୍ଦଙ୍କୁ ବନ୍ଦିଲେ,
ବଡ଼ ଭାଗ୍ୟ ଭାବି ରାଜା ହରଷ ହୋଇଲେ । ୧୧୮୨

ପଚାରି କୁଶଳ ପ୍ରଶ୍ନ ମାନ ଥର ଥର,
ବସାଇଲେ ବିଶ୍ୱାମିତ୍ର ରାଜାଙ୍କୁ ସତ୍ୱର ।
ସେ ସମୟେ ଦୁଇ ଭାଇ ହେଲେ ଉପସ୍ଥିତ,
ଯାଇଥିଲେ ଫୁଲବାଡ଼ି ଦେଖିବା ନିମିତ୍ତ । ୧୧୮୩

ଶ୍ୟାମଳ ଗଉର ମୃଦୁ ବୟସ କିଶୋର,
ନେତ୍ର-ସୁଖ-ପ୍ରଦାୟକ ବିଶ୍ୱ-ଚିତ୍ତ ଚୋର ।

ସର୍ବେ ଉଠିଗଲେ ଯେବେ ଶ୍ରୀରାମ ଆସିଲେ,
ବିଶ୍ୱାମିତ୍ର ନେଇ ନିଜ ପାଶେ ବସାଇଲେ । ୧୧୮୪

ଏ ବେନି ଭାଇଙ୍କୁ ଦେଖି ସରବେ ହରଷ,
ନୟନେ ଆସିଲା ନୀର ଶରୀରେ ପୁଲକ ।
ମଧୁ ମନୋହର ରୂପ ଦେଖି ନୃପମଣି,
ଦେହ ଜ୍ଞାନ ନ ରହିଲା ତଳେ ସେହି କ୍ଷଣି । ୧୧୮୫

ମନ ପ୍ରେମେ ମଗ୍ନ ଜାଣି ବିଦେହ ରାଜନ,
ବିବେକ ବଳରେ ଧୈର୍ଯ୍ୟ କରିଲେ ଧାରଣ ।
ମସ୍ତକ ଲଗାଇ ରାଜା ମୁନିଙ୍କ ଚରଣେ,
ପଚାରିଲେ କଥା, ପ୍ରେମ ଗଦ୍‌ଗଦ୍ ବଚନେ । ୧୧୮୬

"କହ ନାଥ ଏ ସୁନ୍ଦର ଯୁଗଳ ବାଳକ,
ମୁନିକୁଳ ତିଳକ ବା ଏ ଲୋକ ପାଳକ ?
ଯେ ବ୍ରହ୍ମକୁ ବେଦ ଗାଏ ନେତି ନେତି କହି,
ସେହି କି ଆସିଛି ବେନି ରମ୍ୟ ରୂପ ବହି ? ୧୧୮୭

ସହଜେ ବୈରାଗ୍ୟ ମୂର୍ତ୍ତି ଅଟେ ମନ ମୋର,
ସେ ମନ ମୋହିତ ଯେହ୍ନେ ଚନ୍ଦ୍ରରେ ଚକୋର ।
ତେଣୁ ପଚାରଇ ମୁହିଁ ସରଳ ଭାବରେ,
ଗୁପତ ନ କରି ନାଥ କହ ମୋ ଆଗରେ । ୧୧୮୮

ଏହାଙ୍କୁ ଦେଖିଲା ମାତ୍ରେ ଅନୁରାଗେ ମନ,
ବାଧ୍ୟ ହୋଇ ବ୍ରହ୍ମସୁଖ କରଇ ବର୍ଜନ ।"
ହସି ମୁନି କହିଲେ, "ହେ ରାଜନ ଆପଣ,
ଯଥାର୍ଥ—ଅଳୀକ ନୁହେଁ ତୁମରି ବଚନ । ୧୧୮୯

ସବୁ ପ୍ରାଣୀଙ୍କର ଇଏ୍ବ ଅତି ପ୍ରିୟ ଜନ",
ମୁ ରୁକି ହସିଲେ ରାମ ଶୁଣି ଏ ବଚନ ।
"ଦଶରଥ ପୁତ୍ର ଏହି ରଘୁକୁଳ କେତୁ,
ପଠାଇ ଅଛନ୍ତି ନୃପ ମୋର ହିତ ହେତୁ । ୧୧୯୦

ହେ ନୃପ ଏ ବେନି ଭାଇ ଶ୍ରୀରାମ ଲକ୍ଷ୍ମଣ,
ଅପରୂପ ରୂପ ଶୀଳ ବଳ ନିକେତନ ।
ମୋ ଯଜ୍ଞକୁ କଲେ ରକ୍ଷା ଜିଣି ନିଶାଚରେ,
ଜଗତ ଏହାର ସାକ୍ଷୀ ଏକାନ୍ତ ଭାବରେ ।" ୧୧୯୧

କହିଲେ ଜନକ, "ତବ ପାଦ ଦରଶନେ,
ମୋ ପୁଣ୍ୟ ପ୍ରଭାବ କହି ନ ପାରେ ବଚନେ ।
ସୁନ୍ଦର ଶ୍ୟାମଳ ଗୌର ଏ ବେନି ସୋଦର,
ଆନନ୍ଦର ଏ ଆନନ୍ଦ ଦାତା ମନୋହର । ୧୧୯୨

ଅତି ପୂତ ଏ ଦୁହିଁଙ୍କ ପରସ୍ପର ପ୍ରୀତି,
ମନ ମୋହେ, ବଚନେ ତା' କହିବ କେମିତି ?
ବ୍ରହ୍ମ ଜୀବ ମଧ୍ୟେ ଯେହ୍ନେ ସ୍ୱାଭାବିକ ପ୍ରୀତି—
କହିଲେ ନୃପତି-ତେହ୍ନେ ବେନିଙ୍କର ସ୍ଥିତି ।" ୧୧୯୩

ନିରେଖି ଥରକୁ ଥର ପ୍ରଭୁଙ୍କୁ ନରେଶ,
ତନୁ ପୁଲକିତ ହୃଦେ ଉତ୍ସାହ ଅଶେଷ ।
ପ୍ରଶଂସି ମୁନିଙ୍କୁ କରି ପ୍ରଣାମ ପ୍ରଚୁରେ,
ସଭିଙ୍କୁ ସଙ୍ଗରେ ଘେନି ଚଳିଲେ ନଅରେ । ୧୧୯୪

ସଦା ସୁଖପ୍ରଦ ଯେଉଁ ସୁନ୍ଦର ଭବନ,
ତହିଁ ରଖାଇଲେ ଆଣି ମୁନିଙ୍କୁ ରାଜନ ।
ସବୁ ମତେ ସେବା ପୂଜା କରି ନରରାୟ,
ନିଜ ଗୃହେ ଗଲେ ଘେନି ତାଙ୍କଠୁଁ ବିଦାୟ । ୧୧୯୫

ଋଷିଗଣ ସଙ୍ଗେ ରଘୁବଂଶ-ମଣି ରାମ,
ସୁନ୍ଦର ଭବନେ କଲେ ଭୋଜନ ବିଶ୍ରାମ ।
ଅନୁଜ ଲକ୍ଷ୍ମଣ ସହ ବସିଗଲେ ତହିଁ,
ସେ କାଳେ ପ୍ରହରେ ମାତ୍ର ବେଳ ଥିଲା ରହି । ୧୧୯୬

ଜନକ ନଗର ଦେଖି ଯିବାକୁ ସହସା ।
ଲକ୍ଷ୍ମଣଙ୍କ ହୃଦେ ଜାତ ପ୍ରଖର ଲାଳସା,

କିନ୍ତୁ ଭୟ ଶ୍ରୀରାମଙ୍କୁ ମୁନିଙ୍କୁ ସମ୍ଭ୍ରମ,
ମନେ ମନେ ହସୁଥାନ୍ତି ନ କହି ମରମ । ୧୧୯୭

ଜାଣିଲେ ଶ୍ରୀରାମ ସାନ ଭାଇ ମନୋଭାବ,
ହୃଦେ ଉଲ୍ଲସିଲା ଭକ୍ତବତ୍ସଳ ସ୍ୱଭାବ ।
ସଙ୍କୋଚ ସହିତ ହୋଇ ବିନୟ ଅଶେଷ,
କହିଲେ ସସ୍ମିତେ ଲଭି ଗୁ ରୁ ଉପଦେଶ । ୧୧୯୮

"ପୁର ଦେଖିବାକୁ ନାଥ ଲକ୍ଷ୍ମଣ ଇଚ୍ଛଇ,
ଭୟ ସଙ୍କୋଚରେ କିଛି କହି ନ ପାରଇ ।
ଯଦି ଆଜ୍ଞା ଦେବେ ତେବେ ଦେଖାଇ ନଗର,
ପ୍ରଭୁଙ୍କ ପାଶକୁ ମୁହିଁ ଫେରିବି ସତ୍ୱର ।" ୧୧୯୯

ସପ୍ରେମେ କହିଲେ ଶୁଣି ମୁନୀଶ ଉତ୍ତରେ,
"ନ ରଖିବ କିଆଁ ରାମ ନୀତି ହୃଦୟରେ ?
ହେ ବତ୍ସ ତୁମେ ତ ଧର୍ମ ମର୍ଯ୍ୟାଦା ପାଳକ,
ପ୍ରେମ ବଶେ ତୁମେ ଭକ୍ତ ସୁଖ ପ୍ରଦାୟକ । ୧୨୦୦

ହେ ସୁଖନିଧାନ ବେନି ଭାଇ ଏବେ ଚଳ,
ଏ ନଗର ଶୋଭା ଦେଖି ଫେରିବ ଚଞ୍ଚଳ ।
ଦେଖାଇ ଶ୍ରୀମୁଖ-ପଦ୍ମ ସଭିଙ୍କ ନୟନ,
ସଫଳ କରିବ ଆଜ ହେ ରଘୁନନ୍ଦନ ।" ୧୨୦୧

ତହୁଁ ମୁନି ପାଦ-ପଦ୍ମ ବନ୍ଦି ବେନି ଭାଇ,
ନଗରେ ଚଳିଲେ ଲୋକ-ନେତ୍ର-ସୁଖଦାୟୀ ।
ସେ ପୁର ବାଳକେ ଶୋଭା ନିରେଖି ନୟନେ,
ସଙ୍ଗରେ ଚାଲିଲେ ହୋଇ ଲୁବ୍‌ଧ ମୁଗ୍‌ଧ ମନେ । ୧୨୦୨

ପୀତାମ୍ବର ପରିଧାନ କଟିରେ ତୂଣୀର,
ଶୋଭାପାଏ କରେ ଚାପ ଶାୟକ ରୁଚିର ।
ତନୁ ଚର୍ଚ୍ଚିତ ଚାରୁ ଚନ୍ଦନ ସୁବାସେ,
ଶ୍ୟାମଳ ଗଉର ଯୋଡ଼ି ଶୋଭା ପରକାଶେ । ୧୨୦୩

ସିଂହ ସ୍କନ୍ଧ ସୁଶୋଭନ ବାହୁ ସୁବିଶାଳ,
ବକ୍ଷ ସ୍ଥଳେ ଶୋଭେ ଗଜ ମୁକୁତାର ମାଳ ।
ସୁବିମଳ ସ୍ବଚ୍ଛ ରକ୍ତ-କମଳ-ଲୋଚନ,
ଶ୍ରୀମୁଖ ଚନ୍ଦ୍ରମା କରେ ତ୍ରିତାପ ମୋଚନ । ୧୨୦୪

କାନରେ ସୁନାର ଫୁଲ ଶୋଭା ପାଏ ଅତି,
ଚାହିଁବା ମାତ୍ରକେ ଚିତ୍ତ ଚୋରାଇ ନିଅନ୍ତି ।
ଲଳିତ ଚାହାଣୀ ବାଙ୍କ ଭ୍ରୂକୁଟୀ ଶୋଭଇ,
ତିଳକର ରେଖା ଯେହ୍ନେ ଶୋଭାକୁ ଛେକଇ । ୧୨୦୫

ଶିରେ ଚଉକୋଣ ଚାରୁ ମୁକୁଟ ବିରାଜେ,
କୃଷ୍ଣ ଓ କୁଞ୍ଚିତ କେଶ ମନୋହର ସାଜେ ।
ଆପାଦ ମସ୍ତକ ବେନି ଭାଇଙ୍କ ସୁନ୍ଦର,
ଭିନ୍ନ ଅଙ୍ଗେ ଭିନ୍ନ ଶୋଭା ଅତି ମନୋହର । ୧୨୦୬

ନୃପସୁତ ଆସିଛନ୍ତି ନଗର ଦର୍ଶନେ,
ଏହି ସମାଚାର ପାଇ ପୁରବାସୀ ଜନେ,
ଧାଇଁଲେ ସଭିଏଁ ଗୃହ କର୍ମ ପରିହରି,
ଧନ ଲୁଟିବାକୁ ରଙ୍କ ଧାଆଁଇ ଯେପରି । ୧୨୦୭

ସ୍ୱଭାବ ସୁନ୍ଦର ବେନି ଭାଇଙ୍କୁ ଦେଖିଲେ,
ଭଲ ଲାଗେ ସତେ ଅବା ନେତ୍ର ସୁଖ ମିଳେ ।
ଯୁବତୀ ନିକରେ ଗୃହ ଝରକାକୁ ଲାଗି,
ରାମ ରୂପ ନିରେଖନ୍ତି ହୋଇ ଅନୁରାଗୀ । ୧୨୦୮

ପରସ୍ପର କଥାବାର୍ତ୍ତା ସପ୍ରେମେ ହୁଅନ୍ତି,
ଏମାନେ ଲୋ କୋଟି କାମ ଛବି ଜିଣିଛନ୍ତି ।
ସୁରାସୁର ନର ନାଗ ମୁନି ମଧ୍ୟେ କାହିଁ,
କେବେହେଁ ଏମନ୍ତ ଶୋଭା ଶୁଣାଯାଇ ନାହିଁ । ୧୨୦୯

ବିଷ୍ଣୁ ଚାରିଭୁଜ, ବିଧି ବଦନ ତ ଚାରି,
ବିକଟାଳ ବେଶ ପାଞ୍ଚ ବଦନ ପୁରାରି ।

ଆଜ ତ ନାହାନ୍ତି କେହି ଦେବତା ଅଟରେ,
ଯାହାଙ୍କୁ ଏ ରୂପ ଯାଥେ ଦେବା ଘଟାନ୍ତରେ । ୧୨୧୦

କିଶୋର ବୟସ ଯେହୁ ସୁଷମା ସଦନ,
ସୁଖଧାମ ଏ ଶ୍ୟାମଳ ଗଉର ବରନ ।
ଏମାନଙ୍କ ପ୍ରତି ଅଙ୍ଗ ପ୍ରତି ହୁଏ ମନ,
ଶତକୋଟି କାମ ଅବା ହେବେ ସମର୍ପଣ । ୧୨୧୧

କହ ସଖି ଦେହ ବହି ଅଛୁ କେ ଏସନ,
ଏ ରୂପକୁ ଦେଖି ମୁଗ୍‌ଧ ନ ହୁଏ ଯା' ମନ ।
ପ୍ରେମେ ଆନ କେହୁ କହେ ମଧୁର ବଚନ,
ଯାହା ମୁଁ ଶୁଣିଛୁ ତାହା ଶୁଣ ଦେଇ ମନ । ୧୨୧୨

ଏହି ବେନି ଭାଇ ଦଶରଥଙ୍କ କୁମର,
ବାଳୁତ ମରାଳ ଯୋଡ଼ି ସମାନ ସୁନ୍ଦର ।
ବିଶ୍ୱାମିତ୍ର ମୁନିଙ୍କର ଯଜ୍ଞ ରକ୍ଷାକାରୀ,
ରଣାଙ୍ଗନେ ଅସୁରଙ୍କୁ ଦେଇଛନ୍ତି ମାରି । ୧୨୧୩

ଶ୍ୟାମଳ ଶରୀର, କଞ୍ଜ କମଳ ଲୋଚନ,
ଯେ ମାରିଚ ସୁବାହୁଙ୍କ ଗରବ ଗଞ୍ଜନ,
ସେହି ତ କୌଶଲ୍ୟା ସୁତ ସୁଖର ଆକର,
ରାମ ତାଙ୍କ ନାମ, କରେ ଶୋଭେ ଚାପ ଶର । ୧୨୧୪

ଗଉର କିଶୋର ବେଶ ପରମ ଲଳିତ,
ଶ୍ରୀରାମଙ୍କ ପଛେ ଯେହୁ ସଦା ଉପସ୍ଥିତ,
କରେ ଧନୁବାଣ, ତାଙ୍କ ନାମ ଯେ ଲକ୍ଷ୍ମଣ,
ସେ ରାମ ଅନୁଜ, ରାଣୀ ସୁମିତ୍ରା ନନ୍ଦନ । ୧୨୧୫

କରି ବିପ୍ର କାର୍ଯ୍ୟ ତାରି ମୁନି ବଧୂ ପଥେ,
ଆସିଛନ୍ତି ଧନୁ ଯଜ୍ଞ ଦେଖିବା ନିମନ୍ତେ ।
ସଜନୀ ମୁଖରୁ ଶୁଣି ଏସନ ଚରିତ,
ମିଥିଳାର ସବୁ ନାରୀ ହେଲେ ହରଷିତ । ୧୨୧୬

ଦେଖି ରାମ ଛବି କେଉଁ ରମଣୀ କହଇ,
ବଇଦେହୀ ଅନୁରୂପ ବର ଏ ଅଟଇ ।
ସଖିଲୋ ଏହାଙ୍କୁ ଯେବେ ଦେଖିବେ ରାଜନ,
ସୀତା ସଙ୍ଗେ ଦେବେ ବିଭା ତେଜି ତାଙ୍କ ପଣ । ୧୨୧୭

କେ କହେ ନୃପତି ଆଗୁ ପାରିଛନ୍ତି ଜାଣି,
ସସମ୍ମାନେ ମୁନି ସହ ନେଇଛନ୍ତି ଆଣି ।
କିନ୍ତୁ ପରି ତାଙ୍କ ପଣ ତେଜି ନ ପାରନ୍ତି,
ବିଧି ବଶେ ଜିଦ ଧରି ଅଜ୍ଞାନେ ରହନ୍ତି । ୧୨୧୮

ଆଉ କେ କହଇ ଯେବେ ଦେବ ଅନୁକୂଳ,
ସ୍ରଷ୍ଟା ମତେ ଦିଏ ଯେବେ ଉପଯୁକ୍ତ ଫଳ,
ତେବେ ଜାନକୀକି ନିଶ୍ଚେ ମିଳିବ ଏ ବର,
ଆଲୋ ସଖି ତିଳେ ଏଥି ସନ୍ଦେହ ନ କର । ୧୨୧୯

ଏପରି ସଂଯୋଗ ଯେବେ ହେବ ବିଧି ବଶ,
ତେବେ କୃତ କୃତ୍ୟ ସର୍ବେ ହୋଇବେ ଅବଶ୍ୟ ।
ଆମର ଉତ୍କଣ୍ଠା ମାନେ ନାହିଁ ବାଡ଼ ବନ୍ଧ,
କେବେ ସେ ଆସିବେ ଏଥି ରଖି ଏ ସମ୍ବନ୍ଧ । ୧୨୨୦

ନୋହିଲେ ତ ସଖି ଯାଙ୍କ ଦର୍ଶନ ଦୁର୍ଲ୍ଲଭ,
ଆମ୍ଭର କଥାକୁ ତିଳେ ହୃଦେ ଅନୁଭବ ।
ପୂର୍ବ ସଞ୍ଚିତ ପୁଣ୍ୟ ଥାଏ ଯଦି ବେଶୀ,
ଏପରି ସଂଯୋଗ ଘଟେ ଜାଣିବ ସୁକେଶୀ । ୧୨୨୧

କିଏ କହେ ସଖି ଭଲ କହିଲୁ ଏ କଥା,
ଏ ବିବାହେ ହେବ ହିତ ସଭିଙ୍କ ଅବସ୍ଥା ।
ଅନ୍ୟ କିଏ କହେ ଶିବ ଧନୁ ସୁକଠୋର,
ଏ ଶ୍ୟାମଳ ସୁକୁମାର ବୟସ କିଶୋର । ୧୨୨୨

ସହି ସବୁ ଅସଙ୍ଗତ କଥା ଏ ଅଟଇ,
ଏହା ଶୁଣି ଅନ୍ୟ କେହି ମଧୁରେ ଭାଷଇ ।

ସଖି ତାଙ୍କୁ କେହ୍ବ କେହ୍ବ ଏପରି କହନ୍ତି,
ଦେଖିବାକୁ ଶ୍ରେଷ୍ଠ ସିନା ପ୍ରତାପୀ ଅଟନ୍ତି । ୧୨୨୩

ଯାହାଙ୍କ ଚରଣ-ପଦ୍ମ-ରଜ ସ୍ପର୍ଶ କରି,
ପାତକୀ ଅହଲ୍ୟା ହେଲେ ଶାପୁ ଗଲ ତରି,
ସିଏ କି ରହିବେ ଶିବ ଧନୁକୁ ନ ଭାଙ୍ଗି,
ତୁମେ ଏ ବିଶ୍ବାସ ତେଜ ନାହିଁ ଗୋ ଶୁଭାଙ୍ଗୀ । ୧୨୨୪

ଜାନକୀଙ୍କୁ ଯେଉଁ ବିହି ଗଢ଼ିଛି ଯତନେ,
ସେ ବିହି ଶ୍ୟାମଳ ବର ରଚିଛି ତେସନେ ।
ତାହାର ବଚନ ଶୁଣି ହରଷେ ସମସ୍ତେ,
କହିଲେ ମଧୁର ବାଣୀ 'ହେଉ ଏହି ମନ୍ତେ ।' ୧୨୨୫

ସୁନୟନା ସୁବଦନା ନାରୀ ହୋଇ ଠୁଳ,
ଭାଇ ବେନି ଯିବା ସ୍ଥାନେ ବରଷନ୍ତି ଫୁଲ ।
ଯହିଁ ଯହିଁ ଯାଉଥାନ୍ତି ଏ ଭାଇ ଯୁଗଳ,
ତହିଁ ତହିଁ ଛୁଟିଯାଏ ଆନନ୍ଦର ଝର । ୧୨୨୬

ନଗର ପୂରୁବ ଦିଗେ ଗଲେ ବେନି ଭାଇ,
ଧନୁଯଜ୍ଞ ରଙ୍ଗଭୂମି ନିରେଖିବା ପାଇଁ ।
ବହୁ ଲମ୍ବ ଓସାରର ଉଜ୍ଜଳ ଚଟାଣ,
ସୁନ୍ଦର ବେଦୀକା ତହିଁ ହୋଇଛି ନିର୍ମାଣ । ୧୨୨୭

ରଚିତ ବିଶାଳ ସ୍ବର୍ଣ୍ଣ ମଞ୍ଚ ଚଉପାଶେ,
ନରପତି ଗଣ ତହିଁ ବସିବା ସକାଶେ ।
ତା' ପଛେ ସମୀପେ ପୁଣି ସକଳ ଦିଗରେ,
ମଣ୍ଡଳୀ ଆକାରେ ମଞ୍ଚ ନିର୍ମିତ ସେ ସ୍ଥଳେ । ୧୨୨୮

ଅଳପ ଉଚ୍ଚତା ସବୁ ପ୍ରକାରେ ସୁନ୍ଦର,
ବସିବେ ତା'ପରେ ଯେତେ ପୁରବାସୀ ନର ।
ତାହା ପାଶେ ସୁବିଶାଳ ଧବଳ ଭବନ,
ରଞ୍ଜିତ ବିବିଧ ବର୍ଣ୍ଣେ ଅତି ସୁଶୋଭନ । ୧୨୨୯

ଦେଖିବେ ଏ ପୁରନାରୀ ବସି ଯେଉଁଠାରେ,
ଯଥାଯୋଗ୍ୟ ନିଜ ନିଜ କୁଳ ଅନୁସାରେ ।
ମଧୁର ବଚନ କହି ଅଯୋଧ୍ୟା ବାଳକେ,
ପ୍ରଭୁଙ୍କୁ ଦେଖାନ୍ତି ଯଜ୍ଞ ରଚନା ପୁଲକେ । ୧୨୩୦

ଅଯୋଧ୍ୟାର ଶିଶୁମାନେ ହୋଇ ପ୍ରେମବଶ,
ଏହି ବାହାନାରେ କରି ଶ୍ରୀଅଙ୍ଗ ପରଶ ।
ଦେଖି ଦେଖି ପ୍ରୀତି ଭରେ ଏ ଭାଇ ଯୁଗଳେ,
ଲଭନ୍ତି ପୁଲକ କେତେ ହରଷ ଅନ୍ତରେ । ୧୨୩୧

ସକଳ ବାଳକେ ପ୍ରେମବଶ ଜାଣି ମନେ,
ଶ୍ରୀରାମ ପ୍ରଶଂସା କଲେ ସେ ଯଜ୍ଞ ଭବନେ ।
ନିଜ ରୁଚି ମତେ ଡାକ ନିଅନ୍ତି ସମସ୍ତେ,
ବେନି ଭାଇ ପ୍ରୀତି ଭରେ ଚଳନ୍ତି ସେ ପଥେ । ୧୨୩୨

ମୃଦୁ ମଧୁ କଥା କହି ଅନୁଜ ଲକ୍ଷ୍ମଣେ,
ଦେଖାନ୍ତି ଶ୍ରୀରାମ ଯଜ୍ଞ ରଚନା ଯତନେ ।
ଲବ ନିମିଷକେ ମଧ୍ୟେ ଅଶେଷ ଭୁବନ,
ଯା' ଆଦେଶ ଲଭି ମାୟା କରେ ବିରଚନ— । ୧୨୩୩

ସେ ଦୀନ ଦୟାଳୁ ରାମ ହୋଇ ପ୍ରେମବଶ,
ଚକିତେ ଦେଖନ୍ତି ଯଜ୍ଞଶାଳାକୁ ଅବଶ୍ୟ ।
ସବୁ କଉତୁକ ଦେଖି ଗଲେ ଗୁରୁ ପାଶେ,
ବିଳମ୍ବ ପାଇଁକି ପୁଣି ମନେ ଡର ଆସେ । ୧୨୩୪

ଯା'ର ଭୟେ ଡର ଡରି ନ ଲଭଇ ଠାବ,
ସେ ପ୍ରଭୁ ଦେଖାନ୍ତି ଡରି ଭଜନ ପ୍ରଭାବ ।
କହି ମୃଦୁ ମନୋହର ମଧୁର ବଚନ,
ବାଳକେ ଅଗତ୍ୟା ଦେଲେ ବିଦାୟ ତକ୍ଷଣ । ୧୨୩୫

ଅତି ପ୍ରେମେ ଡର ଭୟେ ସଙ୍କୋଚେ ବିନୟେ,
ମଥା କରି ନତ ଗୁରୁ ପାଦ-ପଦ୍ମ ଦ୍ୱୟେ ।

ପ୍ରଣମିଲେ, ବେନି ଭାଇ ମୁନିଙ୍କ ଆଦେଶେ,
ବସିଗଲେ ଯାଇ ମୁନିଙ୍କର ଅତି ପାଶେ । ୧୨୩୬

ରାତ୍ର ଆଗମନେ ଲଭି ମୁନିଙ୍କ ଆଦେଶ,
ସନ୍ଧ୍ୟା ବନ୍ଦନାଦି କର୍ମ ସବୁ କଲେ ଶେଷ ।
କହୁ କହୁ ଇତିହାସ ପୁରାଣ ନିକର,
ବିତିଗଲା ରଜନୀର ଦୁଇଟି ପ୍ରହର । ୧୨୩୭

ଶୟନ କରିଲେ ଚାହିଁ ମୁନିବର ଯାଇ,
ଲାଗିଗଲେ ପାଦ ଘୃପିବାରେ ବେନି ଭାଇ ।
ଯାହାଙ୍କର ଶ୍ରୀଚରଣ-ସରସିଜ ଲାଗି,
ନାନା ଜପ ଯୋଗ ଯାଗ କରନ୍ତି ବୈରାଗୀ—୧୨୩୮

ସେ ଦୁଇ ଭାଇଙ୍କୁ ପ୍ରେମ ସତେ ଅବା କିଛି,
କରାଇଲା ଗୁରୁପାଦ-ସେବା ଏଇମିତି ।
ବାରବାର ବହୁବାର ଗୁରୁଙ୍କ ଆଦେଶେ,
ଶ୍ରୀ ରଘୁନାୟକ ଗଲେ ଶୋଇବାକୁ ଶେଷେ । ୧୨୩୯

ଘୃପନ୍ତି ଚରଣ ହୃଦେ ଲଗାଇ ଲକ୍ଷ୍ମଣ,
ଲଭନ୍ତି ସଭୟେ ପ୍ରେମେ ଅତି ସୁଖ ଘନ ।
କହନ୍ତି ଥରକୁ ଥର ପ୍ରଭୁ "ଭାଇ ଶୁଅ"
ସେ ଶୋଇଲେ ହୃଦେ ଧରି ପଦ-ସରୋରୁହ । ୧୨୪୦

ପାହିଲା ରଜନୀ, ଶୁଣି କୁକ୍କୁଟର ରାବ,
ଲକ୍ଷ୍ମଣ ବିଛଣା ତେଜି ଉଠିଗଲେ ଆଗ ।
ଜଗତର ପତି ସୁଜ୍ଞ ରାମ ମହାଭାଗ,
ଗୁରୁଙ୍କ ଉଠିବା ଆଗୁ କଲେ ଶଯ୍ୟା ତ୍ୟାଗ । ୧୨୪୧

ସେମାନେ ଶୌଚାଦି କ୍ରିୟା ଅନ୍ତେ କଲେ ସ୍ନାନ,
ନିତ୍ୟ କର୍ମ ଶେଷେ କଲେ ଗୁରୁଙ୍କୁ ପ୍ରଣାମ ।
ବେଳ ଜାଣି ଗୁରୁଙ୍କର ଅନୁମତି ପାଇ;
ଫୁଲ ତୋଳିବାକୁ ଚାଲିଗଲେ ବେନି ଭାଇ । ୧୨୪୨

ଦେଖିଲେ ସେ ଯାଇ ରାଜ ଉଦ୍ୟାନ ସରସ,
ଯହିଁ ଋତୁରାଜ ରହେ ସଦା ଲୋଭ ବଶ ।
ନାନା ମନୋହର ବୃକ୍ଷ ଲାଗିଅଛି ତହିଁ,
ନାନା ବର୍ଣ୍ଣ ରଙ୍ଗ ଲତା ବିତାନ ଶୋଭଇ । ୧୨୪୩

ନବ କିଶଳୟ ଫଳ ପୁଷ୍ପେ ସୁଶୋଭିତ—
ବୃକ୍ଷରାଜ ସୁର ତରୁ କରନ୍ତି ଲଜ୍ଜିତ ।
କୋଇଲ ଚାତକ ଶୁଆ ଚକୋର ଚକୋରୀ
କଳରବ କରୁଥାନ୍ତି, ନାଚନ୍ତି ମୟୂରୀ । ୧୨୪୪

ସେ ଉଦ୍ୟାନ ମଧ୍ୟ ଭାଗେ ସରସୀ ସୁନ୍ଦର,
ମଣିର ସୋପାନ ତହିଁ ଅତି ମନୋହର ।
ନିର୍ମଳ ଜଳେ ନାନା ବିକଚ କମଳ,
ଜଳଚର ପକ୍ଷୀ କଳ କୂଜନେ ମୁଖର ।
ଭ୍ରମରମାନଙ୍କ ତହିଁ ମଧୁ ଗୁଞ୍ଜରଣ,
ଅପୂର୍ବ ଶୋଭାରେ କରେ ମନ ବିମୋହନ । ୧୨୪୫

ଉଦ୍ୟାନ ସରସୀ ଦେଖି ପ୍ରଭୁ ରାମଚନ୍ଦ୍ର,
ଅନୁଜ ଲକ୍ଷ୍ମଣ ସାଥେ ଲଭିଲେ ଆନନ୍ଦ ।
ବାସ୍ତବିକ ଉପବନ ଆରାମ ଦାୟକ,
ଲଭନ୍ତି ଆନନ୍ଦ ଏଥି ଶ୍ରୀରଘୁନାୟକ । ୧୨୪୬

ଚଉଦିଗେ ଚାହିଁ ପୁଣି ମାଳୀଙ୍କୁ ପଚାରି,
ଆନନ୍ଦେ ତୋଳନ୍ତି ପତ୍ର ପୁଷ୍ପ ଦଣ୍ଡଧାରୀ ।
ଏହି ସମୟରେ ସୀତା ଆସିଲେ ସେଠାକୁ,
ଜନନୀ ପଠାଇଥିଲେ ଗୌରୀ ପୂଜିବାକୁ । ୧୨୪୭

ସଙ୍ଗେ ସଖୀ ବୃନ୍ଦ, ସର୍ବେ ଚତୁରୀ ସୁନ୍ଦରୀ,
ଗାଆନ୍ତି ସେ ଗୀତ କରି ମଧୁର ଲହରୀ ।
ଗଉରୀ ମନ୍ଦିର ଶୋଭେ ସରୋବର ତୀରେ,
ବର୍ଣ୍ଣି ନ ହୁଅଇ, ମନ ମୋହଇ ଦେଖିଲେ । ୧୨୪୮

ସଖୀଙ୍କ ସଙ୍ଗରେ ସୀତା ସ୍ନାନ କରି ସରେ,
ଗଉରୀ ମନ୍ଦିରେ ଗଲେ ପ୍ରସନ୍ନ ମନରେ ।
ପୂଜା ଅରଚନା କରି ଅନୁରାଗେ ଅତି,
ଯାଚଞ୍ଚା କରିଲେ ନିଜ ଅନୁରୂପ ପତି । ୧୨୪୯

ସଖୀ ଏକ ସୀତା ସଙ୍ଗ ପରିହରି ପଥେ,
ପଛେ ଥିଲା ଫୁଲ ବାଡ଼ି ଦେଖିବା ନିମନ୍ତେ ।
ସେହି ତ ଉଦ୍ୟାନେ ବେନି ଭାଇଙ୍କୁ ଦେଖିଲା,
ପ୍ରେମ ବଶେ ସୀତା ପାଶେ ଲେଉଟି ଆସିଲା । ୧୨୫୦

ଦେଖିଲେ ତା'ର ଏ ଦଶା ଅନ୍ୟ ସଖୀଗଣ,
ପୁଲକିତ ଅପଘନ ନେତ୍ରେ ଜଳ କ'ଣ ।
ମଧୁର ବଚନେ ସର୍ବେ ପଚାରିଲେ, "ସହି,
ହରଷ କାରଣ ତୋର ଆଲୋ ଦିଅ କହି ।" ୧୨୫୧

ଉଦ୍ୟାନ ଦର୍ଶନେ ବେନି କୁମର ଆଗତ,
କିଶୋର ବୟସ ସବୁମତେ ଶୋଭାମନ୍ତ ।
ଶ୍ୟାମଳ ଗଉର ବେନି କହିବି କେମନ୍ତେ,
ବାଣୀ ନେତ୍ର ହୀନ, ନେତ୍ର ମୂକତ ଜଗତେ । ୧୨୫୨

ଚତୁରୀ ସଖୀଏ ଶୁଣି ହୋଇଲେ ପ୍ରସନ୍ନ,
ଜାଣିଲେ ଜାନକୀ ହୃଦେ ଉତ୍କଣ୍ଠା ଉତ୍ପନ୍ନ ।
କେ କହଇ ସେ ତ ରାଜପୁତ୍ର ଆଲୋ ଆଳି,
ମୁନିଙ୍କ ସଙ୍ଗରେ ପରା ଆସିଛନ୍ତି କାଲି । ୧୨୫୩

ସ୍ୱରୂପ ଲାବଣ୍ୟେ ଯେହୁ ମୋହିନୀ ବିସ୍ତାରି,
ବଶୀଭୂତ କରିଛନ୍ତି ପୁର ନର ନାରୀ ।
ତାଙ୍କ ଛବି ଯହିଁ ତହିଁ ହୁଏ ଆଲୋଚିତ,
ସେ ଦର୍ଶନ ଯୋଗ୍ୟ, ତାଙ୍କୁ ଦେଖିବା ଉଚିତ । ୧୨୫୪

ସୀତାଙ୍କୁ ଲାଗିଲା ଭଲ ତାହାର ବଚନ,
ଦେଖିବା ପାଇଁକି ନେତ୍ର ହେଲା ଛନ୍ନ ଛନ୍ନ ।

ସେ ପ୍ରିୟସଖୀକି ରଖି ଆଗରେ ଚାଲନ୍ତି,
ପୁରୁଣା ପ୍ରୀତିକି କେହି ମନେ ନ ରଖନ୍ତି । ୧୨୫୫

ନାରଦଙ୍କ କଥା ଭାବି ଜାନକୀଙ୍କ ମନେ,
ପବିତ୍ର ପୀରତି ଜାତ ହୃଦେ ସଂଗୋପନେ ।
ଚକିତେ ଚାହାନ୍ତି ଚଉଦିଗେ ବାର ବାର,
ଅତି ଭୟଭୀତ ଶିଶୁ ହରିଣୀ ପ୍ରକାର । ୧୨୫୬

କଙ୍କଣ କିଙ୍କିଣୀ ଆଉ ନୂପୁର ନିଃସ୍ୱନ,
ଶୁଣି ରାମ, ହୃଦେ ଗୁଣି କହିଲେ, "ଲକ୍ଷ୍ମଣ,
କନ୍ଦର୍ପ ଦୁନ୍ଦୁଭି ବାଜା ବଜାଇ ଯେସନେ,
ଆସୁଛି କି ଅବା ବିଶ୍ୱ ବିଜୟ କାରଣେ ।" ୧୨୫୭

ଏହା କହି ଅନାଇଲେ ଫେରି ସେହି ପଥେ,
ସୀତା ମୁଖ-ଶଶି, ନେତ୍ର ଚକୋର କି ସତେ ।
ରୁଚିର ଲୋଚନ ହୋଇଗଲା ଅଚଞ୍ଚଳ,
ତେଜିଲେ ସଙ୍କୋଚ ଅବା ନିମି ନେତ୍ରାଞ୍ଚଳ । ୧୨୫୮

ଦେଖି ସୀତାଙ୍କର ଶୋଭା ସୁଖୀ ହେଲେ ଅତି,
ନ ସ୍ଫୁରେ ବଚନ, ହୃଦେ ପ୍ରଶଂସା କରନ୍ତି ।
ସବୁ ନୈପୁଣ୍ୟକୁ ଯେହ୍ନେ ଏହିଠାରେ ଖଟି,
ପ୍ରକାଶେ ଦେଖାଇ ଦେଇ ଅଛନ୍ତି ବିରଞ୍ଚି । ୧୨୫୯

ସୁନ୍ଦରତାକୁ ଏ ଶୋଭା ସୁନ୍ଦର କରଇ,
ଛବି ଗୃହେ ଦୀପ ଶିଖା ଯେସନେ ଜଳଇ ।
ଉପମା ଯେତେକ କବି ଅଇଁଠା ସକଳ,
ଜନକ-ସୁତାଙ୍କ ପାଇଁ ନାହିଁ ପଟାନ୍ତର । ୧୨୬୦

ଜାନକୀ-ସୁଷମା ହୃଦେ କରି ପରଶଂସା,
ବିଚାରି ମନରେ ପୁଣି ଆପଣାର ଦଶା ।

---

ନିମି = ଦଶରଥଙ୍କର ପୂର୍ବ ପୁରୁଷ ଇକ୍ଷ୍ୱାକୁ ରାଜପୁତ୍ର ନିମି ବଶିଷ୍ଠଙ୍କ ଅଭିଶାପରେ ନିଜର ଦେହକୁ ହରାଇ ଥିଲେ । ପରେ ଦେବତାମାନଙ୍କ ବରରେ ସେ ସବୁ ଜୀବଙ୍କର ଆଖିର ପଲକରେ ରହିଲେ; ଏଥିପାଇଁ ଆଖିର ପଲକର ନାମ ନିମିଷ ।

କହିଲେ ଶ୍ରୀରାମ ହୋଇ ପରବଶିତ ମନ,
ଭାଇକୁ ସମୟୋଚିତ ମଧୁର ବଚନ । ୧୨୬୧

"ଭାଇରେ ଏହି ତ ସେହି ଜନକ କୁମାରୀ,
ଯାହାଙ୍କ ସକାଶେ ଧନୁ ଯଜ୍ଞ ହେବ କାଲି ।
ଗୌରୀ ପୂଜା ପାଇଁ ତାଙ୍କୁ ସଖୀ ଆଣିଛନ୍ତି,
ଉଦ୍ୟାନ ଉଜ୍ଜ୍ୱଳ କରି ସେ ଏଥି ବୁଲନ୍ତି । ୧୨୬୨

ଅଲୌକିକ ଶୋଭା ତାଙ୍କ ନିରେଖି ନୟନେ,
ସହଜ ପବିତ୍ର ମନ ଚହଲଇ କ୍ଷଣେ ।
ବିଧାତା ଜାଣନ୍ତି ସିନା ତାହାର କାରଣ,
ମୋ ଡାହାଣ ଅଙ୍ଗ ଭାଇ ହୁଅଇ ସ୍ଫୁରଣ । ୧୨୬୩

ରଘୁବଂଶୀଙ୍କର ଏ'ତ ସହଜ ସ୍ୱଭାବ,
ମନରେ ବି କୁପଥରେ ନ ପକାନ୍ତି ପାଦ ।
ମନ ପରେ ମୋର ଭାଇ ବିଶ୍ୱାସ ଏସନ,
ସପନେ ଯେ ପର ନାରୀ ନ କରେ ଦର୍ଶନ । ୧୨୬୪

ରଣେ ଶତ୍ରୁ ଯାହାଙ୍କର ପିଠି ନ ଦେଖନ୍ତି,
ପରସ୍ତ୍ରୀ ଯା' ମନ ଦୃଷ୍ଟି ଟାଣି ନ ପାରନ୍ତି ।
ନ ଶୁଣଇ 'ନାହିଁ' ପଦ ଯା'ଠାରୁ ଭିକାରୀ
ସେପରି ଥାଆନ୍ତି ଅଳ୍ପ ଭବେ ଦଣ୍ଡଧାରୀ ।" ୧୨୬୫

ଏପରି ଅନୁଜ ତୁଲେ ବାର୍ତ୍ତାଳାପ କାଳେ,
ସୀତା-ରୂପ-ଲୋଭୀ ମନ କଥା ଅନ୍ତରାଳେ,
ବଦନ-ସରୋଜ ଛବି-ମକରନ୍ଦ ପାନ
କରୁଥିଲା ଅବିରତ ମଧୁପ ସମାନ । ୧୨୬୬

ଚୌଦିଗେ ଚକିତେ ସୀତା ଚୃହାନ୍ତି ସଭୟେ,
ମନେ ଚିନ୍ତା, କାହିଁ ଗଲେ ନୃପତି ତନୟେ ।
ସେ ବାଳ ମୃଗାକ୍ଷୀ ଦୃଷ୍ଟି ପଡୁଥାଏ ଯହିଁ,
ଶ୍ୱେତ-ପଦ୍ମ ଶ୍ରେଣୀ ସତେ ବିରାଜଇ ତହିଁ । ୧୨୬୭

ସୀତାଙ୍କୁ ସଜନୀଗଣ ଲତା ଅନ୍ତରାଳେ,
ଦେଖାଇଲେ ଶ୍ୟାମ ଗୌର କିଶୋର ସେ କାଳେ ।

ନୟନ ଲାଳସା ବଢ଼େ ସେ ରୂପ ଦର୍ଶନେ,
ହରଷିତ ନିଜ ନିଧି ଚିହ୍ନିଲେ ଯେସନେ । ୧୨୬୮

ରାମ-ରୂପ-ଶୋଭା ଦେଖି ନିଶ୍ଚଳ ନୟନ,
ପଲକ ତେଜେ କି ତା'ର ସ୍ୱଭାବ ପତନ ।
ଅତି ସ୍ନେହ ବଶେ ହେଲା ଶରୀର ବିହ୍ୱଳ,
ଶରଦ-ଶଶିକୁ ଚାହିଁ କି ଅବା ଚକୋର । ୧୨୬୯

ନେତ୍ର ପଥେ ଶ୍ରୀରାମଙ୍କୁ ଆଣି ହୃଦ ପୁରେ,
ପଲକ-କବାଟ କଲ ଦେଲେ ସୁଚତୁରେ ।
ସୀତା ପ୍ରେମ ବଶୀଭୂତା-ସଖୀମାନେ ଜାଣି,
ସଙ୍କୁଚିତ ମନେ କହି ନ ପାରନ୍ତି ବାଣୀ । ୧୨୭୦

ଲତା ମଣ୍ଡପରୁ ସେହି କାଳେ ବେନି ଭାଇ,
ବାହାରି ଆସିଲେ ଗୁରୁ ଦରଶନ ପାଇଁ ।
ଯେତେ ନିରମଳ ଦୁଇ ଚନ୍ଦ୍ରମା ସୁନ୍ଦର,
ମେଘର ପରଦା ଚିରି ଉଭା ଧରା ତଳ । ୧୨୭୧

ଶୋଭା ସୀମା ବେନି ଭାଇ ବୀର ମନୋହର,
ନୀଳ ପୀତ ସରସିଜ ଆଭା କଳେବର ।
ରୁଚିର ମୟୂର ପୁଚ୍ଛ ଶୋଭା ପାଏ ଶିରେ,
କୁସୁମ କଳିକା ଗୁଚ୍ଛ ମଝିରେ ମଝିରେ । ୧୨୭୨

ଲଲାଟେ ତିଳକ ଶ୍ରମ ବିନ୍ଦୁ ସୁଶୋଭିତ,
ସୁନ୍ଦର ଶ୍ରବଣ ଚାରୁ ଭୂଷଣେ ଭୂଷିତ ।
କୁଟିଳ ଭ୍ରୂଲତା, କେଶ କୁଞ୍ଚିତ କୋମଳ,
ନୟନ ଯେସନେ ନବ ଅରୁଣ କମଳ । ୧୨୭୩

ନାସିକା ଚିବୁକ ଚାରୁ କପୋଳ ଶୋଭଇ,
ହାସର ବିଳାସେ ମନ ମୋହିତ ହୁଅଇ,
ମୋ ଦ୍ୱାରା ବଦନ ଶୋଭା ନୁହଇ ବର୍ଣ୍ଣିତ,
ଯା' ଛବି ନିରେଖି ବହୁ ମଦନ ଲଜ୍ଜିତ । ୧୨୭୪

ବକ୍ଷେ ମଣିହାର କମ୍ବୁ ଗ୍ରୀବା ମନୋହର,
ବାହୁ ବଳ ସୀମା, କାମ-କଣ୍ଠ-ଶିଶୁ କର ।
ପୁଷ୍ପ ଚଙ୍ଗପଣୀ ଯାର ବାମ କରେ ସହି,
ଶ୍ୟାମଳ କିଶୋର ବଡ଼ ସୁନ୍ଦର ଦିଶଇ । ୧୨୭୫

ସିଂହକଟି ପୀତବାସ ସୁଷମା ସଦନ,
ଭାନୁ କୁଳ ଭୂଷଣ ସେ ଶୀଳ ନିକେତନ ।
ତାହାଙ୍କୁ ନିରେଖି ଦୁହୁଁ ସହଚରୀଗଣ,
ନିଜକୁ ଭୁଲିଲେ କ୍ଷଣେ ବିମୁଗ୍ଧ ଲୋଚନ । ୧୨୭୬

ସୁଚତୁରୀ ସଖୀ ଏକ ଦମ୍ଭ ଧରି ମନେ,
ସୀତା କର ଧରି କରେ କହଇ ଯତନେ—
"ପଛେ ଗଉରୀଙ୍କୁ ଧ୍ୟାନ କରିବୁ ଲୋ ସହି,
ଏବେ ରାଜପୁତ୍ରେ କ୍ଷଣେ ଦେଖି ନିଅ ରହି । ୧୨୭୭

ନୟନ ମେଲେଇ ତହୁଁ ସୀତା ସଙ୍କୋଚରେ,
ରଘୁବଂଶ ସିଂହ ବେନି ଦେଖିଲେ ଆଗରେ ।
ଆପାଦ ମସ୍ତକ ରାମ ଶୋଭା ଦେଖି ସୀତା,
ପିତାଙ୍କର ପଣ ସ୍ମରି ହୃଦେ କଲେ ଚିନ୍ତା । ୧୨୭୮

ସୀତା ପରବଶ ବୋଲି ସଖୀଗଣ ଜାଣି,
କହିଲେ ସରବେ ଭୟେ, "ଡେରି ହେଲାଣି ।
ଆସିବା ଲୋ କାଲି ପୁଣି ଏହି ସମୟରେ ।"
ଏହା କହି ସଖୀ ଏକ ହସିଲା ମନରେ । ୧୨୭୯

ଏ ରହସ୍ୟ କଥା ଶୁଣି ସୀତା ସଙ୍କୋଚରେ,
ବିଳମ୍ବ ହେବାରୁ ଏତେ ମାତାଙ୍କର ଡରେ,
ଧୈର୍ଯ୍ୟ ସହକାରେ ହୃଦେ ଶ୍ରୀରାମଙ୍କୁ ଧରି,
ଲେଉଟିଲେ ନିଜେ ପିତା ଅଧୀନ ସୁମରି । ୧୨୮୦

ଖଗ ମୃଗ ତରୁ ଆଦି ଦେଖିବା ଛଳରେ,
ବାର ବାର ପଛେ ବୁଲି ଦେଖନ୍ତି ଆଦରେ ।

ଜନକ ନନ୍ଦିନୀ ରାମ ରୂପ ସୁଶୋଭନ,
ଯେତେ ଦେଖୁଥିଲେ ସେତେ ପ୍ରୀତି ହୁଏ ଘନ । ୧୨୮୧

ଶିବଧନୁ ସୁକଠିନ—ଚିନ୍ତା ସେଥି ପାଇଁ,
ବାହୁଡ଼ିଲେ ସେ ଶ୍ୟାମଳ ରୂପ ହୃଦେ ଧ୍ୟାୟି ।
ଶ୍ରୀରାମ ଦେଖିଲେ ଯେବେ ଯାଉଛନ୍ତି ସୀତା,
ସୁଖ-ସ୍ନେହ-ଗୁଣ-ଶୀଳ-ଶୋଭା ନିବେଦିତା, ୧୨୮୨

ତେବେ ସେ ପ୍ରୀତିକୁ କରି ମୃଦୁଳ ଅଞ୍ଜନ,
ଚିତ୍ତ ପଟେ କଲେ ସୀତା ପ୍ରତିମା ଅଙ୍କନ ।
ଜାନକୀ ଆସିଲେ ପୁଣି ଗିରିଜା ମନ୍ଦିରେ,
ପଦ ବନ୍ଦି ଯୋଡ଼ି କରି କହିଲେ ସଧୀରେ—୧୨୮୩

"ଜୟ ଜୟ ଜୟ ମାଗୋ ଗିରିରାଜ-କୁମାରୀ,
ଜୟ ମହେଶ୍ୱର-ମୁଖ-ଚନ୍ଦ୍ରମା-ଚକୋରୀ ।
ଜୟ ଗଜାନନ ଷଡ଼ ବଦନ ଜନନୀ,
ଜଗତ ଜନନୀ ଜୟ ବିଦ୍ୟୁତ ବରଣୀ । ୧୨୮୪

ନାହିଁ ତୋର ଆଦି ଅନ୍ତ ମଧ୍ୟ ଆଗୋ ମାତ,
ଅମିତ ପ୍ରଭାବ ତୋର ବେଦକୁ ଅଜ୍ଞାତ ।
ଏ ସଂସାର ସୃଷ୍ଟି ସ୍ଥିତି ସଂହାର କାରିଣୀ,
ବିଶ୍ୱ ବିମୋହିନୀ ନିଜ ଇଚ୍ଛା-ବିହାରିଣୀ । ୧୨୮୫

ପତିବ୍ରତା ନାରୀ ମଧ୍ୟେ ମାତା ତୁ ପ୍ରଥମ,
ସଂସାରେ ସୁନାରୀ ଆଉ ନାହିଁ ତୋହ ସମ ।
ଅପାର ମହିମା ତୋର କହି ନ ପାରନ୍ତି
ସହସ୍ର ସହସ୍ର ଶେଷ ବେଦ ସରସ୍ୱତୀ । ୧୨୮୬

ତୋତେ ସେବା କଲେ ଲଭ ହୁଏ ଫଳ ଚାରି,
ତୁହି ତ ବରଦା ଶିବ-ପ୍ରିୟତମା ନାରୀ ।
ଦେବୀ ଆଗୋ ପାଦ-ପଦ୍ମ ପୂଜିଲେ ତୋହର,
ହୁଅନ୍ତି ସନ୍ତୋଷ ଯେତେ ସୁର ମୁନି ନର । ୧୨୮୭

ସନ୍ତଙ୍କ ହୃଦୟ ପୁରେ ସଦା କରୁ ବାସ,
ତେଣୁ ଭଲ ରୂପେ ଜାଣୁ ମୋର ଅଭିଳାଷ ।
ସେହି କାରଣରୁ ମୁହିଁ ପ୍ରକାଶ ନ କରେ ।"
କହି ବଇଦେହୀ ପଡ଼ିଗଲେ ତା' ପୟରେ । ୧୨୮୮

ସୀତାଙ୍କ ବିନୟ ପ୍ରେମେ ବିବଶ ଭବାନୀ,
ମାଳା ଗଲ ଖସି, ମୂର୍ତ୍ତି ହସିଲ କି ଜାଣି ।
ଆଦରେ ପ୍ରସାଦ ସୀତା ବାନ୍ଧିଲେ ମସ୍ତକେ,
ଗଉରୀ କହିଲେ କଥା ହୃଦୟ ପୁଲକେ । ୧୨୮୯

"ହେ ସୀତା ମୋହର ସତ୍ୟ ଆଶୀର୍ବାଦ ଶୁଣ,
ଅଚିରେ ତୁମ୍ଭର ମନ ବାଞ୍ଛା ହେବ ପୂର୍ଣ୍ଣ ।
ନାରଦଙ୍କ ବାକ୍ୟ ସଦା ପୂତ ଅସଂଶୟ,
ଯହିଁ ମନ ସେହି ବର ମିଳିବ ନିଶ୍ଚୟ । ୧୨୯୦

ଯାହାଠାରେ ମନ ତୋର ହୋଇଛି ଆସକ୍ତ,
ସେହି ସୁଶ୍ୟାମଳ ବର ହୋଇବୁ ପ୍ରାପତ ।
ସେହି ତ ସର୍ବଜ୍ଞ ପୁଣି କରୁଣାନିଧାନ,
ତୋ ସ୍ନେହ ସ୍ୱଭାବ ତାଙ୍କୁ ଜଣା ବୋଲି ଜାଣ ।" ୧୨୯୧

ଦେବୀ ଆଶୀର୍ବାଦ ଲଭି ଏସନ ଭାବରେ,
ଖୁସି ହେଲେ ସୀତା ସଖୀମାନଙ୍କ ସଙ୍ଗରେ ।
ଭବାନୀଙ୍କି ପୂଜା କରି ସୀତା ବାରମ୍ବାର,
ଭବନେ ଫେରିଲେ ସଙ୍ଗେ ଘେନି ସଖୀବାର । ୧୨୯୨

ଗୌରୀ ଅନୁକୂଳ ଜାଣି ସୀତାଙ୍କ ହରଷ,
ଏ ସ ହରଷ କେବେ କହି ନୁହଇ ଅବଶ୍ୟ ।
ମଞ୍ଜୁଳ ମଙ୍ଗଳ ମୂଳ ଆନନ୍ଦ କାରଣ,
ଘନ ଘନ ବାମ ଅଙ୍ଗେ ହୋଇଲା ସ୍ଫୁରଣ । ୧୨୯୩

ହୃଦୟେ ପ୍ରଶଂସି ବହୁ ସୀତା ଶୋଭା ରାଶି,
ବେନି ଭାଇ ପହଞ୍ଚିଲେ ଗୁରୁପାଶେ ଆସି ।

କୌଶିକଙ୍କ ଆଗେ ରାମ କହିଲେ ସକଳ,
ସେ ମନେ ନ ଥିଲା ଛଳ, ସ୍ୱଭାବ ସରଳ । ୧୨୯୪

ବହୁବିଧ ଫୁଲ ପାଇ ପୂଜା କଲେ ମୁନି,
ଆଶୀର୍ବାଦ କଲେ ବେନି ଭାଇଙ୍କୁ ସେ ପୁଣି ।
ସବୁ ମନୋରଥ ତବ ପୂର୍ଣ୍ଣ ହେଉ ବତ୍ସ,
ଶ୍ରୀରାମ ଲକ୍ଷ୍ମଣ ଶୁଣି ହୋଇଲେ ହରଷ । ୧୨୯୫

ମଧ୍ୟାହ୍ନ ଭୋଜନ ଶେଷେ ମୁନୀଶ ବିଜ୍ଞାନୀ,
ଶୁଣାଇଲେ ବସି କିଛି ପୁରୁଣା କାହାଣୀ ।
ଦିବସ ଶେଷରେ ଗୁରୁ ଅନୁମତି ପାଇ,
ସଂଧ୍ୟା କରିବାକୁ ଚଳିଗଲେ ବେନି ଭାଇ । ୧୨୯୬

ତେଣେ ପୂର୍ବ ଦିଗେ ଉଦେ ଇନ୍ଦୁ ମନୋରମ,
ଦେଖି ପ୍ରଭୁ ସୁଖୀ ଯେଣୁ ସୀତା ମୁଖସମ ।
ବିଚାର କରିଲେ ପୁଣି କେତେ ମନେ ମନେ,
ସୀତା ମୁଖ ସମ ଶଶି ହୋଇବ କେସନେ ? ୧୨୯୭

ସାଗରୁ ଜନମ ଯେଣୁ ବିଷ ତା'ର ଭାଇ,
ଦିବସେ ମଳିନ ଅଙ୍ଗେ କଳଙ୍କର ଛାଇ ।
ବିଚରା ଚନ୍ଦ୍ରମା ନୁହେଁ ସୀତା ମୁଖ ସମ,
ସୀତା ମୁଖ ଅକଳଙ୍କ ଶୋଭା ଅନୁପମ । ୧୨୯୮

ବିରହିଣୀ ଦୁଃଖଦାୟୀ ବଢ଼ଇ ଛୁଡ଼ଇ,
ବେଳ କାଳ ଉଣ୍ଡି ରାହୁ ଏହାକୁ ଗ୍ରାସଇ ।
ଚକ୍ରବାକେ ଦିଏ ଦୁଃଖ, କମଳ ବଇରି,
ବହୁ ବହୁ ଅବଗୁଣ ଚନ୍ଦ୍ରମା ତୋହରି । ୧୨୯୯

ବୈଦେହୀ ବଦନ ସଙ୍ଗେ ଦେଇ ଦୃଷ୍ଟାନ୍ତର,
ହେଲା ଦୋଷୀ, ଅନୁଚିତ କର୍ମ ଏ ମୋହର ।
ଶଶି ଛଳେ ସୀତା ମୁଖ ସୁଷମା ବଖାଣି,
ଗୁରୁ ପାଶେ ଗଲେ ବହୁରାତି ହେଲା ଜାଣି । ୧୩୦୦

ମୁନି ପାଦ-ପଦ୍ମେ କରି ସଭକ୍ତି ପ୍ରଣାମ,
ଅନୁମତି ନେଇ କଲେ ଶ୍ରୀରାମ ବିଶ୍ରାମ ।
ରାତ୍ରି ଶେଷେ ଶଯ୍ୟାତ୍ୟାଗ କରି ରଘୁପତି,
ଲକ୍ଷ୍ମଣଙ୍କ ପାଶେ ଯାଇ ଏ କଥା କହନ୍ତି—୧୩୦୧

ଉଦୟ ହେଲେଣି ଭାନୁ ଗୃହଁା ଆରେ ଭାଇ,
ଭୂଲୋକ, କମଳ ଚକ୍ରବାକ ସୁଖଦାୟୀ ।
କହିଲେ ସୁମିତ୍ରାସୁତ ଯୋଡ଼ି ବେନି ପାଣି,
ପ୍ରଭୁଙ୍କ ମହିମାଯୁକ୍ତ ସୁମଧୁର ବାଣୀ । ୧୩୦୨

କୁମୁଦ ଅରୁଣୋଦୟେ ଯେସନେ ମୁଦ୍ରିତ,
ଗଗନେ ତାରକାରାଜି ନଷ୍ଟ୍ରଭ ସ୍ତିମିତ ।
ତୁମ ଆଗମନ ବାର୍ତ୍ତା ପାଇ ସେହିପରି,
ଭୟେ ବଳହୀନ ହେଲେ ରାଜନ୍ୟ ମଣ୍ଡଳୀ । ୧୩୦୩

ନୃପ ତାରାଙ୍କର ମନ୍ଦ ପ୍ରକାଶ ଅବଶ୍ୟ,
ହେଲେ ଧନୁ-ଅମା କରି ନ ପାରିବେ ଧ୍ୱଂସ ।
ବନ୍ଧୁ ପକ୍ଷୀ ଚକ୍ରବାକ ମଧୁପ କମଳ,
ନିଶା ଅବସାନେ ସୁଖୀ ହୋଇବେ କେବଳ । ୧୩୦୪

ଏପରି ହେ ପ୍ରଭୁ ଯେତେ ଭକତ ତୁମର,
ଏ ଧନୁ ଭଙ୍ଗରେ ହେବେ ସନ୍ତୋଷ ସକଳ ।
ସୂର୍ଯ୍ୟୋଦୟେ ବିନା ଶ୍ରମେ ହେଲା ତମ ନାଶ,
ଲୁଚିଲେ ନକ୍ଷତ୍ର ତେଜେ ଜଗତ ପ୍ରକାଶ । ୧୩୦୫

ରଘୁରାଜ-ରବି ନିଜ ଉଦୟ ଛଳରେ,
ପ୍ରତାପ ଦେଖାଇଛନ୍ତି ନୃପଙ୍କ ଆଗରେ ।
ପ୍ରକଟ କରିବା ପାଇଁ ତୁମ ବାହୁବଳ,
ବିରଚିତ ଏଇ ଧନୁ ଯଜ୍ଞ କଉଶଳ । ୧୩୦୬

ଭାଇ କଥା ଶୁଣି ପ୍ରଭୁ ହସିଲେ ମୁରୁକି,
ସହଜ ପାବନ, ସ୍ନାନ କରି ହେଲେ ଶୁଚି ।

ନିତ୍ୟକର୍ମ ଶେଷେ ଆସି ଗୁରୁଙ୍କର ଆଗେ,
ପାଦ-ପଦ୍ମେ ପ୍ରଣିପାତ କଲେ ଅନୁରାଗେ । ୧୩୦୭

ତା'ପରେ ଜନକ ଡାକ ମନ୍ତ୍ରୀ ଶତାନନ୍ଦେ,
ପଠାଇଲେ ମୁନୀଶଙ୍କ ପାଖକୁ ଆନନ୍ଦେ ।
ଶତାନନ୍ଦ ଜଣାଇଲେ ନୃପ-ନିବେଦନ,
ହରଷେ ଡାକଲେ ମୁନି ସେ ବେନି ନନ୍ଦନ । ୧୩୦୮

ଶତାନନ୍ଦଙ୍କର ପଦ ବନ୍ଦି ରଘୁବର,
ଗୁରୁ ସନ୍ନିଧାନେ ଯାଇ ବସିଲେ ସତ୍ୱର ।
ମୁନୀଶ କହିଲେ, "ଶୁଣ ମୋର ବାପାମାନେ,
ଜନକ ଡକାଇଛନ୍ତି ଆମ୍ଭଙ୍କୁ ସେ ସ୍ଥାନେ । ୧୩୦୯

ମାସ ପାରାୟଣ, ଅଷ୍ଟମ ବିଶ୍ରାମ
ନବାହ୍ନ ପାରାୟଣ, ଦ୍ୱିତୀୟ ବିଶ୍ରାମ ।

## ନଅ

ଦେଖିବା ସେଠାରେ ଯାଇ ସୀତା ସ୍ୱୟଂବର,
କାହାକୁ ଈଶ୍ୱର ଦେବେ ବଡ଼ିମାର ଫଳ ।"
ଲକ୍ଷ୍ମଣ କହିଲେ, "ଦେବ ସେ ହେବ ଯଶସ୍ୱୀ,
ତୁମେ ଦେବ କୃପା ଦୃଷ୍ଟି ଯା'ପରେ ବରଷି ।" ୧୩୧୦

ଏହିମଧ୍ୟେ ଶୁଣିଲେ ପ୍ରିୟ ବାଣୀ ମୁନିବୃନ୍ଦେ,
ଆଶୀର୍ବାଦ ଦେଲେ ଅତି ସୁଖ ଲଭି ହୃଦେ ।
ସମସ୍ତ ମୁନିଙ୍କ ସାଥେ ତହୁଁ କୃପାକର,
ଧନୁ ଯଜ୍ଞ ଦେଖିବାକୁ ଚଳିଲେ ସତ୍ୱର । ୧୩୧୧

ଏ ରଙ୍ଗଭୂମିକି ଆସୁଛନ୍ତି ବେନି ଭାଇ,
ପୁରବାସୀ ସବୁ ଏହି ସମାଚାର ପାଇ,
ଗଲେ ନିଜ ନିଜ ଗୃହ ଜଞ୍ଜାଳ ପାଶୋରି,
ନର ନାରୀ ବାଳ ବୃଦ୍ଧ କିଶୋର କିଶୋରୀ । ୧୩୧୨

ବହୁ ଜନ ସମାଗମ ନିରେଖି ଜନକ,
ଡକାଇ ତାଙ୍କର ଯେତେ ବିଶ୍ୱସ୍ତ ସେବକ,
କହିଲେ ଚଞ୍ଚଳ ଯାଇ ଲୋକଙ୍କର ପାଶେ,
ଉଚିତ ଆସନ ଦିଅ ବସିବା ସକାଶେ । ୧୩୧୩

ମୃଦୁ ବାଣୀ କହି ହୋଇ ବିନୟାବନତ,
ବସାଇଲେ ନର ନାରୀ ଯେତେ ସମାଗତ ।
ଉତ୍ତମ ମଧ୍ୟମ ନୀଚ ଅବା କ୍ଷୁଦ୍ର ଜନ,
ସଭିଙ୍କୁ ସେବକେ ଦେଲେ ଉଚିତ ଆସନ । ୧୩୧୪

ସେହିକାଳେ ନୃପସୁତ ବେନି ଉପସ୍ଥିତ,
ସୌନ୍ଦର୍ଯ୍ୟ ଯେସନେ ସେହି ଅଙ୍ଗେ ଆଚ୍ଛାଦିତ ।
ଗୁଣର ସାଗର ସେ ତ ପ୍ରବୀର ନାଗର,
ସୁକୁମାର ତନୁ ଶୋଭା ଗଉର ଶ୍ୟାମଳ । ୧୩୧୫

ନୃପତି ସମାଜେ ସେନ୍ତ ଶୋଭନ୍ତି ଏପରି,
ତାରାଗଣ ମଧ୍ୟେ ବେନି ପୂର୍ଣ୍ଣେନ୍ଦୁ ଯେପରି ।
ଯାହାଙ୍କ ମନରେ ଥିଲା ଯେପରି ଭାବନା,
ସେପରି ସେ ପ୍ରଭୁ ରୂପ କଲେ କଳପନା । ୧୩୧୬

ଦେଖନ୍ତି ତାହାଙ୍କୁ ଯେବେ ରଣଧୀର ନୃପେ,
ଲଗେ ତାଙ୍କୁ ବୀର-ରସ ମୂର୍ତ୍ତି କି ସ୍ୱରୂପେ ।
କୁଟିଳ ନୃପତି ଦେଖି ପ୍ରଭୁଙ୍କୁ ଡରନ୍ତି,
ତାଙ୍କୁ ଦୃଶ୍ୟ ହୁଏ ରୂପ ଭୟଙ୍କର ଅତି । ୧୩୧୭

ଛଳ ନୃପ ବେଶେ ଯେତେ ରାକ୍ଷସ ଅଧମ,
ଦିଶନ୍ତି ତାହାଙ୍କୁ ପ୍ରଭୁ ଯେହ୍ନେ କାଳ ସମ ।
ଦିଶନ୍ତି ଏ ବେନି ଭାଇ ପୁରବାସୀ ଜନେ,
ନେତ୍ର-ସୁଖକର ନରଭୂଷଣ ଯେସନେ । ୧୩୧୮

ନାରୀଗଣ ନିଜ ନିଜ ରୁଚି ଅନୁସାରେ,
ହରଷେ ଦେଖନ୍ତି ତହିଁ ସେ ବେନି କୁମାରେ ।
'ଶୃଙ୍ଗାର ରସ' କି ସତେ ଧରି କଳେବର,
ଅନୁପମ ଶୋଭାପାଏ ଧନୁ ଯଜ୍ଞ ସ୍ଥଳ । ୧୩୧୯

ଜ୍ଞାନୀଏ ବିରାଟ ରୂପ କଲେ ଦରଶନ,
ବହୁ ମୁଖ ହସ୍ତ ପଦ ମସ୍ତକ ନୟନ ।
ଜନକଙ୍କ ବନ୍ଧୁଜନେ ଦିଶନ୍ତି ରାଘବ,
ଯେସନେ ଆତ୍ମୀୟଜନ ସୁହୃଦ ବାନ୍ଧବ । ୧୩୨୦

ବିଦେହରାଜନ ସାଥେ ନିରେଖନ୍ତି ରାଣୀ,
ଶିଶୁ ସମ ଶ୍ରୀରାମଙ୍କୁ ନ ହୁଏ ବଖାଣି ।

ମହା ତତ୍ତ୍ୱମୟ ହେଲ ଯୋଗୀଙ୍କୁ ଆଭାସ,
ଶୁଦ୍ଧ ଶାନ୍ତମୟ ନିତ୍ୟ ସହଜ ପ୍ରକାଶ । ୧୩୨୧

ଇଷ୍ଟଦେବ ପ୍ରାୟେ ସଦା ସର୍ବସୁଖଦାୟୀ,
ଦେଖାଯାନ୍ତି ହରି ଭକ୍ତ ଜନେ ବେନି ଭାଇ ।
ରାମଙ୍କୁ ଦେଖନ୍ତି ସୀତା ଯହିଁ ଯେ ଭାବରେ,
ସେହି ତ ଅକଥନୀୟ ସୁଖ ଅବସରେ । ୧୩୨୨

ଅନୁଭବ କଲେ ହୃଦେ ନ ପାରନ୍ତି କହି,
ତାହା ପୁଣି କେଉଁ କବି କେସନେ ଲେଖଇ ।
ଏ ପ୍ରକାରେ ଯା'ର ଯେଉଁ ଭାବ ଥିଲା ମନେ,
ଶ୍ରୀ ରଘୁ ନନ୍ଦନେ ତହିଁ ସେ ଦେଖେ ତେସନେ । ୧୩୨୩

କୋଶଳ ନୃପତିଙ୍କର ଏ ବେନି କୁମର,
ଶ୍ୟାମଳ ଗଉର ତନୁ ଅତି ମନୋହର ।
ବିଶ୍ୱ-ନେତ୍ର-ଚୋର ନୃପ ମଣ୍ଡଳୀ ସଭାରେ,
ମନୋହରେ ବିରାଜନ୍ତି ଏସନ ପ୍ରକାରେ । ୧୩୨୪

ସହଜ ସୁମନୋହର ଯୁଗଳ ମୂରତି,
କୋଟି କାମ ଉପମା ଯେ ତୁଚ୍ଛ ଲାଗେ ଅତି ।
ଶରଦ ଚନ୍ଦ୍ରମା ନିନ୍ଦି ସୁନ୍ଦର ବଦନ,
ମନ ମୁଗ୍‌ଧ ଲୁବ୍‌ଧ କରେ କମଳ-ନୟନ । ୧୩୨୫

କାମଦେବ ମନ ହରେ ଲଳିତ ଚାହାଣି,
ହୃଦୟ ବୁଝଇ ସିନା ନ ହୁଏ ବଖାଣି ।
ସୁନ୍ଦର କପୋଳ ଶ୍ରୁତି କୁଣ୍ଡଳ ଶୋଭିତ,
ରୁଚିର ଚିବୁକ ଓଠ ବଚନ ଲଳିତ । ୧୩୨୬

ହାସ ନିନ୍ଦେ ଚାରୁ ଶଶୀ ଶୀତଳ କିରଣ,
କୁଟିଳ ଭ୍ରୂଲତା ଧାର ନାସିକା ଶୋଭନ ।
ସୁବିଶାଳ ଭାଲ ପଟେ ତିଳକ ଶୋଭିତ,
କେଶ ଦେଖି ଅଳିକୁଳ ହୁଅନ୍ତି ଲଜ୍ଜିତ । ୧୩୨୭

ପୀତ ଚଉତିଆ ରତ୍ନ ଖଚିତ ପଗଡ଼ି,
ତା' ମଧ୍ୟେ ଶୋଭଇ ଖଞ୍ଜା କୁସୁମର କଳି ।
କମ୍ବୁ କଣ୍ଠେ ସୁଲଳିତ ରେଖା ସୁଶୋଭନ,
ତ୍ରିଲୋକ ସୁଷମା ସୀମା ରେଖା ବା ଯେସନ । ୧୩୨୮

ବକ୍ଷେ ଗଜ ମୋତି କଣ୍ଠିମାଳ ବିରାଜଇ,
ଲମ୍ବିଛି ତୁଳସୀ ମାଳ ସୁଲଳିତେ ତହିଁ ।
ବୃଷସ୍କନ୍ଧ, ସିଂହଠାଣି ଦିଶେ ମନୋହର,
ବେନି ସୁବିଶାଳ ବାହୁ ଅତୁଳିତ ବଳ । ୧୩୨୯

କଟିରେ ତୂଣୀର ପୀତାମ୍ବର ପରିଧାନ,
ବାମ କାନ୍ଧେ ଶୋଭା ପାଏ ଧନୁ କରେ ବାଣ ।
କାନ୍ଧରେ ପଡ଼ିଛି ପୀତ ଯଜ୍ଞ ଉପବୀତ,
ଆପାଦମସ୍ତକ ରୂପୁ ଛବି ଆଚ୍ଛାଦିତ । ୧୩୩୦

ଦେଖି ତାଙ୍କୁ ସବୁ ଲୋକ ଲଭିଲେ ପୁଲକ,
ନିଶ୍ଚଳ ନୟନ ତାରା ନେତ୍ର ଅପଲକ ।
ଜନକ ହରଷ ଭରେ ଦେଖି ବେନି ଭାଇ,
ଧରିଲେ ମୁନିଙ୍କ ପଦ-ସରସିଜ ଯାଇ । ୧୩୩୧

ଶୁଣାଇଲେ ବିନୟରେ ନିଜ ପଣ କଥା,
ଦେଖାଇଲେ ଯେତେ ରଙ୍ଗଭୂମିର ବ୍ୟବସ୍ଥା ।
ଯୁଆଡ଼କୁ ଯାଉଥାନ୍ତି ସେ ବେନି କୁମର,
ଚକିତେ ସଚକିତେ ରୁହୁଁଥାଆନ୍ତି ସକଳ । ୧୩୩୨

ସଭିଙ୍କୁ ରୁହିଁବା ପରି ଶ୍ରୀରାମ ଦିଶନ୍ତି,
ବିଶେଷ ରହସ୍ୟ କିଛି କେହି ନ ଜାଣନ୍ତି ।
ରଙ୍ଗଭୂମି ସୁରଚିତ କହିଲେ ମୁନିଶ,
ମହାସୁଖ ଲାଭ କଲେ ଶୁଣି ଅବନୀଶ । ୧୩୩୩

ସବୁ ମଞ୍ଚ ମଧ୍ୟେ ଏକ ମଞ୍ଚ ସେହି ସ୍ଥଳେ
ଥିଲା ରମ୍ୟ ସୁବିଶାଳ, ତାହାର ଉପରେ,

ମୁନିଙ୍କ ସନ୍ନିତେ ବେନି ଏ ରାଜକୁମରେ,
ବସାଇଲେ ନରପତି ହରଷ ମନରେ । ୧୩୩୪

ପ୍ରଭୁଙ୍କୁ ନିରେଖି ନୃପେ ହତୋତ୍ସାହ ମନ,
ପୂର୍ଣ୍ଣେନ୍ଦୁ ଉଦୟେ ନଭେ ତାରକା ଯେସନ ।
ସଭିଙ୍କ ମନରେ ଆସେ ବିଶ୍ୱାସ ଏସନ,
ନିଃସନ୍ଦେହେ ରାମ ଧନୁ କରିବେ ଭଞ୍ଜନ । ୧୩୩୫

ନ ଭଙ୍ଗି ପାରିଲେ ମଧ୍ୟ ଏ ଧନୁ ବିଶାଳ,
ତଥାପି ତ ସୀତା ଦେବେ ତାଙ୍କ ଗଳେ ମାଳ ।
ଏହା ଭାବି ନିଜ ନିଜ ଘରେ ଯାଅ ଭାଇ,
ବଳ ତେଜ ପରାକ୍ରମ ସୁଯଶ ବୁଡ଼ାଇ । ୧୩୩୬

ହସିଲେ ନୃପତି କେତେ ଶୁଣି ଏହି ବାଣୀ,
ଯେହୁ ଥିଲେ ଅବିବେକୀ ଅନ୍ଧ ଅଭିମାନୀ ।
ଧନୁ ଭାଙ୍ଗିଲେ ବି ବିଭା ହେବା କଷ୍ଟକର,
ନ ଭାଙ୍ଗି କନ୍ୟାକୁ ବିଭା ହେବ କେ ଆବର ? ୧୩୩୭

ଥରେ ହେଲେ, କାଳ ମଧ୍ୟ ନ ହେଉ କାହିଁକି,
ରଣେ ମୁଁ ଜିଣିବି ତାକୁ ଜାନକୀ ପାଇଁକି ।
ଏହା ଶୁଣି ଆନ ନୃପେ ମୁରୁକି ହସିଲେ,
ଯେ ହରି ଭକତ ଧର୍ମ ପରାୟଣ ଥିଲେ । ୧୩୩୮

ସେମାନେ କହିଲେ, "ଚୂରି ରାଜାଙ୍କ ଗରବ,
ରାମ ବିଭା ହେବେ ସୀତା—ଏହା ହିଁ ସମ୍ଭବ ।"
ସଂସାରେ କେ ଅଛି, ଜିଣି ପାରିବ ସମରେ,
ରଣଧୀର ଦଶରଥ ନୃପଙ୍କ କୁମରେ । ୧୩୩୯

ବୃଥା ଦମ୍ଭ ଗାଲୁ କରି ମରନାରେ ଭାଇ,
ମନ ଲଡ଼ୁରେ କି କେବେ କ୍ଷୁଧା ଯାଏ କାହିଁ ?
ଆମ୍ଭର ପବିତ୍ର ବାଣୀ ମନ ଦେଇ ଶୁଣ,
ଜାନକୀଙ୍କୁ ଜଗଦମ୍ବା ବୋଲି ମନେ ଗୁଣ । ୧୩୪୦

ବରୁଣ ଜଗତପିତା ଶ୍ରୀରଘୁନନ୍ଦନେ,
ଦେଖି ସେ ରୁଚିର ଛବି ପୂରାଅ ନୟନେ ।
ସେ ସୁନ୍ଦର ସୁଖଦାତା ସର୍ବଗୁଣ ରାଶି,
ବେନି ଭାଇ ଶିବଙ୍କର ହୃଦୟ-ନିବାସୀ । ୧୩୪୧

ପରହରି ପାଖେ ଥିବା ଅମୃତ-ସାଗର,
ମରୀଚିକା ଜଳ ଦେଖି କମ୍ପା ଧାଇଁ ମର ?
ଯାହାର ଯେପରି ରୁଚି କରୁ ତାହା ଯାଇ,
ଆମେ ତ ଜନମ ଫଳ ଆଜ ଅଛୁ ପାଇ । ୧୩୪୨

ଏହା କହି ସାନୁରାଗେ ନୃପେ ଯେ ଉତ୍ତମ;
ନିରେଖିଲେ ରଘୁପତି ରୂପ ଅନୁପମ ।
ବିମାନେ ଆରୋହି ନଭ ପଥେ ଦେବଗଣ,
ପୁଷ୍ପ ବରଷନ୍ତି କରି ମଧୁର ଗାୟନ । ୧୩୪୩

ଯଥା ବେଳ କାଳ ଜାଣି ଜନକ ନୃପତି,
ସୀତାଙ୍କୁ ଆଣିବା ପାଇଁ ଦେଲେ ଅନୁମତି ।
ସୁଚତୁରୀ ସଖୀଗଣ ନିଜର ସଙ୍ଗରେ,
ସୀତାଙ୍କୁ ଆଣିଲେ ଯାଇ ରଙ୍ଗଭୂମି ପରେ । ୧୩୪୪

ଜଗଦମ୍ବା ସୀତା ରୂପ ଶୀଳ ଗୁଣମୟୀ,
ତାଙ୍କ ଅଙ୍ଗ ଶୋଭାରାଶି ବର୍ଣ୍ଣି ନ ହୁଅଇ ।
ଉପମା ଯେତେକ ଅତି ତୁଚ୍ଛ ମୋ ନୟନେ,
ସେ ତ ଅନୁରାଗୀ ସବେ ନାରୀ ଦେହାଙ୍ଗନେ । ୧୩୪୫

ବର୍ଣ୍ଣିଲେ ସୀତାଙ୍କ ଶୋଭା ଏ ଉପମା ଦେଇ,
କୁକବି ହୋଇବି ସିନା ଅପଯଶ ନେଇ ।
ସୀତାଙ୍କୁ ତୁଳିବା ଯେବେ ନାରୀଙ୍କ ସଙ୍ଗତେ,
ଏପରି ସୁନ୍ଦରୀ ଅବା କେ ଅଛି ଜଗତେ ? ୧୩୪୬

ଶାରଦା ମୁଖରା ଅର୍ଦ୍ଧାଙ୍ଗିନୀ ପାର୍ବତୀ,
ଅନଙ୍ଗ ହୋଇବା ହେତୁ ଦୁଃଖିନୀ ଯେ ରତି ।

ବିଷ ଓ ବାରୁଣୀ ଯା'ର ପ୍ରିୟ ସହୋଦର,
ସେ ରମା କି ସୀତା ତୁଲେ ହେବେ ପଟାନ୍ତର ? ୧୩୪୭

ହେବ ଯେବେ ଛବି-ରୂପୀ ସୁଧା-ମହୋଦଧି,
ତହିଁ ନିୟୋଜିତ ରୂପମୟ-କୂର୍ମ ଯଦି,
ଶୃଙ୍ଗାର-ମନ୍ଦର, ଶୋଭା-ରଜ୍ଜୁ ସାହାଯ୍ୟରେ,
ମନ୍ଥିବେ ମନ୍ମଥ ଯଦି ସ୍ୱକର-କମଳେ । ୧୩୪୮

ଏହି ଭାବେ ସୁଖ-ଶୋଭା କାରଣ ସ୍ୱରୂପ,
ଜାତ ହେବେ ଯଦି ଲକ୍ଷ୍ମୀ ଧରି ଦିବ୍ୟ ରୂପ ।
ତଥାପି କହିବେ କବିକୁଳ ସଙ୍କୋଚରେ—
ଏ ରମା ସମାନ ହେବେ ସୀତାଙ୍କ ସଙ୍ଗରେ । ୧୩୪୯

ଗାଇ ଗାଇ ସୁମଙ୍ଗଳ ଗୀତ ମଧୁସ୍ୱରେ,
ସୀତା ସହିତରେ ଗଲେ ସଜନୀ ନିକରେ ।
ଶୋଭଇ ସୁନ୍ଦର ଶାଢ଼ୀ ନବୀନ ଅଙ୍ଗରେ,
ଜାନକୀଙ୍କ ଛବି ଅନୁପମ ଏ ବିଶ୍ୱରେ । ୧୩୫୦

ଭିନ୍ନ ଭୂଷା ସୁଶୋଭିତ ସୀତା ଭିନ ଅଙ୍ଗେ,
ସଖୀଏ ସଜାଇଛନ୍ତି ତାଙ୍କୁ ନାନା ରଙ୍ଗେ ।
ରଙ୍ଗ ଭୂମି ପରେ ଯେବେ ସେହି ଉପସ୍ଥିତ,
ରୂପ ଦେଖି ନରନାରୀ ହେଲେ ବିମୋହିତ । ୧୩୫୧

ବଜାନ୍ତି ଦୁନ୍ଦୁଭି ସୁରଗଣେ ହରଷରେ,
ଅପ୍‌ସରା ଗାଆନ୍ତି ପୁଷ୍ପ ବରଷି ଉପରେ ।
ସୀତା କର-କମଳରେ ଥିବା ଜୟମାଳେ,
ଅପଲକ ନେନେ ଗୃହିଁ ଥାନ୍ତି ମହୀପାଳେ । ୧୩୫୨

ସଚକିତ-ଚିତ୍ତେ ସୀତା ରାମଙ୍କୁ ଗୃହିଁଲେ,
ତହୁଁ ନୃପ ସବୁ ମୋହେ ବିବଶ ହୋଇଲେ ।
ମୁନିଙ୍କ ସମୀପେ ସୀତା ଦେଖି ବେନି ଭାଇ,
ଲଖିଗଲା ନେତ୍ର ସତେ ନିଜ ନିଧି ପାଇ । ୧୩୫୩

ଗୁରୁଜନେ ଦେଖି ହୃଦେ ଉପୁଜିଲା ଲାଜ,
ସମ୍ମୁଖରେ ସମବେତ ନୃପତି ସମାଜ ।
ରଖିଲେ ହୃଦୟେ ପଟେ ଶ୍ରୀରାମ ମୂରତି,
ସଖୀଜନେ ଅନାଇଲେ ସୀତା ଲଜ୍ଜାବତୀ । ୧୩୫୪

ରାମ-ରୂପ ସୀତା-ଛବି ନରନାରୀଗଣେ,
ନିରେଖିଲେ ଅପଲକ ଆବେଗ ନୟନେ ।
ସଙ୍କୋଚେ ନ କହିପାରି ବିଚାରନ୍ତି ମନେ,
ମିନତି କରନ୍ତି ପୁଣି ଦେବ ପଞ୍ଚାନନେ । ୧୩୫୫

ଜନକ ଜଡ଼ତା ହର ହେ ବିଧି ଚଞ୍ଚଳ,
ଆମ ଧର୍ମ ତାଙ୍କ ମତି କର ନିରମଳ ।
ତେଜନ୍ତୁ ପ୍ରତିଜ୍ଞା ରାଜା କିଛି ନ ବିଚାରି,
କରନ୍ତୁ ଶ୍ରୀରାମ ସୀତା ବିଭା ଦଣ୍ଡଧାରୀ । ୧୩୫୬

ଜଗତ କହିବ ଭଲ କଲେ ଭଲ କଥା,
ଏହି ପଣେ ଲଭ ହେବ ଅନ୍ତର୍ଦାହ, ବ୍ୟଥା—
ଏହି ଅଭିଳାଷେ ମଗ୍ନ ସବୁ ନାରୀ ନର,
କେବଳ ଜାନକୀ ଯୋଗ୍ୟ ଏ ଶ୍ୟାମଳ ବର । ୧୩୫୭

ଡକାଇଲେ ବନ୍ଦୀଜନେ ତହିଁ ନରପତି,
ଆସିଲେ ସେମାନେ ଗାଇ କୁଳର କୀରତି ।
କହିଲେ ନୃପତି, "କହ ପ୍ରତିଜ୍ଞା ମୋହର"
ଘଟେ ଗଲେ ଚଳି, ହୃଦେ ହରଷ ପ୍ରବଳ । ୧୩୫୮

ବନ୍ଦୀଏ କହିଲେ ଉଚ୍ଚ ବଚନେ ସତ୍ୱର,
ଶୁଣ ସମବେତ ଏଥି ନୃପତି ସକଳ ।
କହୁଅଛୁ ଆମ୍ଭେ ରାଜ ଜନକଙ୍କ ପଣ,
ସୁବିଶାଳ ଭୁଜ କରି ଊର୍ଦ୍ଧ୍ୱେ ଉତ୍ତୋଳନ । ୧୩୫୯

ନୃପ ଭୁଜବଳ ବିଧୁ, ରାହୁ ଶିବ-ଚାପ,
ଭୁବିଦିତ କଠୋରତା ଗୁରୁତା ପ୍ରତାପ ।

ରାବଣ ଓ ବାଣାସୁର ମହାବୀରବରେ,
ଶରାସନ ଦେଖି ଦୂରେ ଗଲେ ହତାଶରେ । ୧୩୬୦

ମହେଶ୍ୱରଙ୍କର ଏଇ କଠୋର କୋଦଣ୍ଡ,
ଏ ରାଜସମାଜେ ଯେହୁ କରିବେ ଦ୍ୱି’ଖଣ୍ଡ,
ସେହି ତ୍ରିଭୁବନ ଜୟ ଗୌରବ ଲଭିବେ,
ନିର୍ବିଘ୍ନେ ସୀତା ତାଙ୍କୁ ଆଦରେ ବରିବେ । ୧୩୬୧

ପଣ ଶୁଣି ଅଭିଳାଷୀ ନୃପତି ସକଳ,
ଆପଣାକୁ ବୀର ମଣି ଗରଜି ପ୍ରବଳ,
ଉଠିଲେ ଆକୁଳେ ହୋଇ ବଦ୍ଧପରିକର,
ଇଷ୍ଟଦେବେ ମଥା ନୋଇଁ ଚଳିଲେ ସତ୍ୱର । ୧୩୬୨

ତମକି ଚଞ୍ଚଳ ଯେଉଁ ଧନୁକୁ ଧରନ୍ତି,
ନ ଟଳନ୍ତେ ନାନାବିଧ କୌଶଳ କରନ୍ତି ।
ଯାହାଙ୍କ ବିଚାର ବୁଦ୍ଧି ଥିଲା ହୃଦୟରେ,
ସେ ନୃପତି ଧନୁ ପାଶେ ନ ଗଲେ ଭ୍ରମରେ । ୧୩୬୩

ତମକି ଧରନ୍ତି ଧନୁ ମୂର୍ଖ ନୃପଗଣେ,
ନ ଉଠନ୍ତେ ଫେରିଯାନ୍ତି ଲଜ୍ଜା ପାଇ ମନେ ।
ସତେ କି ସେ ଧନୁ ଲଭି ବୀର ବାହୁ ବଳ,
ଅଧିକୁ ଅଧିକ ଭାରି ହୁଅଇ କେବଳ । ୧୩୬୪

ଏକାବେଳେ ଦଶ ସ’ସ୍ର ନରପତି ଗଲେ,
ଲାଗିଲେ ଉଠାଇବାକୁ, ହଲନ୍ତେ ନ ହଲେ ।
ଟିକିଏ ଟଳିଲା ନାହିଁ ଶିବ ଶରାସନ,-
କାମୁକ କଥାରେ ସତୀ ହୃଦୟ ଯେସନ । ୧୩୬୫

ସେତେବେଳେ ହେଲେ ଉପହସିତ ରାଜନେ,
ବୈରାଗ୍ୟ ବିହୁନେ ହୁଏ ସନ୍ନ୍ୟାସୀ ଯେସନେ ।
କୀରତି ବିଜୟ ଯଶ ସବୁ ବୀରପଣ,
ଧନୁ ପାଶେ ହାରି ଫେରିଗଲେ ତତକ୍ଷଣ । ୧୩୬୬

ହୃଦେ ହାର ମାନ ନୃପେ ବସିଲେ ହତଶ୍ରୀ,
ନିଜ ନିଜ ଆସନରେ ଯେବେ ଗଲେ ବସି,
ମହୀପାଳଗଣେ ଗୃହିଁ ଜନକ ବ୍ୟାକୁଳେ,
କହିଲେ ବଚନ ଅନ୍ତରସ୍ଥ କ୍ଷୋଧାଗ୍ନିରେ । ୧୩୬୭

"ଦ୍ୱୀପ ଦ୍ୱୀପାନ୍ତରୁ ଆହେ ମହୀପାଳଗଣ,
ଉପଗତ ହୋଇଅଛ ଶୁଣି ମୋର ପଣ ।
ମାନବ ଶରୀରଧାରୀ ଦେବତା ଦାନବେ,
ମହା ମହାବୀର ଯେତେ ଆସିଅଛ ସର୍ବେ । ୧୩୬୮

କାନ୍ତି ମନେ ହୁଏ ସତେ ଭାଙ୍ଗି ଭବ ଚାପ,
ମନୋହାରୀ କନ୍ୟା, ଯଶ କୀରତି ଅମାପ
ପୁଣି ବିଜୟଶ୍ରୀ ଲାଭ କରିବାର ପାଇଁ,
ବିଧାତା କ ଧନ୍ୟ ଗଢ଼ିଲେ ବୀର ଗଢ଼ି ନାହିଁ ? ୧୩୬୯

ଏ ଲାଭ କାହାକୁ କହ ଭଲ ନ ଲାଗଇ,
ଜଣେ ଶିବ ଚାପେ ଗୁଣ ନ ପାରିଲ ଦେଇ ।
ଥାଉ ତେଣେ ଗୁଣ ଦେବା ଭାଙ୍ଗିବା ହେ ଭାଇ,
ନ ପାରିଲ ତିଳେ ମାତ୍ର ଭୂଇଁରୁ ଉଠାଇ । ୧୩୭୦

ଗର୍ବ ନ କରିବ ଆଉ କେହି ବୀର କହି,
ଜାଣିଲି ନିଶ୍ଚିତ ମୁହିଁ ବୀର-ଶୂନ୍ୟ ମହୀ ।
ତେଜ ଆଶା ନିଜ ନିଜ ଘରେ ଯାଅ ଭାଇ,
ବୈଦେହୀର ବିଭା ହେବା ବିଧି ଲେଖି ନାହିଁ । ୧୩୭୧

ଧରମ ଲଙ୍ଘିବ ଯେବେ ତେଜିବି ମୋ ପଣ,
କନ୍ୟା ମୋ କୁମାରୀ ରହୁ କରିବ କଅଣ ।
ବୀର ହୀନ ଧରା ବୋଲି ଜାଣିଥାନ୍ତି ଯେବେ,
ଆଜ ହାସ୍ୟାସ୍ପଦ ହୋଇ ଥାଆନ୍ତି କି କେବେ ?" ୧୩୭୨

ଶୁଣି ନରନାରୀ ସର୍ବେ ଜନକ ବଚନ,
ବୈଦେହୀଙ୍କୁ ଦେଖି ଦୁଃଖେ ହେଲେ ହିମଗନ ।

ରୋଷେ ହେଲା ଲକ୍ଷ୍ମଣଙ୍କ ଭ୍ରୂଲତା କୁଞ୍ଚିତ,
ଦଶନ କମ୍ପିଲା ଘନ ନେତ୍ର ରୋଷାପ୍ଲୁତ । ୧୩୭୩

କହି ନ ପାରନ୍ତି କଥା ରଘୁବୀର ଭୟେ,
ଜନକ ବଚନ ହୃଦେ ବାଣ ସମ ଦହେ ।
ପ୍ରଣମି ଶ୍ରୀରାମ ପଦ-କମଳେ ଲକ୍ଷ୍ମଣ,
କହିଲେ ସଦମ୍ଭେ ଏହି ଯଥାର୍ଥ ବଚନ । ୧୩୭୪

"ଜଣେ ହେଲେ ରଘୁବଂଶୀ ଯହିଁ ଉପସ୍ଥିତ,
ସେ ସମାଜେ ଏପରି କେ କହିବେ ନାହିଁ ତ ।
କହିଲେ ଜନକ କେତେ ଅନୁଚିତ ବାଣୀ,
ରଘୁକୁଳ-ମଣି ଏଥି ବିଦ୍ୟମାନ ଜାଣି । ୧୩୭୫

ଶୁଣ, ସୂର୍ଯ୍ୟବଂଶ-ସରସିଜ-ଦିବାକର
ସ୍ୱଭାବରୁ କହେ, ନୁହେଁ ଏ ଗର୍ବ ମୋହର ।
ପ୍ରଭୁଙ୍କ ଆଦେଶ ଯେବେ ପାଇ ମୁଁ ପାରନ୍ତି,
ଫେଣ୍ଡୁ ସମ ବ୍ରହ୍ମାଣ୍ଡକୁ ଉଠାଇ ଫିଙ୍ଗନ୍ତି । ୧୩୭୬

କଞ୍ଚା ମାଟି ଘଟ ପରି ଫଟେଇ ଦିଅନ୍ତି,
ମୂଳା ପରି ମେରୁକୁ ମୁଁ ଉପାଡ଼ି ଭାଙ୍ଗନ୍ତି ।
ପ୍ରଭୁ ତୁମ ପ୍ରତାପର ମହିମା ନିକଟେ,
ବିଚରା ପୁରୁଣା ଧନୁ କି ଛାର ବିକଟେ । ୧୩୭୭

ଦିଅନ୍ତୁ ଆଦେଶ କରି ଏ କଥା ସ୍ମରଣ,
କୌତୁକ କରିବି କିଛୁ ଦେଖିବେ ଆପଣ ।
ଚଢ଼ାଇବି ଗୁଣ ପଦ୍ମନାଳ ପରି ରୂପେ,
ଶତେକ ଯୋଜନ ନେଇ ଧାଇଁଯିବି ଧାପେ । ୧୩୭୮

ତୁମ ପ୍ରତାପରୁ ନାଥ ତୁମରି ଅଧମ,
ଭାଙ୍ଗିପାରେ ଧନୁ ଗୋଟି ଛତୁ ନାଡ଼ ସମ ।
କହୁଚି ଶପଥ କରି, ଯେବେ ନ ପାରିବି,
ହାତେ ଧନୁଶର ଆଉ କେବେ ନ ଧରିବି । ୧୩୭୯

ଲକ୍ଷ୍ମଣ କହିବା ମାତ୍ରେ ସକ୍ରୋଧ ବଚନ,
ଦିଗ୍‌ଗଜେ ଥରିଲେ, ହେଲା ପୃଥିବୀ କମ୍ପନ ।
ଡରିଗଲେ ସକଳ ଲୋକ ନୃପ ଭୟଭୀତ,
ଜାନକୀ ହରଷ ହେଲେ, ଜନକ ଲଜ୍ଜିତ । ୧୩୮୦

ଗୁରୁ ବିଶ୍ୱାମିତ୍ର ରାମ ମୁନିଗଣ ମନେ,
ହରଷିତ ହେଲେ ପ୍ରୀତି ପୁଲକ ସଘନେ ।
ଠାରି ଲକ୍ଷ୍ମଣଙ୍କୁ ରାମ କଲେ ନିବାରଣ,
ନେଇ ବସାଇଲେ ପାଶେ ତାଳ ସ୍ନେହ କଣ । ୧୩୮୧

ତହୁଁ ବିଶ୍ୱାମିତ୍ର ମୁନି ଶୁଭ ବେଳ ଜାଣି,
କହିଲେ ସସ୍ନେହେ ଅତି ସୁମଧୁର ବାଣୀ ।
ଉଠ ବତ୍ସ ରଘୁବୀର ଭାଙ୍ଗି ଭବ ଚାପ,
ବିଦେହ ରାଜନଙ୍କର ହର ମନସ୍ତାପ । ୧୩୮୨

ଗୁରୁଙ୍କ ବଚନେ ରାମ ପ୍ରଣମିଲେ ପଦେ,
ହରଷ ବିଷାଦ କିଛି ନ ଜାଗଇ ହୃଦେ ।
ସହଜ ସ୍ୱଭାବେ ଉଠି ଉଭା ଦେବରାଜ,
ସେ ଠାଣି ଲଜ୍ଜିତ କରେ ଯୁବା ପଶୁରାଜ । ୧୩୮୩

ବାଳରବି-ରଘୁବର ଉଇଁଲେ ଯେ କାଳେ,
ଉଦୟ ଅଚଳ ସମ ସେ ମଞ୍ଚ ଉପରେ,
ହେଲେ ସାଧୁ-ସରସିଜ ବୃନ୍ଦେ ବିକଶିତ,
ଦର୍ଶକ-ନୟନ-ଭୃଙ୍ଗେ ଅତି ପୁଲକିତ । ୧୩୮୪

ନୃପତିଙ୍କ ଆଶା-ନିଶି ହେଲା ଅବସାନ,
ବଚନ-ତାରକା ରାଜି ଆପେ ହେଲେ ମ୍ଳାନ ।
ମାନି-ନୃପ-କୁମୁଦିନୀ ସଙ୍କୋଚ ଲଭିଲେ,
ଅଶେଷ କପଟୀ ନୃପ-ଉଲୁକେ ଲୁଚିଲେ । ୧୩୮୫

ସୁର ମୁନି ଚକ୍ରବାକ ଶୋକ ପରିହରି,
ନିଜ ସେବା ସମର୍ପିଲେ ପୁଷ୍ପ ବୃଷ୍ଟି କରି ।

ସବିନୟେ ବନ୍ଦି ଗୁରୁଦେବ ପାଦଦେଶ,
କୋଶଳେଶ ରାମ ମାଗି ମୁନିଙ୍କ ଆଦେଶ । ୧୩୮୬

ସହଜ ସ୍ୱଭାବେ ଗଲେ ଚରାଚର ସ୍ୱାମୀ,
ମତ୍ତ-ମନୋହର-ବର-ଗଜରାଜ-ଗାମୀ ।
ଶ୍ରୀରାମଙ୍କ ଯିବା ଦେଖି ପୁର ନରନାରୀ,
ପୁଲକେ ପୂରିତ ତନୁ ସୁଖ ଅସୁମାରି । ୧୩୮୭

ବନ୍ଦି ପିତୃଦେବତାଙ୍କୁ ସୁକୃତ ସୁମରି,
ଭାବିଲେ, ଧରମ କିଛି ଥିଲେ ତ ଆମରି ।
ତେବେ ହେ ବିଘ୍ନେଶ ଏଇ ଶିବ ଶରାସନ,
ଭାଙ୍ଗିବେ ଏଠାରେ ନିଶ୍ଚେ ଶ୍ରୀରଘୁନନ୍ଦନ । ୧୩୮୮

ସପ୍ରେମେ ରାମଙ୍କୁ ଚାହିଁ ସଖୀଙ୍କୁ ଡକାଇ,
ଜାନକୀ-ଜନନୀ ସ୍ନେହ ଲୋତକ ଗଡ଼ାଇ,
କହିଲେ ଆବେଗ ଭରେ ବିକଳ ବଚନ—
"ଶୁଣ ସଖୀମାନେ ଏକ କଥା ଅଘଟଣ !! ୧୩୮୯

କହି ହେଉଛନ୍ତି ଯିଏ ଆମ ହିତକାରୀ,
ଭଲ ନାଟ ଦେଖୁଛନ୍ତି କିଛି ନ ବିଚାରି ।
କେହି ଯାଇ ମୁନୀଶଙ୍କୁ ବୁଝାଇ ନ କୁହେ,
ବାଳକର ଏହି ଜିଦ କେବେ ଭଲ ନୁହେଁ । ୧୩୯୦

ରାବଣ ଓ ବାଣା ଯେଉଁ ଚାପ ନ ଛୁଇଁଲେ,
ଦର୍ପକରି ନରପତି ସଭିଏଁ ହାରିଲେ ।
ସେ ଧନୁକୁ ଦେଉଛନ୍ତି ନୃପ ଶିଶୁ କରେ,
ବାଳ-ମରାଳ କି ଟେକି ପାରଇ ମନ୍ଦରେ । ୧୩୯୧

ରାଜାଙ୍କର ବୁଦ୍ଧି ବିଦ୍ୟା ହୋଇଲାଣି ବଣା,
ବିଧି ଗତି କିଛି ସଖୀ ନ ପଡ଼ୁଛି ଜଣା ।"
ସୁଚତୁରୀ ସଖୀ ଏକ କହେ ମୃଦୁବାଣୀ,
"ତେଜବନ୍ତେ ଲଘୁ ବୋଲି ନ ମଣନ୍ତୁ ରାଣୀ । ୧୩୯୨

କେଉଁଠି ଅଗସ୍ତି ଋଷି କାହିଁ ପାରାବାର,
ଶୋଷିଲେ, ସୁଯଶ ବ୍ୟାପିଗଲା ଏ ସଂସାର ।
ଦେଖିବାକୁ କେତେ କ୍ଷୁଦ୍ର ଆଦିତ୍ୟ-ମଣ୍ଡଳ,
ଉଦୟେ ତିନିଲୋକୁ ଖସେ ତମିର ପଟଳ । ୧୩୯୩

ମନ୍ତ୍ର କେତେ ସୂକ୍ଷ୍ମ ଜାଣ ସେ ତ ବଶ କରେ,
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦେବତା ନିକରେ ।
ଦେଖ ମହାମତ୍ତ ଗଜରାଜ ଅଦଭୁତ,
ସାମାନ୍ୟ ଅଙ୍କୁଶେ ମାତ୍ର ହୁଏ ବଶୀଭୂତ । ୧୩୯୪

ଫୁଲଧନୁ ଶର ହାତେ କେସନେ ମଦନ,
ନିଜର ଅଧୀନ କରେ ସକଳ ଭୁବନ ।
ହେ ଦେବୀ ଏ ସବୁ ଜାଣି ଶଙ୍କା ପରିହର,
ନିଶ୍ଚୟ ଭାଙ୍ଗିବେ ଧନୁ ରାମ ରଘୁବର ।" ୧୩୯୫

ସଖୀ କଥା ଶୁଣି ମନେ ହୋଇଲା ପ୍ରତୀତ,
ତୁଟିଲା ସକଳ ଦୁଃଖ ବଢ଼ିଗଲା ପ୍ରୀତି ।
ରାମଙ୍କୁ ବିଲୋକି ଏଣେ ଜନକ-କୁମାରୀ,
ଭୟେ ଭୟେ ସବୁ ଦେବେ କରନ୍ତି ଗୁହାରି । ୧୩୯୬

ବ୍ୟାକୁଳ ମନରେ କେତେ ପ୍ରାର୍ଥନା କରନ୍ତି,
ମହେଶ ଭବାନୀ ହୁଅ ପ୍ରସନ୍ନ ମୋ ପ୍ରତି ।
କଲି ଯେତେ ପୂଜା ଆଜ କରିବ ସଫଳ,
ମୋ ପାଇଁ ମହେଶ କୃପ ଗୁରୁତ୍ୱକୁ ହର । ୧୩୯୭

ହେ ଗଣ-ନାୟକ ବରଦାୟକ ଗଣେଶ,
ଆଜଯାଏଁ ତବ ସେବା କରିଛି ଅଶେଷ ।
ଶୁଣ କ୍ଷମା ମିନତି ଦେବ କରେ ବାରମ୍ବାର,
ଟିକିଏ ଉଶ୍ୱାସ କର ଶିବ ଧନୁ ଭାର । ୧୩୯୮

ଶ୍ରୀରଘୁବରଙ୍କ ଆଡେ ଚାହିଁ ବଇଦେହୀ,
କେତେ ମନାସନ୍ତି ଦେବେ ହୃଦେ ଦମ୍ଭ ବାନ୍ଧି ।

ପ୍ରେମ ଅଶ୍ରୁଜଳ ଭରି ଉଠଇ ନୟନେ,
ଜାଗଇ ପୁଲକାବଳି ଗୁରୁ ଅପଘନେ । ୧୩୯୯

ନୟନ ପୂରାଇ ରାମ-ରୂପ ଦେଖି ସୀତା,
ପିତା ପଣ ସ୍ମରି ହୃଦେ ହୋଇଲେ ଦୁଃଖିତା ।
ଭାବିଲେ ସେ ପିତା କଲେ କି କଠୋର ପଣ,
ବିଗୁରି ନ କଲେ ଲାଭ କ୍ଷତି ବା କଅଣ । ୧୪୦୦

ଶିକ୍ଷା ଦେଇ ନ ପାରନ୍ତି ମନ୍ତ୍ରୀଗଣେ ଡରେ,
ଅନୁଚିତ ହୁଏ ଏହା ପଣ୍ଡିତ ମେଳରେ ।
କେଉଁଠି ମହେଶ ଧନୁ ବଜ୍ରହୁଁ କଠୋର,
କାହିଁ ଏ ଶ୍ୟାମଳ ମୃଦୁ ବୟସ କିଶୋର । ୧୪୦୧

ହୃଦୟେ ଧଇର୍ଯ୍ୟ କେହ୍ନେ ଧରିବ ଦଇବ,
ଶିରୀଷ କୁସୁମ କାହୁଁ ହୀରାକୁ ବିନ୍ଧିବ ।
ବାଉଳା ହୋଇଛି ସବୁ ସଭା ଜନ ମତି,
ଏବେ ଶମ୍ଭୁ-ଚାପ ତୁ ମୋ ଏକମାତ୍ର ଗତି । ୧୪୦୨

ଲୋକଙ୍କ ଉପରେ ନିଜ ଜଡ଼ତା ପକାଇ,
ଉଶ୍ୱାସ ହୁଅରେ ଚାପ ଶ୍ରୀରାମଙ୍କୁ ଚାହିଁ ।
ଦୁଃଖ ପରିତାପ ଘୋର ସୀତା ହୃଦେ ଜାଗେ,
ନିମିଷ ମାତ୍ରକ ତାଙ୍କୁ ଯୁଗ ସମ ଲାଗେ । ୧୪୦୩

ଥରେ ଶ୍ରୀରାମଙ୍କୁ ଥରେ ଚାପ ମହୀତଳେ, (?)

ଥରେ ଶ୍ରୀରାମଙ୍କୁ ଥରେ ଗୃହାନ୍ତ ମହୀରେ,
ନୟନ ଯୁଗଳ ଶୋଭେ ଅପୂର୍ବ ରୀତିରେ ।
ମୁଖ ଚନ୍ଦ୍ରମଣ୍ଡଳର କୁଣ୍ଡରେ କି ସତେ,
ମଦନଙ୍କ ଦୁଇ ମୀନ ଖେଳନ୍ତି ନିରତେ । ୧୪୦୪

ବଦନ-କମଳେ ଲୁଚିଗଲା ବାଣୀ-ଅଳି,
ନୋହିଲା ପ୍ରକାଶ ଦେଖି ଲଜ୍ଜା-ବିଭାବରୀ ।
ନେତ୍ର କୋଣେ ରହିଗଲା ନୟନ ଲୋତକ,
କୃପଣ ଲୁଚାଏ ଯେହ୍ନେ କୋଣରେ କନକ । ୧୪୦୫

ବ୍ୟାକୁଳତା ଦେଖି ହୃଦେ ସଙ୍କୋଚ ପ୍ରକାଶ,
ଧରି ଧୈର୍ଯ୍ୟ ହୃଦୟରେ ଭରିଲେ ବିଶ୍ୱାସ ।
କାୟ ମନୋ ବାକ୍ୟେ ଯେବେ ସତ୍ୟ ମୋର ପଣ,
କାମନା ମୋ ଥିବ ରାମ ରାଜୀବ-ଚରଣ ।
ତେବେ ଭଗବାନ, ଯିଏ ସର୍ବ ହୃଦ ବାସୀ,
କରିବେ ଶ୍ରୀରାମଚନ୍ଦ୍ର-ଚରଣର ଦାସୀ ।
ଯାହାର ଯାହାଠି ଥାଏ ପ୍ରକୃତରେ ସ୍ନେହ,
ତାହାକୁ ମିଳଇ ସେହି ଏହା ନିଃସନ୍ଦେହ । ୧୪୦୬।୧୪୦୭

ନିଜ ଦେହ ପଣ ରଖି ସୀତା କଲେ ପଣ,
ଜାଣିଲେ ମନର ଭାବ ଶ୍ରୀରଘୁନନ୍ଦନ ।
ସୀତାଙ୍କୁ ଅନାଇ ରାମ ଚାହିଁଲେ ସେ ଚାପେ,
ଗରୁଡ଼ ଚାହାଁଇ ଯେହ୍ନେ ଏକ ଗ୍ଲୋଟ ସାପେ । ୧୪୦୮

ଏତେବେଳେ ଲକ୍ଷ୍ୟ କଲେ ସୁମିତ୍ରାନନ୍ଦନ,
ରଘୁମଣି କରୁଛନ୍ତି ଧନୁ ନିରୀକ୍ଷଣ,
ସପୁଲକେ ତହୁଁ ଚାପି ଚରଣେ ପୃଥିବୀ,
କହିଲେ, "ବଚନ ଯଦି ସତ୍ୟ କହୁଥିବି,
ଆହେ ଦିଗ ଗଜ ଗଣ, ବରାହ କଚ୍ଛପ,
ହେ ଅନନ୍ତ ଧୈର୍ଯ୍ୟ ଧରି ଧରଣୀକୁ ରଖ ।
ଶିବଧନୁ ଭାଙ୍ଗିବାକୁ ବାଞ୍ଛା ରଘୁବୀର,
ମୋ ଆଦେଶ ପାଇ ଏବେ ହୁଅ ସାବଧାନ ।" ୧୪୦୯।୧୪୧୦

ଚାପ ଆଗେ ହେଲେ ଯେବେ ଦଶରଥ ସୁତ,
ସୁର ନର ନାରୀଗଣେ ସ୍ମରିଲେ ସୁକୃତ ।
ପରସ୍ପ ସଭିଙ୍କ ମନେ, ଅଶେଷ ଅଜ୍ଞାନ,
ମନ୍ଦ ନୃପତିଙ୍କ ମନେ ଘୋର ଅଭିମାନ । ୧୪୧୧

ଭୃଗୁପତିଙ୍କର ଗର୍ବ ଗାରିମା ଦୁର୍ବାର,
ସୁର ମୁନିବରଙ୍କର ଭୀରୁତା ଅପାର ।

ସୀତାଙ୍କର ଚିନ୍ତା, ପୁଣି ନୃପେ ଅନୁତାପ,
ରାଣୀମାନଙ୍କର ଦୁଃଖ-ଦାବାଗ୍ନି ସନ୍ତାପ ।
ପାଇ ଶିବ ଚାପ ରୂପୀ ବୃହତ ବୋଇତ,
ଆରୋହଣ କଲେ ସର୍ବେ ବନ୍ଧୁଙ୍କ ସହିତ ।
ରାମ ବାହୁବଳ ରୂପ ଅଗାଧ ସାଗର,
ପାର ହେବା ମନ, କିନ୍ତୁ ନାହିଁ ସେ ଧୀବର । ୧୪୧୨।୧୪୧୩

ସକଳ ଲୋକଙ୍କୁ ରାମ ଦେଖିଲେ ସେଠାରେ,
ସମବେତ ତହିଁ ଚିତ୍ର ପ୍ରତିମା ଆକାରେ ।
ନିରେଖିଲେ ଜାନକୀଙ୍କୁ ରଘୁକୁଳ ପତି,
ଜାଣିଲେ, ଆକୁଳେ ହୃଦ ହୁଅଇ କରନ୍ତି । ୧୪୧୪

ଦେଖିଲେ, ଜନକ-ସୁତା ବିକଳ ବିଶେଷ,
କଳପ ସମାନ କାଟୁ ଅଛନ୍ତି ନିମେଷ ।
ତୃଷାତୁର ଜଳ ବିନା କଲେ ପ୍ରାଣ ତ୍ୟାଗ,
ମୃତ୍ୟୁ ଅନ୍ତେ କି ହୋଇବ ଅମୃତ-ତଡ଼ାଗ ? ୧୪୧୫

କି ହେବ ବରଷା, ଖେତ ଶୁଖିଗଲା ପରେ,
ସମୟ ହୁଡ଼ିଲେ ଲାଭ କି ପଶ୍ଚାତାପରେ ।
ଏପରି ବିଚାରି ହୃଦେ ସୀତାଙ୍କୁ ନିରେଖି,
ପୁଲକିତ ହେଲେ ପ୍ରଭୁ ଅତି ପ୍ରୀତି ଦେଖି । ୧୪୧୬

ଗୁରୁଙ୍କୁ ହୃଦୟସ୍ଥଳେ ପ୍ରଣାମ ଜଣାଇ,
ଶ୍ରୀରାମ ଫୁର୍ତ୍ତିରେ ଦେଲେ ଧନୁକୁ ଉଠାଇ ।
ଉଠାଇଲା କାଳେ ଯେହ୍ନେ ଚମକେ ଚପଳା,
ଆକାଶେ ମଣ୍ଡଳାକାର ସତେ ହୋଇଗଲା । ୧୪୧୭

କେତେବେଳେ ସେ ଉଠାଇ ଗୁଣ ଚଢ଼ାଇଲେ,
ଟାଣିଲେ କେସନେ ତାହା କେହି ନ ଜାଣିଲେ ।
ସଭିଏଁ ଦେଖିଲେ ରାମ ଠିଆ ଧନୁ ଧରି,
ପ୍ରତି ପ୍ରାଣେ ଭରିଗଲା ବିସ୍ମୟ ଯେପରି ।

କ୍ଷଣକେ ଶ୍ରୀରାମ କଲେ ଧନୁ ବେନି ଖଣ୍ଡ,
ପ୍ରଚଣ୍ଡ ଧ୍ୱନିରେ କମ୍ପି ଉଠିଲା ଭୂଖଣ୍ଡ । ୧୪୧୮

କଠୋର ଶବଦେ ଭରି ଉଠିଲା ଭୁବନ,
ରବି-ଅଶ୍ୱେ ମାର୍ଗ ତେଜି କଲେ କି ଗମନ !
ଦିଗ୍‌ଗଜେ ଗର୍ଜିଲେ ପୃଥ୍ୱୀ ହେଲା ଟଳମଳ,
ବରାହ କଚ୍ଛପ ଶେଷ କମ୍ପିଲେ ପ୍ରବଳ । ୧୪୧୯

ଦେବତା ରାକ୍ଷସ ମୁନି କର୍ଣ୍ଣେ ଦେଇ ହାତ,
ବିକଳରେ ଚିନ୍ତା କଲେ କି ହେଲା ଆଘାତ ।
କ୍ଷଣକେ ଦି'ଖଣ୍ଡ କଲେ ଧନୁ ରଘୁପତି,
ରାମ ଜୟଗାନେ ସଦା ତୁଳସୀର ମତି । ୧୪୨୦

ଜାହାଜ ଶଙ୍କର-ଚାପ ରାମ ରଘୁବର—
ବାହୁବଳ ତହିଁ ଥିଲା ଅଗାଧ-ସାଗର ।
ମୋହେ ସେ ଜାହାଜେ ଆଦ୍ୟେ ସେ ଯେଉଁ ସମାଜ,
ଥିଲା ଚଢ଼ି, ଧନୁଭଙ୍ଗେ ବୁଡ଼ିଗଲା ଆଜ । ୧୪୨୧

ଫିଙ୍ଗିଦେଲେ ପ୍ରଭୁ ଧନୁ ବେନି ଖଣ୍ଡ ତଳେ,
ତା' ଦେଖି ସରବେ ସୁଖ ଲଭିଲେ ହୃଦରେ ।
ମୁନି ବିଶ୍ୱାମିତ୍ର ହୃଦ ପବିତ୍ର ସାଗର,
ତହିଁରେ ଭରିଛି ପ୍ରେମ ରସୋଚ୍ଛଳ ଜଳ । ୧୪୨୨

ଶ୍ରୀରାମ ପୂର୍ଣ୍ଣିମାଚନ୍ଦ୍ର ନିରେଖି ସତ୍ୱରେ,
ଉଜ୍ଜ୍ୱଳ ପୁଲକ ଢେଉ ଉଠଇ ଉଚ୍ଚରେ ।
ଆକାଶେ ଦୁନ୍ଦୁଭି ନାଦ ବାଜେ ଘନ ଘନ,
ଗୀତ ଗାଇ ନୃତ୍ୟ କଲେ ଦେବାଙ୍ଗନାଗଣ । ୧୪୨୩

ବ୍ରହ୍ମାଦି ଦେବତା, ସିଦ୍ଧ ମୁନୀଶ୍ୱରମାନେ,
କରନ୍ତି ପ୍ରଶଂସା କେତେ ଆଶିଷ ପ୍ରଦାନେ ।
ବରଷନ୍ତି ବହୁରଙ୍ଗ କୁସୁମର ମାଳ,
କିନ୍ନରେ ଗାଆନ୍ତି ପୁଣି ସଙ୍ଗୀତ ରସାଳ । ୧୪୨୪

ଜୟ ଜୟକାରେ ପୂର୍ଣ୍ଣ ହୋଇଲା ଭୁବନ,
ଜଣା ନ ପଡ଼ିଲା ଧନୁ ଭଙ୍ଗର କମ୍ପନ ।
ଆନନ୍ଦେ କହନ୍ତି ନର ନାରୀ ଏଠି ସେଠି,
"ଦେଖ ରାମଚନ୍ଦ୍ର ଶିବଧନୁ ଭାଙ୍ଗିଲେଣି ।" ୧୪୨୫

ଧୀରମନ୍ତ ବନ୍ଦୀ ସୂତ ମାଗଧ ଯେ ଥିଲେ,
ରଘୁପତି କୁଳକୀର୍ତ୍ତି ଉଚ୍ଚରେ ଗାଇଲେ ।
ଲୋକେ ସବୁ ହର୍ଷଭରେ ସୂକ୍ଷ୍ମ ବସ୍ତ୍ରମାନ,
ଅଶ୍ୱ ହସ୍ତୀ ଧନ ମଣି କରିଲେ ପ୍ରଦାନ । ୧୪୨୬

ମୃଦଙ୍ଗ ନାଗରା ଝାଞ୍ଜ ଶଙ୍ଖ ସାହାନାଇ,
ଭେରୀ ଢୋଲ ଆଦି ବାଜା ବାଜୁଛି କମ୍ପାଇ ।
ବହୁବିଧ ବାଜା ବାଜେ ଅତି ସୁଲଳିତ,
ଯୁବତୀ ଗାଆନ୍ତି ହର୍ଷେ ମଙ୍ଗଳ ସଙ୍ଗୀତ । ୧୪୨୭

ସଖୀଙ୍କ ସହିତେ ରାଣୀ ହୋଇଲେ ଆନନ୍ଦ,
ମରୁଡ଼ିଆ କ୍ଷେତେ ଯେହ୍ନେ ବର୍ଷା ମନ୍ଦ ମନ୍ଦ ।
ଜନକ ବରଜି ଚିନ୍ତା କଲେ ସୁଖଲାଭ,
ସନ୍ତରଣ-କ୍ଲାନ୍ତ ନର ପାଇଲା କି ଠାବ ! ୧୪୨୮

ଧନୁ ଭଙ୍ଗ୍ନ ହତଶିରୀ ହେଲେ ନୃପଗଣେ,
ଦିବସେ ପ୍ରଦୀପ ଶୋଭା ମଳିନ ଯେସନେ ।
କେମନ୍ତେ ବର୍ଣ୍ଣିବି ସୀତା ଆନନ୍ଦ ବିମଳ,
ଚାତକୀ ଚଳି କି ପାଇ ଯେହ୍ନେ ସ୍ୱାତି ଜଳ । ୧୪୨୯

ରାମଙ୍କୁ ଚାହାନ୍ତି ଦୂରୁଁ ସୁମିତ୍ରା ନନ୍ଦନ,
ଚନ୍ଦ୍ରମାକୁ ଚାହିଁଥାଏ ଚକୋର ଯେସନ ।
ଅନନ୍ତର ଶତାନନ୍ଦ ଦିହଲେ ଆଦେଶ,
ଜାନକୀ ଚଳିଲେ ତହୁଁ ଶ୍ରୀରାମଙ୍କ ପାଶ । ୧୪୩୦

ସଙ୍ଗେ ସହଚରୀଗଣ ସୁନ୍ଦରୀ ଚତୁରୀ,
ଗାଆନ୍ତି ମଙ୍ଗଳ ଗୀତ ଅପୂର୍ବ ମାଧୁରୀ ।

ମରାଳ ଗତିରେ ସୀତା କରନ୍ତି ଗମନ,
ଅଙ୍ଗରେ ଅପାର ଶୋଭା ଦିଶେ ସୁଶୋଭନ । ୧୪୩୧

ସଖୀଙ୍କ ମଝିରେ ସୀତା ଶୋଭନ୍ତି ଯେପରି,
ବହୁ ଛବି ମଧ୍ୟେ ମହାଛବି ଯେଉଁପରି ।
ସେ କର-ସରୋଜେ ଶୋଭେ ଜୟମାଳ ରମ୍ୟ,
ଭୁବନ ବିଜୟ ଶୋଭା ନାହିଁତ କ ତହିଁ । ୧୪୩୨

ତନୁରେ ସଙ୍କୋଚ ମନେ ଉତ୍ସାହ ପରମ,
କେହି ନ ଜାଣଇ ଗୂଢ଼ ପ୍ରୀତିର ମରମ ।
ସମୀପେ ରାମଙ୍କ ଛବି ଦେଖି ନେତ୍ର ଭରି,
ସ୍ଥିର ରହିଗଲେ ସୀତା ଚିତ୍ରଲେଖା ପରି । ୧୪୩୩

ଚତୁରା ସଖୀଏ ଦେଖି କହିଲେ ବୁଝାଇ,
ଦିଅ ଜୟମାଳ ରାମ ଗଳାରେ ଲମ୍ବାଇ ।
ଶୁଣି ମାଳା ଉଠାଇଲେ ସୀତା ବେନି କରେ,
ପିନ୍ଧାଇ ନ ହୁଏ କିନ୍ତୁ ପ୍ରେମ ବିବଶରେ । ୧୪୩୪

ଶୋଭଇ ଯେସନେ ବେନି କଞ୍ଜ-ସମୃଣାଳ,
ସଭୟେ ଶଶୀକୁ ଦେଉଛନ୍ତି ଜୟମାଳ ।
ସେ ଛବି ନିରେଖି ସଖୀ ଗାଆନ୍ତି ହରଷେ,
ସୀତା ଦେଲେ ଜୟମାଳ ଶ୍ରୀରାମ ଉରସେ । ୧୪୩୫

ସୀତା ଜୟମାଳ ଦେଖି ଶ୍ରୀରାମଙ୍କ ଗଳେ,
ଆକାଶୁ ବର୍ଷିଲେ ପୁଷ୍ପ ଦେବତା ସକଳେ ।
ସଙ୍କୋଚ ଲଭିଲେ ହୃଦେ ନୃପତି ସକଳ,
ସୂର୍ଯ୍ୟଙ୍କୁ ନିରେଖି ଯେହ୍ନେ କୁମୁଦ ନିକର । ୧୪୩୬

ନଗରେ ଆକାଶେ ବାଜେ ବାଦ୍ୟ ଅଗଣନ,
ସାଧୁଏ ହରଷ, ଦୁଷ୍ଟେ ବିଷାଦିତ ମନ ।
ଅମର କିନ୍ନର ନର ନାଗ ଓ ମୁନୀଶ,
ଜୟ ଜୟକାର କହି ଦିଅନ୍ତି ଆଶିଷ । ୧୪୩୭

ନାଚନ୍ତି ଗାଆନ୍ତି ଯେତେ ଦେବାଙ୍ଗନାଗଣ,
ବାର ବାର ବରଷନ୍ତି ଆକାଶୁ ସୁମନ ।
ବ୍ରାହ୍ମଣେ କରନ୍ତି ବେଦ ଧ୍ୱନି ସ୍ଥାନେ ସ୍ଥାନେ,
କୁଳ କୀର୍ତ୍ତି ଉଚ୍ଚାରନ୍ତି ସୂତ ବନ୍ଦୀମାନେ । ୧୪୩୮

ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ବ୍ୟାପିଲା କୀରତି,
ସୀତାଙ୍କୁ ବରିଲେ ଚାପ ଭାଙ୍ଗି ରଘୁପତି ।
ପୁର ନରନାରୀଗଣେ କରନ୍ତି ଆରତି,
ନିଜ ଶକ୍ତି ଭୁଲି ଦାନ ଦକ୍ଷିଣା ଦିଅନ୍ତି । ୧୪୩୯

ସୀତା-ରାମ ଯୋଡ଼ି ଦିଶେ ଅତି ସୁଶୋଭନ,
ସୁଷମା ଶୃଙ୍ଗାର ରସ ଏକତ୍ର ଯେସନ ।
"ସଖୀଏ କହନ୍ତି, ସୀତା ରାମ ପଦ ଧର,"
ଭୟେ ନ ଛୁଅନ୍ତି ସୀତା ଶ୍ରୀରାମ ପୟର । ୧୪୪୦

ଗୌତମ ନାରୀଙ୍କ କଥା କରି ସୁମରଣ,
ଭୟେ ସୀତା ନ ଛୁଅନ୍ତି ଶ୍ରୀରାମ ଚରଣ ।
ସୀତାଙ୍କର ଅଲୌକିକ ପ୍ରୀତି ଦରଶନେ,
ହସନ୍ତି ଶ୍ରୀ ରଘୁବଂଶମଣି ମନେ ମନେ । ୧୪୪୧

ଜାନକୀଙ୍କୁ ଦେଖି କେହୁ ପାଇବା ଆଶାରେ,
ଖଳ ମୂଢ଼ ମନ୍ଦପୂବ ନୃପ ଅହଂକାରେ ।
ଉଠିପଡ଼ି ସାଜୁ ପିନ୍ଧି ଅଭାଗା ବୃଥାରେ,
ନିଜ ଆଣ୍ଠ ଦେଖାଇଲେ ବିବିଧ ପ୍ରକାରେ । ୧୪୪୨

କେ କହଇ, "ଆରେ ନିଅ ସୀତାକୁ ଛଡ଼ାଇ,
ଧରି ବାନ୍ଧିପକା ରାଜପୁତ୍ର ବେନି ଭାଇ ।
ଧନୁ ଭାଙ୍ଗିଲେ କି ହେବ ଆଶ ନ ମେଣ୍ଟିବ
ଜୀବତ ମୁଁ ଥାଉଁ କିଏ କନ୍ୟାକୁ ବରିବ ? ୧୪୪୩

ସାହାଯ୍ୟ କରିବେ ଯେବେ ଜନକ ରାଜନ,
ଦୁଇ ଭାଇ ସହ ତାଙ୍କୁ ଜିତ କରି ରଣ ।"

ଏହା ଶୁଣି ସାଧୁ ନୃପେ କହିଲେ ଏ କଥା,
ଏ ସମାଜେ ଲଜ୍ଜା ମଧ୍ଯ ଚଳେ ପୋତେ ମଥା । ୧୪୪୪

ଆରେ ତୁମ ବଳ ଶକ୍ତି ବଡ଼ିମା ସକଳ,
ଧନୁ ସହିତରେ ଚଳେ ଲେଉଟଇ କେବଳ ।
ଏହି ବୀରଙ୍କୁ ଅବା ଏବେ ଅଛ ପାଇ,
ଏ ବୁଦ୍ଧିରୁ ବହି କଲ କଳାମୁଖ ଭାଇ । ୧୪୪୫

ତେଜ ଈର୍ଷା ମଦ ମୋହ, ଫୁରାଇ ନୟନ,
ଏବେ ଭାଇ ଦେଖି ନିଅ ଶ୍ରୀରଘୁନନ୍ଦନ ।
ଲକ୍ଷ୍ମଣଙ୍କ କୋପ ଜାଣି ପ୍ରବଳ ଅନଳ,
ତହିଁରେ ପତଙ୍ଗ ହୁଅ ନାହିଁ ନୃପଦଳ । ୧୪୪୬

ବାୟସ ଭାବବ ଯେବେ ହେବାକୁ ଗରୁଡ଼,
ଇଚ୍ଛେ ଯଦି ସିଂହ-ଭାଗ୍ୟ ଶଶକ ବିମୂଢ଼;
ଅକାରଣ କ୍ରୋଧୀ ନର ଯଦି ଲୋଡ଼େ ସୁଖ,
ସମ୍ପଦ ଖୋଜିବ ଯେବେ ମହେଶ-ବିମୁଖ;
କୃପଣ ଲୋଡ଼ଇ ଯେବେ ସୁଯଶ ଭାରତି,
କାମୁକ ଇଚ୍ଛଇ ପୁଣି ନିର୍ମଳ ମୁରତି ।
ଶ୍ରୀହରି ଚରଣେ ଯା'ର ନାହିଁ ଅନୁରକ୍ତି,
ତା' ପକ୍ଷେ ଭାବିବା ବୃଥା ଯେସନେ ମୁକତି ।
ସୀତାଙ୍କୁ ପାଇବା ଆଶା ପୋଷଣ ତେସନେ,
ଅଟ ବୃଥା, ହାସ୍ୟାସ୍ପଦ ହେ ମହାରାଜନେ । ୧୪୪୭।୧୪୪୮

ବିଚଳିତ ହେଲେ ସୀତା ଶୁଣି କୋଳାହଳ,
ଜନନୀଙ୍କ ପାଶେ ନେଇ ଗଲେ ସଖୀଦଳ ।
ମନେ ମନେ ଗୁଣି ସୀତା-ପ୍ରେମ ନିରନ୍ତରେ,
ସ୍ୱଭାବ ଗତିରେ ରାମ ଗୁରୁ ପାଶେ ଗଲେ । ୧୪୪୯

ରାଣୀଙ୍କ ସହିତେ ସୀତା କରନ୍ତି ଶୋଚନା,
କି ଅନର୍ଥ ଏବେ ବିଧି କରିବ ରଚନା ।

ଲକ୍ଷ୍ମଣ ନୃପଙ୍କ ବାକ୍ୟ ଶ୍ରବଣେ କ୍ରୋଧରେ,
ଏଣେ ତେଣେ ଚାହିଁ କଛୁ ନ କହନ୍ତି ଡରେ । ୧୪୫୦

ନୟନ ଅରୁଣ ହେଲା ଭ୍ରୂକୁଟୀ କୁଟିଳ,
ରଗେ ନୃପତ୍ତଙ୍କୁ ଚାହିଁ ହୋଇଲେ ଅଧୀର ।
ମତ୍ତ ହସ୍ତୀ ଯୂଥେ ଦେଖି ସିଂହ ଶିଶୁ ଯେହ୍ନେ,
ହୁଅଇ ଦର୍ପିତ, ହେଲେ ଲକ୍ଷ୍ମଣ ତେସନେ । ୧୪୫୧

କୋଳାହଳ ଶୁଣି ନାରୀ ପୁରୁଷେ ସକଳେ,
ମିଳି ମହୀପଙ୍କୁ ଗାଳି ଦିଅନ୍ତି ସକଳେ ।
ସେ ସମୟେ ଶୁଣି ଶିବ ଧନୁ ବିଭଞ୍ଜନ,
ପହଞ୍ଚିଲେ ଭୃଗୁକୁଳ-କମଳ-ତପନ । ୧୪୫୨

ତାହାଙ୍କୁ ନିରେଖି ନୃପେ ହେଲେ ଭୟଭୀତ,
ବାଜର ଝାମ୍ପରେ ଯେହ୍ନେ ଗୁଣ୍ଡୁରି ଶଙ୍କିତ ।
ଗଉର ଶରୀର ପରେ ଭସ୍ମ ସୁଶୋଭିତ,
ବିଶାଳ ଲଲାଟ ପଟେ ତ୍ରିପୁଣ୍ଡ୍ର ରଚିତ । ୧୪୫୩

ମସ୍ତକରେ ଜଟା ଶଶି ବଦନ ଶୋଭନ,
କ୍ରୋଧ ହେତୁ କଛୁ କଛୁ ଅରୁଣିମା ବର୍ଣ୍ଣ ।
ଭ୍ରୂକୁଟୀ କୁଟିଳ ରୋଷେ ନୟନ ସ୍ଫୁରିତ,
ଚାହାଣୀରୁ ମନେ ହୁଏ ଅତି କ୍ରୋଧାନ୍ୱିତ । ୧୪୫୪

ବୃଷ-ସ୍କନ୍ଧ ବକ୍ଷ ବାହୁ ଅତି ସୁବିଶାଳ,
ହାତେ ମୃଗ ଛାଲ ଚାରୁ ଉପବୀତ ମାଳ ।
କଟିରେ ବକ୍‌କଳ ବେନି ତୂଣୀର ବିରାଜେ,
କାନ୍ଧରେ କୁଠାର କରେ ଧନୁଶର ସାଜେ । ୧୪୫୫

ଶାନ୍ତ ଶୁଦ୍ଧ ବେଶ ସିନା କଠୋର କରଣୀ
ସ୍ୱରୂପ ତାଙ୍କର ଯାହା କେ ପାରିବ ବର୍ଣ୍ଣି !
ଧରି ମୁନି ଦେହ ଅବା ନୃପଙ୍କ ଆଗରେ,
ଉପସ୍ଥିତ ବୀର-ରସ ପ୍ରଚଣ୍ଡ ବେଗରେ । ୧୪୫୬

ଭୃଗୁପତିଙ୍କର ଦେଖି ଭୟଙ୍କର ରୂପ,
ବ୍ୟାକୁଳିତ ହେଲେ ଭୟେ ଉପସ୍ଥିତ ନୃପ ।
ଉଠି ଛିଡ଼ା ହୋଇ ଦେଇ ପିତୃ ପରିଚୟ,
କଲେ ପ୍ରଣିପାତ ଦଣ୍ଡବତ ସାନୁନୟ । ୧୪୫୭

ସ୍ୱଭାବେ ମଙ୍ଗଳ ଚିନ୍ତ ଚାହିଁଲେ କାହାରେ,
ସେ ନୃପ ଭାବନ୍ତି ସତେ ମୃତ୍ୟୁ ଆସି ଦ୍ୱାରେ ।
ତା'ପରେ ଜନକ ଆସି ଶିର ନୁଆଁଇଲେ,
ସୀତାଙ୍କୁ ଡକାଇ ପ୍ରଣିପାତ କରାଇଲେ । ୧୪୫୮

ଆଶୀର୍ବାଦ କରିବାରୁ ସଖୀଏ ହରଷେ,
ନିଜ ଗହଣରେ ନେଲେ ସୀତାଙ୍କୁ ରଭସେ ।
ପରେ ବିଶ୍ୱାମିତ୍ର ଆସି କରିଲେ ସାକ୍ଷାତ,
ବେନି ପୁତ୍ରେ କରାଇଲେ ପଦେ ପ୍ରଣିପାତ । ୧୪୫୯

ଦଶରଥ ନନ୍ଦନ ଏ ଶ୍ରୀରାମ ଲକ୍ଷ୍ମଣ,
କଲେ ଆଶୀର୍ବାଦ ଦେଖି ଯୁଗଳ ରତନ ।
ଶ୍ରୀରାମଙ୍କୁ ଦେଖି ହେଲା ସ୍ତମ୍ଭିତ ନୟନ,
ଅପାର ସେ ରୂପ ମାର-ମଦ-ବିମର୍ଦ୍ଦନ । ୧୪୬୦

ନ ଜାଣିଲା ପରି ପୁଣି ଜନକଙ୍କୁ ଚାହିଁ,
ପଚାରିଲେ କୋଳାହଳ କାରଣ କିପାଇଁ ?
କ୍ରୋଧ ବ୍ୟାପି ଯାଇଅଛି ସମସ୍ତ ଶରୀରେ,
ଜାଣି ନ ଜାଣିଲା ପ୍ରାୟେ କହିଲେ ଅଧୀରେ । ୧୪୬୧

ସବୁ କଥା ଶୁଣାଇଲେ ମିଥିଳାଧିପତି,
ଯେ ଲାଗି ନୃପତିଗଣେ ତହିଁ ଆସିଛନ୍ତି ।
ଶୁଣି କଥା ଅନ୍ୟ ଦିଗେ ଦୃଷ୍ଟି ଫେରାଇଲେ,
ଭୂମି ପରେ ଧନୁ ଭାଙ୍ଗି ପଡ଼ିଛି ଦେଖିଲେ । ୧୪୬୨

କହିଲେ ସକ୍ରୋଧେ ତହୁଁ ବଚନ ପ୍ରଚଣ୍ଡ,
"ହେ ମୂର୍ଖ ଜନକ, କଏ ଭାଙ୍ଗିଛି କୋଦଣ୍ଡ ।

ଦେଖାଅ ତାହାକୁ ବେଗେ ନତୁବା ତୋହର,
ରାଜ୍ୟ ଓଲଟାଇ ଦେବ ଯିବ ଧରାତଳ । ୧୪୬୩

ଭୟରେ ଜନକ ତାଙ୍କୁ ନ ଦେଲେ ଉତ୍ତର,
ହରଷିତ ହେଲେ ଖଳ ନୃପତି ନିକର ।
ପୁର ନରନାରୀ ନାଗ ସୁର ମୁନିବର,
ବେଦନା ବୁକୁରେ ଚିନ୍ତା କରନ୍ତି ସକଳ । ୧୪୬୪

ଜାନକୀ ଜନନୀ ମନେ କରନ୍ତି ସନ୍ତାପ,
ବିଧାତା ବିଗାଡ଼ି ସବୁ ହୃଦେ ଭରେ ତାପ ।
ସୀତା ଭୃଗୁପତିଙ୍କର ସ୍ୱଭାବ ଶୁଣିଲେ,
ଅର୍ଦ୍ଧ ନିମେଷକୁ କଳ୍ପସମ କଟାଇଲେ । ୧୪୬୫

ବୈଦେହୀ ଅଧୀରା, ସବୁ ଲୋକେ ଭୟଭୀତ,
ରଘୁବର ରାମ ଦେଖି ଏ ସବୁ ଚରିତ ।
ଅବସ୍ଥାକୁ ବୁଝିଁ ଧୀରେ କହିଲେ ବଚନ,
ନ ଥିଲା ତହିଁରେ ହର୍ଷ ବିଷାଦ ଲକ୍ଷଣ । ୧୪୬୬

**ମାସ ପାରାୟଣ,** ଦଶମ ବିଶ୍ରାମ ।

# ଦଶ

"ହେ ନାଥ ମହେଶ-ଧନୁ ଭଙ୍ଗକାରୀ ଜନ,
କେହି ହୋଇଥିବ ତବ ଦାସ ଅକିଞ୍ଚନ ।
କି ଆଦେଶ ତବ ମୋତେ କାହିଁକି ନ କହ ?"
ତା' ଶୁଣି କହିଲେ ମୁନି କ୍ରୋଧେ ଅତିଶୟ । ୧୪୬୭

"ସେବା କର୍ମ କରେ ଯିଏ ସେ ସିନା ସେବକ
ଶତ୍ରୁ କର୍ମ କଲେ ସେ ତ ହୁଏ ପ୍ରତିପକ୍ଷ ।
ଶୁଣ ରାମ, ଶିବଧନୁ ଭାଙ୍ଗିଅଛୁ ଯିଏ,
ସହସ୍ରବାହୁ ସଦୃଶ ମୋର ଶତ୍ରୁ ସିଏ । ୧୪୬୮

ସେ ଅଲଗା ହୋଇଯାଉ ତେଜି ଏ ସମାଜ,
ନଚେତ ନିହତ ହେବେ ସବୁ ନୃପେ ଆଜ ।"
ମୁନିଙ୍କ ବଚନ ଶୁଣି ଲକ୍ଷ୍ମଣ ହସିଲେ,
ଅପମାନ କଥା ପର୍ଶୁରାମଙ୍କୁ କହିଲେ,—୧୪୬୯

"କେତେ ଧନୁ ଆମେ ଭାଙ୍ଗିନାହୁଁ ବାଲ୍ୟକାଳେ,
ଗୋସାଇଁ କରନ କୋପ କେବେ ଆମଠାରେ,
ଏ ଧନୁରେ ଏତେ କିଆଁ ମମତା ତୁମର ?"
ତା' ଶୁଣି କହିଲେ କ୍ରୋଧେ ଭୃଗୁକୁଳବର । ୧୪୭୦

"ରେ ନୃପ ବାଳକ ତୁହି ହୋଇ କାଳବଶ,
ତୋ' ହୃଦୟର ବୁଦ୍ଧି ସବୁ ହୋଇଅଛି ଧ୍ୱଂସ ।
ସାଧାରଣ ଧନୁ କେହ୍ନେ ସମ ହୋଇପାରେ,
ଶିବଧନୁ ସଙ୍ଗେ, ଯାହା ବିଖ୍ୟାତ ସଂସାରେ ?" ୧୪୭୧

ଲକ୍ଷ୍ମଣ କହିଲେ ହସି, "ମୋର ଜାଣିବାରେ,
ଶୁଣ ଦେବ, ସବୁ ଧନୁ ସମାନ ସଂସାରେ ।
କିବା ଲାଭ କ୍ଷତି ଭାଙ୍ଗି ଜୀର୍ଣ୍ଣ ଶରାସନ,
ନୂଆ ଭାବି ଦେଖିଥିଲେ ଶ୍ରୀରଘୁନନ୍ଦନ । ୧୪୭୨

ଛୁଅନ୍ତେ ଭାଙ୍ଗିଲା, ନାହିଁ ରାମଙ୍କର ଦୋଷ,
ଅକାରଣେ କିଆଁ ମୁନି କର ଏତେ ରୋଷ ।"
ମୁନୀଶ ପାର୍ଶାକୁ ଚାହିଁ କହିଲେ ଅଧୀରେ,
ମୋହର ସ୍ୱଭାବ ଶଠ ଶୁଣି ନାହୁଁ କରେ ? ୧୪୭୩

ବାଳକ ବିଚାରି ବଧ ନ କରଇ ତୋତେ
'ମୁଁ କେବଳ ମୁନି' ବୋଲି ବିଚାରୁ କି ମୋତେ ?
ବାଳ-ବ୍ରହ୍ମଚାରୀ ମୁହିଁ ଅତିଶୟ କ୍ରୋଧୀ,
ଭୁବନ ବିଦିତ କ୍ଷତ୍ରୀ କୁଳର ବିରୋଧୀ । ୧୪୭୪

ନିଜ ଭୁଜବଳେ କରି ନୃପହୀନ ଧରା,
ବହୁବାର ବ୍ରାହ୍ମଣଙ୍କୁ ଅରପିଛି ପରା ।
ସହସ୍ରବାହୁର ଭୁଜ ଉଚ୍ଛେଦନ କାରୀ,
ରେ ନୃପ ବାଳକ ଚାହାଁ ସେହି ଏ କୁରାଢ଼ୀ । ୧୪୭୫

ହେ ରାଜକିଶୋର ପିତାମାତାଙ୍କୁ ତୋହର,
ଚିନ୍ତାକୁଳ ନ କରାଅ କହି ତୁ ଏପରି ।
ଏ ମୋର ପାରଶା ଜାଣ ଅତି ଭୟାନକ,
ଗର୍ଭ ଶିଶୁ ନାଶକାରୀ ପ୍ରାଣର ଆତଙ୍କ ।" ୧୪୭୬

କହିଲେ ଲକ୍ଷ୍ମଣ ହସି ବଚନ ମଧୁର,
"ଓହୋ, ମୁନି ନିଜକୁ ତ ଭାବୁଛନ୍ତି ଶୂର ।
ଦେଖାନ୍ତି କୁରାଢ଼ି ତେଣୁ ମୋତେ ବାରମ୍ବାର,
ଚାହାନ୍ତି ସେ ଫୁଙ୍କି ଦେବେ ଉଡ଼ାଇ ପାହାଡ଼ । ୧୪୭୭

ଏଠାରେ ତ କେହି କଷି କୁଷ୍ମାଣ୍ଡ ହୋଇନି,
ଯେ ତର୍ଜନୀ ଦେଖି ମରିଯିବେ ସେଇକ୍ଷଣି ।

ତୁମ କୁଗତିକୁ ଦେଖି, ଦେଖି ଧନୁ ବାଣେ,
କହିଥିଲି ମୁହିଁ ଯାହା ମନ ଅଭିମାନେ । ୧୪୭୮

ଭୃଗୁବଂଶୀ ଜାଣି, ଦେଖି ଯଜ୍ଞ ଉପବୀତ,
ଯା' କହୁଚ କ୍ରୋଧ ତେଜ ସହଇ ମୁହିଁ ତ ।
ଦେବ ବିପ୍ର ହରିଭକ୍ତ ଗୋରୁଙ୍କ ଉପରେ,
ଦେଖାନ୍ତିନ କେ ବୀରତା ଆମରି କୁଳରେ । ୧୪୭୯

ବଧିଲେ କାରଣ ପାପ, ହାରିଲେ ଅକୀର୍ତ୍ତି,
ମାରିଲେ ବି, ତୁମ ପାଦେ ପଡ଼ିବା ତ ନୀତି ।
କୋଟିଏ କୁଳିଶ ସମ ବଚନ ତୁମର,
ବୃଥାରେ କୁଠାର ଧନୁ ବାଣ ସିନା ଧର । ୧୪୮୦

ଲଗେ ଯାହା ଅନୁଚିତ, ତାହା ମୁଁ କହଇ,
କ୍ଷମ ଅପରାଧ ମୋର ଆହେ ବିଶ୍ୱଜୟୀ ।"
ଏ କଥାରେ ଭୃଗୁପତି ହୋଇ କମ୍ପମାନ,
କହିଲେ ଉତ୍ୟକ୍ତ ହୋଇ ଗମ୍ଭୀର ବଚନ । ୧୪୮୧

"ଶୁଣ ବିଶ୍ୱାମିତ୍ର ଅତି ମନ୍ଦ ଏ ବାଳକ,
କାଳ ବଶେ ହେଉଅଛି ସ୍ୱକୁଳ ଘାତକ ।
ରବିକୁଳ-ପୂର୍ଣ୍ଣ ଶଶି କଳଙ୍କ ଏ ଜାଣ,
କପଟ ଉଦଣ୍ଡ ମୂର୍ଖ ନିଃଶଙ୍କ ପ୍ରମାଣ । ୧୪୮୨

କାଳର କରାଳ ଗ୍ରାସେ ପଡ଼ିବ ଏକ୍ଷଣି,
ଦୋଷ ନାହିଁ କହୁଚ ମୁଁ କରି ଉଚ୍ଚ ଧ୍ୱନି ।
ରଖିବାକୁ ଚାହଁ ଯେବେ ତେବେ ମନାକର,
ବୁଝାଇ ପ୍ରତାପ ବଳ କ୍ରୋଧକୁ ମୋହର ।" ୧୪୮୩

ଲକ୍ଷ୍ମଣ କହିଲେ, "ମୁନି ତମେ ଥାଉ ଥାଉ,
ତୁମ ଯଶ କୀର୍ତ୍ତି ବର୍ଣ୍ଣି ପାରିବ କେ ଆଉ ?
ଆପଣା କୃତିତ୍ୱ ତୁମେ ଆପଣା ମୁଖରେ,
କହିଲ ଅନେକ ଥର ଏବେ ମୋ ଆଗରେ । ୧୪୮୪

ସନ୍ତୋଷ ହୋଇବ ଯଦି ଆଉ କିଛି କହି,
କ୍ରୋଧକୁ ଅନ୍ତରେ ଚାପି ବେଦନା ନ ସହି ।
ବୀରବ୍ରତୀ ଧୀର ତୁମ୍ଭେ ବିକାର ରହିତ,
ଗାଳି ଦେବା ତୁମ ପକ୍ଷେ ନ ଶୋଭେ କଦାଚିତ । ୧୪୮୫

ଶୂରେ ବୀରେ ସଂଗ୍ରାମରେ ଦେଖାନ୍ତି ବୀରତ୍ୱ,
ବାକ୍ୟ କହି ନ ଫୁଟାନ୍ତି ଆପଣା ମହତ୍ତ୍ୱ ।
ସଂଗ୍ରାମେ ଶତ୍ରୁକୁ ଦେଖି କାପୁରୁଷଗଣେ,
ପ୍ରତାପ ବାହାନା କରଥାନ୍ତି ଅନୁକ୍ଷଣେ । ୧୪୮୬

କାଳକୁ କେତେ ଯେ ତୁମେ ଦୋହରାଇ ହାକି,
ମୋ ନିମନ୍ତେ ବାରମ୍ବାର ଆଣୁଅଛ ଡାକି ।"
ଶୁଣି ଲକ୍ଷ୍ମଣଙ୍କ ଏହି କଠୋର ବଚନ,
କୁରାଢ଼ି ସଜାଡ଼ି ହାତେ ଧରିଲେ ତତ୍‌କ୍ଷଣ । ୧୪୮୭

"ଏବେ ଆଉ ମୋତେ ଦୋଷ ଦେବ ନାହିଁ କେହି,
ବଧ ଯୋଗ୍ୟ କଟୂଭାଷୀ ଶିଶୁ ଅଟେ ଏହି ।
ବାଳକ ଭାବି ମୁଁ ବଞ୍ଚାଇଲି ବହୁକାଳ,
ଏବେ ସେ ମରଣ ପାଇଁ ହୁଏ ଆଗୁସାର । ୧୪୮୮

କୌଶିକ କହିଲେ, "ଅପରାଧ କ୍ଷମା କର,
ନ ଧରନ୍ତି ଶିଶୁ ଦୋଷ ଗୁଣ ସାଧୁ ନର ।"
"ଖର କୁଠାର ମୋ କରେ ମୁଁ ନିର୍ଦ୍ଦୟ କ୍ରୋଧୀ
ଆଗେ ଉପସ୍ଥିତ ଗୁରୁଦ୍ରୋହୀ ଅପରାଧୀ । ୧୪୮୯

ନ ମାରି ମୁଁ ଛାଡ଼ିଦେଲେ ଦେଉଛି ଉତ୍ତର,
କେବଳ ଶୀଳତା ଯୋଗୁଁ କୌଶିକ ତୁମ୍ଭର ।
ନଚେତ ତା ମୁଣ୍ଡ କାଟି କଠୋର କୁଠାରେ,
ଗୁରୁ ଋଣମୁକ୍ତ ହୋଇ ପାରନ୍ତି ସହଜେ ।" । ୧୪୯୦

ଭାବନ୍ତି କୌଶିକ ମୁନି ହସି ମନେ ମନେ,
ସବୁଟି ହରିତ ସ୍ୱପ୍ନ ଋଷିଙ୍କ ନୟନେ ।

କିନ୍ତୁ ଏ ଯେ ଲୌହଖଣ୍ଡା, ନୁହେଁ ଇକ୍ଷୁଖଣ୍ଡ,
ବୁଝିପାରୁ ନାହାନ୍ତି ତା ପ୍ରଭାବ ପ୍ରଚଣ୍ଡ । ୧୪୯୧

ଲକ୍ଷ୍ମଣ କହିଲେ, "ମୁନି ଚରିତ ଭୁମ୍ଭର,
ଜଗତ ବିଦିତ ନୁହେଁ କାହା ଅଗୋଚର ।
ମୁକ୍ତ ହୋଇଅଛ ମାତାପିତାଙ୍କ ଋଣରୁ,
ଏବେ ଗୁ ରୁ ଋଣି ତବ ହୋଇଅଛୁ ଗରୁ । ୧୪୯୨

ସେ ଦାୟିତ୍ୱ ଥିଲା ଆମ ମୁ ଣ୍ଡ ପରେ ସତେ,
ସୁଧ ବଢ଼ି ଯାଇଥିବ ବହୁ ଦିନ ଗତେ ।
କେ ଅଛୁ ହିସାବୀ ଡାକ ଆଣ ମୁନିମଣି,
ଥଳୀ ଖୋଲି ଦେବ ଶୁଝି ମୁହିଁ ଏଇକ୍ଷଣି ।" ୧୪୯୩

କଟୂ ବାକ୍ୟ ଶୁଣି ଯହୁଁ ଟେକିଲେ କୁଠାର,
ସଭା ମଧ୍ୟେ ପଡ଼ିଗଲା ଘୋର ହାହାକାର ।
"ମୁନି ଦେଖାଉଛୁ ଫାର୍ଶା", କହିଲେ ଲକ୍ଷ୍ମଣ,
"ବିପ୍ର ବୋଲି ନୃପଦ୍ରୋହୀ, ରଖେ ତୋ' ଜୀବନ । ୧୪୯୪

ସମ ଯୋଦ୍ଧା ଜଣେ କେବେ ମିଳି ନାହିଁ ଯେଣୁ,
ନିଜ ଘରେ କୁହ ବିପ୍ର ବୀର ବୋଲି ତେଣୁ ।"
"ଏ ତ ଅନୁଚିତ," ବୋଲି କହିଲେ ସକଳେ,
ଇଙ୍ଗିତେ ଭାଇକି ରାମ ନିବାରଣ କଲେ । ୧୪୯୫

ଲକ୍ଷ୍ମଣଙ୍କ ବାକ୍ୟବାଣ ଆହୂତି ରୂପରେ,
ଭୃଗୁପତି କ୍ରୋଧାଗ୍ନିକୁ ପ୍ରଜ୍ୱଳିତ କରେ ।
ତା' ଦେଖି ଶ୍ରୀରାମ, ରଘୁକୁଳ ବିକର୍ତ୍ତନ,
କହିଲେ ମଧୁରେ ଜଳ ସମ ଏ ବଚନ । ୧୪୯୬

"ହେ ନାଥ ବାଳକ ପରେ କରନ୍ତୁ କରୁଣା,
ଦୁଗ୍‌ଧ-ମୁଖ ଶିଶୁ ସେ ତ, କ୍ରୋଧ କର ଊଣା ।
କିଛି ଯଦି ଜାଣିଥାନ୍ତା ପ୍ରଭୁଙ୍କ ପ୍ରଭାବ,
ସେ ନିର୍ବୋଧ କରନ୍ତା କି ପ୍ରତିଦ୍ୱନ୍ଦ୍ୱୀ ଭାବ ? ୧୪୯୭

ଶିଶୁ ପୁତ୍ର ଯଦି କିଛି ଚପଳତା କରେ,
ପିତା ମାତା ଗୁରୁ ମନ ଆନନ୍ଦରେ ଭରେ,
ତେଣୁ କୃପା କର ଶିଶୁ ସେବକ ବିଚାରି,
ତୁମେ ଧୀର ଶାନ୍ତ ସମଦର୍ଶୀ ବ୍ରହ୍ମଚାରୀ ।" ୧୪୯୮

ଅଳ୍ପ ଶାନ୍ତ ହେଲେ ମୁନି ରାମଙ୍କ ବଚନେ,
କିଛି କହି ହସିଦେଲେ ଲକ୍ଷ୍ମଣ ତକ୍ଷଣେ ।
ମୁନିଙ୍କ ସର୍ବାଙ୍ଗେ ତହୁଁ କ୍ରୋଧ ଗଲା ବ୍ୟାପୀ,
କହିଲେ, "ଶ୍ରୀରାମ ତୋର ଭାଇ ବଡ଼ ପାପୀ । ୧୪୯୯

ଦିହ ଗୋରା ସିନା ତାର ଅନ୍ତର କାଳିଆ,
ଏ ତ ବିଷମୁଖ, ହେବ ଦୁଗ୍‌ଧ-ମୁଖ କିଆଁ ?
ସହଜେ କୁଟିଳ, ତୋତେ ନ ଅନୁସରଇ,
ଏହି ନୀଚ ମୋତେ କାଳ ସମ ନ ଦେଖଇ ।" ୧୫୦୦

କହିଲେ ଲକ୍ଷ୍ମଣ ହସି, "ଶୁଣ ଭୃଗୁପତି,
ସକଳ ପାପର ମୂଳ ଜାଣ କ୍ରୋଧ ମତି ।
ତାର ବଶ ହୋଇ ନର କୁକର୍ମ ଆଚରେ,
ସଂସାରରେ ପ୍ରତିକୂଳ ଆଚରଣ କରେ । ୧୫୦୧

ଆପଣଙ୍କ ଅନୁଚର ମୁହିଁ ମୁନିବର,
ଏବେ କୋପ ପରିହରି ଅନୁଗ୍ରହ କର ।
ରାଗ କଲେ ଭଙ୍ଗାଧନୁ ଯୋଡ଼ି ତ ନୋହିବ,
ବସନ୍ତୁ, ପାଦକୁ କେତେ ପୀଡ଼ା ହେଉଥିବ । ୧୫୦୨

ଏହି ଧନୁ ଯଦି ପ୍ରିୟ ଉପାୟ କରିବା,
କାରିଗର ଡାକି ଗୁଣୀ ତାହା ଯୋଡ଼ାଇବା ।"
ଲକ୍ଷ୍ମଣ ବଚନେ ଭୟେ ଜନକ ବ୍ୟଥିତ,
କହିଲେ, "ତୁନି ହ' ଭଲ ନୁହେଁ କଦାଚିତ ।" ୧୫୦୩

ଥର ଥର କମ୍ପୁଥାନ୍ତି ପୁର ନରନାରୀ,
ହିବନ୍ତ କୁମାର ଶ୍ରେଷ୍ଠ, ହେଲେ ଦୁଷ୍ଟ ଘାରି ।

ଶୁଣି ଶୁଣି ଏ ନିର୍ଭୀକ ବାଣୀ ଭୃଗୁପତି,
କ୍ରୋଧରେ ଜଳଇ ତନୁ, ବଳ ହୁଏ କ୍ଷତି । ୧୫୦୪

ଶ୍ରୀରାମଙ୍କୁ ଗାଳି ଦେଇ କହିଲେ ବଚନ,
ତୋର ସାନ ଭାଇ ବୋଲି ରଖେ ତା' ଜୀବନ ।
ମନ ତ ମଳିନ ତନୁ ସୁନ୍ଦର କପଟ,
ବିଷରେ ଭରିତ ସୁନା କଳସ ଯେପରି । ୧୫୦୫

ଲକ୍ଷ୍ମଣ ହସିଲେ ଶୁଣି, ଶ୍ରୀରଘୁନନ୍ଦନ,
ଗୃହିଁଲେ ତାହାଙ୍କ ଆଡ଼େ ତରାଟି ନୟନ ।
ଏଥିରେ ଲକ୍ଷ୍ମଣ ଲଭି ସଙ୍କୋଚ ପରାଣେ,
କଟୁବାଣୀ ତେଜି ଗଲେ ଗୁରୁ ସନ୍ନିଧାନେ । ୧୫୦୬

କହିଲେ ଶ୍ରୀରଘୁନାଥ ଯୋଡ଼ି ବେନି କର—
ଅତ୍ୟନ୍ତ ବିନମ୍ର ମୃଦୁ ବାଣୀ ସୁଶୀତଳ,
"ଶୁଣ ନାଥ ସହଜେ ତ ସୁଜ୍ଞାନୀ ଆପଣ,
ବାଳକ ବଚନେ କେବେ ନ ଦିଅ ଶ୍ରବଣ । ୧୫୦୭

ବିରୁଡ଼ି ଓ ବାଳକର ସ୍ୱଭାବ ସମାନ,
ସନ୍ଥ ଜନେ ତାଙ୍କୁ ଦୋଷ ନ ଦିଅନ୍ତି ଜାଣ ।
ପୁଣି ତବ କାର୍ଯ୍ୟ କିଛି କରିନି ସେ ନାଶ,
ଯାହା ଅବା ଅପରାଧ କରିଛି ଏ ଦାସ । ୧୫୦୮

ତେଣୁ ପ୍ରଭୁ କୃପା କ୍ରୋଧ ବଧ ବା ବନ୍ଧନ,
ଯାହା ଯୋଗ୍ୟ ଦାସ ଭାବି କରନ୍ତୁ ବିଧାନ ।
ବେଗି କ୍ରୋଧ ଉପଶମ ହୋଇବ ଯେପରି,
କହ ମୁନି ଉପାୟ ମୁଁ କରିବି ସେପରି ।" ୧୫୦୯

ଉତ୍ତରେ କହିଲେ, "କେମନ୍ତେ ରାଗ ହେବ ଶାନ୍ତ,
ଏବେ ବି ତୋ' ଭାଇ ମତେ ଚାହୁଁଛି ତରାଟି ।
ବସାଇଲି ନାହିଁ ଯେବେ ତା' ଗଳେ କୁଠାର,
କଅଣ ମୁଁ କଲି ତେବେ କ୍ରୋଧ କରି ଘୋର । ୧୫୧୦

ଶୁଣି ମୋ କୁଠାର ଗତି ଘୋର ଭୟଙ୍କର,
ନୃପ ନାରୀ ଗର୍ଭପାତ ହୁଅଇ ସତ୍ୱର ।
ଏବେ ସେ କୁଠାର ଥାଉ ଥାଉ ମୋର ହସ୍ତେ,
ବୈରୀ ନୃପ ଯୁବା ଜାଇ ରହିବ କେମନ୍ତେ ? ୧୫୧୧

ହାତ ମୋ ଚଳୁନ, କ୍ରୋଧେ ହୃଦୟ ଜଳୁଛି,
ନୃପ-ଘାତି ଏ କୁଠାର କୁଣ୍ଠିତ ହେଉଛି ।
ବିଧି ବାମ ହେଲା, ମୋର ବଦଳେ ସ୍ୱଭାବ,
କେବେ କାହିଁ ନ ଥିଲା ତ ହୃଦେ କୃପା ଭାବ । ୧୫୧୨

ଦୟା ଦେଉଅଛୁ ଏବେ ଦୁଃସହ କଷଣ,"
ଏହା ଶୁଣି ନତ ଶୀରେ ହସିଲେ ଲକ୍ଷ୍ମଣ ।
କହିଲେ, "କରୁଣା-ବାୟୁ ବହେ ରୂପ ମତେ,
ବଚନ କହିଲେ ଫୁଲ ଝଡ଼ିପଡ଼େ ସତେ । ୧୫୧୩

ହୃଦୟ ଯାଉଛି ଜଳ ଯେବେ କୃପା କରି,
କ୍ରୋଧ କରି, ବହି ରଖୁ ଶରୀର ଭ୍ରମରି ।"
"ଏ ବାଳକ ଜଦ ଦେଖି ଜନକ ନୃପତି,
ଗୃହେଁ ଜଡ଼ ଯମପୁରେ ରହିବ ବସତି । ୧୫୧୪

ଦୃଷ୍ଟି ଅନ୍ତରାଳେ ତାକୁ କାହିଁକି ନ ରଖ,
ଦେଖିବାକୁ ଶ୍ରେଷ୍ଠ ସିନା ଏ ଦୁଷ୍ଟ ବାଳକ ।"
କହିଲେ ଲକ୍ଷ୍ମଣ ହସି, "ହେ ତପୀ ଗୋସାଇଁ,
ଆଖି ବୁଜ ଭାବନାଅ କେଉଁଠି କେ ନାହିଁ ।" ୧୫୧୫

ତା'ପରେ ପରଶୁରାମ ହୃଦେ କ୍ରୋଧ ବହି,
ରାମଙ୍କୁ କହିଲେ, "ଶଠ ଦେଖାଏଁ କ ଛଇ ।
ଶିବଧନୁ ଭାଙ୍ଗିକରୁ ତୋ' ଅନ୍ତରେ ଟାଣ,
ଓଲଟି ଆମକୁ ପୁଣି ଶିଖାଉଛୁ ଜ୍ଞାନ । ୧୫୧୬

ଭାଇ କହେ କଟୁ କଥା ପାଇ ତୋ ସମ୍ମତି,
କରଯୋଡ଼ ତୁହି ଛଳେ କରୁଛୁ ବିନତି ।

ମୋହ ସାଥେ ଲଢ଼ି ମୋର ପରିତୋଷ କର,
ନାହିଁ ତ ଆପଣା 'ରାମ ନାମ' ପରିହର । ୧୫୧୭

ଛଳ ତେଜ ଆରେ ଶିବଦ୍ରୋହୀ କର ରଣ,
ନଚେତ ଅନୁଜ ସହ ନେବି ତୋ ଜୀବନ ।
ଗର୍ଜନ୍ତି ପରଶୁରାମ କୁଠାର ଉଠାଇ,
ହସନ୍ତି ଶ୍ରୀରାମ ମନେ ମସ୍ତକ ନୁଆଇଁ । ୧୫୧୮

ଭାବଲେ ଶ୍ରୀରାମ, ଦୋଷ କରିଛି ଲକ୍ଷ୍ମଣ,
ମୋ' ଉପରେ ମୁନିଙ୍କର ରୋଷ ଅକାରଣ ।
କାହିଁ କାହିଁ ହୋଇଥାଏ ଏପରି ଘଟନ,
ସରଳତା ହୁଏ ବଡ଼ ଦୋଷର କାରଣ ।
ବଙ୍କ ଜାଣି କାହାକୁ ବା କଏସେ ବନ୍ଦଇ,
ବଙ୍କ ଚନ୍ଦ୍ରମାକୁ ରାହୁ ଗ୍ରାସ ନ କରଇ । ୧୫୧୯

ଶ୍ରୀରାମ କହିଲେ, "ମୁନି କ୍ରୋଧ ପରିହର,
କୁଠାର ତ କରେ, ଆଗେ ଏଇ ମଥା ମୋର ।
ଯେପରି କରନ୍ତୁ ଯେଣ୍ଡେ ରୋଷ ଯିବ ସ୍ୱାମୀ,
ଜାଣନ୍ତୁ ମୁଁ ଅଟେଷ୍ଟି ତବ ଦାସ, ଅନୁଗାମୀ । ୧୫୨୦

ସ୍ୱାମୀ ସେବକର କେଉଁଠି ହୋଇବ ସମର,
ହେ ମୁନୀଶ ମନୁ ଏବେ ରୋଷ ପରିହର ।
ଯା' କହୁ କହିଚ ତାହା ଏଇ ବେଶ ପାଇଁ,
ପ୍ରକୃତରେ ବାଳକର କିଛି ଦୋଷ ନାହିଁ । ୧୫୨୧

ଦେଖି ଆପଣଙ୍କୁ ଫାର୍ଶୀ ଧନୁଶରଧାରୀ,
ବାଳକର ହେଲା ରୋଷ କେ' ବୀର ବିଗୁରି ।
ନାମ ସିନା ଜାଣିଥିଲା କେବେ ନ ଚହ୍ନିଚ,
ନିଜ ବଂଶ ସ୍ୱଭାବେ ଯା' ଉତ୍ତର ଦେଇଚ । ୧୫୨୨

ଆସିଥିଲେ ହେ ଗୋସାଇଁ ତୁମେ ମୁନି ପରି,
ଏ ବାଳକ ପଦରଜ ଶିରେ ଥାନ୍ତା ଧରି ।

ଅଜ୍ଞାନ ଦୋଷକୁ ତାର କରନ୍ତୁ ମାର୍ଜନ,
ବିପ୍ର-ହୃଦ ଦୟାଶୀଳ ହେବା ପ୍ରୟୋଜନ । ୧୫୨୩

ନାଥ, ତୁମ ସମସ୍ତ ହୋଇବ କେସନ,
କହନ୍ତୁ କେଉଁଠି ଶିର କାହିଁ ବା ଚରଣ ?
'ରାମ' ମାତ୍ର ଲଘୁ ନାମ ଅଟଇ ମୋହର,
ପରଶୁ ସହିତେ ନାମ ବୃହତ ତୁମର । ୧୫୨୪

ହେ ଦେବ, ଗୋଟିଏ ଗୁଣ ଧନୁରେ ମୋହର,
ପରମ ପବିତ୍ର ନବଗୁଣ ଯେ ତୁମ୍ଭର ।
ହାରିଛି ସକଳ ବିଗେ ମୁହିଁ ତବ ପାଶେ,
କ୍ଷମ ବିପ୍ର ଅପରାଧ, କ୍ଷମ ତବ ଦାସେ ।" ୧୫୨୫

(ଶମ ଦମ ତପ ଶୌଚ କ୍ଷମା ସରଳତା,
ଜ୍ଞାନ ଓ ବିଜ୍ଞାନ ଗୁଣ ପୁଣି ଆସ୍ତିକତା ।)

ପରଶୁରାମଙ୍କୁ ରାମ ଯେଣୁ ରହି ରହି,
ବାର ବାର ସମ୍ବୋଧିଲେ ମୁନି ବିପ୍ର କହି,
ରାଗେ ଭୃଗୁପତି ତହୁଁ କହିଲେ ସତ୍ୱର,
"ଭାଇ ପରି ତୁ କୁଟିଳ ହୋଇଛୁ ପାମର । ୧୫୨୬

କପଟ ବ୍ରାହ୍ମଣ ବୋଲି ଜାଣିଛୁ କି ମୋତେ,
ମୁଁ ଯେପରି ବିପ୍ର ତାହା ଶୁଣାଉଛି ତୋତେ ।
ସ୍ରୁବ ସମ ରୂପ ମୋର ଆହୁତି ଶାୟକ,
ମୋହର ପ୍ରଚଣ୍ଡ କୋପ କରାଳ ପାବକ । ୧୫୨୭

ସମିଧ ତ ଚତୁରଙ୍ଗ ସେନା ମୋ ସଙ୍ଗରେ
ବଳି ପଶୁ ହେଲେ ଆସି ମହା ମହୀଶ୍ୱରେ ।
ସେମାନଙ୍କୁ କାଟି ରାମ ଏହି ମୋ କୁଠାରେ,
କୋଟି ଜପ-ଯଜ୍ଞ-ଯଜ୍ଞ କରିଛି ସଂସାରେ । ୧୫୨୮

ମୋହର ପ୍ରଭାବ ତୋତେ ନୁହଇ ବିଦିତ,
ତେଣୁ ମୁନି ବିପ୍ର କହୁ ଅବଜ୍ଞା ସହିତ ।

ଧନୁ ଭାଙ୍ଗି ଦର୍ପ ତୋର ବଢ଼ୁଛି ବଡ଼ିଛି,
ଅହଂକାର ବଶ୍ୟ ଜଣି ଠିଆ କ ହୋଇଛୁ !!" ୧୫୨୯

ଶ୍ରୀରାମ କହିଲେ ଭାବ କହ ମୁନିବର,
ବଡ଼ ତବ କ୍ରୋଧ କ୍ଷୁଦ୍ର ଅପରାଧ ମୋର ।
ଛୁଉଁ ଛୁଉଁ ଏ ପୁରୁଣା ଧନୁ ଭାଙ୍ଗିଗଲା,
କ ପାଇଁ କରିବ ଗର୍ବ ଅଭିମାନ ଭଲା ? ୧୫୩୦

ଶୁଣ ଭୃଗୁପତି ବିପ୍ର କହି ହେଯୁଜ୍ଞାନ,
ଯଦି କରିଥାଏ, ଏହା ସତ୍ୟ ବୋଲି ଜାଣ ।
କହ ତ ସଂସାରେ ଅଛୁ ଏପରି କେ' ବୀର,
ଯା' ଆଗେ ସଭୟେ ମୁହିଁ ନୁଆଁଇବ ଶିର । ୧୫୩୧

ଦେବତା ଦାନବ ରାଜା ଯୋଦ୍ଧା ସୁମହାନ,
ହେଉ ସମକକ୍ଷ ଅବା ବଳି ବଳବାନ ।
ରଣେ ଡାକ ଦେବ ଯେହୁ ହେଲେ ବି ସେ କାଳ,
ତା' ସାଥେ ଲଢ଼ିବୁ ଆମେ ହୋଇ ମଉଆଳ । ୧୫୩୨

କ୍ଷତ୍ରିୟ ଶରୀର ଧରି ଯୁଦ୍ଧକୁ ଯେ ଡରେ,
ସେ ନୀଚ କଳଙ୍କ ବୋଲେ ଆପଣା କୁଳରେ ।
କୁଳ ଗୁଣ ନ ଗାଇ ମୁଁ କହୁଚି ସରଳେ,
କାଳକୁ ନ ଡରେ ରଘୁବଂଶୀ ଧରାତଳେ । ୧୫୩୩

ବ୍ରାହ୍ମଣ ବଂଶର ଏହି ମହିମା ମୁଁ କହେ,
ଯେ ଡରେ ତୁମକୁ ସର୍ବେ ଅଭୟ ସେ ରହେ ।"
ଶୁଣି ଶ୍ରୀରାମଙ୍କ ଗୂଢ଼ କୋମଳ ବଚନ,
ଖୋଲିଗଲା ମୁନିଙ୍କର ଜ୍ଞାନ ଆବରଣ । ୧୫୩୪

କହିଲେ ସେ, "ଧର ରାମ ଏବେ ବିଷ୍ଣୁ ଧନୁ,
ଆକର୍ଷି ଆଶଙ୍କା ମୋର ଦୂର କର ମନୁ ।"
ଆପେ ଗୁଳିଗଲା ଗୁପ ହାତେ ଦେଉ ଦେଉ,
ପରଶୁରାମଙ୍କ ମନେ ବିସ୍ମୟର ଢେଉ । ୧୫୩୫

ତହୁଁ ସେ ପାରିଲେ ଜାଣି ଶ୍ରୀରାମ ପ୍ରଭାବ,
ପୁଲକିତ ତନୁ, ମନେ ପ୍ରଫୁଲ୍ଲିତା ଭାବ ।
ହାତଯୋଡ଼ି ସବିନୟେ କହିଲେ ବଚନ,
ହୃଦ ଅସମ୍ଭାଳ ଲାଭି ପ୍ରେମ ରସ ଘନ । ୧୫୩୬

"ଜୟ ରଘୁକୁଳ-ପଦ୍ମ-ବନ-ଦିବାକର,
ଦହନେ ଦନୁଜ-କୁଳ-ବନ ଦାବାନଳ ।
ଜୟ ସୁର ମହୀସୁର ଧେନୁ ହିତକାରୀ,
ଜୟ ମଦ ମୋହ କ୍ରୋଧ ଭ୍ରମ ଭୟହାରୀ । ୧୫୩୭

ହେ ବିନୟ-ଶୀଳ-ଗୁଣ-କରୁଣା ସାଗର,
ବଚନ-ରଚନା-ସୁଚତୁର-ରଘୁବର ।
ସେବକ ହେ ସୁଖଦାୟୀ ସର୍ବାଙ୍ଗ ସୁନ୍ଦର,
କୋଟି କାମ ଛବିଧାରୀ ଜୟ ହେ ତୁମର । ୧୫୩୮

ପ୍ରଶସ୍ତି ଗାଇବି କେମନ୍ତେ ଗୋଟିଏ ମୁଖରେ,
ତୁମେ ହଂସ ଭବ ମନ-ମାନସରୋବରେ ।
ଅଜ୍ଞାନେ କହିଛି ବହୁ କଠୋର ବଚନ,
କ୍ଷେମ ଘଇ କ୍ଷମାକର କ୍ଷମା-ନିକେତନ । ୧୫୩୯

ଜୟ ରଘୁକୁଳ କେତୁ ଅଖିଳ ଭୁବନେ ।"
କହି ଭୃଗୁପତି ତପ ପାଇଁ ଗଲେ ବନେ ।
ମନ୍ଦମତି ନୃପଗଣ ପ୍ରାଣେ ଭୟ ପାଇ,
ଘରୁ ପ୍ରାଣ ଘେନି ଗଲେ କୁଆଡ଼େ ପଳାଇ । ୧୫୪୦

ଦୁନ୍ଦୁଭି ବଜାଇ ସୁରେ ଘୋର ନିନାଦରେ,
ପୁଷ୍ପ ବୃଷ୍ଟି କଲେ ପ୍ରଭୁ ରାମଙ୍କ ଉପରେ ।
ପ୍ରସନ୍ନ ଜନକପୁର ନିବାସୀ ସକଳ,
ମନୁ ତୁଟିଗଲା ଭୟ ବିଷାଦ ସତ୍ୱର । ୧୫୪୧

ଘନ ଘୋର ଘୋଷେ ବାଦ୍ୟ ବାଜିଲା-ନଗରେ,
ଶୁଭ ସାଜ ସଜାଇଲେ ସର୍ବେ ମନୋହରେ ।

ଦଳ ଦଳ ମିଳି ଶଶିମୁଖୀ ସୁଲୋଚନା,
କରନ୍ତି ମଧୁର ଗାନ କୋକିଳ-ବଚନା । ୧୫୪୨

ଜନକଙ୍କ ସୁଖ କିଏ ବର୍ଣ୍ଣିବ କିପରି ?
ଜନମ-ଦରିଦ୍ର ନିଧି ପାଇଛି ଯେପରି ।
ଭୟ ଗତେ ସୁଖଲାଭ କରିଲେ ଜାନକୀ,
ଚକୋର-କୁମାରୀ ଚନ୍ଦ୍ର ଉଦୟେ ଯେମିତି । ୧୫୪୩

ପ୍ରଣମି କୌଶିକ ପଦେ ଜନକ କହିଲେ,
"ତବ ଆଶୀର୍ବାଦେ ଧନୁ ଶ୍ରୀରାମ ଭାଙ୍ଗିଲେ ।
ମୋତେ କୃତକୃତ୍ୟ କଲେ ଏହି ଦୁଇ ଭାଇ,
ଏବେ ଯା' ଉଚିତ ତାହା କରନ୍ତୁ ଗୋସାଇଁ ।" ୧୫୪୪

କହିଲେ କୌଶିକ, "ଶୁଣ ନୃପତି ପ୍ରବୀଣ,
ଏମିତି ବିବାହ ଥିଲା ଏ ଧନୁର ଅଧୀନ ।
ଧନୁ ଭଗ୍ନେ ବିଭା କାର୍ଯ୍ୟ ହୋଇଛି ସମ୍ପନ୍ନ,
ସୁର ନର ସଭିଙ୍କୁ ଏ ବିଦିତ ରାଜନ । ୧୫୪୫

ତଥାପି କୁଳର ରୀତି କର ଦଣ୍ଡଧାରୀ,
ବିପ୍ର କୁଳବୃଦ୍ଧ କୁଳଗୁରୁଙ୍କୁ ବିଚାରି ।
ବେଦରେ ରହିଛି ଯେଉଁ ନିୟମ ପଦ୍ଧତି,
ସେପରି ଆଚାର କର କୋଶଳ ନୃପତି । ୧୫୪୬

ପଠାଅ ଦୂତଙ୍କୁ ଯାଇ ଅଯୋଧ୍ୟା ନଗରେ,
ଆଣନ୍ତୁ ସେ ଡାକି ଦଶରଥ ନୃପବରେ ।"
"ହେ କୃପାଳୁ ଭଲ ହେଲା" କହି ହର୍ଷମନେ,
ଡକାଇଲେ ଦୂତଗଣେ ରାଜା ତତକ୍ଷଣେ । ୧୫୪୭

ପୁଣି ସେ ଡକାଇ ଥିଲେ ଯେତେ ମହାଜନ,
ସକଳେ ପହଞ୍ଚି କଲେ ସାଦର ସମ୍ମାନ ।
ଆଦେଶିଲେ ରାଜା ହାଟ ବାଟ ଦେବାଳୟେ,
ଚୌଦିଗେ ସଜାଅ ପୁର ନଗର ନିଳୟେ । ୧୫୪୮

ହରଷେ ଫେରିଲେ ସେହୁ ନିଜ ନିଜ ଘରେ ।
ପରିଗୃହକଙ୍କୁ ରାଜା ଡକାଇ ତା'ପରେ
କହିଲେ, "ବିଚିତ୍ର ଏକ ମଣ୍ଡପ ତିଆର ।"
ଆନନ୍ଦେ ଫେରିଲେ ସେହି ଆଜ୍ଞା କରି ସାର । ୧୫୪୯

ସେ ବହୁତ କାରିଗରେ ଡାକ ପଠାଇଲେ,
ମଣ୍ଡପ କୁଶଳୀ ଶିଳ୍ପୀ ଯେଉଁମାନେ ଥିଲେ ।
ବିଧାତାଙ୍କୁ ବନ୍ଦୀ କାର୍ଯ୍ୟ କଲେ ସେ ଆରମ୍ଭ,
ରଚିଲେ କନକମୟ କଦଳୀର ସ୍ତମ୍ଭ । ୧୫୫୦

ରମ୍ୟ ଫଳ ପତ୍ର କଲେ ସବୁଜ ମଣିରେ,
ପଦ୍ମରାଗେ କୁସୁମର ପେନ୍ଥା ବିଖରିଲେ ।
ମଣିମୟ ମଣ୍ଡପର ଶୋଭା ବିମୋହନ,
ବିଚିତ୍ର ରଚନା, ଭୁଲେ ବ୍ରହ୍ମାଙ୍କର ମନ । ୧୫୫୧

ଲତା ମଧ୍ୟେ ମଧ୍ୟେ ଦେଲେ ମଣିର ବନ୍ଧନ,
ମୁକ୍ତାର ଝାଲର ତହିଁ ଦିଶେ ସୁଶୋଭନ ।
ହୀରା ମାଳା ମରକତ ମାଣିକ୍ୟ ଆଦିର,
ଚିରି ଯତ୍ନେ କଲେ ନାନା ବର୍ଣ୍ଣର କମଳ । ୧୫୫୨

ରଚିଲେ ଭ୍ରମର ଶ୍ରେଣୀ ପକ୍ଷୀ ବହୁବର୍ଣ୍ଣ,
ପବନେ ସେ ଗୁଞ୍ଜରନ୍ତି, କରନ୍ତି କୂଜନ ।
ସ୍ତମ୍ଭର ଉପରେ ସୁର ପ୍ରତିମା ଗଢ଼ିଲେ,
ମଙ୍ଗଳ ଦରବ ଘେନି ସର୍ବେ ଉଭା ଥିଲେ । ୧୫୫୩

ଶୁଭମୟ ଚତୁଃଷ୍କୋଣ ଅନେକ ପ୍ରକାରେ,
ରଚିଲେ ଯତନ କରି ଗଜ ମୁକୁତାରେ । ୧୫୫୪

ରସାଳ ପଲ୍ଲବ ମଞ୍ଜୁ ସଉରଭ ଭରା,
ଗୁନ୍ଥି ମାଳମଣି କଲେ ସୁଷମା ପସରା ।
କନକ-ବଉଳ ତହିଁ ପାଟର ସୂତ୍ରରେ,
ମରକତ ପେନ୍ଥା ଶୋଭେ ବିଚିତ୍ର ବର୍ଣ୍ଣରେ । ୧୫୫୫

କଲେ ବହୁ ମନୋହର ରସାଳ ତୋରଣ,
ମନେ ହୁଏ ପକାଇଛୁ ଫାନ୍ଦ କି ମଦନ ।
ମଙ୍ଗଳ କଳସ ବହୁ କଲେ ସେ ସ୍ଥାପନ,
ପରଦା ଚାମର ଧ୍ୱଜା ରୁଚିର କେତନ । ୧୫୫୬

ମନୋହର ମଣିମୟ ଦୀପାଳି ଶୋଭିତ,
ବିଚିତ୍ର ବିମାନ ଶୋଭା ବର୍ଣ୍ଣନା ଅତୀତ ।
ବସିବେ ଜାନକୀ ବଧୂ-ବେଶେ ଯେ ମଣ୍ଡପେ,
କେଉଁ କବି ବୁଦ୍ଧି ଅଛି ବର୍ଣ୍ଣିବ ନିଚ୍ଛକେ । ୧୫୫୭

ରୂପ ଗୁଣ ରତ୍ନାକର ରାମ ବର-ବେଶେ,
ବସିବା ମଣ୍ଡପ ତିନିଲୋକେ ପରକାଶେ ।
ଯେଉଁ ଶୋଭା ଧରିଥିଲା ଜନକ-ଭବନ,
ପ୍ରତି ପୁରବାସୀ ଗୃହ ଶୋଭଇ ତେସନ । ୧୫୫୮

ଯେ କାଳେ ଯେ ମିଥିଳାକୁ କରଇ ଦର୍ଶନ,
ତୁଚ୍ଛ ମଣୁଥାଏ ବିଶ୍ୱ ଚଉଦ ଭୁବନ ।
ସବୁଠୁଁ ଗରିବ ଗୃହ ଶୋଭା ଓ ସମ୍ପତ୍ତି,
ଦେଖି ମୁଗ୍‌ଧ ହେଉଥିଲେ ସ୍ୱର୍ଗେ ସୁରପତି । ୧୫୫୯

କପଟେ କମଳା ଧରି ଶ୍ରେଷ୍ଠ ନାରୀ ରୂପ,
ଯେ ନଗରେ ନିବସନ୍ତି ତା ନିଶ୍ଚେ ଅନୂପ ।
ସେ ପୁର ସୁଷମା ରାଶି ବର୍ଣ୍ଣିବା ସକାଶେ,
ଶେଷ ସରସ୍ୱତୀ ପରା ଲଜ୍ଜିଯିବେ ହାସେ । ୧୫୬୦

ରାମଙ୍କ ପବିତ୍ର ପୁରେ ଯାଇ ଦୂତଗଣ,
ଅନୁପମ ଶୋଭା ଦେଖି ହୋଇଲେ ପ୍ରସନ୍ନ ।
ରାଜଦ୍ୱାରେ ଯାଇ ଦେଲେ ଖବର ପଠାଇ,
ଶୁଣି ଦଶରଥ ନେଲେ ତାହାଙ୍କୁ ଡକାଇ । ୧୫୬୧

ସେମାନେ ପ୍ରଣାମ କରି ଚିଠାଉଠି ଦେଲେ,
ଆନନ୍ଦ ମନରେ ରାଜା ଆପେ ଉଠି ନେଲେ ।

ସେ ଚିଠାଉ ପଢ଼ି ନେତ୍ରୁ ଝରିଲା ଲୋତକ,
ଆନନ୍ଦେ ଉଦ୍‌ବେଳ ହୃଦ. ଶରୀରେ ପୁଲକ । ୧୫୬୨

ହୃଦେ ବେନି ଭାଇରୂପ, କରେ ଶୁଭ ଚିଠି;
ରହିଗଲେ, ଖଟା ମିଠା ନ କହନ୍ତି କିଛି ।
ଧୈର୍ଯ୍ୟ ଧରି ବାର ବାର ଚିଠାଉ ପଢ଼ିଲେ;
ସଭାସଦେ ଶୁଣି ସବୁ ତୋଷ ହୋଇଲେ । ୧୫୬୩

ଖେଳୁଥିବା ସ୍ଥାନେ ଏହି ସମାଚାର ପାଇ,
ଆସିଲେ ଭରତ ତହିଁ, ସଙ୍ଗେ ସାନ ଭାଇ ।
ଅତି ସ୍ନେହେ ପଚାରିଲେ ହୋଇ ସବିନୟ,
"ପିତା, କେଉଁଠାରୁ ପତ୍ର ଆସିଅଛି କହ । ୧୫୬୪

ପ୍ରାଣୁ ବଳି ପ୍ରିୟ ଆମ ବେନି ସହୋଦର,
କେଉଁଠି ଅଛନ୍ତି ସବୁ ଶୁଭ ତ ତାଙ୍କର ?
ଶୁଣି ଅତି ସ୍ନେହଭରା ଭରତ ବଚନ,
ପୁଣି ଆଉଥରେ ଚିଠି ପଢ଼ିଲେ ରାଜନ । ୧୫୬୫

ଶୁଣି ଏ ପତ୍ରିକା ବେନି ହୋଇଲେ ଆନନ୍ଦ,
ହୃଦୟରେ ଗଲା ଭରି ପ୍ରୀତି-ମକରନ୍ଦ ।
ଦେଖି ଭରତଙ୍କ ପ୍ରୀତି ପବିତ୍ର, ଅମନ୍ଦ,
ସଭାସଦ ସର୍ବେ ହେଲେ ପରମ ଆନନ୍ଦ । ୧୫୬୬

ବସାଇ ଦୂତଙ୍କୁ ପାଶେ ଅଯୋଧ୍ୟା ରାଜନ,
ପଚାରିଲେ ମନୋହର ସୁମଧୁର ପ୍ରଶ୍ନ ।
"ହେ ଭାଇ ଶୁଣାଅ ବେନି ଭାଇଙ୍କ କୁଶଳ,
ନିଜେ ଆସିଥିବ ଦେଖି ନୟନେ ତୁମର । ୧୫୬୭

ଶ୍ୟାମଳ ଗଉର ବେନି ଧନୁଶର ହାତେ,
କିଶୋର ବୟସ, ମୁନି ବିଶ୍ୱାମିତ୍ର ସାଥେ ।
ଚିହ୍ନି ଅଛ ଯେବେ କହ ସ୍ୱଭାବ ତାଙ୍କର,"
ପ୍ରୀତି ବଶେ ପଚାରନ୍ତି ରାଜା ବହୁଥର । ୧୫୬୮

"ଯେ ବନ୍ଧୁ ମୁନୀଶ ତାଙ୍କୁ ନେଲେଣି ସଙ୍ଗରେ,
ପାଇଲ ସମ୍ବାଦ ମାତ୍ର ଆଜ ଏ ପଥରେ ।
ଜନକ ନୃପତି ତାଙ୍କୁ କପର ଜାଣିଲେ ?"
ପ୍ରିୟବାଣୀ ଶୁଣି ଦୂତେ ମୃଦୁ ଳକ ହସିଲେ । ୧୫୬୯

"ଶୁଣ ନୃପ ଶିରୋମଣି କେହି ତୁମ ସମ,
ଆଉ ଧନ୍ୟ ନାହିଁ ବୋଲି ଜାଣ, ନରୋତ୍ତମ ।
ବିଶ୍ୱ-ବିଭୂଷଣ ରାମ ଲକ୍ଷ୍ମଣ ସମାନ,
ବେନି ପୁତ୍ର ଯାର, ସେତ୍ତ କେଡ଼େ ଭାଗ୍ୟବାନ । ୧୫୭୦

ପଚାରି ବୁଝିବା ସୁତ ବୃତ୍ତାନ୍ତ ତୁମର,
ତ୍ରିଭୁବନ ପ୍ରକାଶକ, ପୁରୁଷ-କେଶରୀ ।
ଯାହାଙ୍କ ବିମଳ ଯଶ ପ୍ରତାପ ପ୍ରଭାବେ,
ଚନ୍ଦ୍ରମା ମଳିନ, ସୂର୍ଯ୍ୟ ସୁଶୀତଳ ଲାଗେ । ୧୫୭୧

ତାହାଙ୍କୁ କହୁଚ ପ୍ରଭୁ ଚହ୍ନିଲ କପରି
ସୂର୍ଯ୍ୟଙ୍କୁ ଚହ୍ନାନ୍ତି କଏ କରେ ଦୀପ ଧରି ?
ସୀତା ସ୍ୱୟଂବରେ ଥିଲେ ନୃପତି ଅନେକ,
ମହା ବଳଶାଳୀ ବୀରେ ଏକୁ ବଳି ଏକ । ୧୫୭୨

ଶିବଧନୁ ଟଳୁ କେହି ଟେକି ନ ପାରିଲେ,
ବଳ ଦର୍ପ କରି ବୀର ସମସ୍ତେ ହାରିଲେ ।
ନିଜକୁ ଯେ ମଣୁଥିଲେ ତ୍ରିଲୋକ ବିଜୟୀ,
ଭାଙ୍ଗିଲା ସଭିଙ୍କ ଦର୍ପ ଶିବଧନୁ ତହିଁ । ୧୫୭୩

ମେରୁ ତୋଳେ ଯେଉଁ ବାଣାସୁର ମହାମାନୀ,
ଫେରିଗଲା ପରାକ୍ରମି ପରାଜୟ ମାନି ।
କୈଳାଶ ଉଠାଏ ଯେଉଁ ରାବଣ କୌତୁକେ,
ସଭାରେ ହାରିଲା, ବହି ପରାଜୟ ଦୁଃଖେ । ୧୫୭୪

ତହିଁ ରଘୁବଂଶ ମଣି ରାମ ରଘୁବର,
ଅନାୟାସେ ସେ ଧନୁକୁ ଭାଙ୍ଗିଲେ ସତ୍ୱର ।

ଗଜରାଜ ପଦ୍ମନାଳ ଭାଙ୍ଗଇ ଯେସନେ,
ରଘୁପତି ଶିବଧନୁ ଭାଙ୍ଗିଲେ ତେସନେ । ୧୫୭୫

ଏହା ଶୁଣି କ୍ରୋଧଭରେ ଭୃଗୁପତି ଆସି,
ନାନା ପରକାରେ କହି ଦେଖାଇଲେ ଆଖି ।
ଦେଖି ରାମ ବଳ, ଦେଇ ନିଜ ଶରାସନ,
ବହୁତ ବିନୟ ହୋଇ ଶେଷେ ଗଲେ ବନ । ୧୫୭୬

ହେ ରାଜା, ଶ୍ରୀରାମ ଯେହ୍ନେ ଅନୁପମ ବଳୀ,
ଅତିଶୟ ତେଜଶାଳୀ ଲକ୍ଷ୍ମଣ ସେପରି—
ଯାହାଙ୍କୁ ଦେଖିଲେ ନୃପେ ହୁଅନ୍ତି କମ୍ପିତ,
ସିଂହ ଶିଶୁ ଦେଖି ଯେହ୍ନେ ହସ୍ତୀ ଭୟଭୀତ । ୧୫୭୭

ତୁମ ବେନି ବାଳକଙ୍କୁ ଦେଖି ହେ ନୃପତି,
ଆମ ନୟନକୁ ଆଉ କେହି ନ ଆସନ୍ତି ।"
ସଭିଙ୍କୁ ଲାଗିଲା ପ୍ରିୟ ଦୂତଙ୍କ ବଚନ,
ପ୍ରୀତି ପରାକ୍ରମ ବୀର ରସେ ସୁଶୋଭନ । ୧୫୭୮

ସଭାସହ ଦଶରଥ ପ୍ରେମେ ନିମଗନ;
ପୁରସ୍କାର ଦେବା କାଳେ ହର୍ଷେ ଦୂତଗଣ—
'ଏ ଅନୀତି' ବୋଲି କହି ମୁଦି ଦେଲେ କାନ,
ସର୍ବେ ଖୁସି ଦେଖି ଦୂତଧର୍ମ ବିଧିମାନ । ୧୫୭୯

ଉଠି ନରନାଥ ତହୁଁ ପତ୍ରିକା ବଢ଼ାଇ,
କହିଲେ ସକଳ କଥା ବଶିଷ୍ଠଙ୍କୁ ଯାଇ ।
ଅଶେଷ ଆଦରେ ଡାକ ତହିଁ ଦୂତଗଣେ,
ଶୁଣାଇଲେ ସବୁ ନରପତି ହର୍ଷ ମନେ । ୧୫୮୦

କହିଲେ ବଶିଷ୍ଠ ଶୁଣି ଅତି ଅନୁରାଗେ,
ପୁଣ୍ୟାତ୍ମାଙ୍କ ପାଇଁ ପୃଥ୍ୱୀ ପରିପୂର୍ଣ୍ଣ ଲାଗେ ।
ନଦୀବା କାମନା କରେ ନାହିଁ ସିନ୍ଧୁ ମନେ,
ତଥାପି ନଦୀଏ ତହିଁ ମିଳନ୍ତି ଯେସନେ । ୧୫୮୧

ଜେସନେ ସମ୍ପତ୍ତି ସୁଖ ବିନା ଅଭିଳାଷେ,
ମିଳଥାନ୍ତି ଆପେ ଧାଇ ପୁଣ୍ୟଜନ ପାଶେ ।
ତୁମେ ଗୁରୁ ବିପ୍ର ଧେନୁ ଦେବକୁଳ ସେବୀ,
ସେହିପରି ପୁଣ୍ୟବନ୍ତ କଉଶଲ୍ୟା ଦେବୀ । ୧୫୮୨

ତୁମ ସମ ପୁଣ୍ୟବନ୍ତ ଏ ଜଗତେ କାହିଁ,
ହୋଇ ନାହିଁ, ଏବେ ନାହିଁ, ହେବେ ମଧ ନାହିଁ ।
ତୁମଠାରୁ ପୁଣ୍ୟବଳ ଅଧିକ କାହାର,
ହେ ରାଜନ, ରାମ ପରି ତନୟ ଯାହାର । ୧୫୮୩

ପ୍ରବୀର ବିନୀତ ପୁଣି ଧର୍ମ ବ୍ରତଧାରୀ,
ସୁଗୁଣ-ସାଗର ଶ୍ରେଷ୍ଠ ସେ ବାଳକ ଚାରି ।
ତୁମ ପାଇଁ ସବୁ କାଳ ଅଛଇ କଲ୍ୟାଣ,
ବେଗେ ସଜ୍ଜା ବରଯାତ୍ରୀ ବଜାଇ ନିଷାଣ । ୧୫୮୪

"ଭଲ ହେଲା, ବେଗି ଚାଲ"—ଶୁଣି ଗୁରୁ କଥା,
ନୁଆଁଇଲେ ନରପତି ଅବନୀତ ମଥା ।
ରହିବାକୁ ବାସ ଦେଇ ଦୂତଙ୍କୁ ଆଦରେ,
ନୃପତି ଚଳିଲେ ତହୁଁ ଉଆସ ଭିତରେ । ୧୫୮୫

ମହିଷୀଗଣଙ୍କୁ ନୃପ ଆଣିଲେ ଡକାଇ,
ଜନକ ପ୍ରେରିତ ପତ୍ର ପଢ଼ିଲେ ଶୁଣାଇ ।
ଏ ଖବର ପାଇ ସର୍ବେ ହେଲେ ସୁପ୍ରସନ୍ନ,
ଆଉ ଅନ୍ୟ କଥା କଲେ ନୃପତି ବର୍ଣ୍ଣନ । ୧୫୮୬

ପ୍ରେମେ ପ୍ରଫୁଲ୍ଲିତ ହୋଇ ରାଜନ୍ତ ରାଣୀ,
ଯେସନେ ମୟୂରୀଗଣ ଶୁଣି ମେଘ-ବାଣୀ ।
ବହୁ ବହୁ ଆଶୀର୍ବାଦ ଗୁରୁପତ୍ନୀ କଲେ,
ଆନନ୍ଦେ ନିମଗ୍ନ ହେଲେ ଜନନୀ ସକଳେ । ୧୫୮୭

ଅତି ପ୍ରିୟ ପତ୍ରଟିକୁ ନେଇ ପରସ୍ପର,
ଛାତିରେ ଜାକୁଡ଼ି ହୃଦ କରନ୍ତି ଶୀତଳ ।

ଶ୍ରୀରାମ ଲକ୍ଷ୍ମଣ କାନ୍ତି କଳାପ କରଣି,
ବାରମ୍ବାର ବଖାଣନ୍ତି ପ୍ରେମେ ନୃପମଣି । ୧୫୮୮

"ସବୁ ମୁନି କୃପା" କହି ରାଜା ଗଲେ-ଦ୍ୱାରେ,
ରାଣୀଏ ବିପ୍ରଙ୍କୁ ଡାକି ଶ୍ରଦ୍ଧା ସହକାରେ ।
ଦେଲେ ଦାନ ନାନା ବିଧ ମନ ହରଷରେ,
ସନ୍ତୋଷରେ ବିପ୍ରଗଣେ ଆଶୀର୍ବାଦ କଲେ । ୧୫୮୯

ଭିକ୍ଷୁକମାନଙ୍କୁ ପୁଣି ଡକାଇ ଆଦରେ,
ଧନ ଦଉଲତ ଦାନ ଦେଲେ ଅକାତରେ ।
"ଚକ୍ରବର୍ତ୍ତୀ ଦଶରଥ ନୃପ ଗୃହ ସୁତ,
ଚିରଞ୍ଜୀବୀ ହୋଇଥାନ୍ତୁ ବସୁନ୍ଧରା ବୁକେ ।" ୧୫୯୦

କହିଗଲେ ସେହୁ ପିନ୍ଧି ନାନାବିଧ ବସନ,
ନିଶାଣ ବାଜଇ ପ୍ରତି ପୁରେ ଘନ ଘନ ।
ପାଇଲେ ସମସ୍ତ ଲୋକ ଏହି ସମାଚାର,
ବଜାଇଲେ ଶୁଭ ବାଜା ସବୁ ପରିବାର । ୧୫୯୧

ରାମ ସୀତା ବିଭାଘର ସମ୍ବାଦ ଶ୍ରବଣେ,
ବ୍ୟାପିଲା ଉତ୍ସାହ ଭରି ଚଉଦ ଭୁବନେ ।
ଶୁଣି ଏହି ଶୁଭ କଥା ଲୋକେ ଅନୁରାଗେ,
ସଜାଇଲେ ପ୍ରତି ଗୃହ ଗଳି କନ୍ଦି ମାର୍ଗେ । ୧୫୯୨

ରାମଙ୍କ ପବିତ୍ର ପୁରୀ ହୋଇବା କାରଣେ,
ଯଦିବା ଅଯୋଧ୍ୟା ସୁଶୋଭନା ତ୍ରିଭୁବନେ ।
ତଥାପି ପୀରତି ସାଥେ ପ୍ରୀତି ଯୋଗ ପାଇଁ,
ସର୍ବେ ଶୁଭ ସାଜେ ଦେଲେ ନଗର ସଜାଇ । ୧୫୯୩

ପରଦା ପତାକା ଧ୍ୱଜା ସୁନ୍ଦର ଗୃମରେ,
ନଗର ଆଚ୍ଛନ୍ନ ହେଲା ବିଚିତ୍ର ରୂପରେ ।
ସୁବର୍ଣ୍ଣ କଳସ ମଣି ତୋରଣ ସୁନ୍ଦର,
ଦଧି ଦୁର୍ବାକ୍ଷତ ମାଳା ହରିଦ୍ରା ନିକର । ୧୫୯୪

ସୁମଙ୍ଗଳମୟ ନିଜ ନିଜର ଭବନ,
ସଜାଇ ବିଚକ୍ଷେ ଜନେ କଲେ ସୁଶୋଭନ ।
ସିଞ୍ଚିଲେ ସୁଗନ୍ଧ ଜଳ ଗଳିମାନଙ୍କରେ,
ଦ୍ୱାରେ ଦିବ୍ୟ ଚତୁଃଷ୍କୋଣ ବିରଚନ କଲେ । ୧୫୯୫

ଦଳ ଦଳ ଶୁଭଙ୍ଗିମା ବିଦ୍ୟୁତ-ବରନା,
କୁରଙ୍ଗନୟନା, ଶଶିମୁଖୀ ବରାନନା ।
ରତି ଦର୍ପ ଚୂର ସବେ ସ୍ୱରୂପ ସମ୍ଭାରେ,
ନିଜକୁ ସଜାଇ ପୁଣି ଷୋଡ଼ଶ ଶୃଙ୍ଗାରେ,
ସୁମଧୁର ସ୍ୱରେ ଗାଇ ମଙ୍ଗଳ ସଙ୍ଗୀତ,
ବୁଲନ୍ତି ଦଳକୁ ଦଳ ହୋଇ ଇତସ୍ତତଃ ।
କୋଇଲିଏ ସେ ମଧୁର ସ୍ୱର ଶୁଣି କାନେ,
ଅବା ଲଜ୍ଜା ବୋଧ କରୁଥାଆନ୍ତି ପରାଣେ ।
ଯହିଁ ବିଶ୍ୱ ବିମୋହିନୀ ବିତାନ ରଚନା,
ସେ ରାଜମହଲ କିଏ କରିବ ବର୍ଣ୍ଣନା । ୧୫୯୬।୧୫୯୭

ମଙ୍ଗଳ ଦରବ ଶୋଭେ ବିବିଧ ରୂପରେ,
ବାଜଇ ନିଷାଣ ବାଦ୍ୟ ନାନା ନିନାଦରେ ।
ବନ୍ଦୀଏ ଗାଆନ୍ତି କାହିଁ କୁଳର କୀରତି,
କାହିଁ ବା ବ୍ରାହ୍ମଣେ ବେଦ ଶବଦ କରନ୍ତି । ୧୫୯୮

ଶ୍ରୀରାମ ସୀତାଙ୍କ ନାମ କରି ଉଚ୍ଚାରଣ,
ଗାଆନ୍ତି ମଙ୍ଗଳ ଗୀତ ସୀମନ୍ତିନୀଗଣ ।
ଅଳପ ଭବନେ ବହୁ ଉଲ୍ଲାସ ଭରଇ,
ସତେ ଅବା ଚଉଦିଗେ ଉଚ୍ଛୁଳି ଉଠଇ । ୧୫୯୯

ସୁର ଶିରୋମଣି ରାମ ଯହିଁ ଅବତାର,
ଉକୁଟି ଉଠଇ ଯହିଁ ଶୋଭାର ସମ୍ଭାର,
ଦଶରଥଙ୍କର ସେହି ଭବନ ସୁଷମା,
କେ ବର୍ଣ୍ଣି ପାରିବ, ସେ ତ ମର୍ତ୍ତ୍ୟେ ମନୋରମା । ୧୬୦୦

ତାହା ପରେ ଭରତଙ୍କୁ ନୃପତି ଡକାଇ,
କହିଲେ, "ତୁରଗ ଗଜ ରଥ ସାଜ ଯାଇ ।
ଚାଲ ବେଗି ରଘୁବୀର ବରଯାତ୍ରୀ ଦଳେ"
ଶୁଣି ପ୍ରୀତି ଜାତ ହେଲା ଭାଇଙ୍କ ଅନ୍ତରେ । ୧୬୦୧

ସବୁ ଅଶ୍ୱପାଳକଙ୍କୁ ଭରତ ଡକାଇ,
ଆଜ୍ଞା ଦେଲେ; ସର୍ବେ ହର୍ଷ ଭରେ ଗଲେ ଧାଇଁ ।
ସେ କଷି ସୁନ୍ଦର ଜିନ୍ ସଜାଇ ତୁରଙ୍ଗ,
ଉଭା ହେଲେ ଯେତେ ଶ୍ରେଷ୍ଠ ଅଶ୍ୱ, ନାନା ରଙ୍ଗ । ୧୬୦୨

ସଭିଏଁ ଚଞ୍ଚଳ ଗତି ମନୋରମ ଅତି,
ତପ୍ତ ଲୌହେ ପାଦ ପରି ଧରାରେ ଚାଲନ୍ତି ।
ବର୍ଣ୍ଣନା ନ କରି ହୁଏ ଅଶ୍ୱ ନାନା ଜାତି,
ପବନକୁ ନିନ୍ଦ ଉଡ଼ିଯିବାକୁ ଚାହାନ୍ତି । ୧୬୦୩

ଭରତ ବୟସ ନୃପ ନନ୍ଦନ କୁମରେ,
ହରଷେ ଚଢ଼ିଲେ ସେହି ଅଶ୍ୱଙ୍କ ଉପରେ ।
ସରବେ ସୁନ୍ଦର ନାନା ଭୂଷଣେ ଭୂଷିତ,
କଟିରେ ତୂଣୀର କରେ ଚାପ ସୁଶୋଭିତ । ୧୬୦୪

ସର୍ବେ ବଛା ବଛା ବୀର ଚତୁର ନବୀନ,
ସମ ଛବିଯୁକ୍ତ ଚାରୁ ଥିଲେ ପ୍ରବୀଣ ।
ପ୍ରତି ଅଶ୍ୱାରୋହୀ ସାଥେ ଦୁଇ ଦୁଇ ଜଣ,
ପଦାତିକ ସେନା, ଅସି ବିଦ୍ୟା ପାରଙ୍ଗମ । ୧୬୦୫

ବାନ୍ଧି ବୀରବାନା ରଣଧୀର ବୀରଗଣେ,
ବାହାରି ନଗର ପ୍ରାନ୍ତେ ଠୁଳ ହେଲେ କ୍ଷଣେ ।
ଚତୁରେ ଚାଲନ୍ତି ଅଶ୍ୱେ ବିବିଧ ଗତିରେ,
ହୁଅନ୍ତି ଆନନ୍ଦ ଭେରୀ ନାଗରା ଧ୍ୱନିରେ । ୧୬୦୬

ସଜାଇଲେ ସାରଥୀଏ ରଥ ନାନା ବର୍ଣ୍ଣ,
ଧ୍ୱଜା ପତାକାରେ ମଣିମୁକ୍ତା ବିଭୂଷଣ ।

ତହିଁ ଯେ ଘୁମର ଘୁରୁ କଙ୍କିଣୀ ନିଃସ୍ୱନ,
ରବି-ରଥ ଶୋଭା କି ଯେ କରଇ ହରଣ । ୧୭୦୭

ଅସୂମାସ୍ତ ଶ୍ୟାମକର୍ଣ୍ଣ ତୁରଙ୍ଗ ଶୋଭନ୍ତି,
ଯୋଚିଲେ ତାହାଙ୍କୁ ରଥେ ତୁରିତେ ସାରଥୀ ।
ସମସ୍ତେ ସୁନ୍ଦର ପୁଣି ଭୂଷଣ ଶୋଭିତ,
ଦେଖିଦେଲେ ମୁନିମନ ହୁଏ ବିମୋହିତ । ୧୭୦୮

ସ୍ଥଳ ପରି ଜଳେ କରି ପାରନ୍ତି ଗମନ,
ବେଗ ହେତୁ ବୁଡ଼େ ନାହିଁ ଟାପୁ କଦାଚନ ।
ଅସ୍ତ୍ର ଶସ୍ତ୍ର ଆଦି ସାଜ ସକଳ ସଜାଇ,
ରଥୀଙ୍କୁ ସାରଥୀମାନେ ଆଣିଲେ ଡକାଇ । ୧୭୦୯

ବିମାନ ଉପରେ ଚଢ଼ି ବରଯାତ୍ରୀ ଦଳ,
ନଗର ବାହାରେ ଠୁଳ ହୋଇଲେ ସତ୍ୱର ।
ଯେ କେହି ଯେ କାମେ ଯାଉ ତାହାର ନୟନ,
ଦେଖୁଥିଲା ପଥ ପ୍ରାନ୍ତେ ମଙ୍ଗଳ ଲକ୍ଷଣ । ୧୭୧୦

ରମଣୀୟ କରିବର ହାଉଦା ପୃଷ୍ଠରେ,
କହି ନ ହୁଅଇ ଛବି ଶୋଭେ ଯେ ରୂପରେ ।
ମତ୍ତ ହସ୍ତୀ ବୃନ୍ଦ ଗଳେ ଗଳେ ଘଣ୍ଟା ସାଜ,
ସୁନ୍ଦର ଶ୍ରାବଣେ ଅବା ବଳାହକ ରାଜ । ୧୭୧୧

ଅନେକ ପ୍ରକାର ପୁଣି ସଜ୍ଜିତ ବାହନ,
ପାଲିଙ୍କି ସବାରି ଆଦି ଯାନ ସୁଖାସନ ।
ଚଳିଲେ ତହିଁରେ ଚଢ଼ି ଶ୍ରେଷ୍ଠ ବିପ୍ରଗଣ,
ବେଦର ଛନ୍ଦ କି ତନୁ ଧରିଛି ଯେସନ । ୧୭୧୨

ବନ୍ଦୀ ସୂତ ଭାଟ ଗୁଣଗାୟକ ନିକର,
ଯେଝା ଯୋଗ୍ୟ ଯାନେ ଚଢ଼ି ହେଲେ ଅଗ୍ରସର ।
ଗଧ ଓଟ ବୃଷଭାଦି ପଶୁ ଅଗଣିତ,
ଚଳିଲେ ପିଠିରେ ଲଦି ଦ୍ରବ୍ୟ ଅପ୍ରମିତ । ୧୭୧୩

ଚଳିଲେ ବାଦ୍ଯଙ୍ଗୀ ଧରି ଘରୁଆ ଅନେକ,
କେ କେଉଁଠୁ ପାରିବ କଲେ ପଦାର୍ଥ ଯେତେକ ।
ସକଳ ସେବକେ ଗଲେ ବରଯାତ୍ରୀ ଦଳେ,
ନିଜ ରୁଚିମତେ ମେଳ ସଜାଇ ପଥରେ । ୧୬୧୪

ସଭିଙ୍କ ହୃଦୟ ଦେଶ ହରଷ ପୂରିତ,
ଅପୂର୍ବ ପୁଲକ ସଙ୍ଗେ ତନୁ ପୁଲକିତ ।
ସଭିଙ୍କ ବାସନା ଏକ, ମନ ଛନ ଛନ,
କିପରି ଦେଖିବେ ଯାଇ ଶ୍ରୀରାମ ଲକ୍ଷ୍ମଣ । ୧୬୧୫

ଗଜଙ୍କର ଗରଜନ ଘଣ୍ଟା ଧ୍ୱନି ଘୋର,
ଅଶ୍ୱ ହ୍ରେଷା ରବ ରଥଚକ୍ରର ଘର୍ଘର ।
ନିଷାଣ ଶବଦ ହୁଏ ମେଘ ନାଦୁଁ ବଳି,
କାନକୁ ନ ଶୁଭେ ନିଜ ପର କଥାବଳି । ୧୬୧୬

ନୃପତିଙ୍କ ଦ୍ୱାରେ ହେଲା ଅଶେଷ ଗହଳି,
ଧୂଳି ହୋଇଯିବ ଅବା ଚେକା ଗଲେ ପଡ଼ି ।
ଦେଖନ୍ତି ନାରୀଏ ଚଢ଼ି ଅଟ୍ଟାଳି ଉପରେ,
ମଙ୍ଗଳ ଆଳତି ଥାଳି ଶୋଭଇ ହସ୍ତରେ । ୧୬୧୭

ଗାଉଥିଲେ ସେହୁ ନାନା ମଧୁର ସଙ୍ଗୀତ,
ସେ ଆନନ୍ଦ ଭାଷାବଦ୍ଧ ହେବା ବଡ଼ କ୍ୱଚିତ ।
ତା'ପରେ ସୁମନ୍ତ୍ର ବେନି ରଥ ସଜାଇଲେ,
ରବି-ଅଶ୍ୱ ନିନ୍ଦ ଅଶ୍ୱ ତହିଁରେ ଯୋଚିଲେ । ୧୬୧୮

ଆଣିଲେ ସେ ରଥ ବେନି ନୃପଙ୍କ ନିକଟେ,
ବାଣୀ ବର୍ଣ୍ଣି ନ ପାରିବେ ତା' ଶୋଭା କଦାଚିତେ ।
ରାଜ ବିଭୂଷଣେ ଏକ ରଥ ସୁଶୋଭିତ,
ଅନ୍ୟଟି କରିଣ ପୁଞ୍ଜେ ହୁଏ ଉଦ୍ଭାସିତ । ୧୬୧୯

ସେ ରମ୍ୟ ଦ୍ୱିତୀୟ ରଥେ ରାଜା ହର୍ଷ ଭରେ,
ବସାଇଲେ କୁଳଗୁରୁ ବଶିଷ୍ଠେ ଆଦରେ ।

ମନେ ସ୍ମରି ଗୁରୁ ହରି ଗଉରୀ ଗଣେଶ,
ଅନ୍ୟ ମନୋହର ରଥେ ଚଢ଼ିଲେ ନରେଶ । ୧୬୨୦

ଦେବ-ଗୁରୁ ସାଥେ ଇନ୍ଦ୍ର ଶୋଭନ୍ତି ଯେସନେ,
ବଶିଷ୍ଠଙ୍କ ସହ ନୃପ ବସିଲେ ତେସନେ ।
କରି କୁଳ ରୀତି ସବୁ ବେଦ ବିଧି ମତ,
ଦେଖି ସମସ୍ତଙ୍କୁ ସବୁ ପ୍ରକାରେ ପ୍ରସ୍ତୁତ ।
ଶ୍ରୀରାମ ସୁମରି ଲଭି ଗୁରୁଙ୍କ ଆଦେଶ,
ଯାତ୍ରାରମ୍ଭ କଲେ ଶଙ୍ଖ ବଜାଇ ନରେଶ ।
ବରଯାତ୍ରୀ ଦଳେ ଦେଖି ହର୍ଷେ ସୁରଗଣ,
ମଙ୍ଗଳଦାୟକ ପୁଷ୍ପ କଲେ ବରଷଣ । ୧୬୨୧।୧୬୨୨

ହେଲା କୋଳାହଳ ଅଶ୍ୱ ଗଜ ଗରଜନେ,
ବାଦ୍ୟ ବାଜେ ବରଯାତ୍ରୀ ଦଳେ ଓ ଗଗନେ ।
ସୁର ନରନାରୀ ରତ ସୁମଙ୍ଗଳ ଗାଇ,
ସରସ ରାଗରେ ବାଜଉଠେ ସାହାନାଇ । ୧୬୨୩

ଘଣ୍ଟା ଘଣ୍ଟି ଧ୍ୱନି ଅବା ପାରିବ କହି କେ'
ରଥ ଫେରି ମାରି ଦଣ୍ଡ କରନ୍ତି ପାଇକେ ।
ପରିହାସ ପଟୁ ମଧୁ ଗାୟନେ ଚତୁର,
ବିଦୂଷକେ କଉତୁକ କରନ୍ତି ପ୍ରଚୁର । ୧୬୨୪

କୁମାର ସକଳେ ଶୁଣି ମୃଦଙ୍ଗ ନିଷାଣ,
ଅଶ୍ୱଙ୍କୁ ନଚାନ୍ତି ଧରି ସେହି ଛନ୍ଦ ତାନ ।
ନାଗର ନର୍ତ୍ତକେ ଚାହିଁ ଥାଆନ୍ତି ଚକିତେ,
ତାଳ ଲୟ ନ ତୁଟଇ ତାଙ୍କର କଣ୍ଠେତେ । ୧୬୨୫

ବରଯାତ୍ରଙ୍କର କଥା କହି ନ ହୁଅଇ
ଶୁଭଦ ସୁନ୍ଦର ଯେତେ ଶକୁନ ଦିଶଇ ।
ବାମେ ନୀଳକଣ୍ଠ ପକ୍ଷୀ ମୁଖେ ଦାନା ଧରି,
ସର୍ବ ଶୁଭ ହେବା ବାର୍ତ୍ତା ଜଣାଏ ଯେପରି । ୧୬୨୬

ଶୋଭା ପାଏ କାକ ବସି ଡାହାଣେ କ୍ଷେତରେ,
ନକୁଳ ଦର୍ଶନ ସର୍ବେ ଲଭିଲେ ପଥରେ ।
ଶୀତଳ ସୁବାସ ମନ୍ଦ ତ୍ରିବିଧ ପବନ,
ଅନୁକୂଳ ଦିଗେ ବହେ ହୋଇ ଛନ୍ନ ଛନ୍ନ ।
କୋଳେ ଶିଶୁ, କାଖେ ଧରି ପୂରିଲା କଳସୀ,
ଆସନ୍ତି ସୌଭାଗ୍ୟବତୀ ଗୃହୁଁ ମାଳୀ ଦୁସୀ । ୧୬୨୭

ବହୁବାର ଫେରି କୋକ ଦେଖା ଦେଉଥାଏ,
ସମ୍ମୁଖେ ସୁରଭି ଦୁଗ୍ଧ ବତ୍ସାକୁ ପିଆଏ ।
ଡାହାଣକୁ ଫେରି ମୃଗ ନିକର ଆସନ୍ତି,
ସକଳ ମଙ୍ଗଳ ଯେହ୍ନେ ଦେଖାଇ ଦିଅନ୍ତି । ୧୬୨୮

କହୁଥାଏ ଶଙ୍ଖଚିଲ କଲ୍ୟାଣ କାହାଣୀ,
ଶ୍ୟାମା ପକ୍ଷୀ ବାମେ ତରୁ ପରେ ବସେ ଜାଣି ।
ଦଧି-ମାଛ ପୁଣି ଆସେ କୁଆଡ଼ୁ ଆଗକୁ,
ବେଦ ବିପ୍ର ପୋଥି ହସ୍ତେ ଉଭା ଦେଖୁ ଦେଖୁ । ୧୬୨୯

ସବୁ ଶୁଭଙ୍କରୀ ମନୋମତ ଫଳ ଦାୟୀ,
ଶକୁନ ଦିଶିଲା ପଥେ ଯାଉ ଯାଉ କାହିଁ ।
ଏକ ସାଥେ ମେଳ ହେଲେ ଆସି କାହୁଁ କାହୁଁ,
ସତେ କି ବାସ୍ତବ, ସତ୍ୟ ହେବା ପାଇ ଆଉ ? ୧୬୩୦

ଯାହାର ସଗୁଣ-ବ୍ରହ୍ମ ସୁତ ମନୋହର,
ସକଳ ଶକୁନ ତାଙ୍କୁ ସୁଲଭ କେବଳ ।
ଶ୍ରୀରାମଙ୍କ ସମ ବର, ବଧୂ ବଇଦେହୀ,
ଦଶରଥ-ମିଥିଳେଶ ସମ୍ବନ୍ଧୀ ସେଠେଇ । ୧୬୩୧

ଏ ବିବାହ ଶୁଣି ନାଚି କହିଲେ ଶକୁନେ,
ବିଧାତା ଆମକୁ ସତ୍ୟ କଲେ ଏତେ ଦିନେ ।
ଏହିପରି ବରଜାତି କରିଲେ ପ୍ରସ୍ଥାନ,
ଅଶ୍ୱ, ଗଜ ଚରଜନ୍ତି ବାଜଇ ନିଷାଣ । ୧୬୩୨

ଆସୁଛନ୍ତି ଜାଣି ଦିବାକର-କୁଳକେତୁ,
ନଦୀ ପରେ ମିଥିଳେଶ ନିର୍ମାଣିଲେ ସେତୁ ।
ତିଆରିଲେ ପୁଣି ବର ବାସ ସ୍ଥାନେ ସ୍ଥାନେ,
ସମ୍ପଦ ଭରିଲେ ଦେବଲୋକ ପରିମାଣେ । ୧୬୩୩

ନିଜ ରୁଚି ଅନୁଯାୟୀ ବରଯାତ୍ରୀ ଗଣ,
ଲଭିଲେ ସେଠାରେ ବସ୍ତ୍ର ଶଯ୍ୟା ସୁଭୋଜନ ।
ମନ ଅନୁକୂଳ ନିତ୍ୟ ନବ ନବ ସୁଖେ,
ନିଜ ଘର କଥା ଚିନ୍ତା ନ ରଖିଲେ ବୁକେ । ୧୬୩୪

ନିଷାଣର ଉଚ୍ଚ ନାଦ ଶୁଣି ଘନ ଘନ,
ଜଣାଗଲା ବରଯାତ୍ରୀ ଦଳ ଆଗମନ ।
ତେଣୁ ସାଜି ରଥ ଗଜ ବାଜି ପଦଚର,
ସ୍ୱାଗତ ପାଇଁକି ଗଲେ କନ୍ୟା ପକ୍ଷ ଦଳ । ୧୬୩୫

ମାସ ପାରାୟଣ, ଦଶମ ବିଶ୍ରାମ ।

# ଏଗାର

ନାନାବିଧ ପାୟସେ ପୂର୍ଣ୍ଣ କନକ କଳସ,
ଭୋଜନ ଦରବ ଥାଳ ଥାଳ ନାନା ରସ ।
ସୁଧାସମ ପାକ ଅନ୍ନେ ପୂର୍ଣ୍ଣ କରି ଥାଳ,
କହି ନ ହୁଅଇ ତାହା କେତେ ଯେ ପ୍ରକାର । ୧୬୩୬

ବହୁ ଫଳ ସୁଉତ୍ତମ ପଦାର୍ଥ ବିଶେଷ,
ଭେଟି ରୂପେ ପଠାଇଲେ ଆଦରେ ନରେଶ ।
ବସନ ଭୂଷଣ ନାନା ମଣି ମୂଲ୍ୟବାନ,
ଖଗ ମୃଗ ବାଜି ଗଜ ବହୁବିଧ ଯାନ । ୧୬୩୭

ସୁବାସିତ ବହୁ ଶୁଭ ସୂଚକ ପଦାର୍ଥ,
ପଠାଇଲେ ନାନାମତେ ପ୍ରେମେ ନରନାଥ ।
ଘେନି ଦହି ଚୂଡ଼ା ଆଦି ନାନା ଉପହାର,
ଚଳିଲେ ଘରୁଆ ବହୁ ପୂର୍ଣ୍ଣକରି ଘର । ୧୬୩୮

ଅଭ୍ୟର୍ଥନାକାରୀ ଗଣେ ଦେଖି ବରଯାତ୍ରୀ,
ଶରୀରେ ପୁଲକ ଲୋଟେ ପ୍ରେମେ ଫୁଲେ ଛାତି ।
ସ୍ୱାଗତକାରୀଙ୍କୁ ତେହ୍ନେ ଦେଖି ବରଜାତି,
ହର୍ଷେ ବାଦ୍ୟ ନିନାଦନେ ବେଗେ ଗଲେ ମାତି । ୧୬୩୯

ମିଶିବାକୁ ପରସ୍ପର ସହିତେ ହରଷେ,
କେତେକ ଦଉଡ଼ି ଗଲେ ଆଗକୁ ରଭସେ ।
ଦୁଇ ସୁଖ-ସିନ୍ଧୁ ସତେ ବେଳା ଭୂଇଁ ଡେଇଁ,
ମିଶିବାକୁ ଆବେଗେ କି ଆସନ୍ତି ଆଗେଇ । ୧୬୪୦

କୁସୁମ ବରଷି ସୁର-ଅଙ୍ଗନା ଗାଆନ୍ତି,
ହରଷରେ ଦେବଗଣ ଦୁନ୍ଦୁଭି ବଜାନ୍ତି ।
କୋଶଳେଶ ଆଗେ ରଖି ସକଳ ସମ୍ଭାର,
ମିଥିଳାର ଲୋକେ ହେଲେ ବନ୍ଦୀ ଅପାର । ୧୭୪୧

ପ୍ରେମେ ଦଶରଥ ନୃପ କରି ଅଙ୍ଗୀକାର,
ତାହା ସବୁ ଯାଚକଙ୍କୁ ଦେଲେ ପୁରସ୍କାର ।
ମାନ୍ୟତା ବଢ଼ାଇ ପୂଜା ସସମ୍ମାନେ କରି,
ବରବାସେ ଘେନିଗଲେ ଅଭ୍ୟର୍ଥନାକାରୀ । ୧୭୪୨

ଚିତ୍ର ବିଚିତ୍ରର ବସ୍ତ୍ର ପଡ଼ିଚ ପାହାଡ଼ା,
ଦେଖି ତା କୁବେର ଧନ ଗର୍ବ ତେଜେ ପରା ।
ରମ୍ୟ ବାସ ଦେଲେ ବରଦଳେ ରହିବାକୁ,
ଯେହ୍ନେ ଅସୁବିଧା କିଛି ନୋହିବ କାହାକୁ । ୧୭୪୩

ଜାଣିଲେ ଜାନକୀ ଯେବେ ବରପକ୍ଷ ପୁରେ,
ନିଜର ମହିମା ପ୍ରକଟିଲେ ସୁଚତୁରେ ।
ସକଳ ସିଦ୍ଧିଙ୍କୁ ସ୍ମରି ହୃଦେ ବାରମ୍ବାର,
ପଠାଇଲେ କରିବାକୁ ଅତିଥି ସତ୍କାର । ୧୭୪୪

ସିଦ୍ଧି ସବୁ ଗଲେ ଲଭି ସୀତା ଅନୁମତି,
ଘେନି ସ୍ୱର୍ଗପୁର ଭୋଗ ବିଳାସ ସମ୍ପତ୍ତି ।
ଯେଉଁ ପୁରେ ରହିଥିଲେ ବରଯାତ୍ରୀ ଦଳ,
ସବୁ ସିଦ୍ଧି ତହିଁ ଯାଇ ମିଳିଲେ ସତ୍ୱର । ୧୭୪୫

ବରଯାତ୍ରି ଦେଖି ନିଜ ନିଜ ବାସ ସ୍ଥଳ,
ଭାବିଲେ ସରଗ ସୁଖ ସୁଲଭ ସକଳ ।
ବିଭବ ରହସ୍ୟ କେହି କିଛି ନ ବୁଝିଲେ,
ସଭିଏଁ ଜନକଙ୍କର ପ୍ରଶଂସା ଗାଇଲେ । ୧୭୪୬

ଜାନକୀ ମହିମା ଯାହା ଶ୍ରୀରାମଙ୍କୁ ଜଣା,
ସେ କାରଣ ଜାଣି ହେଲେ ହୃଦେ ହର୍ଷମନା ।

ପିତା ଆଗମନ ବାର୍ତ୍ତା ପାଇ ବେନି ଭାଇ,
ହୃଦୟେ ଆନନ୍ଦ ସ୍ରୋତ ଆଣିଲେ ବୁହାଇ । ୧୬୪୭

ସଙ୍କୋଚେ ଗୁରୁଙ୍କୁ କଛୁ କହି ନ ପାରନ୍ତି,
ପିତା ଦରଶନ ଆଶା ହୁଏ ବଳବନ୍ତି ।
ବିଶ୍ୱାମିତ୍ର ଦେଖି ବେନି ଭାଇଙ୍କ ବିନୟ,
ହୃଦୟେ ସନ୍ତୋଷ ଭରିଗଲା ଅତିଶୟ । ୧୬୪୮

ପ୍ରେମାଶ୍ରୁ ନୟନେ ଅଙ୍ଗେ ପୁଲକ ଛୁଟାଇ,
ଆନନ୍ଦେ ଆଲିଙ୍ଗି ବକ୍ଷ ଦେଶେ ବେନି ଭାଇ—
ତୁରିତେ ଚଳିଲେ ଦଶରଥଙ୍କ ନିବାସେ,
ସରୋବର ଯାଏ ଅବା ତୃଷାତୁର ପାଶେ । ୧୬୪୯

ସପୁତ୍ରେ ମୁନିଙ୍କୁ ଆସୁଥିବା ଦେଖି ପଥେ,
ନୃପତି ପଶିଲେ ସୁଖ-ପାରାବାରେ ସତେ ।
ଗମ୍ଭୀର ସାଗର ପାଣି କଣିଲା ପରାୟେ,
ଆନନ୍ଦ-ସିନ୍ଧୁକୁ ପଶିଗଲେ ନରରାୟେ । ୧୬୫୦

ସାଷ୍ଟାଙ୍ଗ ପ୍ରଣାମ କଲେ ମୁନିଙ୍କୁ ନୃପତି,
ବାରମ୍ବାର ପଦରଜ ମସ୍ତକେ ଘେନନ୍ତି ।
କଉଶିକ ଦଶରଥେ ତୋଳି ବୁକୁପରେ,
କୁଶଳ ପଚାରି ବହୁ ଆଶୀର୍ବାଦ କଲେ । ୧୬୫୧

ବେନି ଭାଇ ଦଣ୍ଡବତ କଲେ ଯେବେ ପଦେ,
ସୁଖ ନ ସମ୍ଭାଏ ତିଳେ ଦଶରଥ ହୃଦେ ।
ପୁତ୍ରେ ନେଲେ ବକ୍ଷେ, ଦୁଃଖ ଗଲା ଅପସରି,
ମୃତ ଶରୀରରେ ଯେହ୍ନେ ପ୍ରାଣ ଗଲା ଭରି । ୧୬୫୨

ବଶିଷ୍ଠଙ୍କ ପଦେ ପୁଣି ନୁଆଁଇଲେ ଶିର,
ପ୍ରେମୋଲ୍ଲାସେ ହୃଦେ ନେଲେ ତାଙ୍କୁ ମୁନି ଧୀର ।
ବନ୍ଦନା କରିଲେ ବିପ୍ର ବୃନ୍ଦେ ବେନି ଭାଇ,
ହେଲେ ସୁପ୍ରସନ୍ନ ତାଙ୍କ ଆଶୀର୍ବାଦ ପାଇ । ୧୬୫୩

ଭରତ ଅନୁଜ ସାଥେ କରନ୍ତେ ପ୍ରଣାମ,
ଭୂଇଁରୁ ଉଠାଇ ହୃଦେ ଲଗାଇଲେ ରାମ ।
ସେ ବେନି ଭାଇଙ୍କୁ ଦେଖି ଆନନ୍ଦେ ଲକ୍ଷ୍ମଣ,
ପ୍ରେମ ଭରେ ହେଲେ ତାଙ୍କ ସହିତ ମିଳନ । ୧୬୫୪

ପରମ କୃପାଳୁ ରାମ ବନସ୍ଥ ଅନ୍ତରେ,
ଭେଟିଲେ ସ୍ୱଜନ ମିତ୍ର ମନ୍ତ୍ରୀ ପୁର ନରେ ।
ସମସ୍ତଙ୍କୁ କରି ଯଥା ବିଧି ସମ୍ଭାଷଣ,
ସଭିଙ୍କୁ ଆନନ୍ଦ ଦେଲେ ଶ୍ରୀରଘୁନନ୍ଦନ । ୧୬୫୫

ଶ୍ରୀରାମଙ୍କୁ ଦେଖି ତୃପ୍ତ ବରଜାତି ଦଳ
ଏସନ ପୀରତି ରୀତି କହିବା ଦୁଷ୍କର ।
ଶୋଭନ୍ତି ରାଜାଙ୍କ ପାଶେ ତାଙ୍କ ସୁତ ଚାରି,
ଧର୍ମ ଅର୍ଥ କାମ ମୋକ୍ଷ ଅବା ତନୁଧାରୀ । ୧୬୫୬

ପୁତ୍ରଙ୍କ ସହିତେ ଦେଖି ଅଯୋଧ୍ୟା ରାଜନେ,
ପୁଲକିତ ନର ନାରୀ ଯେତେ ପୁରଜନେ ।
କୁସୁମ ବରଷି ଦେବେ ବଜାନ୍ତି ନିଶାଣ,
ନାଚନ୍ତି ସରଗ ନଟୀ ଗାଇ ନାନା ଗାନ । ୧୬୫୭

ଶତାନନ୍ଦ ବିପ୍ର ପାତ୍ର ସଚିବ ସମେତେ,
ବିଦୂଷ ଗାୟକ ବନ୍ଦୀ ସାରଥୀଏ ଯେତେ ।
ବରଯାତ୍ରୀ ସହ ନୃପେ ଅଭ୍ୟର୍ଥନା କରି,
ବାହୁଡ଼ି ଆସିଲେ ପୁରେ ଅନୁମତି ଧରି । ୧୬୫୮

ବିବାହ ଲଗନ ଆଗୁଁ ବରଯାତ୍ରୀ ଦଳ,
ପହଞ୍ଚିବା ହେତୁ ପୁର ଅଧିକ ଚହଳ ।
ବ୍ରହ୍ମାନନ୍ଦ ସୁଖ ସତେ ସମସ୍ତେ ଲଭନ୍ତି,
ବଢ଼ୁ ଦିନ ରାତି ବୋଲି ବିହିକୁ କହନ୍ତି । ୧୬୫୯

ଶୋଭା ସୁଷମାର ସୀମା ରାମ-ସୀତା ରୂପ,
ପୁଣ୍ୟ ସୀମା ପୁଣି ବେନି ଭାଗ୍ୟବାନ ନୃପ ।

ଏଇ କଥା ନରନାରୀ ମିଳି ଦଳେ ଦଳେ,
ଆଲୋଚନା କରୁଥାନ୍ତି ସମସ୍ତ ନଗରେ । ୧୭୭୦

ଜନକ ସୁକୃତ ରାଶି ମୂରତି ବୈଦେହୀ,
ଦଶରଥ ପୁଣ୍ୟ ଫଳେ ରାମ ନରଦେହୀ ।
ଏମାନଙ୍କ ସମ ଶିବସେବା କାର ନାହିଁ,
ଏମାନଙ୍କ ପରି କେହି ନାହିଁ ଫଳ ପାଇ । ୧୭୭୧

ଏମାନଙ୍କ ସମ କେହି ନାହାନ୍ତି ଜଗତେ,
ନ ଥିଲେ ଅତୀତେ, ହେବେ ନାହିଁ ଭବିଷ୍ୟତେ ।
ସମସ୍ତେ ଆମେ ତ ଜାଣ ସୁକୃତର ରାଶି,
ଜଗତେ ଜନମି ହେଲେ ମିଥିଳା ନିବାସୀ । ୧୭୭୨

ଶ୍ରୀରାମ ଜାନକୀ ରୂପ କଲେ ଦରଶନ,
କାହାର ସୁକୃତ ହେବ କହ ଆମ ସମ ?
ପୁଣି ରାମଙ୍କର ବିଭା ଦେଖିବା ନୟନେ,
ନେତ୍ର ଲାଭ ଭଲ ଭାବେ ଲଭିବା ଜୀବନେ । ୧୭୭୩

ପରସ୍ପର କହୁଥାନ୍ତି କୋକିଳ-ବଚନୀ,
ଏ ବିବାହେ ଲାଭ ହେବ ଆଗୋ ସୁଲୋଚନୀ ।
ବଡ଼ ଭାଗ୍ୟେ ବିଧି ଅଛି ସଯୋଗ ଘଟାଇ,
ନୟନ-ଅତିଥି ଆସି ହେବେ ଦୁଇ ଭାଇ । ୧୭୭୪

ବାରମ୍ବାର ଡକାଇବେ ସ୍ନେହରେ ଜନକ,
ଜାନକୀଙ୍କୁ ହୃଦେ ଭରି ଅଶେଷ ପୁଲକ ।
କୋଟି କାମ ସମ କମନୀୟ ବେନି ଭାଇ,
ଆସିବେ ବିଦାୟ କାଳେ ଘେନି ଯିବା ପାଇଁ । ୧୭୭୫

ଆଦର ସତ୍କାର ହେବ ପୁଣି ନାନାମତେ,
କାହାକୁ ଶଶୁରାଳୟ ଅପ୍ରିୟ ଜଗତେ ?
ରାମ ଲକ୍ଷ୍ମଣଙ୍କୁ ସେତେବେଳେ ଆମେମାନେ,
ନିରେଖି ଲଭିବା ସୁଖ ଆମର ପରାଣେ । ୧୭୭୬

ସଖି ରାମ ଲକ୍ଷ୍ମଣଙ୍କ ଯୋଡ଼ି ଯେଉଁପରି,
ନୃପ ସଙ୍ଗେ ଆଉ ଦୁଇ ବାଳକ ସେପରି ।
ସିଏ ବି ଶ୍ୟାମଳ ଗୌର ଅତି ସୁଶୋଭନ—
ଦେଖି ଆସିଛନ୍ତି ଯେହୁ କହନ୍ତି ଏସନ । ୧୬୬୭

କହେ ଜଣେ ତାଙ୍କୁ ଆଜ ମୁଁ ଦେଖି ଆସିଛି,
ବିରଞ୍ଚି ଯେସନେ ନିଜ ହାତରେ ଗଢ଼ିଛି ।
ରାମ ଅନୁରୂପ ପରି ଭରତ ହୋଇବେ,
ନରନାରୀ ଦୁଇ ଜନେ ବାରି ନ ପାରିବେ । ୧୬୬୮

ଲକ୍ଷ୍ମଣ ଶତ୍ରୁଘ୍ନ ଦୁଇ ରୂପେ ହେବେ ସମ,
ଆପାଦ ମସ୍ତକ ତାଙ୍କ ସର୍ବ ଅନୁପମ ।
ମନ ଭାବେ କିନ୍ତୁ କହି ନ ହୁଏ ବଚନେ,
ଉପମା ଦେବାକୁ କିଛି ନାହିଁ ତ୍ରିଭୁବନେ । ୧୬୬୯

କହନ୍ତି ତୁଳସୀ ଦାସ ଏମାନଙ୍କ ପାଇଁ,
ଜଗତରେ ଆଉ ଅନ୍ୟ ଉପମା ତ ନାହିଁ ।
ଏ କଥା କହନ୍ତି କବି କୋବିଦ ସକଳେ,
ଶୋଭା ଶୀଳ ବିଦ୍ୟା ବୁଦ୍ଧି ବିନୟ ଓ ବଳେ,
ଏହି ଦୁଇ ଭାଇ ଜାଣ ନିଜେ ନିଜ ସମ,
ପ୍ରକୃତି ଗୁଣରେ ସେ ଯେ ଅତି ଅନୁପମ । ୧୬୭୦

ବିଦେହପୁର ନାରୀ ଯେତେ ପତାଇ ପଣତ,
ବିଧିଙ୍କୁ ଜଣାନ୍ତି ହୋଇ ଶରଣାନୁଗତ—
ବିବାହ ହୁଅନ୍ତୁ ଚାରି ଭାଇ ଏହି ପୁରେ,
ଗାଇବୁ ମଙ୍ଗଳ ଗୀତି ଆମେ ମଧୁ ସ୍ୱରେ । ୧୬୭୧

ବିଦେହ ରମଣୀ କଥା ହେଲେ ପରସ୍ପର,
ପୁଲକିତ ତନୁ ମନ, ନେତ୍ରେ ଅଶ୍ରୁ ଝର—
ସଖିଲୋ, ନୃପତି ଦୁଇ ପୁଣ୍ୟର ସାଗର,
ଏଥିକୁ ସାଧିବେ କାର୍ଯ୍ୟ ନିଶ୍ଚେ ମହେଶ୍ୱର । ୧୬୭୨

ଏସନ ପ୍ରକାରେ ସର୍ବେ କରନ୍ତି କାମନା,
ଆନନ୍ଦେ ଉତ୍‌ଫୁଲ୍ଲ ହୋଇ ହରଷିତ ମନା ।
ସୀତା ସ୍ୱୟଂବରକୁ ଯେ ନୃପେ ଆସିଥିଲେ,
ଏ ଚାରି ଭାଇଙ୍କୁ ଦେଖି ହରଷ ହୋଇଲେ । ୧୬୭୩

ଗାଇ ରଘୁନାଥ ଯଶ ବିମଳ ବିଶାଳ,
ନିଜ ନିଜ ପୁରେ ଗଲେ ଯେତେକ ମହୀପାଳ ।
ଏହିପରି କିଛି ଦିନ ହୋଇଗଲା ଗତ,
ପ୍ରମୋଦିତ ପୁରବାସୀ ବରଯାତ୍ରି ଶତ । ୧୬୭୪

ମଙ୍ଗଳର ଶୁଭ ଲଗ୍ନ ବେଳା ଉପଗତ,
ଋତୁ ମାର୍ଗଶିର ମାସ ଋତୁ ଯେ ହେମନ୍ତ ।
ଗ୍ରହ ତିଥି ନକ୍ଷତ୍ରର ଯୋଗ ତିଥି ବାର,
ଲଗ୍ନ ବେଳା ଗଣି ବିଧି କଲେ ତା' ବିଚାର । ୧୬୭୫

ପୁଣି ପଠାଇଲେ ତାହା ନାରଦଙ୍କ କରେ,
ଜନକ ଗଣକେ ଆଗୁଁ ଯାହା ଗଣିଥିଲେ ।
ସେ ବାର୍ତ୍ତା ଶ୍ରବଣ କରି କହିଲେ ସରବେ,
ବିଧାତା ଗଣକ ନିଜେ ଏ ଶୁଭ ଉତ୍ସବେ । ୧୬୭୬

ନିର୍ମଳ ପବିତ୍ର ବେଳା ଗୋଧୂଳି ମୁହୂର୍ତ୍ତ,
ସବୁ ସୁମଙ୍ଗଳ ଯେହ୍ନେ ସେ ବେଳାରେ ମୂର୍ତ୍ତ ।
ଦେଖାଗଲା ଯେତେ ଶୁଭଲକ୍ଷଣ ସେ କ୍ଷଣେ,
ଜାଣି ବିପ୍ରେ ଜଣାଇଲେ ବିଦେହ ରାଜନେ । ୧୬୭୭

ପୁରୋହିତ ଶତାନନ୍ଦେ କହିଲେ ରାଜନ,
ବିଳମ୍ବ କରିବା କହ ଆଉ କି କାରଣ ?
ତହୁଁ ଶତାନନ୍ଦ ମନ୍ତ୍ରୀଗଣଙ୍କୁ ଡାକିଲେ,
ସଜାଇ ମଙ୍ଗଳ ଦ୍ରବ୍ୟ ସେମାନେ ଆଣିଲେ । ୧୬୭୮

ଆଣିବା ପାଇଁକି ବରଯାତ୍ରିଙ୍କୁ ଆଦରେ,
ଵିରବାସେ ଗଲେ ସର୍ବେ ବିପୁଳ ଆଡରେ ।

ଦଶରଥ-ଦଳ ଦେଖି ଏ ଥାଟ ବିଭବ,
ଇନ୍ଦ୍ର ଅତି ତୁଚ୍ଛ ବୋଲି କଲେ ଅନୁଭବ । ୧୬୭୯

ସେମାନେ କହିଲେ "ବେଳ ହେଲା, ପଡ଼ୁ ଘାଇ",
ଏହା ଶୁଣି ହେଲା ଘନ ନିଶାଣ ନିନାଦ ।
ଗୁରୁଙ୍କୁ ପଚାରି ରାଜା କୁଳରୀତି କରି,
ବେଗେ ଗଲେ ମୁନି ସାଧୁ-ସମାଜକୁ ଧରି । ୧୬୮୦

ଦେଖି ଦଶରଥଙ୍କର ସୌଭାଗ୍ୟ ସମ୍ପତ୍ତି,
ବ୍ରହ୍ମାଦି ଦେବତାଗଣ ଶେଷେ ପ୍ରଶଂସନ୍ତି ।
କାରଣ ସହସ୍ରାନନ ଏହା ବର୍ଣ୍ଣିପାରେ,
ଆମର ଜନମ ବୃଥା ସିନା ଏ ସଂସାରେ । ୧୬୮୧

ଦେବତାଏ ଜାଣିପାରି ମଙ୍ଗଳ ଲଗନ,
ନିଶାଣ ବଜାଇ କଲେ ପୁଷ୍ପ ବରଷଣ ।
ମହେଶ ବିରଞ୍ଚି ଆଦି ଦେବତା ସକଳ,
ନାନା ବାହନରେ ଚଢ଼ି ହୋଇ ଦଳ ଦଳ । ୧୬୮୨

ପୁଲକ ଶରୀରେ ଭରି ହୃଦୟେ ଉତ୍ସାହ,
ଆସିଲେ ଦେଖିବା ପାଇଁ ରାମଙ୍କ ବିବାହ ।
ଦେଖି ରାଜପୁର ହେଲେ ଏତେ ଅନୁରକ୍ତ,
ତୁଚ୍ଛ ମନେ କଲେ ନିଜ ନିଜର ମୁଲକ । ୧୬୮୩

ବିଚିତ୍ର ମଣ୍ଡପ ନାନା ଭାବେ ବିରଚିତ,
ରଚନା ପାଟବ ଚାହିଁ ହୋଇଲେ ଚକିତ ।
ନଗରର ନର ନାରୀ ସୁଷମା ନିଧାନ,
କୁଳୀନ ପ୍ରବୀଣ ଧର୍ମବନ୍ତ ଶୀଳବାନ । ୧୬୮୪

ତାଙ୍କୁ ଦେଖି ହେଲେ ସୁରାଙ୍ଗନା ସୁରଗଣେ,
ପ୍ରଭାହୀନ, ଚନ୍ଦ୍ରାଲୋକେ ତାରକା ଯେସନେ ।
ଅଧିକ ଆଶ୍ଚର୍ଯ୍ୟ ହେଲେ ବିଧାତା ସେଠାରେ,
ଯେଣୁ ନ ଦେଖିଲେ ନିଜ ସୃଷ୍ଟି କେଉଁଠାରେ । ୧୬୮୫

ଦେବତାଙ୍କୁ ଶିବ ଚତ୍ତୁଁ କହିଲେ ବୁଝାଇ,
ବିସ୍ମୟେ ନିଜକୁ ନିଜେ ଭୁଲି ଯାଅ ନାହିଁ ।
ଧୈର୍ଯ୍ୟ ଧରି ହୃଦେ କିଆଁ ବିଚାର ନ କର ?
ଏ ଯେ ଭଗବାନ ରାମ-ସୀତା ବିଭାଘର । ୧୬୮୬

ଜଗତେ ଯାହାଙ୍କ ନାମ କଲେ ଉଚ୍ଚାରଣ,
ନାଶ ହୋଇଯାଏ ସର୍ବ ଅଶୁଭ କାରଣ ।
ଯାହାଙ୍କୁ ଭଜିଲେ ମିଳେ ଚତୁଃବର୍ଗ ଫଳ,
ଏହି ସେହି ରାମ-ସୀତା କହିଲେ ଶଙ୍କର । ୧୬୮୭

ଏ ରୂପେ ବୁଝାଇ ଦେବଗଣେ ମହେଶ୍ୱର,
ଆଗେ ଆଗେ ଚଳାଇଲେ ବୃଷଭ ନିଜର ।
ଦେଖିଲେ ଯାଆନ୍ତି ପଥେ ଅଯୋଧ୍ୟାର ପତି,
ପୁଲକିତ ଅଙ୍ଗ ମନ ପ୍ରଫୁଲ୍ଲିତ ଅତି । ୧୬୮୮

ସାଙ୍ଗରେ ବ୍ରାହ୍ମଣ ସାଧୁ-ସମାଜ ଅଛନ୍ତି,
ସୁଖ ଯେହ୍ନେ ଦେହ ଧରି ରାଜାଙ୍କୁ ସେବନ୍ତି ।
ସମୀପେ ଶୋଭନ୍ତି ଚାରି ସୁତ ମନୋହର,
ସବୁ ମୋକ୍ଷ ଧରିଛନ୍ତି ଅବା କଳେବର । ୧୬୮୯

କନକ ମର୍କତମଣି ବର୍ଣ୍ଣ ଏ ଯୁଗଳ,
ଦେଖି ଅତିଶୟ ପ୍ରୀତ ଦେବତା ନିକର ।
ରାମଙ୍କୁ ନିରେଖି ପୁଣି ହରଷ ଅନ୍ତରେ,
ନୃପଙ୍କୁ ପ୍ରଶଂସି ପୁଷ୍ପ ବରଷଣ କଲେ । ୧୬୯୦

ତାଳୁରୁ ତଳପା ଯାଏଁ ରାମ ରୂପ ରାଶି,
ନିରେଖି ଥରକୁଥର କୈଳାସ-ନିବାସୀ—
ଶଙ୍କର ଭବାନୀ ସହ ପୁଲକ ଅନ୍ତର,
ହେଲା ନେତ୍ର ଯୁଗ ପ୍ରୀତି-ଲୋତକେ ସଜଳ । ୧୬୯୧

କେକୀ-କଣ୍ଠ ସମ ଦ୍ୟୁତି ଶ୍ୟାମଳ ଶରୀର,
ବିଦ୍ୟୁତକୁ ନିନ୍ଦେ ପୀତ ବସନ ରୁଚିର ।

ନାନା ବିଧ ବସ୍ତ୍ର-ବିଭୂଷଣେ ବିଭୂଷିତ,
ଶୁଭ ଆଭରଣେ ସବୁ ପ୍ରକାରେ ଶୋଭିତ । ୧୬୯୨

ଶରଦ ବିମଳ ଇନ୍ଦୁ ସମାନ ବଦନ,
ଲଜ୍ଜିତ କରଇ ନବ-କଞ୍ଜକୁ ନୟନ ।
ଅନୁପମ ଦିବ୍ୟ ଶୋଭା ସୁଷମା ବିଭବ,
କହି ନ ହୁଅଇ, ହୃଦ କରେ ଅନୁଭବ । ୧୬୯୩

ସୁନ୍ଦର ଅନୁଜଗଣ ଶୋଭନ୍ତି ସଙ୍ଗରେ,
ନଚାଇ ଚପଳ ଅଶ୍ୱ ଯାଆନ୍ତି ରଙ୍ଗରେ ।
ନୃପତି କୁମରେ ଅଶ୍ୱ ନଚାନ୍ତି ସୁନ୍ଦର,
କୁଳ ଘଟେ କୁଳ କୀର୍ତ୍ତି ଶୁଣାନ୍ତି ମଧୁର । ୧୬୯୪

ସେ ଯେଉଁ ତୁରଗ ପରେ ରାମ ବିରାଜିତ,
ତା' ଗତି ନିରେଖି ଖଗ-ନୃପତି ଲଜ୍ଜିତ ।
ସବୁ ତ ସୁନ୍ଦର ଶୋଭା କହି ନ ହୁଅଇ,
ଅଶ୍ୱ ବେଶ ଧରି ରତି-ପତି କି ଚଳଇ । ୧୬୯୫

ଶ୍ରୀରାମଙ୍କ ପାଇଁ ଅଶ୍ୱ ବେଶ ଧରି ସ୍ମର,
ସତେ ଏତେ ସୁଶୋଭିତ ଏତେ ମନୋହର ।
ବୟସେ ବିଶ୍ରାମ ରୂପ ଗୁଣ ଓ ଗତିରେ,
ଭୁବନ ମୋହଇ ଅବା ବିଚିତ୍ର ରୀତିରେ ।
ମଣି ମୁକ୍ତା ମାଣିକ୍ୟରେ ଜିନ ସୁଶୋଭିତ,
ତା' ଜ୍ୟୋତି ଝଟକୁଅଛି କରି ଆଲୋକିତ ।
ଘୁଙ୍ଗୁର ଖଚିତ ରଜ୍ଜୁ ଲଗାମ ଲଳିତ,
ଦେବ ନର ମୁନିଗଣେ କରେ ପ୍ରତାରିତ । ୧୬୯୬

ପ୍ରଭୁଙ୍କ ଇଚ୍ଛାରେ ଅଶ୍ୱ ମନ କରି ଲୟ,
ଚାଲୁଥିବା କାଳେ ଦିଶେ ଅତି ଶୋଭାମୟ ।
ଗଗନେ ତାରକା ବିଦ୍ୟୁ ବିଭୂଷିତ ଘନ,
ନଚାଉଛି ମନୋହର ମୟୂର ଯେସନ ।

ଯେଉଁ ବର ଅଶ୍ୱ ପୃଷ୍ଠେ ରଘୁନାଥ ବଜେ,
ତା' ଶୋଭା ବର୍ଣ୍ଣିବେ ବାଣୀ ଅସମର୍ଥ ହଜେ ।
ଶିବ ଅନୁରାଗେ ରାମ ରୂପ ଦରଶନେ,
ପଞ୍ଚଦଶ ନେତ୍ର ସୁଖ ଲଭିଲେ ଏ କ୍ଷଣେ । ୧୬୯୭

ରାମଙ୍କୁ ନିରେଖି ହରି ଆଦର ସହିତ,
ରମା ସହ ରମାପତି ହେଲେ ବିମୋହିତ ।
ହର୍ଷେ ରାମ ରୂପ ଛବି ଦେଖି ଚତୁର୍ମୁଖ,
କେବଳ ନୟନ ଆଠ ପାଇଁ କଲେ ଦୁଃଖ । ୧୬୯୮

ଦେବ ସେନାପତି ହୃଦେ ଉତ୍ସାହ ଅପାର
ବିଧାତାଙ୍କ ଠାରୁ ଦେଢ଼ଗୁଣ ନେତ୍ର ଯା'ର ।
ଦେବରାଜ ଇନ୍ଦ୍ର ଯେବେ ରାମଙ୍କୁ ଚାହିଁଲେ,
ଗଉତମ ମୁନି ଶାପ ସୁଖଦ ମଣିଲେ । ୧୬୯୯

ପ୍ରଶଂସା କରନ୍ତି ଇନ୍ଦ୍ରେ ଦେବତା ସକଳ
ଆଜ ସହସ୍ରାକ୍ଷ ସମ ନାହିଁ ଭାଗ୍ୟଧର ।
ନିରେଖି ରାମଙ୍କୁ ଦେବତାଏ ବହ୍ୱଳିତ,
ବେନି ସ୍ୱର୍ଗ ମର୍ତ୍ତ୍ୟ ନୃପକୁଳ ହରଷିତ । ୧୭୦୦

ବେନି ରାଜକୁଳ ହେଲେ ହରଷେ ମଗନ,
ବାଜିଲା ଦୁନ୍ଦୁଭି ଉଚ୍ଚେ କମ୍ପାଇ ଗଗନ !
କହିଲେ ଦେବତା କରି ପୁଷ୍ପ ବରଷଣ,
"ଶ୍ରୀରାମଙ୍କ ଜୟ, ଜୟ ଶ୍ରୀ ରଘୁନନ୍ଦନ ।"
ବଜାଇ ବହୁତ ବାଜା ବରଜାତି ଦଳ,
ଆଡ଼ମ୍ବର ସହକାରେ ଆସନ୍ତି ସତ୍ତ୍ୱର ।
ଏହା ଜାଣି ସଖୀକୁଳ ଡାକି ରାଣୀଗଣେ,
ସଜାନ୍ତି ମଙ୍ଗଳ ଦ୍ରବ୍ୟ ସଖୀଙ୍କ ଗହଣେ । ୧୭୦୧

ଅନୁପମା ବର-ଗଜ-ଗାମିନୀ ଲଳନା,
ସଜାଇ ଆଳତି କରି ମଙ୍ଗଳ-ରଚନା ।

ବିବିଧ ପ୍ରକାରେ ପ୍ରୀତି ପ୍ରମୋଦିତ ମନେ,
ବନ୍ଦାପନା କରିବାକୁ ଚଳିଲେ ତତ୍‌କ୍ଷଣେ । ୧୭୦୨

ସେ ବଧୂ ବଦନୀ ସର୍ବେ କୁରଙ୍ଗ ଲୋଚନୀ,
ସ୍ୱତନୁ ଶୋଭାରେ ରତି ଗରବ-ଗଞ୍ଜନୀ ।
ପିନ୍ଧିଛନ୍ତି ନାନାବର୍ଣ୍ଣ ଉତ୍ତମ ବସନ,
ଶରୀରେ ଶୋଭଇ ନାନା ଭୂଷା ଆଭରଣ । ୧୭୦୩

ମଙ୍ଗଳ ଦରବେ ଅଙ୍ଗ ସଜାଇ ଯତନେ,
ଗାଆନ୍ତି ସଙ୍ଗୀତ କଳକଣ୍ଠ-ନିନ୍ଦ ସ୍ୱନେ,
କଙ୍କଣ କଙ୍କିଣୀ ପୁଣି ବଜାଇ ନୂପୂର ।
ନିରେଖି ସେ ଗତି କାମ ଗଜ ଲଜ୍ଜ୍ୟାକୁଳ । ୧୭୦୪

ବାଜଇ ବାଜଣା ଉଚେ ନାନାବିଧ ପ୍ରକାର,
ନଭେ ଓ ନଗରେ ହୁଏ ସୁମଙ୍ଗଳାଗ୍ରହ ।
ଥିଲେ ଶଚୀ ସରସ୍ୱତୀ ରମା ପାରବତୀ,
ସୁରନାରୀ ସୁଚତୁରୀ ବିଚକ୍ଷଣା ଅତି । ୧୭୦୫

କପଟେ ସୁନାରୀ ବେଶ ହୋଇ ସୁଚତୁରେ
ମିଳିଲେ ସକଳେ ଆସି ରାଣୀ ହଂସ ପୁରେ ।
ମଧୁରେ ମଙ୍ଗଳ ଗୀତ ଗାଇଲେ ସୁସ୍ୱରେ
କାହାକୁ କେ ନ ଜାଣିଲେ ଉତ୍ସବ ଭିତରେ । ୧୭୦୬

କାହାକୁ ଚିହ୍ନୁ ଚି କିଏ ତନ୍ମୟ ସକଳ,
ଲବଣ ଚଉଁରୀ ପାଇଁ ବ୍ରହ୍ମବରଙ୍କର ।
ଚଳିଲେ ସରବେ ଗାଇ ମଙ୍ଗଳ ସଙ୍ଗୀତ,
ନିଷାଣର ମଧୁସ୍ୱରେ ଚିତ୍ତ ପୁଲକିତ ।
କରନ୍ତି ଦେବତା ନଭୁଁ କୁସୁମ ବର୍ଷଣ,
ମନୋଜ୍ଞ ଶୋଭାରେ ମନ ଅତୀବ ପ୍ରସନ୍ନ ।
ନିରେଖି ଆନନ୍ଦ-କନ୍ଦ-ବର ରୂପ ରାଶି,
ନାରୀଙ୍କ ହୃଦୟୁଁ ଗଲା ଆନନ୍ଦରେ ଭାସି ।

ସରସିଜ ନୟନରୁ ପ୍ରେମାଶ୍ରୁର ଧାର,
ବହିଲା, ପୁଲକାବଳି ଜାଗେ ଅଙ୍ଗସାର । ୧୭୦୭

ରାମ ବରବେଶ ଦେଖି ଜାନକୀ-ଜନନୀ,
ଲଭିଲେ ଯେ ସୁଖ ହୃଦପୁରେ ସେହିକ୍ଷଣି,
ନ କହି ପାରିବେ ତାହା କୋଟି କଳ୍ପେ କେବେ,
ଶତ ସରସ୍ୱତୀ ଶତ ଶେଷ ହେବେ ଯେବେ । ୧୭୦୮

ଶୁଭ ବେଳ ଜାଣି ରୋଧି ନୟନର ପାଣି,
ବନ୍ଦାପନା କୃତ୍ୟ ସବୁ ହର୍ଷେ କଲେ ରାଣୀ ।
ବେଦ କୁଳାଚାର ମତେ ସୁଗୃହ୍ୟ ବିଧାନେ,
ସବୁ କର୍ମ ସମାପନ କଲେ ରାଣୀମାନେ । ୧୭୦୯

ପଞ୍ଚ ଶବଦରେ ହୁଏ ସୁମଙ୍ଗଳ ଗାନ,
ତଳେ ବସ୍ତ୍ର ପଡ଼ି ହେଲା ପାହାଡ଼ା ବିଧାନ ।
ରାଣୀଏ ଆଳତୀ କରି କଲେ ଅର୍ଘ୍ୟଦାନ,
ତହୁଁ ବିଭା ମଣ୍ଡପକୁ ଚଳିଲେ ଶ୍ରୀରାମ । ୧୭୧୦

ସମାଜ ସହିତ ବିଜେ ଅଯୋଧ୍ୟା ନୃପତି,
ଲଜ୍ଜିତ ବିଭବ ଦେଖି ଅବା ଲୋକପତି ।
ବେଳେ ବେଳେ ଦେବତାଏ ପୁଷ୍ପ ବରଷନ୍ତି,
ଉଚ୍ଚ ସ୍ୱରେ ଶାନ୍ତି ପାଠ ବ୍ରାହ୍ମଣେ କରନ୍ତି । ୧୭୧୧

ଶୁଭେ ଘନ କୋଳାହଳ ନଗରେ ଗଗନେ,
ନ ଶୁଭେ ଆପଣା ପର ବାକ୍ୟାଳାପ କର୍ଣ୍ଣେ ।
ମଣ୍ଡପକୁ ରଘୁବର ଆସିଲେ ଏସନେ,
ଅର୍ଘ୍ୟ ଦେଇ ବସାଗଲା ତାହାଙ୍କୁ ଆସନେ । ୧୭୧୨

ଆସନେ ବସାଇ ବନ୍ଦାପନା ବିଧି କରି,
ବର ରୂପ ଦେଖି ହର୍ଷ ହେଲେ ପୁର ନାରୀ ।
ଭୂଷଣ ବସନ ରତ୍ନ ଦେଇ ଉପହାର,
ଗାଆନ୍ତି ସେ ସୁମଙ୍ଗଳ-ଗୀତ ବାର ବାର । ୧୭୧୩

ବ୍ରହ୍ମାଦି ଦେବତାଗଣ ବିପ୍ର ବେଶ ଧରି,
ନିରେଖନ୍ତି କଉତୁକ ତହିଁ ନେତ୍ର ଭରି ।
ରଘୁକୁଳ-ସରସିଜ-ରବି ରଘୁବର,
ନେତ୍ର ଅଭିରାମ ରୂପ ଶୋଭା ମନୋହର ।
ଦେଖି ରାମ ରୂପ ଶୋଭା ଦେବତା ସକଳ
ଜୀବନ ସୁଫଳ ବୋଲି ଭାବନ୍ତି କେବଳ । ୧୭୧୪

ନାପିତ ଭଣ୍ଡାରୀ ଭାଟ ନଟ ନଟୀଗଣ,
ଲଭି ରାମ ଉପହାର ବସନ ଭୂଷଣ ।
ଶିର ନୋଇଁ ଶୁଭାଶିଷ ଦିଅନ୍ତି ଅଜାଡ଼ି,
ପ୍ରାଣର ଆନନ୍ଦ ବୁକେ ନ ସମ୍ଭାଏ ଖାଲି । ୧୭୧୫

ବୈଦିକ ଲୌକିକ କୁଳ ରୀତି ଅନୁସରି,
ମିଳିଲେ ନୃପତି ବେନି ହୃଦେ ପ୍ରୀତି ଭରି ।
ଦଶରଥ-ମିଥିଳେଶ ମିଳନ ସୁଷମା,
ଅପୂର୍ବ-ଲଜ୍ଜିତ କବି ନ ପାଇ ଉପମା । ୧୭୧୬

ଉପମା ନ ପାଇ କାହିଁ ମାନି ପରାଜୟ,
ଭାବିଲେ ଉପମା ତାଙ୍କ ସେମାନେ ନିଶ୍ଚୟ ।
ଏପରି ସମ୍ବନ୍ଧୀ ଦେଖି ଦେବତା ଆଦରେ,
ଯଶ ଗାଇ ବରଷନ୍ତି ପୁଷ୍ପ ଶିର ପରେ । ୧୭୧୭

କହନ୍ତି ବିଧାତା ସୃଷ୍ଟି କଲେ ଯେଉଁ ଦିନୁଁ,
ଦେଖିଛୁ ଶୁଣିଛୁ ବହୁ ବିବାହ ସେ ଦିନୁ ।
କିନ୍ତୁ ଦେଖିନାହୁଁ ସମ ସମାଜ ସହିତ,
ସମାନ ସମ୍ବନ୍ଧୀ ଥାଇ ବିବାହ କାହିଁ ତ । ୧୭୧୮

ଦେବତାମାନଙ୍କ ସତ୍ୟ ସୁମଧୁର ବାଣୀ,
ଉଭୟ ସମାଜେ ହର୍ଷ ଭରିଦେଲା ଆଣି ।
ପକାଇ ପାହାଡ଼ା ଦେଇ ଅର୍ଘ୍ୟ ସୁମଙ୍ଗଳ,
ଘେନିଗଲେ ଦଶରଥେ ମଣ୍ଡପେ ଜନକ । ୧୭୧୯

ସଭଙ୍କ ସକାଶେ ବିଜ୍ଞ ଜନକ ରାଜନ,
ସଜାଇ ରଖିଲେ ତହିଁ ଦିବ୍ୟ ସିଂହାସନ ।
ବଶିଷ୍ଠ ମହର୍ଷି କୁଳ ଇଷ୍ଟଦେବ ସମ,
ଲଭିଲେ ବିନୟେ ପୂଜ ଆଶିଷ ଉତ୍ତମ ।
କୌଶିକଙ୍କୁ କଲେ ଯେବେ ପୂଜା ଆରାଧନା,
ତାଙ୍କର ସନ୍ତୋଷ କିଏ କରିବ ବର୍ଣ୍ଣନା ? ୧୭୨୦

ବାମଦେବ ଆଦି ମୁନିଗଣଙ୍କୁ ରାଜନ,
ଆନନ୍ଦରେ ପୂଜ ଦେଲେ ସୁଦିବ୍ୟ ଆସନ ।
ମୁନିମଣ୍ଡଳୀଙ୍କ ଠାରୁ ମିଥିଳା ମହୀଶ,
ପ୍ରୀତିଭରେ ସେତେବେଳେ ଘେନିଲେ ଆଶିଷ । ୧୭୨୧

କ୍ଷଣ ସମ ଦଶରଥେ ମଣି ନୃପବର,
ବହୁ ପୂଜା କଲେ ତାଙ୍କୁ ନ ମଣି ଇତର ।
କରଯୋଡ଼ି ସବିନୟେ କରିଲେ ବିନତି,
ତାଙ୍କ ପାଇଁ ବଢ଼ି ନିଜ ସୌଭାଗ୍ୟ ସମ୍ପତ୍ତି । ୧୭୨୨

ପୂଜିଲେ ସାଦରେ ବରଯାତ୍ରୀଙ୍କୁ ରାଜନ,
ହୃଦୟରେ ଭାବ ସର୍ବେ ସମୁନ୍ଧୀ ଯେସନ ।
ଉଚିତ ଆସନ ପରେ ଦେଲେ ମିଥିଳେଶ,
କି କହିବ ଏକ ମୁଖେ ଉତ୍ସାହ ଅଶେଷ । ୧୭୨୩

ଦାନ ମାନ ସୁସମ୍ମାନ ବିନୟ ବଚନେ,
ଅଭ୍ୟର୍ଥନା କଲେ ରାଜା ବରଜାତିଗଣେ ।
ବ୍ରହ୍ମା ବିଷ୍ଣୁ ଶିବ ଦିଗପାଳ ଦିବାକର—
ଯାହାଙ୍କୁ ବିଦିତ ପ୍ରଭୁ ପ୍ରଭାବ ସକଳ,
କପଟେ ସେମାନେ ବିପ୍ର ବେଶେ ଏ ଚରିତ,
ଦେଖି ସୁଖ ଲଭି ହୋଇଥାନ୍ତି ହରଷିତ ।
ଦେବ ସମ ମଣି ତାଙ୍କୁ ପୂଜ ନରପତି,
ନ ଚିହ୍ନି ନ ଜାଣି ଯୋଗ୍ୟ ଆସନ ଦିଅନ୍ତି । ୧୭୨୪

କାହାକୁ ଚାହାଁନ୍ତି କଏ ସର୍ବେ ପ୍ରୀତି ଭରେ,
ନିଜକୁ ଅଛନ୍ତି ଭୁଲି, ଉତ୍ସାହ ଅନ୍ତରେ ।
ସୁଖକନ୍ଦ ବର ଶୋଭା ଦେଖି ବେଦ ଦଳ,
ଅଶେଷ ଆନନ୍ଦ ରସେ ହୋଇଛନ୍ତି ଭୋଳ ।
ସର୍ବାଙ୍କ ଶ୍ରୀରାମ ଚାହିଁ ଦେବତା ସକଳେ,
ପୂଜି ମନେ ଦେଲେ ସ୍ଥାନ ହୃଦୟ କମଳେ ।
ସୁଶୀଳ ସ୍ୱଭାବ ଦେଖି ପ୍ରଭୁଙ୍କର ସୁରେ,
ପ୍ରୀତ ପ୍ରମୋଦିତ ହେଲେ ନିଜ ଅନ୍ତଃପୁରେ । ୧୭୨୫

ଶ୍ରୀରାମ ଶ୍ରୀମୁଖ-ଶଶି ଛବି ମନୋହର,
ପାନ କରେ ସଭିଙ୍କର ନୟନ-ଚକୋର ।
କାହାର ପୁଲକ ପ୍ରୀତି କିଛି ନ କମଇ,
ପୂର୍ଣ୍ଣିତା ସଭିଙ୍କ ହୃଦ ସ୍ଥଳେ ବିରାଜଇ । ୧୭୨୬

ବଶିଷ୍ଠ ମହର୍ଷି ବେଳ ଦେଖି ଡକାଇଲେ,
ଶୁଣି ଶତାନନ୍ଦ ତହିଁ ଆନନ୍ଦେ ଆସିଲେ ।
କହିଲେ ସେ, "ରାଜକନ୍ୟା ବେଗି ଏଥି ଆଣ",
ଗଲେ ଶତାନନ୍ଦ ପାଇ ମୁନି ଆଜ୍ଞାମାନ । ୧୭୨୭

ପୁରୋହିତଙ୍କର କଥା ଶୁଣି ରାଣୀଗଣ,
ସଖୀଙ୍କ ସହିତେ ହେଲେ ଅଶେଷ ପ୍ରସନ୍ନ ।
ବିପ୍ର-ବଧୂ କୁଳ ବୃଦ୍ଧା ସଭିଙ୍କୁ ଡାକିଲେ,
ଆଚରି କୁଳର ରୀତି ମଙ୍ଗଳ ଗାଇଲେ । ୧୭୨୮

ନାରୀ ବେଶେ ଆସିଥିଲେ ଯେତେ ସୁର ବାମା,
ସକଳେ ସୁନ୍ଦରୀ ପୁଣି ସ୍ୱାଭାବିକ ଶ୍ୟାମା ।
ତାଙ୍କୁ ଦେଖି ଖୁସି ହେଲେ ଅନ୍ୟ ନାରୀଗଣ,
ନ ଚିହ୍ନି ମଣିଲେ ସତେ ଆତ୍ମୀୟ ସ୍ୱଜନ । ୧୭୨୯

ରମା ଉମା ସରସ୍ୱତୀ ସମ ତାଙ୍କୁ ଜାଣି,
ସମ୍ମାନ ଦଅନ୍ତି ବାରମ୍ବାର ପାଟରାଣୀ ।

ସୀତାଙ୍କ ଶୃଙ୍ଗାର ସାରି ସଜନୀ ନିକରେ,
ହର୍ଷ ଭରେ ଗଲେ ଘେନି ମଣ୍ଡପ ଉପରେ । ୧୭୩୦

ଗଲେ ସଙ୍ଗେ ଘେନି ସୀତା ସଜନୀ ନିକର,
ସଜାଇ ମଙ୍ଗଳ ବେଶ ରାଜ ମନୋହର ।
ସମସ୍ତ ସୁନ୍ଦରୀ ଷୋଳ ଶୃଙ୍ଗାରେ ସଜ୍ଜିତ,
ମତ୍ତ-ଗଜ-ଗତି ତାଙ୍କ ଜାନକୀ ସହିତ ।
ମଧୁ କଳ ଗାନ ଶୁଣି ଭଜେ ମୁନି ଧ୍ୟାନ,
ଲଜ୍ଜିତ କୋକିଳ କାମ ଲଭେ ଅପମାନ ।
ବାଜଇ ନୂପୁର ରୁଣୁ ରୁଣୁ କଳ ତାନେ,
ସତେ ଅବା ରତି-ଜିତା ଅଟନ୍ତି ସେମାନେ । ୧୭୩୧

ସହଜେ ସୁନ୍ଦରୀ ସୀତା ସଖୀଙ୍କ ଗହଣେ,
ଛବି ପ୍ରତିମାଙ୍କ ମେଳେ ଶୋଭନ୍ତି ଯେସନେ—
ବର୍ଣ୍ଣ ମନୋହାରୀ-ଶୋଭା ହୋଇ ନାରୀ ବେଶ,
ଶୋଭନ୍ତି କି ସୀତା ବେଶେ ସେ ମିଥିଳା ଦେଶ । ୧୭୩୨

ସୀତାଙ୍କ ସୁଷମା ବର୍ଣ୍ଣି କହି ନ ହୁଅଇ,
ଲଘୁମତି ମମ, ଶୋଭା ଅସୀମ ଅଟଇ ।
ସକଳ ପ୍ରକାରେ ଶୁଚି ସୁଷମା-ସଦନ—,
ସୀତାଙ୍କୁ ଆସିବା ଦେଖି ବରଯାତ୍ରୀ ଗଣ;
ମନେ ମନେ କଲେ ସର୍ବେ ତାହାଙ୍କୁ ପ୍ରଣାମ,
ରାମଙ୍କୁ ନିରେଖି ପୁଣି ହେଲେ ପୂର୍ଣ୍ଣକାମ ।
ହରଷିତ ଦଶରଥ ପୁତ୍ରଙ୍କ ସହିତେ,
ହୃଦାନନ୍ଦ କହି ନୋହେ ବଚନେ କଥିତେ । ୧୭୩୩

ପ୍ରଣମି ଦେବତାଗଣ ବରଷନ୍ତି ଫୁଲ,
ଉଚ୍ଚାରନ୍ତି ଆଶୀର୍ବାଦ ଧ୍ୱନି ମୁନିକୁଳ ।
ଗୀତ ବାଦ୍ୟ ନାଦେ ହୁଏ ଅତି କୋଳାହଳ,
ଆନନ୍ଦରେ ପୁଲକିତ ପୁରି ନାରୀ ନର । ୧୭୩୪

ମଣ୍ଡପେ ଆସିଲେ ସୀତା ଏପରି ଭାବରେ,
ଋଷିଏ ଆନନ୍ଦ ମନେ ଶାନ୍ତି ପାଠ କଲେ ।
ଯେତ୍ହି ସମୟରେ କରି ବିଧି ବ୍ୟବହାର,
ବେନି କୁଳଗୁରୁ କଲେ ସକଳ ଆଗ୍ରହ । ୧୭୩୫

କୁଳଗୁରୁ କୁଳାଗ୍ରହ କରି ସମାପନ,
ପୂଜା କଲେ ଗୌରୀ ଗଣପତି ଗଜାନନ ।
ଉଭା ହୋଇ ଦେବେ ପୂଜା କରନ୍ତି ଗ୍ରହଣ,
ଆଶୀର୍ବାଦ କରି ସୁଖ କରନ୍ତି ଅର୍ଜନ । ୧୭୩୬

ମଧୁପର୍କ ଆଦି ଯେତେ ମଙ୍ଗଳ ଦରବ,
ଯେ କାଳେ ମୁନିଏ ଖବ ଲୋଡ଼ନ୍ତି ସରବ—
ସେ କାଳେ ସେବକେ ସୁନା ଥାଳ ଓ କଳସେ,
ସୁସଜ୍ଜିତ କରି ଉଭା ହୁଅନ୍ତି ରଭସେ । ୧୭୩୭

ସୂର୍ଯ୍ୟଦେବ ନିଜେ ନିଜ କୁଳ ରୀତି ନୀତି,
ପ୍ରୀତି ଭରେ ସବୁ କଥା ବତାଇ ଦିଅନ୍ତି ।
ଅତି ଆଦରରେ ସବୁ ହୁଏ ସମ୍ପାଦନ,
ଦେବଙ୍କୁ ପୂଜନ୍ତି ଏହି ରୂପେ ମୁନିଗଣ । ୧୭୩୮

କରାଇ ଦେବତା ପୂଜା ମୁନି ଋଷିଗଣ,
ବସିବାକୁ ଜାନକୀଙ୍କୁ ଦେଲେ ସିଂହାସନ ।
ପରସ୍ପର ପ୍ରତି ରାମ ସୀତାଙ୍କ ଗ୍ରହାଣୀ,
ପ୍ରୀତିଭରା; ଆନ କେ' ତା' ନ ପାରନ୍ତି ଜାଣି ।
ଯେଉଁ ବାଣୀ ମନ ବୁଦ୍ଧି ବାକ୍ୟ ଅଗୋଚର,
ତାହାକୁ କେସନେ ବର୍ଣ୍ଣିପାରେ ସ୍ଥୁଳ ନର ? ୧୭୩୯

ଅଗ୍ନିଦେବ ସଶରୀରେ ହୋମ ସମୟରେ,
ନେଉନ୍ତି ଆହୂତି ନିଜେ ଆନନ୍ଦ ମନରେ ।
ବିପ୍ର ବେଶ ଧରି ଯେତେ ସବୁ ବେଦଗଣ,
ବତାଇ ଦିଅନ୍ତି ବିଭା ବିଧି ପ୍ରକରଣ । ୧୭୪୦

ଜାନକୀ-ଜନନୀ ମିଥିଳେଶ ପାଟରାଣୀ,
ତାଙ୍କ କଥା କଏ ଅବା ପାରିବ ବଖାଣି ?
ସୁଯଶ ସୁକୃତ ସୁଖରାଶି ସୁନ୍ଦରତା,
ଏକାଠି ରଖିଛୁ ଯେହ୍ନେ ଜଗତ-କରତା । ୧୭୪୧

ବେଳ ଜାଣି ମୁନିଗଣେ ତାଙ୍କୁ ଡକାଇଲେ,
ସୁଭାଗିନୀ ସଖୀ ସଙ୍ଗେ ତାହାଙ୍କୁ ଆଣିଲେ ।
ଶୋଭନ୍ତ ଜନକ ବାମ ଭାଗେ ସୁନୟନା,
ହିମଗିରି ପାଶେ ଯେହ୍ନେ ଶୋଭୁଥାନ୍ତ ମେନା । ୧୭୪୨

ରାଜା ରାଣୀ ବେନି ହୋଇ ହରଷ ମାନସ,
ବାସ ପୂତ ଜଳେ ଭରି ସୁନାର କଳସ,
ହାତେ ଧରି ପୁଣି ମଣି ଥାଳ ସରାଗରେ,
ରଖିଦେଲେ ନେଇ ରଘୁବରଙ୍କ ଆଗରେ । ୧୭୪୩

ପଢ଼ନ୍ତ ମୁନୀଶ ବେଦ ମଙ୍ଗଳ ବଚନ,
ଯଥାକାଳେ ବରଷିଲ ଆକାଶୁ ସୁମନ ।
ବରକୁ ନିରେଖି ରାଜ ଦମ୍ପତି ଆଦରେ,
ପୁଣ୍ୟ-ପାଦ ପଖାଳନ୍ତି ପ୍ରୀତି ଉଲ୍ଲାସରେ । ୧୭୪୪

ଶ୍ରୀରାମଙ୍କ ପଦ୍ମ-ପାଦ ପଖାଳିବା ବେଳେ,
ଶରୀରେ ପୁଲକାବଳି ଜାତ ପ୍ରୀତି ଭରେ ।
ନିଷାଣ ସଙ୍ଗୀତ ଗାନେ ଆକାଶ ନଗରେ,
ଉଛୁଳଇ ଧ୍ୱନି ପ୍ରତିଧ୍ୱନି ନିରନ୍ତରେ ।
କାମାରି-ହୃଦୟ-ସରେ ଯେ ପଦ କମଳ,
ପାଉଥାଏ ଅପରୂପ ଶୋଭା ନିରନ୍ତର;
ଯାହାକୁ ସ୍ମରିଲେ ଚିତ୍ତେ ନିର୍ମଳତା ଜାତ,
ନିମିଷକେ ଅପସରେ କଳି ପାପ ତାପ;
ଯା ପରଶେ ଗଉତମ ପାତକିନୀ ନାରୀ,
ଲଭିଲେ ପରମ ଗତି ସୁଖ ଅସୁମାରି;

ଯାର ପଦାମୃତ ଶମ୍ଭୁ ଶିରେ ମନ୍ଦାକିନୀ,
ଯାହା ପବିତତା ସୀମା ବୋଲି ବେଦେ ଗଣି;
ମନକୁ ମଧୂପ କରି ଯୋଗୀ ମୁନି ଜନ,
ଯେଉଁ ପାଦ-ପଦ୍ମେ ନିତ୍ୟ କରନ୍ତି ସେବନ;
ସେ ପଦ ଧୁଅନ୍ତି ଏବେ ସୁଭଗ ଜନକ,
ଦେଖି ସର୍ବେ ଜୟଧ୍ୱନି କଲେ ସପୁଲକ । ୧୭୪୫

ବେନି କୁଳଗୁରୁ ବାନ୍ଧି ବରକନ୍ୟା କର,
ଉଚ୍ଚାରିଲେ ଶାଖାବଂଶ, ହେଲି ବିଭାଘର ।
ଦେଖି ତା' ବ୍ରହ୍ମାଦି ଦେବତାଏ ମୁନି ଜନେ,
ହୋଇଲେ ଆନନ୍ଦେ ପୂର୍ଣ୍ଣ ସେ ଶୁଭ ଲଗନେ । ୧୭୪୬

ନୃପତି ଦମ୍ପତି ଦେଖି ସୁଖଧାମ-ବର,
ପୁଲକିତ ହେଲି ତନୁ, ପ୍ରଫୁଲ୍ଲ ଅନ୍ତର ।
ଲୋକାଚାର ପୁଣି ବେଦ ବିହିତ ବିଧାନ—
ଅନୁସାରେ ନୃପ-ଭୂଷା କଲେ କନ୍ୟା ଦାନ । ୧୭୪୭

ହିମାଦ୍ରି ଗୌରୀଙ୍କୁ ଦେଲେ ଯେସନେ ମହେଶ୍ୱରେ,
ମହୋଦଧି କମଳାକୁ ଦେଲେ ବିଷ୍ଣୁ କରେ ।
ରାମଙ୍କୁ ଅର୍ପିଲେ ସୀତା ଜନକ ତେସନେ,
ବ୍ୟାପିଲି ବିମଳ ଯଶ କୀର୍ତ୍ତି ତ୍ରିଭୁବନେ । ୧୭୪୮

ବିନୟ କରନ୍ତେ କେସନେ ବିଦେହ ରାଜନ,
ବିଦେହ ତ କଲି ତାଙ୍କୁ ଶ୍ୟାମ ଅପଘନ ।
ହୋମ ଶେଷେ ବନ୍ଧାଗଲି ଗଇଁଠାଳ ବାସ,
ବରକନ୍ୟା ପରିକ୍ରମା କଲେ ଚଉପାଶ । ୧୭୪୯

ହେଲି ଜୟଧ୍ୱନି ବନ୍ଦୀ ଧ୍ୱନି ବେଦ ଧ୍ୱନି,
ସୁମଙ୍ଗଳ ଗାନ ପୁଣି ନିଷାଣର ଧ୍ୱନି ।
ଶୁଣି ତା' ଚତୁର ଦେବଗଣେ ହେଲେ ପ୍ରୀତ,
ବରଷିଲେ କଳ୍ପତରୁ-ପୁଷ୍ପ ସୁରଭିତ । ୧୭୫୦

ବରକନ୍ୟା ପରିକ୍ରମା ଅତି ମନୋହର,
ଦେଖି ବେନି ନେତ୍ର ଲଭେ ମଣ୍ଡଳୀ ସକଳ ।
ମନୋହର ଯୋଡ଼ି ଶୋଭା ବର୍ଣ୍ଣି ନ ହୁଅଇ,
ଯେ କିଛି ଉପମା ଦିଏ ନିକୃଷ୍ଟ ଲାଗଇ । ୧୭୫୧

ପ୍ରାସାଦର ମଣିମୟ ସ୍ତମ୍ଭ ଅଭ୍ୟନ୍ତରେ,
ଶ୍ରୀରାମ ସୀତାଙ୍କ ପ୍ରତିବିମ୍ବ ପଡ଼ି ଝଳେ ।
ମନେହୁଏ ବହୁ ରୂପ ଧରି କାମ ରତି,
ଶ୍ରୀରାମଙ୍କ ଅନୁପମ ବିବାହ ଦେଖନ୍ତି । ୧୭୫୨

ଦର୍ଶନ ଲାଳସା ପୁଣି ସଙ୍କୋଚ ଅପାର,
ଲୁଚନ୍ତି ପ୍ରକଟ ହୋଇ ତେଣୁ ବାରମ୍ବାର ।
ପ୍ରେମେ ମଗ୍ନ ହୋଇଗଲେ ଦର୍ଶକ ମଣ୍ଡଳୀ,
ନିଜକୁ ଭୁଲିଲେ ସର୍ବେ ଜନକଙ୍କ ଭଳି । ୧୭୫୩

ପରିକ୍ରମା କରାଇଲେ ହର୍ଷେ ମୁନିଗଣ,
ପ୍ରାପ୍ୟ ଲଭି ସବୁ ରୀତି କଲେ ସମ୍ପାଦନ ।
ସିନ୍ଦୂର ଦିଅନ୍ତି ରାମ ଜାନକୀ ମସ୍ତକେ,
ବର୍ଣ୍ଣି ନ ହୁଅଇ ସେହି ଶୋଭା କେଉଁ ମତେ । ୧୭୫୪

ଅରୁଣ ପରାଗେ ଭରି କର-ପଦ୍ମ ବଳି,
ସୁଧାଲୋଭେ ଚନ୍ଦ୍ରମାକୁ ଭୂଷଇ କି ଅହି ?
ପରେ ଆଦେଶିଲେ ଯେବେ ମହର୍ଷି ବଶିଷ୍ଠ,
ବରବଧୂ ଏକାସନେ ହେଲେ ଉପବିଷ୍ଟ । ୧୭୫୫

ବସିଲେ ଶ୍ରୀରାମ ସୀତା ଲଭି ଦିବ୍ୟାସନ,
ଦେଖି ଦଶରଥ ହେଲେ ପୁଲକିତ ମନ ।
ନିଜ ପୁଣ୍ୟ-କଳ୍ପଦ୍ରୁମେ ସତେ ନୂଆ ଫଳ,
ଫଳିଲା କି, ଦେଖି ହେଲେ ଆନନ୍ଦ ବିହ୍ୱଳ ।
ଉତ୍ସାହରେ ପୂରିଗଲା ଚଉଦ ଭୁବନ,
ରାମ ସୀତା ବିଭା ସର୍ବେ କରିଲେ ଗାୟନ ।

ରଚନା ଗୋଟିଏ ମାତ୍ର ମଙ୍ଗଳ ବିଶେଷ,
ଆରମ୍ଭି ଏ କଥା କେହ୍ନେ କରି ହେବ ଶେଷ । ୧୭୫୬

ମାଣ୍ଡବୀ ଉର୍ମିଳା ଶ୍ରୁତକୀର୍ତ୍ତି ରାଜକନ୍ୟା,
ବିବାହ ଉତ୍ସବେ ସର୍ବେ ପୁଲକର ବନ୍ୟା—
ବିଶ୍ୱ ଦ୍ରବ୍ୟେ ସାଜ ତାଙ୍କୁ ନବବଧୂ ବେଶେ,
ଆଣିଲେ ମଣ୍ଡପେ ରାଜା ବଶିଷ୍ଠ ଆଦେଶେ । ୧୭୫୭

କୁଶଧ୍ୱଜ ଜ୍ୟେଷ୍ଠକନ୍ୟା ମାଣ୍ଡବୀ କୁମାରୀ,
ଗୁଣଶୀଳ ସୁଖ ଶୋଭା ସତେ ମୂର୍ତ୍ତିଧାରୀ ।
ସପ୍ରେମେ ଜନକ କରି ଉଚିତ ବିଧାନ,
ପରଣ୍ୟେ ସ୍ପୃହେ କଲେ ଭରତଙ୍କୁ ଦାନ । ୧୭୫୮

କୁମାରୀ ଉର୍ମିଳା ସୀତା କନିଷ୍ଠା ଭଗିନୀ,
ସୁନ୍ଦରୀଗଣଙ୍କ ମଧ୍ୟେ ଯେହୁ ଶିରୋମଣି,
ତାହାଙ୍କୁ ଲକ୍ଷ୍ମଣ ସାଥେ ବିବାହ ସମ୍ପନ୍ନ,
ସସମ୍ମାନ ସହ କଲେ ଜନକ ରାଜନ । ୧୭୫୯

ଯାହା ନାମ ଶ୍ରୁତକୀର୍ତ୍ତି ସୁଶ୍ରୀ ସୁଲୋଚନା,
ସର୍ବ ଗୁଣାକାର ରୂପ ସୁଶୀଳ ସମ୍ପନ୍ନା;
ଶତ୍ରୁଘ୍ନ ସହିତେ ତାଙ୍କୁ କରାଇଲେ ବିଭା,
ପ୍ରତି ଯୁଗ୍ମ ମନୋହର ବିଧିକୃତ କିବା ? ୧୭୬୦

ଅନୁରୂପ ବରବଧୂ ଦେଖି ପରସ୍ପରେ,
ସସଙ୍କୋଚ ପ୍ରୀତିଲାଭ କରନ୍ତି ଅନ୍ତରେ ।
ସର୍ବେ ଶୋଭା ପ୍ରଶଂସନ୍ତି ବରଷନ୍ତି, ସୁରେ
ଆନନ୍ଦେ ସୁମନ ରାଶି, ଉତ୍ସାହ ଉଛୁଳେ ।
ବରାଙ୍ଗୀ ବରଙ୍କ ସାଥେ ଏକ ମଣ୍ଡପରେ,
ବିରାଜନ୍ତି—ଏହିଭଳି ଆସଇ ଅନ୍ତରେ—
ଜୀବ ହୃଦସ୍ଥିତ ଚାରି ଅବସ୍ଥା ଯେପରି,
ଜାଗ୍ରତ, ସୁଷୁପ୍ତି ସ୍ୱପ୍ନ ତୁରୀୟ ସୁନ୍ଦରୀ ।

ନିଜ ନିଜ ଗୃହ ସ୍ୱାମୀ ସବୁ ବିରାଜିତ,
ଯେ ବିଶ୍ୱ, ତୈଜସ, ପ୍ରାଜ୍ଞ, ବ୍ରହ୍ମ ସୁବିଦିତ । ୧୭୬୧

ପୁତ୍ରଙ୍କ ସହିତେ ଦେଖି ପୁତ୍ର-ବଧୂଗଣ,
ପ୍ରମୋଦିତ ହେଲେ ହୃଦେ ଅଯୋଧ୍ୟା ରାଜନ ।
ସତେ ଅବା *ଚାରି କ୍ରିୟା ସାଥେ ଫଳ ଚାରି,
ପାଇ ଯାଇଛନ୍ତି ଦଶରଥ ଦଣ୍ଡଧାରୀ । ୧୭୬୨

ଶ୍ରୀରାମଙ୍କ ବିଭା ହେଲା ଯେଉଁ ପରକାରେ,
ହେଲା କୁମାରଙ୍କ ବିଭା ସେହି ଅନୁସାରେ ।
ଭୂରି ଯଉତୁକ କଥା କହି ନ ହୁଅଇ,
ନାନା ମଣି କାଞ୍ଚନରେ ମଣ୍ଡପ ଭରଇ । ୧୭୬୩

କମ୍ବଳ ବସନ ପାଟ ଦୁକୂଳ ଅପାର,
ଅତି ମୂଲ୍ୟବାନ ପୁଣି ଅନେକ ପ୍ରକାର ।
ଗଜ ବାଜି ରଥ ଦାସ ଦାସୀ ଅପ୍ରମିତ,
କାମଧେନୁ ସମ ବହୁ ଧେନୁ ତା' ସହିତ । ୧୭୬୪

ଦ୍ରବ୍ୟ ଅସୁମାରି ଲେଖା ହୋଇ ନ ପାରଇ,
ଯେ ଦେଖିଛି, ସେ ଜାଣିଛି, କହି ନ ହୁଅଇ ।
ଲାଳସା କରନ୍ତି ଦେଖି ତାହା ଲୋକପାଳେ,
ନେଲେ ଅଯୋଧ୍ୟା ନୃପ ସେ ସୁଖ ସମ୍ଭାରେ । ୧୭୬୫

ଯେ ଯାହା ମାଗିଲା ଦେଇ ମାଗନ୍ତା-ଲୋକଙ୍କୁ,
ଅବଶିଷ୍ଟ ନେଲେ ରାଜା ବର-ନିବାସକୁ ।
କରଯୋଡ଼ି ସସମ୍ମାନେ ମିଥିଳା ରାଜନ,
କହିଲେ ଏ ବରଦଳେ କୋମଳ ବଚନ । ୧୭୬୬

ଆଦର ବିନୟ ଦାନ ବଡ଼ାଇ ପୂର୍ବକ,
ସମ୍ମାନିତ କରି ବରଜାତଙ୍କୁ ଜନକ,

---

*କ୍ରିୟା=ଯଜ୍ଞ କ୍ରିୟା, ଶ୍ରଦ୍ଧା କ୍ରିୟା, ଯୋଗ କ୍ରିୟା ଓ ଜ୍ଞାନ କ୍ରିୟା ।
ଚାରିଫଳ=ଧର୍ମ ଅର୍ଥ କାମ ମୋକ୍ଷ ।

ପ୍ରେମ ଗଦଗଦେ ପୂଜି ମୁନିଙ୍କ ଚରଣ,
ଦେବତା ମନାସି ରାଜା କହିଲେ ଏମନ— । ୧୭୬୭

"ଦେବତା ଓ ସାଧୁଗଣ ସଦା ଭାବଗ୍ରାହୀ,
ତାଙ୍କୁ ବସ୍ତୁ ତୋଷି କିଏ ପାରିଲାଣି କାହିଁ ?
ଅଞ୍ଜୁଳିଏ ପାଣି ଦେଇ ଅନନ୍ତ ସାଗରେ,
କେ ତୋଷି ପାରିଛି ତାଙ୍କୁ କହ ଭଲ ଥରେ ?" ୧୭୬୮

ଭାଇ ସାଥେ ଯୋଡ଼ି କର ମିଥିଳା ରାଜନ,
କହିଲେ ପୀରିତି ଭରା ମଧୁର ବଚନ—
"ହେ ଅଯୋଧ୍ୟା ନରପତି ଉଦାର ମହାନ,
ତୁମ ସଙ୍ଗେ ବନ୍ଧୁ ବାନ୍ଧି ଧନ୍ୟ ଆମେ ଜାଣ ।
ଏ ସାଜ ସମାଜ ଆଉ ଏ ରାଜପାଟକୁ,
ବିନା ମୂଲ୍ୟେ ନେଇ ଭାବ ସେବକ ଆମକୁ । ୧୭୬୯

ଆମ ଏ କନ୍ୟାଙ୍କୁ ପରିଚାରିକା ବିଚାରି,
କରୁଣା ପୂର୍ବକ ପାଳ ଆହେ ଦଣ୍ଡଧାରୀ ।
ଆପଣଙ୍କୁ ଡାକି ଏଠି ବିବାହ ସକାଶେ,
ଧୃଷ୍ଟତା ଅର୍ଜିଛୁ କ୍ଷମା କର ତବ ଦାସେ ।" ୧୭୭୦

ଭାନୁ-କୁଳ-ଭୂଷା-ଦଶରଥ ନରରାଣ,
ଜନକଙ୍କୁ କଲେ ଯୋଗ୍ୟ ଆଦର ସମ୍ମାନ ।
କହି ନୁହେଁ ପରସ୍ପର ବିନତି ବେଭାର,
ଯୁଗଳ ହୃଦୟ ଭରେ ପ୍ରେମେ ବାର ବାର । ୧୭୭୧

ବର-ନିବାସକୁ ଗଲେ ଅଯୋଧ୍ୟା ରାଜନ,
ଆକାଶୁଁ ବର୍ଷିଲେ ଦେବେ ସୁବାସ ସୁମନ ।
ବେଦ ଧ୍ୱନି ଜୟ ଧ୍ୱନି ନିଶାଣର ଧ୍ୱନି—
ଉଦ୍‌ଘୋଷିତ କରୁଥିଲା ଆକାଶ ଅବନୀ ।
ଚଉଦିଗେ କଉତୁକ ଆନନ୍ଦ ଲହରୀ,
ଭବନେ ଭବନେ ସୁଖ ଶାନ୍ତି ଗଲା ଭରି ।

ମୁନୀଶ ଆଦେଶେ ବରକନ୍ୟାଙ୍କୁ ସତ୍ୱରେ,
କେଳି ଗୃହେ ଘେନିଗଲେ ସଜନୀ ନିକରେ । ୧୭୭୨

ଜାନକୀ ଥରକୁଥର ଶ୍ରୀରାମଙ୍କ ମୁଖ,
ସସଙ୍କୋଚେ ଚାହିଁ କେତେ ଲଭୁଥିଲେ ସୁଖ ।
ମନ କିନ୍ତୁ ସଙ୍କୁଚିତ ନୋହୁଥିଲା ଜମା,
ପିଉଥିଲା ରଘୁନାଥ ଶ୍ରୀମୁଖ-ସୁଷମା ।
ଚିରନ୍ତ ପିଆସୀ ନେତ୍ର କରେ କି ହରଣ,
ମନୋହର ମୀନଗଣ ଛବି ଅନୁକ୍ଷଣ !! ୧୭୭୩

ମାସ ପାରାୟଣ, ଏକାଦଶ ବିଶ୍ରାମ ।

# ବାର

ଶ୍ରୀରାମ ଶ୍ୟାମଳ ତନୁ ସ୍ୱଭାବେ ସୁନ୍ଦର,
କୋଟି କନ୍ଦର୍ପଙ୍କୁ ଲଜ୍ଜା ଦିଏ ନିରନ୍ତର ।
ଅଳତା ରଞ୍ଜିତ ମୃଦୁ ଚରଣ ଯୁଗଳ,
ସଦା ଲକ୍ଷିଥାଏ ମୁନି-ମାନସ-ଭ୍ରମର । ୧୭୭୪

ପରମ ପବିତ୍ର ପୀତ ରମଣୀୟ ଧୋତି,
ହରଇ କି ବାଳରବି ବିଜୁଳିର ଜ୍ୟୋତି ।
କଟୀରେ କିଙ୍କିଣୀ କଟୀସୂତ୍ର ମନୋରମ,
ସୁବିଶାଳ ଭୁଜେ ଶୋଭେ ଭୂଷଣ ଉତ୍ତମ । ୧୭୭୫

ପୀତ ଯଜ୍ଞ-ଉପବୀତ ଶୋଭା କରେ ସୃଷ୍ଟି,
ହସ୍ତ ମୃଦୁ ଅଙ୍ଗୁଳୀୟ ହରି ନିଏ ଦୃଷ୍ଟି ।
ସଜ୍ଜିତ ବିବାହ ଭୂଷା ବିବିଧ ପ୍ରକାରେ,
ସୁବିଶାଳ ବକ୍ଷ ଶୋଭେ ନାନା ଅଳଙ୍କାରେ । ୧୭୭୬

ପୀତ ଉତ୍ତରୀୟ ଶୋଭେ ପଇତା ପରାୟେ,
ବେନି ପଣତରେ ମଣି ମୁକ୍ତା ଶୋଭା ପାଏ ।
କମଳ-ନୟନ କର୍ଣ୍ଣେ ରୁଚିର କୁଣ୍ଡଳ,
ଶୋଭାର ସଦନ ସତେ ବଦନ ମଣ୍ଡଳ । ୧୭୭୭

ସୁନ୍ଦର ଭ୍ରୂକୁଟୀ ସରୁ ନାସିକା ଶୋଭନ,
ଲଲାଟ ତିଳକ ଅବା ଶୋଭା ନିକେତନ ।
ମସ୍ତକେ ମୁକୁଟ ମଣି ମୁକୁତା ଖଚିତ,
ସୁମଙ୍ଗଳମୟ ଦିବ୍ୟ ଶୋଭା ବିମଣ୍ଡିତ । ୧୭୭୮

ମୁକୁଟେ ଖଚିତ କେତେ ମୂଲ୍ୟବାନ ମଣି,
ଶରୀର ସୁଷମା ଚିତ୍ତ ମନ ନିଏ କଣି ।
ନଗରବାସିନୀ ନାରୀ ଦେବାଙ୍ଗନାଗଣ,
ପୁଲକିତ ନେତ୍ରେ କରି ବରଙ୍କୁ ଦର୍ଶନ ।
ତାଙ୍କର ବିପାକ ଦୁଃଖ ନିଜେ ନେବା ପାଇଁ,
ଚଳେ ଫିଙ୍ଗୁଥିଲେ ତୃଣ ମସ୍ତକରୁ ଛୁଣ୍ଡାଇ ।
ନାନା ଅଳଙ୍କାର ମଣି ବାସ ପରିଧାନ,
ଉପହାର ଦେଇ କଲେ ଆରତି ବିଧାନ ।
ସାରଥି ମାଗଧ ଭାଟ ଆଦି ବନ୍ଦୀଗଣ,
ଉଚ୍ଚସ୍ୱରେ କରୁଥାନ୍ତି ସୁଯଶ କୀର୍ତ୍ତନ । ୧୭୭୯

ଶୁଭ ଗୀତ ଗାଇ ସୁବାସିନୀ ନାରୀଗଣେ,
ବରକନ୍ୟାଗଣେ ନେଲେ କୋହ୍ଲ ନିକେତନେ ।
ଲୌକିକାଚାର ରୀତି ନୀତି ହେଲା ସମାପନ,
ଆନନ୍ଦରେ ଉଚ୍ଛୁଳିଲା ଜନକ ଭବନ ।
ପରସ୍ପର ଗ୍ରାସ ଦାନ-ବିଧି ସୁଖପ୍ରଦା,
କହିଲେ ରାମଙ୍କୁ ଗୌରୀ, ସୀତାଙ୍କୁ ଶାରଦା ।
ରାମ-ସୀତାଙ୍କର ଶୋଭା ଦେଖି ସର୍ବଲୋକ,
ସେ ନଗରେ ଜନ୍ମ ହେବା ମଣିଲେ ସାର୍ଥକ । ୧୭୮୦

ସୌନ୍ଦର୍ଯ୍ୟ ନିଧାନ ରାମଚନ୍ଦ୍ରଙ୍କ ମୂରତି,
ନିଜ ହସ୍ତ ମଣି ମଧ୍ୟେ ନିରେଖି ଜାନକୀ,
ଭୁଜ-ବଲ୍ଲୀରୁ ନେତ୍ର ନ ନିଅନ୍ତି କାଢ଼ି,
ବିରହ ଆଶଙ୍କା ମନେ ସତତ ଜାଗଇ ।
ସେହି ସମୟର ହାସ କୌତୁକ ବିନୋଦ,
ଭାଷାରେ କହିବ କିଏ ବିବିଧ ପ୍ରମୋଦ ?
ଯାହା ହୃଦେ ଅନୁଭବ ସଖୀଏ କେବଳ,
ବରବାସେ ନେଲେ ବରକନ୍ୟାଙ୍କୁ ଚଞ୍ଚଳ । ୧୭୮୧

ନଭେ ପୁରେ ଆଶୀର୍ବାଦ ବାଣୀ ଘନଘନ—
ଆୟୁଷ୍ମ ଲଭନ୍ତୁ ଚିର ଯୁଗଳ ରତନ ।

ସିଦ୍ଧ ଯୋଗୀରାଜ ମୁନି ଦେବତା ସକଳେ,
ଦୁନ୍ଦୁଭି ବଜାଇ ପୁଷ୍ପ ପକାନ୍ତି ଉପରେ ।
ରାମଙ୍କୁ ନିରେଖି ସର୍ବେ ଜୟ ଧ୍ୱନି କଲେ,
ଆନନ୍ଦ ମନରେ ଶେଷେ ନିଜ ଲୋକେ ଗଲେ । ୧୭୮୨

ପିତା ପାଶେ ଗଲେ ପୁଣି ବଧୂଙ୍କ ସହିତେ,
ଉଚ୍ଛୁଳିଲା ବରଯାତ୍ରୀ ନିବାସ ଭିତରେ ।
ସତେ କି ମଙ୍ଗଳ ଶୋଭା ପ୍ରମୋଦରେ ପୂରି,
ବରଯାତ୍ରୀ ବାସସ୍ଥଳୀ ପଡ଼ିଲା ଉଚ୍ଛୁଳି । ୧୭୮୩

ବିବିଧ ପ୍ରକାର ପୁଣି ରନ୍ଧା ହେଲା ପାକ,
ଆଣିଲେ ଡକାଇ ବରଜାତିଙ୍କୁ ଜନକ ।
ପାହାଡ଼ା ପଡ଼ିଲା ବସ୍ତ୍ର ଅନୁପମ ଅତି,
ଆସିଲେ ପୁତ୍ରଙ୍କ ସହ ଅଯୋଧ୍ୟା ନୃପତି । ୧୭୮୪

ଧୋଇଲେ ମିଥିଳାପତି ସଭିଙ୍କ ଚରଣ,
ନେଇ ବସାଇଲେ ଦେଇ ସୁଯୋଗ୍ୟ ଆସନ ।
ଧୋଇ ଦେଲେ ନୃପ ଦଶରଥଙ୍କ ପୟର,
ସେ ସ୍ନେହ ମର୍ଯ୍ୟାଦାଶୀଳ ବର୍ଣ୍ଣିବା ଦୁଷ୍କର । ୧୭୮୫

ହର-ହୃଦ-ପଦ୍ମେ ଗୁପ୍ତ ଯେହୁ ଅବିରଳ,
ଧୋଇଲେ ନୃପ ସେ ରାମ ଚରଣ-କମଳ ।
ରାମ ସମ ଜାଣି ତିନି ଭାଇଙ୍କୁ ରାଜନ,
ସ୍ୱକରେ ଧୋଇଲେ ପୁଣି ସଭିଙ୍କ ଚରଣ । ୧୭୮୬

ଉଚିତ ଆସନ ଦେଇ ସଭିଙ୍କୁ ନୃପତି,
ସୁଆରମାନଙ୍କୁ ତହିଁ ଡାକଲେ ତ୍ୱରିତ ।
ଲଗାଇଲେ ପତ୍ର ସର୍ବେ ଆଦର ସହିତ,
ପତ୍ର ମଣିମୟ ସ୍ୱର୍ଣ୍ଣ ପିଞ୍ଛରେ ନିର୍ମିତ । ୧୭୮୭

ଚତୁର ବିନୟୀ ଯେହି ସୂପକାରଗଣ,
କ୍ଷଣକେ ପରଶି ଗଲେ ଦିବ୍ୟ ଡାଲି ଅନ୍ନ ।

ପୁଣି ଗାଈ ଘୃତ ପୂତ ସ୍ୱାଦିଷ୍ଟ ସୁନ୍ଦର,
ବିବିଧ ପଦାର୍ଥ ହୋଇ ହରଷ ଅନ୍ତର । ୧୬୮୮

ପଞ୍ଚଗ୍ରାସ କରି ସର୍ବେ କରିଲେ ଭୋଜନ,
ଗାଳି ଗୀତ ଶୁଣି ପୁଣି ହୁଅନ୍ତି ପ୍ରସନ୍ନ ।
ବିବିଧ ବ୍ୟଞ୍ଜନ ପରିବେଷଣ ହୁଅଇ,
ଅମୃତ ସଦୃଶ ସବୁ ବର୍ଣ୍ଣି କେ ପାରଇ ? ୧୬୮୯

ଲାଗିଲେ ପରଶିବାକୁ ଚତୁର ସୁଆର,
ବିବିଧ ବ୍ୟଞ୍ଜନ, ନାମ କେ ଜାଣେ କାହାର ?
ଚତୁର୍ବିଧ ପାକ ଦ୍ରବ୍ୟ ଶାସ୍ତ୍ର ସୁବିଦିତ,
ପ୍ରତ୍ୟେକ ପ୍ରକାର ଅଟେ ବର୍ଣ୍ଣନା ଅଗଣିତ । ୧୬୯୦

ଷଡ଼ରସ ନାନା ବିଧ ରୁଚିର ବ୍ୟଞ୍ଜନ,
ଏକ ଏକ ରସ ନାନା ପ୍ରକାରେ ରନ୍ଧନ ।
ସଖୀଙ୍କ ମଧୁର ଗାଳି ଭୋଜନ କାଳରେ,
ନାରୀ ପୁରୁଷଙ୍କ ନାମ ଉଚ୍ଚାରି ମୁଖରେ— । ୧୬୯୧

ସମୟାନୁକୂଳ ତାହା ମିଠା ଲାଗେ ଅତି,
ସମାଜ ସହିତ ଶୁଣି ହସନ୍ତି ନୃପତି ।
ଏହି ପରକାରେ ସର୍ବେ ସାରିଲେ ଭୋଜନ,
ଅତି ଆଦରରେ ପୁଣି କଲେ ଆଚମନ । ୧୬୯୨

ଅଯୋଧ୍ୟାପତିଙ୍କୁ ସସମାଜେ ଦେଇ ପାନ,
ମିଥିଳେଶ କଲେ ପୂଜା ଆଦର ସମ୍ମାନ ।
ନରେଶ ମଣ୍ଡଳମଣି ରାଜା ଦଶରଥ,
ଗଲେ ବରବାସେ ହୋଇ ଅଶେଷ ହରଷ । ୧୬୯୩

ମିଥିଳା ନଗରେ ନିତ୍ୟ ନୂତନ ଉତ୍ସବ,
ଦିବସ ରଜନୀ ବିତିଯାଏ ଯେସନ୍ତେ ଲବ ।
ବଡ଼ ଭୋରୁ ଉଠି ଦଶରଥ ନୃପମଣି,
ଭାଟେ ଯେବେ କରୁଥିଲେ ଗୁଣ କୀର୍ତ୍ତି ଧ୍ୱନି । ୧୬୯୪

ପ୍ରଣାମ ପୂଜନ କରି ଯୋଡ଼ି ବେନି କର,
କହିଲେ ଅମୃତ ଭରି ବଚନ କୋମଳ—
"ଆହେ ମୁନିରାଜ ତବ ବହୁ କୃପା ଫଳେ,
ପୂର୍ଣ୍ଣକାମ ମୁହିଁ ଆଜ ସାରା ଭୂମଣ୍ଡଳେ । ୧୭୯୫

ଏବେ ହେ ଗୋସାଇଁ ଡାକ ସମସ୍ତ ବ୍ରାହ୍ମଣ,
ସୁସଜ୍ଜିତ ଧେନୁ ଦଳ କର ବିତରଣ ।"
ଏହା ଶୁଣି ଗୁରୁ କରି ରାଜାଙ୍କ ବଡ଼ାଇ,
ପୁଣି ପଠାଇଲେ ମୁନିବୃନ୍ଦଙ୍କୁ ଡକାଇ । ୧୭୯୬

ତାହାପରେ ବାମଦେବ ଦେବର୍ଷି ନାରଦ,
ମହର୍ଷି ବାଲ୍ମୀକି ଆଦି ତପସ୍ୱୀ ପୁଙ୍ଗବ,
ଜାବାଳି ଓ ବିଶ୍ୱାମିତ୍ର ଯେତେ ମୁନିବର,
ସେ ପୁରେ ପ୍ରବେଶ ହେଲେ ହୋଇ ଦଳ ଦଳ । ୧୭୯୭

ସଭିଙ୍କୁ ପ୍ରଣାମ କରି ଅଯୋଧ୍ୟା ରାଜନ,
ପୂଜି ପ୍ରେମେ ଦେଲେ ସର୍ବେ ସୁରୁଚିରୁ ଆସନ ।
କାମଧେନୁ ସମ ଶୀଳ ଶୋଭାରେ ଉତ୍ତମ,
ମଗାଇଲେ ଚତୁର୍ଲକ୍ଷ ଗାଭି ମନୋରମ । ୧୭୯୮

ସଜାଇ ସକଳ ବିଧି ସେହି ଧେନୁଦଳେ,
ଆନନ୍ଦେ ଅବନୀପତି ମୁନିଗଣେ ଦେଲେ ।
କହିଲେ ବିନମ୍ର ହୋଇ କୋମଳ ବଚନ,
ସଫଳ ହୋଇଲା ଆଜି ମୋର ଏ ଜୀବନ । ୧୭୯୯

ମୁନିଙ୍କ ଆଶିଷ ଲଭି ହର୍ଷେ ନୃପବର,
ଡକାଇଲେ ପ୍ରୀତି ଭରେ ଯାଚକ ନିକର ।
ଗଜ ବାଜି ରଥ ମଣି କନକ ବସନ,
ଦେଲେ ରୁଚି ଅନୁସାରେ ବୁଝି ତାଙ୍କ ମନ । ୧୮୦୦

ଫେରିଲେ ସକଳେ ଯଶ କୀର୍ତ୍ତି ଗାଇ ଗାଇ,
କହି ଜୟ ଜୟ ଜୟ ଭାନୁ-କୁଳ ସାଇଁ ।

ରାମ-ସୀତା ବିଭା ହେଲା ଏପରି ସମ୍ପନ୍ନ,
ବର୍ଣ୍ଣି ନ ପାରିବେ ତାହା ସହସ୍ର-ବଦନ । ୧୮୦୧

ବାରମ୍ବାର ବିଶ୍ୱାମିତ୍ର ପଦେ ନୋଇଁ ମଥା,
କହିଲେ ରାଜନ କୃତଜ୍ଞତା ଭରା କଥା—
"ମୁନିରାଜ ତବ କୃପାକଟାକ୍ଷ ପ୍ରସାଦେ,
ଏହି ସୁଖ ଶିରି ମୁହିଁ ଲଭିଛି ଆହ୍ଲାଦେ ।" ୧୮୦୨

ଜନକଙ୍କ ଶୀଳ ସ୍ନେହ ବିଭବ କରଣି,
ପ୍ରଶଂସା କରନ୍ତି ଦଶରଥ ନୃପମଣି ।
ପ୍ରତ୍ୟହ ସକାଳୁ ଉଠି ମାଗନ୍ତି ମେଲାଣି,
ପ୍ରେମେ ଅଟକାନ୍ତି ମିଥିଳେଶ ଜାଣି ଜାଣି । ୧୮୦୩

ନୂଆ ନୂଆ ଅନୁରାଗ ଅଧିକ ଆଦରେ,
ଅଭିନବ ଚର୍ଚ୍ଚା ନିତ୍ୟ ଅନେକ ଭାବରେ ।
ପୁରେ ଲୋକେ ନିତ୍ୟ ନବ ଉତ୍ସାହ ଆନନ୍ଦ,
ନୃପଙ୍କ ବିଦାୟ କା'ରେ ନ ଲାଗେ ପସନ୍ଦ । ୧୮୦୪

ବହୁତ ଦିବସ ହେଲା ଅତୀତ ଏପରି,
ବରଯାତ୍ରି ବନ୍ଧା ସ୍ନେହ-ରଜ୍ଜୁରେ ଯେପରି ।
ବିଶ୍ୱାମିତ୍ର ଶତାନନ୍ଦ ଏହା ପରେ ଯାଇ,
ଜନକ ରାଜାଙ୍କୁ କଥା କହିଲେ ବୁଝାଇ । ୧୮୦୫

ଏଯାଏଁ ମମତା ବଶେ ନ ଛୁଡ଼ିତ ଯେବେ,
ଦଶରଥଙ୍କୁ ତଥାପି ଆଜ୍ଞା ଦିଅ ଏବେ ।
"ହେଉ" କହି ନୃପ ମନ୍ତ୍ରୀଗଣେ ଡକାଇଲେ;
ଆସି ଜୟଜୀବ କହି ମଥା ସେ ନୋଇଁଲେ । ୧୮୦୬

ଯିବାକୁ ଗୃହାନ୍ତି ଏବେ ଅଯୋଧ୍ୟା ନରେଶ,
ରାଣୀହଂସ ପୁରେ ଦିଅ ଏ ବାର୍ତ୍ତା ବିଶେଷ ।
ଏହାଶୁଣି ମନ୍ତ୍ରୀ ବିପ୍ର ସଭାସଦ ନୃପ,
ଅଶେଷ ଭାବରେ ହେଲେ ପ୍ରେମେ ଅଭିଭୂତ । ୧୮୦୭

ଯିବେ ଚଳିଲ ବରଜାତ ଶୁଣି ପୁରଜନେ,
ପରସ୍ପର ଠାରୁ ବୁଝି କଥା ଦୁଃଖ ମନେ,
ଯିବା ସତ୍ୟ ଜାଣି ସର୍ବେ ହୋଇଲେ ବିଷଣ୍ଣ,
ସନ୍ଧ୍ୟାଗମେ ମଉଳନ୍ତି ଅବା ପଦ୍ମ-ବନ । ୧୮୦୮

ଆସିବା କାଳରେ ବରଜାତ ଯହିଁ ଯହିଁ,
ବାଟରେ ଅଟକ ଥିଲେ ପଠାଗଲା ତହିଁ;
ବିବିଧ ପ୍ରକାର ଫଳ ପକ୍ୱାନ୍ନ ଭୋଜନ-
ପଦାର୍ଥ, ସେ ସବୁ କରି ନ ହେବ ବର୍ଣ୍ଣନ । ୧୮୦୯

ଲଦି ବହୁ ବୃଷ ପୁଣି ଭାରୁଆ ଅନେକ,
ପଠାଇଲେ ଦ୍ରବ୍ୟ ସବୁ ଯାଥେ ମିଥିଳେଶ ।
ପଚିଶି ହଜାର ରଥ ଏକ ଲକ୍ଷ ବାଜି,
ଆପାଦ ମସ୍ତକ ନାନା ବିଭୂଷଣେ ସାଜି । ୧୮୧୦

ଦଶେକ ହଜାର ମତ୍ତହସ୍ତୀ ସୁସଜ୍ଜିତ,
ଯାହାଙ୍କୁ ଦିଗ୍‌ଗଜେ ଦେଖି ହୁଅନ୍ତି ଲଜ୍ଜିତ ।
ଗାଡ଼ ଗାଡ଼ ସୁନା ବସ୍ତ୍ର ରତ୍ନ ଧେନୁ ପଲ,
ଆବର ମଇଁଷି ବହୁ ଦେଲେ ନୃପବର । ୧୮୧୧

ଯୌତୁକ ଅପରିମିତ ଦେଲେ ମିଥିଳେଶ,
ଯାହାର ବର୍ଣ୍ଣନା କେବେ ହେବ ନାହିଁ ଶେଷ ।
ଦେଖି ଦେଖି ସେହି ସବୁ ଯୌତୁକ ସମ୍ପତ୍ତି,
ଲୋକପତିଙ୍କର ବିତ୍ତ ତୁଚ୍ଛ ଲାଗେ ଅତି । ୧୮୧୨

ଏସନ ପ୍ରକାରେ ରାଜା ସକଳ ସଜାଇ,
ବିବିଧ ପଦାର୍ଥ ଦେଲେ ଅଯୋଧ୍ୟା ପଠାଇ ।
ବରଜାତ ଯିବେ ଶୁଣି ଉଆସରେ ରାଣୀ,
ଦୁଃଖୀ ହେଲେ ମୀନ ସମ ଥିଲେ ଅଳ୍ପ ପାଣି । ୧୮୧୩

ସୀତାଙ୍କୁ ଥରକୁ ଥର କୋଳରେ ବସାଇ,
କଲ୍ୟାଣ କରନ୍ତି ସେହି ମଧ୍ୟ ଶିକ୍ଷା ଦେଇ ।

"ସତତ ହୁଅ ତୁ ସୀତା କାନ୍ତ ସୁହାଗିନୀ,
ଆମର ଆଶିଷେ ହେବୁ ଅହିସୁଲକ୍ଷିଣୀ । ୧୮୧୪

ଶାଶୁ ଓ ଶ୍ୱଶୁର ଗୁରୁ ସେବା କରୁଥିବୁ,
ପତି ମନ ଜାଣି ସଦା ଆଦେଶ ପାଳିବୁ ।"
ଅତି ସ୍ନେହ ଭରେ ସୁଚତୁରା ସଖୀଗଣେ,
ଶିଖାନ୍ତି ନାରୀର ଧର୍ମ କୋମଳ ବଚନେ । ୧୮୧୫

ସକଳ ପୁତ୍ରୀଙ୍କୁ ଅତି ଆଦରେ ବୁଝାଇ,
ବାର ବାର ରାଣୀ ନେଲେ ହୃଦୟେ ଲଗାଇ ।
ମାତାଏ ଥରକୁ ଥର ଭେଟି—ଭରି ଗ୍ରୀତି,
କହନ୍ତି ବିଧାତା କିଆଁ ରଚେ ନାରୀ ଜାତି ? ୧୮୧୬

ଭାନୁକୁଳ କେତୁ ରାମ ଏହି ଅବସରେ,
ଭାଇମାନଙ୍କର ସାଥେ ପ୍ରସନ୍ନ ମନରେ,
ଜନକ ମନ୍ଦିରେ ଗଲେ ଗୁରୁ ପଦ ଧ୍ୟାୟି,
ସମସ୍ତଙ୍କ ଠାରୁ ଏବେ ବିଦା ହେବା ପାଇଁ । ୧୮୧୭

ସ୍ୱଭାବ ସୁନ୍ଦର ଅତି ଏଇ ଚାରି ଭାଇ,
ଦେଖିବାକୁ ପୁର ନର ନାରୀ ଗଲେ ଧାଇଁ ।
କେ କହେ, ଯିବାକୁ ଇଚ୍ଛେ ଗୃହକୁ ଛନ୍ତି ଆଜ,
ବିଦାୟୀ ସାମଗ୍ରୀ ରାଜା ଦେଇଛନ୍ତି ସାଜ । ୧୮୧୮

ମନୋହର ରୂପ ଦେଖି ନୟନ ପୂରାଇ,
ସୁପ୍ରିୟ ଅତିଥି ରାଜପୁତ୍ର ଚାରି ଭାଇ ।
କିଏ ଜାଣେ କିଵା ତାଙ୍କୁ କେଉଁ ପୁଣ୍ୟ ଫଳେ,
ନେଇଥାଉଥି କରାଇଲା ଆଣି କୁତୂହଳେ । ୧୮୧୯

ଯେସନେ ମରଣୋନ୍ମୁଖୀ ଜୀବକୁ ଅମୃତ,
ଆଜନ୍ମ-କ୍ଷୁଧିତ ଜନେ ଯେସନେ କଳ୍ପବୃକ୍ଷ,
ନାରକୀ ଲଭଇ ଯେସନେ ଶ୍ରୀହରି ଚରଣ,
ତେସନେ ଆମର ପାଇଁ ତାଙ୍କ ଦରଶନ । ୧୮୨୦

ରାମ ରୂପ ଶୋଭା ହୃଦେ ଧର ନିରନ୍ତର,
ଆରେ ମନ-ସର୍ପ ତାଙ୍କ ରୂପେ ମଣି କର ।
ଏ ରୂପେ ସଭିଙ୍କୁ ଦେଇ ନୟନର ଫଳ,
ରାଜ ନଅରକୁ ଗଲେ କୁମାରେ ସକଳ । ୧୮୨୧

ନିରେଖି ସକଳେ ଶୋଭା-ସିନ୍ଧୁ ଭାଇଗଣେ,
ଆନନ୍ଦେ ଉଚ୍ଛୁଳେ ରାଣୀ-ହଂସପୁର କ୍ଷଣେ ।
ହରଷେ ଶାଶୁଏ ମିଳି କରନ୍ତି ଆଳତି,
ବୁକୁରେ ବୁକୁଏ ସ୍ନେହ ମମତା ଭରନ୍ତି । ୧୮୨୨

ରାମ ରୂପ ଛବି ଦେଖି ଅତି ଅନୁରାଗେ,
ପ୍ରେମବଶେ ଲୋଟନ୍ତି ସେ ଶ୍ରୀଚରଣ ଆଗେ ।
ନ ରହଇ ତଳେ ଲାଜ ବୁକେ ଭରି ପ୍ରୀତି,
ସହଜ ସ୍ନେହକୁ କିଏ ବର୍ଣ୍ଣିବ କେମିତି ? ୧୮୨୩

ଭାଇଙ୍କ ସହିତେ ତାଙ୍କୁ କରାଇଲେ ସ୍ନାନ,
ଭୁଞ୍ଜାଇଲେ ସ୍ନେହେ ଦ୍ରବ୍ୟ ଷଡ଼ରସମାନ ।
କହିଲେ ଶ୍ରୀରଘୁନାଥ ସୁସମୟ ଜାଣି,
ସ୍ନେହଶୀଳ ସବିନୟ ସସଙ୍କୋଚ ବାଣୀ— । ୧୮୨୪

"ଅଯୋଧ୍ୟାକୁ ଫେରିବାକୁ ଗୃହାନ୍ତି ନୃପତି,
ବିଦା ହେବା ପାଇଁ ତେଣୁ ପଠାଇ ଅଛନ୍ତି ।
ହେ ମାତା ପ୍ରସନ୍ନ ମନେ ଦିଅ ଅନୁମତି,
ନିଜର ବାଳକ ଜାଣି ସ୍ନେହ ଥିବ ରଖି ।" ୧୮୨୫
ଉଦାସ ନଅର, ଯେବେ ଏ କଥା ଶୁଣିଲେ,
ସ୍ନେହବଶେ ଶାଶୁ କିଛି କହି ନ ପାରିଲେ ।
କେବଳ କନ୍ୟାଙ୍କୁ ନେଇ ହୃଦେ ଲଗାଇଲେ,
ପତିଙ୍କୁ ସମର୍ପି ବହୁ ବିନୟେ କହିଲେ— । ୧୮୨୬

ରାମଙ୍କୁ ଅରପି ସୀତା ବିନୟେ ଜନନୀ,
କରଯୋଡ଼ ଜଣାଇଲେ, "ଆହେ ରଘୁମଣି ।

ତୁମେ ତ ସୁଜାଣ, ଜାଣ ସଭଙ୍କର ଗତି,
ପରିବାର ପୁରଜନେ ସୀତା ପ୍ରିୟ ଅତି ।
ମୋତେ ଓ ରାଜାଙ୍କୁ ସୀତା ଜୀବନ ସମାନ,
ହେ ପୁତ୍ର ହେ ତାତ ଏହା ତୁମେ ଭଲ ଜାଣ ।
ତୁଳସୀ-ପତି, ତା' ଶୀଳ ସ୍ନେହ ପ୍ରୀତି ଦେଖି,
ନିଜ ଦାସୀ କରି ତାକୁ ପାଖେ ରଖିବେଟି ? ୧୮୨୭

ତୁମେ ସୁଜ୍ଞ ଶିରୋମଣି ତୁମେ ପୂର୍ଣ୍ଣକାମ,
ଭକ୍ତ ଗୁଣଗ୍ରାହୀ ତୁମେ ରାମ ଅଭିରାମ ।
ଭକ୍ତ ଦୋଷ ବିନାଶକ ତୁମେ ଦୟାମୟ,
ରଘୁକୁଳ ଚନ୍ଦନ ହେ କରୁଣା-ନିଳୟ ।" ୧୮୨୮

ଏହା କହି ପାଦ ଧରି ରହିଗଲେ ରାଣୀ,
ପ୍ରେମପଙ୍କେ ଲିଖିଗଲା ସତେ ତାଙ୍କ ବାଣୀ ।
ଶୁଣି ଶାଶୁଙ୍କର ସ୍ନେହ-ସିକ୍ତ କଥାମାନ,
ଶ୍ରୀରାମ ଆଦରେ କଲେ ବହୁ ସନମାନ । ୧୮୨୯

ପ୍ରଣମି ଥରକୁ ଥର ଯୋଡ଼ି ବେନିକର,
ମାଗିଲେ ବିଦାୟ ତହୁଁ ରାମ ରଘୁବର ।
ଲଭି ଆଶୀର୍ବାଦ ପୁଣି ନତ କରି ଶିର,
ଭାଇଙ୍କ ସହିତେ ବିଦା ହେଲେ ରଘୁବୀର । ୧୮୩୦

ମଧୁର ମଞ୍ଜୁଳ ମୂର୍ତ୍ତି ହୃଦୟରେ ଆଣି,
ସ୍ନେହରେ ଶିଥିଳ ହୋଇଗଲେ ସବୁ ରାଣୀ ।
ଧର୍ଯ୍ୟ ଧରି ପୁଣି ପାଶେ କନ୍ୟାଙ୍କୁ ଡକାଇ,
ବାରମ୍ବାର ମାତା ଗଲେ କଅଙ୍କ ଲଗାଇ । ୧୮୩୧

ବିଦା କରି ସାରି ପୁଣି ଲେଉଟି ମିଳନ୍ତି,
ପରସ୍ପର ମଧ୍ୟେ ବଢ଼େ ଅତୁଟ ପୀରତି ।
ବାରମ୍ବାର ମିଳୁଥିବା ମାତାଙ୍କୁ ସଖୀଏଁ,
ଛଡ଼ାନ୍ତି, ଗାଈଠଁ ଯେହ୍ନେ ଛଡ଼ା କେହି ନିଏ । ୧୮୩୨

ଉଆସର ନର ନାରୀ ସଖୀଙ୍କ ସହିତେ,
ଅତିଶୟ ଶୋକାତୁର ହୋଇଲେ ନିଶ୍ଚିତେ ।
ଲାଗିଲା ଏପରି ସତେ ଜନକ ନଗରେ,
କରୁଣା ବିରହ ଡେରା ପକାଇଲେ ବଳେ । ୧୮୩୩

ପାଳି ପୋଷି ସୀତା ଯେଉଁ ସାରୀ ଶୁକ ପକ୍ଷୀ,
ପାଠ ପଢ଼ାଇଲେ ସୁନା ପଞ୍ଜୁରୀରେ ରଖି ।
କହନ୍ତି ବିକଳେ ସିଏ, "କାହିଁ ଲୋ ଜାନକୀ ?
ଶୁଣି ସେ ବଚନ କା'ର ଦମ୍ଭ ରହିବ କି ?" ୧୮୩୪

ବିକଳ ହୋଇଲେ ଖଗ ମୃଗ ଏହିପରି,
ମଣିଷଙ୍କ ଦଶା କିଏ କହିବ କିପରି ?
ଆସିଲେ ଜନକ ତହିଁ ଭାଇଙ୍କ ସହିତ,
ନୟନ ଉଚ୍ଛୁଳେ, ପ୍ରେମ ଅଶ୍ରୁ ପ୍ରବାହିତ । ୧୮୩୫

ପରମ ବୈରାଗ୍ୟ କହି ହୁଅନ୍ତି ଯେ ପୁରେ,
ସୀତାଙ୍କୁ ନିରେଖି ତାଙ୍କ ଧୈର୍ଯ୍ୟ ଗଲା ଦୂରେ ।
ବୁକୁରେ ସୀତାଙ୍କୁ ଗୃପି ଧରିଲେ ରାଜନ,
ଛୁଟିଗଲା ଯେତେ ଜ୍ଞାନ ମର୍ଯ୍ୟାଦା ବନ୍ଧନ । ୧୮୩୬

ବୁଦ୍ଧିମାନ ମନ୍ତ୍ରୀଗଣେ ତାଙ୍କୁ ବୁଝାଇଲେ,
ଦୁଃଖ ବେଳା ନୁହେଁ ରାଜା ହୃଦେ ବିଚାରିଲେ ।
ସୁତାଙ୍କୁ ହୃଦୟେ ନେଇ ସେ ଥରକୁ ଥର,
ମଗାଇଲେ ସୁସଜ୍ଜିତ ପାଲିଙ୍କି ସତ୍ୱର । ୧୮୩୭

ପ୍ରେମରେ ବିବଶ ଥିଲେ ସବୁ ପରିଜନ,
ଜନକ ନରେଶ ଦେଖି ଏକ ସୁଲଗନ ।
ସିଦ୍ଧ ଗଣେଶଙ୍କୁ ସ୍ମରି ନିର୍ମଳ ଚିତ୍ତରେ,
ଚଢ଼ାଇଲେ କୁମାରୀଙ୍କୁ ପାଲିଙ୍କି ଉପରେ । ୧୮୩୮

ବୁଝାଇଲେ ନରପତି ବହୁ ପରକାରେ,
ଦୁହିତାଙ୍କୁ ନାରୀଧର୍ମ ରୀତି ଯା' ସଂସାରେ ।

ସଙ୍ଗେ ଦେଲେ ଦାସ ଦାସୀ ବହୁତ ନୃପତି,
ଯେ ଥିଲେ ବିଶ୍ୱାସୀ ପ୍ରିୟ ସୀତାଙ୍କର ଅତି । ୧୮୭୯

ସୀତା ଯିବା ଶୁଣି ଦୁଃଖୀ ହେଲେ ପୁରବାସୀ,
ହୋଇଲା ଶକୁନ ଶୁଭ ସୁମଙ୍ଗଳ ରାଶି ।
ମେଲାଣି ଦେବାକୁ ରାଜା ଗଲେ ସଙ୍ଗେ ଚାଲି,
ବିପ୍ରବର ପାତ୍ର ମନ୍ତ୍ରୀ ସମାଜକୁ ଧରି । ୧୮୮୦

ଯଥାକାଳେ ନିନାଦିତ ହେଲା ବାଦ୍ୟରାଜି,
ବରଯାତ୍ରି ସଜାଇଲେ ଗଜ ରଥ ବାଜି ।
ବ୍ରାହ୍ମଣମାନଙ୍କୁ ଡାକି ରାଜା ଦଶରଥ,
ଦାନେ ମାନେ କଲେ ପୂର୍ଣ୍ଣ ତାଙ୍କ ମନୋରଥ । ୧୮୮୧

ତାଙ୍କ ପାଦ-ପଦ୍ମ-ରଜ ମସ୍ତକେ ଲଗାଇ,
ପୁଲକିତ ହେଲେ ରାଜା ଶୁଭାଶୀଷ ପାଇ ।
ଯାତ୍ରା ଅନୁକୂଳ କଲେ ସ୍ମରି ଗଜାନନ,
ମଙ୍ଗଳ ଶକୁନ କେତେ କଲେ ଦରଶନ । ୧୮୮୨

ସୁରେ ବରଷିଲେ ଫୁଲ ଅଶେଷ ହରଷେ,
ଗାଇଲେ ଅପ୍‌ସରା ଗାନ ନାନା ଛନ୍ଦ ରସେ ।
ଅଯୋଧ୍ୟାନାୟକ ଗଲେ ଅଯୋଧ୍ୟାଭିମୁଖେ,
ବଜାଇ ନିଶାଣ ଭେଷ୍ଟ ପରାଣ ଉତ୍ସୁକେ । ୧୮୮୩

ଫେରାଇଲେ ସବିନୟେ ଯେତେ ମହାଜନେ,
ଡକାଇ ଯାଚକ ଜନେ ଆଉ ଭିକ୍ଷୁଗଣେ ।
ଦେଲେ ଦାନ ଗଜ ବାଜି ବସନ ଭୂଷଣ,
ଛୁଡ଼ା କରାଇଲେ ପ୍ରେମେ ତୋଷି ସଭିଁ ମନ । ୧୮୮୪

ଥରକୁଥର ସେ କୁଳକୀର୍ତ୍ତି ଗାନ କରି,
ଲେଉଟିଲେ ରାମମୂର୍ତ୍ତି ହୃଦୟରେ ଧରି ।
ବାରମ୍ବାର କହିଲେ ହେଁ କୋଶଳ ନୃପତି,
ମିଥିଳା ନରେଶ ପ୍ରେମ ବଶେ ନ ଫେରନ୍ତି । ୧୮୮୫

ନୃପତି କହିଲେ ପୁଣି ମଧୁର ବଚନ,
ଆସିଲଣି ବହୁ ପଥ ଫେରନ୍ତୁ ରାଜନ ।
ରଥରୁ ଓହ୍ଲାଇ ପଡ଼ି ହୋଇଗଲେ ଠିଆ,
ନୟନୁ ପ୍ରେମାଶ୍ରୁ ଧାର ବହେ ଅମାନିଆ । ୧୮୪୬

ବିଦେହ କହିଲେ ତହୁଁ ଯୋଡ଼ି ବେନି କର,
ସ୍ନେହାମୃତେ ସିକ୍ତ ବାଣୀ ମଧୁର କୋମଳ—
"କେଉଁପରି ଭାବେ ମୁହିଁ କରିବି ବିନୟ,
ବହୁ ଗଉରବ ମୋତେ ଦେଲ ମହାଶୟ ।" ୧୮୪୭

କୋଶଳେଶ ଦଶରଥ ସକଳ ପ୍ରକାରେ
ନିଜ ସମ୍ବନ୍ଧିଙ୍କୁ କଲେ ସମ୍ମାନ ଶ୍ରଦ୍ଧାରେ ।
ପରସ୍ପର ମିଳନରେ ବିରାଜେ ବିନୟ,
ହୃଦେ ନ ସମ୍ଭାଏ ପ୍ରୀତି—ଛୁଟେ ଅତିଶୟ । ୧୮୪୮

ମୁନିମଣ୍ଡଳୀଙ୍କୁ ଶିର ନୋଇଁଲେ ରାଜନ,
ସଭିଙ୍କଠୁଁ କଲେ ଲଭ ଆଶିଷ ରତନ ।
ଆଦରେ ଭେଟିଲେ ପୁଣି ଜାମାତାଙ୍କୁ ସାଇଁ,
ରୂପ-ଶୀଳ-ଗୁଣ-ସିନ୍ଧୁ ଏହି ଚାରି ଭାଇ । ୧୮୪୯

ଟେକି ସରସିଜ-କର ଯୋଡ଼ି ନରପତି,
କହିଲେ ବଚନ ଯାହା ପ୍ରେମୁଁ ଉତପତି—
"ହେ ରାମ ଗାଇବି କେହ୍ନେ ତୁମ ରୂପ ଯଶ,
ତୁମେ ମୁନି-ମହାଦେବ-ମାନସର ହଂସ । ୧୮୫୦

ଯାହା ପାଇଁ ଆଚରନ୍ତି ଯୋଗ ଯୋଗୀଜନ,
ତେଜି କ୍ରୋଧ ମୋହ ମଦ ମମତା ବନ୍ଧନ,
ବ୍ୟାପକ ଅଲେଖ ବ୍ରହ୍ମ ଅଜ ଅବିନାଶୀ,
ନିର୍ଗୁଣ ସଚ୍ଚିଦାନନ୍ଦ ଘନ ଗୁଣ ରାଶି । ୧୮୫୧

ମନ ଓ ବଚନ ତଳେ ଯାହାକୁ ନ ଜାଣେ,
କଳ୍ପନା କରନ୍ତି ମାତ୍ର ଯାହା ଅନୁମାନେ ।

ନିଗମ ମହିମା ଗାଏ କହି ନେତି ଯାହାରେ,
ନିର୍ବିକାରେ ବିରାଜଇ ଯିଏ ତିନ କାଳେ । ୧୮୫୨

ସେହି ସୁଖ ମୂଳ ତୁମେ ସ୍ୱୟଂ ବିରାଜିତ,
ଏଇ ମୋ ନୟନ ଆଗେ ପରମ ପୂଜିତ ।
ପ୍ରଭୁ ଅନୁକୂଳ ହେଲେ ଜୀବକୁ ଜଗତେ,
ସୁଲଭ ହୁଅଇ ସବୁ ଲାଭ ଅବିରତେ । ୧୮୫୩

ଦେଇଛ ବଡ଼ାଇ ମୋତେ ସକଳ ପ୍ରକାର,
ନିଜ ଲୋକ ଭାବି ପୁଣି କଲ ଆପଣାର ।
ଯଦବା ସହସ୍ର ବାଣୀ ଅନନ୍ତ ହୋଇବେ,
କୋଟି କଳ୍ପ ପରଯନ୍ତେ ବସି ଲେଖୁଥିବେ । ୧୮୫୪

ମୋର ସଉଭାଗ୍ୟ ପୁଣି ଗୁଣ ଗାଥା ତବ,
ରଘୁନାଥ ତା'ର ଶେଷ ନୁହଇ ସମ୍ଭବ ।
ଯା' କହୁ କହୁଚ ତାହା ସିନା ତୁମ ବଳେ—
ତାହା ତୁମେ ତୋଷ ହୁଅ ଅଳପ ସ୍ନେହରେ । ୧୮୫୫

ହାତଯୋଡ଼ି ବାର ବାର ମାଗୁଣି ମୋହର,
ତୁମେ ବି ନ ତେଜ ମନ ତୁମ ସେ ପଯୂର ।"
ଶୁଣି ପ୍ରେମ ରସେ ପୁଷ୍ଟି ମଧୁର ବଚନ,
ପୂର୍ଣ୍ଣକାମ ରାମଚନ୍ଦ୍ର ହେଲେ ସୁପ୍ରସନ୍ନ । ୧୮୫୬

ପିତା କଉଶିକ ଗୁରୁ ବଶିଷ୍ଠ ସମାନ,
ଶଶୁରଙ୍କୁ ଜାଣି ରାମ କଲେ ସମ୍ମାନ ।
ଭରତେ ବିନତି ବହୁ କରି ନରପତି,
ପାଶେ ମିଳି ଆଶୀର୍ବାଦ ଦେଲେ ପ୍ରେମେ ଅତି । ୧୮୫୭

ଲକ୍ଷ୍ମଣ ଶତ୍ରୁଘ୍ନେ ମିଳି ଜନକ ରାଜନ,
ଆଶୀର୍ବାଦ କଲେ ପ୍ରେମେ କରି ଆଲିଙ୍ଗନ ।
ପରସ୍ପର ପ୍ରେମବଶେ ସେହି ବେଳ ଭାଇ,
ନମସ୍କାର କରୁଥାନ୍ତି ଜୁହାଇ ଜୁହାଇ । ୧୮୫୮

ବାରମ୍ବାର କରି ବହୁ ବିନୟ ବଢ଼ାଇ,
ଚଳିଲେ ଶ୍ରୀରାମଚନ୍ଦ୍ର ଘେନି ସବୁ ଭାଇ ।
ଜନକ ପଡ଼ିଲେ ଯାଇ କୌଶିକ ଚରଣେ,
ପଦ-ଧୂଳି ଲଗାଇଲେ ମସ୍ତକେ ନୟନେ । ୧୮୫୯

"ଶୁଣ ମୁନିବର ତବ ଦିବ୍ୟ ଦରଶନେ,
ଦୁର୍ଲ୍ଲଭ ନ ହୁଏ କିଛି—ଏ ବିଶ୍ୱାସ ମନେ ।
ଯେଉଁ ସୁଖ ଯଶ ନୃପେ କରନ୍ତି ପ୍ରୟାସ,
ବହୁ ମନୋରଥ ହୋଇ ସଭିଙ୍କ ମାନସ ।
ସେହି ସୁଖ ଯଶ ମୋତେ ମିଳିଅଛି ସ୍ୱାମୀ,
ସବୁ ସିଦ୍ଧି ତବ ଦରଶନ ଅନୁଗାମୀ ।"
ଲଭି ମୁନି ଆଶୀର୍ବାଦ ମନେ ଖୁସି ହୋଇ,
ବିନୟେ ଫେରିଲେ ରାଜା ପଦେ ଶିର ନୋଇଁ । ୧୮୬୦

ଫେରିଲେ ଦଳକୁ ଦଳ ବରଯାତ୍ରୀ ଦଳ,
ବଜାଇ ନିଶାଣ ବାଦ୍ୟ ପକାଇ ଚହଳ ।
ସାନ ବଡ଼ ହର୍ଷ ସବେ ଶ୍ରୀରାମଙ୍କୁ ଚାହିଁ,
ଗ୍ରାମ ନରନାରୀ ନେତ୍ର ଫଳ ଗଲେ ପାଇ । ୧୮୬୧

ମଝିରେ ମଝିରେ କରି ବାସ ବିରଚନ,
ପଥ ଜନେ କରୁଥାନ୍ତି ସୁଖ ବିତରଣ ।
ଶୁଭ ଏକ ଦିନେ ବରଯାତ୍ରୀଏ ସମସ୍ତ,
ଅଯୋଧ୍ୟା ସମୀପେ ଆସି ହେଲେ ଉପଗତ । ୧୮୬୨

ବାଜେ ଢୋଲ ଭେରୀ ଶଙ୍ଖ ନିଷାଣ ଉଚ୍ଚରେ,
ଗଜ ବାଜି ଗରଜନ ମିଶେ ସେ ନାଦରେ ।
ସୁନ୍ଦର ମୃଦଙ୍ଗ ଝାଞ୍ଜି ରୁଙ୍ଗୁ ରୁଇଁ ରୁଇଁ
ସରସ ମଧୁର ରାଗେ ବାଜେ ସାହାନାଇ । ୧୮୬୩

ପୁରଜନେ ଶୁଣି ବରଜାନ୍ତ ଆଗମନ,
ପୁଲକିତ ଅପଘନ ମନ ସୁପ୍ରସନ୍ନ ।

ସଜାଇଲେ ନିଜ ବାସ ଭବନ କଟକ,
ନଗର ଦୁଆର ହାଟ ବାଟ ଚଉହଟ୍ଟକ । ୧୮୬୪

ସିଞ୍ଚିଲେ ସୁଗନ୍ଧ ଜଳ ସକଳ ଗଳିରେ,
ସ୍ଥାନେ ସ୍ଥାନେ କୋଷ୍ଟକର ଶଡା ବିରଚିଲେ ।
ମଣ୍ଡପ ତୋରଣ ଧ୍ୱଜା ଆଦିରେ ଯେପରି,
ବଜାର ସଜ୍ଜିତ ହେଲା—ବର୍ଣ୍ଣିବ କିପରି ? ୧୮୬୫

ସଫଳ ସୁପାରି ରମ୍ଭା ରସାଳ ତମାଳ,
ବକୁଳ କଦମ୍ବ ରୋପାଗଲା ମାଳ ମାଳ ।
ଫଳଭରିନତ ବୃକ୍ଷେ ଲେଟନ୍ତି ଧରଣୀ,
ମଣିମୟ ଆଲବାଳ ବିଚିତ୍ର କରଣି । ୧୮୬୬

ମଙ୍ଗଳ କଳସମାନ ହୋଇଲା ସ୍ଥାପିତ,
ରୁଚି ଅନୁସାରେ ପ୍ରତି ଗୃହ ସୁସଜ୍ଜିତ ।
ଦେଖି ରାମପୁରୀ ଅଯୋଧ୍ୟାର ବିରଚନା,
କରନ୍ତି ବ୍ରହ୍ମାଦି ସୁରେ ବସତି କାମନା । ୧୮୬୭

ରାଜମହଲର ଶୋଭା ଅତି ସୁଶୋଭିତ,
ଦେଖି କାମଦେବ ମନ ହୁଅଇ ମୋହିତ ।
ଋଦ୍ଧି ସିଦ୍ଧି ସୁଖ ଶୋଭା ମଙ୍ଗଳ-ଶକୁନ,
ସୁନ୍ଦର ସମ୍ପଦ ଆଦି ଯେତେ ସବୁ ଗୁଣ—୧୮୬୮

ସକଳ ଉତ୍ସାହ ସାଥେ ଅବା ଦେହ ଧରି,
ଦଶରଥ ଗୃହଦ୍ୱାରେ ଯାଇଛନ୍ତି ଭରି ।
ଦେଖିବା ପାଇଁକି ରାମ-ବୈଦେହୀ ନୟନେ,
କାହାର ଲାଳସା ଅବା ନ ହୋଇବ ମନେ ? ୧୮୬୯

ମିଳିଗଲେ ସୁଭାଗିନୀ ହୋଇ ଦଳ ଦଳ,
ନିନ୍ଦି କାମ-ବଧୂ ଶୋଭା ସୌନ୍ଦର୍ଯ୍ୟ ସକଳ ।
ସଜାଇ ମଙ୍ଗଳ ଦ୍ରବ୍ୟ ମଙ୍ଗଳ ଆଳତି,
ଗାଉଥିଲେ ଯେହ୍ନେ ବହୁ ବେଶେ ସରସ୍ୱତୀ । ୧୮୭୦

ରାଜ ଭବନରେ ହୁଏ ଅତି କୋଳାହଳ,
କେ ବର୍ଣ୍ଣିବ ସେ ସମୟ ସେ ସୁଖ ସକଳ ।
କୌଶଲ୍ୟାଦି ଶ୍ରୀରାମଙ୍କ ଜନନୀ ହରଷେ,
ପାଶୋରିଲେ ନିଜ ତନୁ ଦଶା ପ୍ରେମବଶେ । ୧୮୭୧

ପୂଜି ବିଘ୍ନରାଜ ପୁଣି ଶିବ ତ୍ରିପୁରାରି,
ବ୍ରାହ୍ମଣଙ୍କୁ ଡାକି ଦାନ ଦେଲେ ଅସୁମାରି ।
ଲଭି ଚତୁଃବର୍ଗ ଯେହ୍ନେ ଦରିଦ୍ର ମୋଦିତ,
ତେସନେ ଜନନୀ ସର୍ବେ ହେଲେ ହରଷିତ । ୧୮୭୨

ଜନନୀ ନିକର ପ୍ରେମ ପ୍ରମୋଦେ ବିବଶ,
ନ ଚଳଇ ପଦ, ତନୁ ଶିଥିଳ ଅବଶ ।
ରାମ ଦରଶନ ଆଶେ ଅନୁରାଗେ ଅତି,
ବନ୍ଦାପନା ଦ୍ରବ୍ୟ ସର୍ବେ ସଜାଇ ଲାଗନ୍ତି । ୧୮୭୩

ବିବିଧ ପ୍ରକାରେ ବାଜା ବାଜଇ ନଅରେ,
ଶୁଭ ଦ୍ରବ୍ୟ ସଜାଡ଼ିଲେ ସୁମିତ୍ରା ଆଦରେ ।
ହଳଦୀ ପଲ୍ଲବ ପୁଷ୍ପ ଦଧି ଦୂର୍ବାଦଳ,
ସୁପାରି ତାମ୍ବୁଳ ଆଦି ପଦାର୍ଥ ସକଳ । ୧୮୭୪

ଅକ୍ଷତ ଅଙ୍କୁର ଲଆ ଗୋରୋଚନା ଆଦି,
ତୁଳସୀ ମଞ୍ଜରୀ ଶ୍ରେଷ୍ଠ ପଦାର୍ଥ ସମ୍ପାଦି ।
ଚିତ୍ରିତ କନକ ଘଟ ମନୋହର ଅତି,
ସତେ କାମ-ପକ୍ଷୀ ନୀଡ ବିରଚି ଅଛନ୍ତି । ୧୮୭୫

ସୁଗନ୍ଧ ମଙ୍ଗଳ ଦ୍ରବ୍ୟ ନ ହୁଏ ବଖାଣି,
ସଜାନ୍ତି ସକଳ ରୂପେ ଦଶରଥ ରାଣୀ ।
ସଜାଇ ଆଳତିମାନ ନାନାଦି ଭାବରେ,
ଆନନ୍ଦେ ଗାଆନ୍ତି ନାରୀଗଣ କଳ ସ୍ୱରେ । ୧୮୭୬

ସଜାଇ ମଙ୍ଗଳ ଦ୍ରବ୍ୟ କନକ ଥାଳରେ,
ଗଲେ ମାତାମାନେ ଧରି ନିଜ କଞ୍ଜ-କରେ ।

ପୁରକୁ ବଢ଼ାଇବା ପାଇଁ ଆନନ୍ଦ ମନରେ ।
ଶରୀରେ ରୋମାଞ୍ଚ, ପ୍ରାଣେ ପୁଲକ ଶିହରେ । ୧୮୭୭

ଧୂପ-ଧୂମେ ଅନ୍ତରୀକ୍ଷ ଶ୍ୟାମଳ ହୋଇଲା,
ଗରଜ ଶ୍ରାବଣ ଘନ କି ଅବା ଘୋଟିଲା ।
ସୁର-ତରୁ ପୁଷ୍ପମାଳ ସୁରେ ବରଷନ୍ତି,
ସତେକି ସେ ବକ ପନ୍ତି ମନ ଆକର୍ଷନ୍ତି । ୧୮୭୮

ସୁମଙ୍ଗଳ ମଣିମୟ ରସାଳ ତୋରଣ,
ସତେ କି ସଜ୍ଜିତ ଇନ୍ଦ୍ରଧନୁ ସୁଶୋଭନ ।
ଦେଖା ଦେଇ ସୌଧ ପରେ ଲୁଚନ୍ତି କାମିନୀ,
ଚମକଇ ଘନେ ଅବା ଗୃହୁ ସୌଦାମିନୀ । ୧୮୭୯

ନିଷାଣ ନିନାଦ, ଘନ ଘୋର ଗରଜନ,
ଚାତକ ମୟୂର ଭେକ ଯାଚକ ଯେସନ ।
ବରଷନ୍ତି ସୁରେ ଶୁଚି ସୁବାସିତ ବାରି,
ଶସ୍ୟ ସମ ସୁଖୀ ଅଯୋଧ୍ୟାର ନରନାରୀ । ୧୮୮୦

ଯଥା ସମୟରେ ଗୁରୁ ବହିଲେ ଆଦେଶ,
ରଘୁକୁଳମଣି ପୁରେ ହୋଇଲେ ପ୍ରବେଶ ।
ସୁମରି ଗିରିଜା ମହାଦେବ ଗଣପତି,
ସମାଜ ମଧ୍ୟରେ ସୁଖୀ ହେଲେ ନରପତି । ୧୮୮୧

ମଙ୍ଗଳ ଶକୁନମାନ ହୋଇ ଯାଉଥାଏ,
ବର୍ଷନ୍ତି କୁସୁମ ବାଦ୍ୟ ସହ ଦେବତାଏଁ ।
ମଙ୍ଗଳ ସଙ୍ଗୀତ ଗାଇ ଦେବାଙ୍ଗନାଗଣ,
କରନ୍ତି ଅଶେଷ ନୃତ୍ୟ ହୋଇ ହର୍ଷମନ । ୧୮୮୨

ବନ୍ଦୀ ଭାଟ ସୂତ ପୁଣି ନିପୁଣ ନର୍ତ୍ତକ,
ଗାଆନ୍ତି କୀରତି ତିନିଲୋକ ପ୍ରକାଶକ ।
ଜୟଧ୍ୱନି ବେଦବର ବାଣୀ ସୁବିମଳ,
ଶୁଭୁଥାଏ ଦଶ ଦିଗେ ମାଙ୍ଗଳିକ ସ୍ୱର । ୧୮୮୩

ନଭେ ସୁରେ ପୁରେ ନରେ ଅନୁରାଗ ଭରେ,
ବଜାଇଲେ ବହୁ ବାଦ୍ୟ ସେହି ଅବସରେ ।
ବରଜାତଙ୍କର ବେଶ ବର୍ଣ୍ଣି ନ ହୁଅଇ,
ମହାନନ୍ଦେ ହୃଦୟରୁ ସୁଖ ଉଛୁଳଇ । ୧୮୮୪

ପୁରବାସୀ ସର୍ବେ କଲେ ରାଜାଙ୍କୁ ପ୍ରଣାମ,
ଲଭିଲେ ଆନନ୍ଦ ପ୍ରାଣେ ନିରେଖି ଶ୍ରୀରାମ ।
ଉତ୍ସର୍ଗ କରିଲେ ନାନା ମଣି ଓ ବସନ,
ଶରୀରେ ପୁଲକ ନେତ୍ରେ ପ୍ରେମ ଅଶ୍ରୁକଣ । ୧୮୮୫

ହରଷେ ନିରେଖି ମନୋହର ସୁତ ଚାରି,
କରନ୍ତି ଆଳତି ଆନନ୍ଦରେ ପୁରନାରୀ ।
ପାଲିଙ୍କି ପରଦା ଧୀରେ ସେମାନେ ଉଠାଇ,
ଆନନ୍ଦ ହୁଅନ୍ତି ବର-ବଧୂଗଣେ ଚାହିଁ । ୧୮୮୬

ଏପରି ସଭିଙ୍କୁ ଦେଇ ସୁଖ ରାଶି ରାଶି,
ପହଞ୍ଚିଲେ ପୁତ୍ରଗଣେ ରାଜଦ୍ୱାରେ ଆସି ।
ମାତାଏ ଆନନ୍ଦ ମନେ ବଧୂଙ୍କ ସଙ୍ଗରେ,
ପୁତ୍ରଗଣେ ବନ୍ଦାପନା କରନ୍ତି ସତ୍ୱରେ । ୧୮୮୭

ବାରମ୍ବାର ମାତାମାନେ କଲେ ବନ୍ଦାପନ,
ସେ ପ୍ରେମ ଉଲ୍ଲାସ କିଏ କରିବ ବର୍ଣ୍ଣନ ?
ଅନେକ ପ୍ରକାର ମଣି ଭୂଷଣ ବସନ,
ଉତ୍ସର୍ଗ କରିଲେ ରାଣୀ ହୋଇ ହର୍ଷମନ । ୧୮୮୮

ବଧୂଙ୍କ ସହିତେ ଦେଖି ଏ ଚାରି କୁମର,
ପ୍ରେମାନନ୍ଦେ ହେଲେ ମଗ୍ନ ଜନନୀ ନିକର ।
ବାରମ୍ବାର ରାମ-ସୀତା ରୂପ ବିଲୋକନ୍ତି,
ଜଗତେ ସୁଫଳ ନିଜ ଜନମ ମଣନ୍ତି । ୧୮୮୯

ସଖୀଗଣେ ବାରମ୍ବାର ଚାହିଁ ସୀତା ମୁଖ,
ଗାଆନ୍ତି ପ୍ରଶଂସା କରି ନିଜର ସୁକୃତ ।

ପୁଷ୍ପ ବରଷନ୍ତି ସୁରେ କ୍ଷଣେ କ୍ଷଣେ ରହି,
ନାଚି ଗାଇ ନିଜ ସେବା ଅରପନ୍ତି ତହିଁ । ୧୮୯୦

ନେତ୍ରେ ଦେଖି ମନୋହର ଏ ଗୃହ ଯୁଗଳ,
ବାଣୀ ନ ପାଆନ୍ତି ଖୋଜି ଉପମା କେବଳ ।
ଉପମା ସକଳ ତୁଛ ପରାସ୍ତେ ଲାଗିଲେ,
ତେଣୁ ଅପଲକେ ବାଣୀ ଅନାଇ ରହିଲେ । ୧୮୯୧

ବେଦ ବିଧି କୁଳରୀତି ନିୟମ ଆଚରି,
ଅର୍ଘ୍ୟ ପାଦାସନ ସହ ବନ୍ଦାପନା କରି,
ନଅରେ ଫେରିଲେ ମାତାଗଣ ହରଷିତେ,
ସଙ୍ଗେ ଘେନି ପୁତ୍ରଗଣ ବଧୂଙ୍କ ସହିତେ । ୧୮୯୨

ସହଜେ ସୁନ୍ଦର ଗୃହ ଗୃହେ ସିଂହାସନ,
ସତେ କି ସ୍ୱହସ୍ତେ କାମ କରିଛି ଗଠନ ।
ବସାଇ ତହିଁରେ ଗୃହ କୁମାର କୁମାରୀ,
ପବିତ୍ର ଚରଣ ଅତି ଆଦରେ ପଖାଳି । ୧୮୯୩

ମଙ୍ଗଳ ବିଧାନ ବରକନ୍ୟାଙ୍କୁ ବିଧିରେ,
ଧୂପ ଦୀପ ନୈବେଦ୍ୟରେ ଜନନୀ ପୂଜିଲେ ।
ବାରମ୍ବାର କଲେ ସେହୁ ସପ୍ରେମ ଆଳତି,
ମସ୍ତକେ ବ୍ୟଜନ ମୃଦୁ ଚାମର ଢାଳନ୍ତି । ୧୮୯୪

ବିତରଣ କରି ନାନା ଦ୍ରବ୍ୟ ନାନାମତେ,
ଶୋଭନ୍ତି ରାଣୀଏ ଭରି ପ୍ରେମାନନ୍ଦେ ସତେ ?
ଅବା କି ପରମ ତତ୍ତ୍ୱ ଲଭିଛନ୍ତି ଯୋଗୀ,
ସୁଧା ଲାଭ କରିଛନ୍ତି ଅବା ଚିର ରୋଗୀ । ୧୮୯୫

ପାଇଲା ପରଶ ମଣି ଜନ୍ମ-ରଙ୍କ ସତେ,
ଅନ୍ଧ ଲଭିଗଲା ଅବା ନେତ୍ର ଅପଲକେ ।
ମୂକ ମୁଖେ ବୀଣାପାଣି ଅବା ବିଜେ କଲେ,
ବିଜୟ ଲଭିଲେ ବୀର କି ଅବା ସମରେ ? ୧୮୯୬

ଏହି ସୁଖ ଠାରୁ ଶତ କୋଟି ଗୁଣ ସୁଖ,
ଲଭିଲେ ଜନନୀଗଣ ହୋଇ ଭରି ବୁକ ।
ଭାଇଙ୍କ ସହିତେ ଯେଣୁ ରଘୁକୁଳ-ଶଶି,
ବିଭା ହୋଇ ସାରି ଗୃହେ ଫେରି ଆସିଛନ୍ତି । ୧୮୯୭

କରନ୍ତି କୁଳର ରୀତି-ନୀତି ମାତାଗଣ,
ଲଜ୍ଜାଭରେ ବଧୂଗଣେ ସଙ୍କୋଚ ବଦନ ।
ଆମୋଦ ପ୍ରମୋଦ ଯେତେ ହୁଏ ସେ ନଅରେ,
ଦେଖି ଦେଖି ରାମ ସବୁ ହସନ୍ତି ଅନ୍ତରେ । ୧୮୯୮

ମନୋବାଞ୍ଛା ପୂର୍ଣ୍ଣ ଜାଣି ମାତାଏଁ ପୁଲକେ,
ପୂଜିଲେ ଦେବତାଲୋକେ ପୁଣି ପିତୃଲୋକେ ।
ବନ୍ଦାପନା କରି ସର୍ବେ ମାଗୁଥାନ୍ତି ବର—
ଭାଇଙ୍କ ସହିତେ ଶୁଭ ହେଉ ଶ୍ରୀରାମର । ୧୮୯୯

ଶୁଭ ବରଷନ୍ତି ସୁରେ ଅଦୃଶ୍ୟ ଗଗନେ,
ଅଞ୍ଚଳ ପ୍ରସାରି ମାତା ନେଲେ ହର୍ଷ ମନେ ।
ବରଯାତ୍ରି ଦଳେ ଡାକି ଅଯୋଧ୍ୟା ରାଜନ,
ଦେଲେ ବହୁ ଯାନ ମଣି ଭୂଷଣ ରତନ । ୧୯୦୦

ରାଜାଦେଶେ ଗୃହେ ସର୍ବେ ଫେରିଲେ ହରଷେ,
ରାମ ରୂପ ଛବି ରଖି ନିବିଡ଼େ ଉରସେ ।
ପିନ୍ଧାଇଲେ ନୃପ ନରନାରୀଙ୍କୁ ବସନ,
ଶୁଭେ ପ୍ରତି ଗୃହେ ମାଙ୍ଗଳିକ ବାଦ୍ୟ ସ୍ୱନ । ୧୯୦୧

ଯାଚକେ ମାଗନ୍ତି ଯାହା ବସନ ବା ମଣି,
ଆନନ୍ଦ ମନରେ ରାଜା ଦିଅନ୍ତି ସେ କ୍ଷଣି ।
ସମସ୍ତ ସେବକ ବାଦ୍ୟକାରଙ୍କୁ ଡକାଇ,
ଦାନ ସମ୍ମାନରେ ସୁଖୀ କଲେ ନରସାଇଁ । ୧୯୦୨

ସକଳେ ଆଶିଷ ଦେଇ କରି ନମସ୍କାର,
ଗଲେ ଫେରି ଗାଇ ରାଜ ଗୁଣ ବାର ବାର ।

ଗୁରୁ ବିପ୍ର ବ୍ରାହ୍ମଣଙ୍କ ସହିତେ ରାଜନ,
ସୁଖେ ରାଜମହଲକୁ କଲେ ଆଗମନ । ୧୯୦୩

ଯେଉଁ ଆଜ୍ଞା କୁଳଗୁରୁ ବଶିଷ୍ଠ ଦିଅନ୍ତି,
ଲୋକ ବେଦ ବିଧିରେ ସେ ଆଦରେ କରନ୍ତି ।
ଦେଖି ବହୁ ବ୍ରାହ୍ମଣଙ୍କ ଶୁଭ ଆଗମନ,
ଉଠିଲେ ରାଣୀଏ ଜାଣି ବଡ଼ ଭାଗ୍ୟ ପଣ । ୧୯୦୪

ଚରଣ ପଖାଳି ରାଜା ସ୍ନାନ କରାଇଲେ,
ସମସ୍ତଙ୍କୁ ବିଧିମତେ ପୂଜି ଭୁଞ୍ଜାଇଲେ ।
ଦାନ ସ୍ନେହ ସମାଦରେ କଲେ ପରିତୋଷ,
ଆଶୀର୍ବାଦ ଦେଇ ଗଲେ, ଅନ୍ତରେ ସନ୍ତୋଷ । ୧୯୦୫

ବିଶ୍ୱାମିତ୍ରେ କଲେ ପୂଜା ରାଜା ନାନାମତେ,
କହିଲେ, "ମୋ ସମ ଧନ୍ୟ ନାହିଁ କେ ଜଗତେ ।"
ବହୁତ ପ୍ରଶଂସା କଲେ ଅଯୋଧ୍ୟା ରାଜନ,
ରାଣୀଙ୍କ ସହିତେ ନେଲେ ପଦ-ରଜ-କ'ଣ । ୧୯୦୬

ଦେଲେ ତାଙ୍କୁ ବାସସ୍ଥାନ ଭିତର ଭବନେ,
ମନକୁ ଜଗିବେ ନୃପ-ମହିଷୀ ଯେସନେ ।
ପୂଜିଲେ ବଶିଷ୍ଠ ପଦ-ପଙ୍କଜେ ନୃପତି,
ହୃଦେ ନ ଥିଲାତ ତାଙ୍କ ଅଳପ ପୀରତି । ୧୯୦୭

ବଧୂଙ୍କ ସହିତେ ରାଜକୁମାର ସକଳ,
ମହିଷୀମାନଙ୍କ ସାଥେ ପୁଣି ନୃପବର,
ବାରମ୍ବାର ଗୁରୁପଦ ବନ୍ଦନ କରନ୍ତି ।
ଆଦରେ ମୁନୀଶ ତାଙ୍କୁ ଆଶିଷ ଦିଅନ୍ତି । ୧୯୦୮

ଧନସ୍ୱ ସମ୍ପଦ ସବୁ ରଖି ମୁନି ଆଗେ,
ସବୁକୁ ନେବାକୁ କଲେ ବିନୟ ସରାଗେ ।
ମୁନୀଶ୍ୱର ଯାହା ନିଜ ପ୍ରାପ୍ୟ ମାଗି ନେଲେ,
ରାଜାଙ୍କୁ ବହୁତ ଭାବେ ଆଶୀର୍ବାଦ କଲେ । ୧୯୦୯

ଶ୍ରୀରାମ-ବୈଦେହୀ ଧ୍ୟାୟି ମୁନି ହୃଦୟରେ,
ନିଜ ଭବନକୁ ଗଲେ ଆନନ୍ଦ ମନରେ ।
ଡକାଇ ବ୍ରାହ୍ମଣ-ବଧୂଗଣେ ନରପତି,
ପିନ୍ଧାଇଲେ ବାସ ଭୂଷା ମନୋହର ଅତି । ୧୯୧୦

ସୁଆସିନୀଗଣେ ଡାକି ଅଯୋଧ୍ୟା ନରେଶ,
ଆନନ୍ଦରେ ଦେଲେ ବାସ ଭୂଷଣ ଅଶେଷ ।
ଯାହାକୁ ଯା' ଦେବା କଥା ରୁଚି ଅନୁସାରେ,
ରାଜା ଦଶରଥ ଦେଲେ ନାନାବିଧ ପ୍ରକାରେ । ୧୯୧୧

ସୁପୂଜ୍ୟ ଅତିଥି ପ୍ରିୟ ଜାଣିଲେ ଯାହାଙ୍କୁ,
ଅଶେଷ ସମ୍ମାନ କଲେ ନୃପତି ତାହାଙ୍କୁ ।
ଦେବତାଏ ଦେଖି ରାମ ବିଭା ମହୋତ୍ସବ,
କରନ୍ତି କୁସୁମ ବୃଷ୍ଟି ପ୍ରଶଂସି ଉତ୍ସବ । ୧୯୧୨

ରାମ-ସୀତା ବିବାହରେ ସୁରେ ସୁଖ ପାଇ,
ନିଜ ନିଜ ପୁରେ ଗଲେ ନିଷାଣ ବଜାଇ ।
କହିଲେ ଶ୍ରୀରାମଚନ୍ଦ୍ର ଯଶ ପରସ୍ପରେ,
ଉଚ୍ଛୁଳେ ହର୍ଷର ଢେଉ ସଭିଙ୍କ ଅନ୍ତରେ । ୧୯୧୩

କରୁଥିଲେ ଯେବେ ନୃପ ସଭିଙ୍କୁ ସତ୍କାର,
ହୃଦେ ଭରି ଯାଉଥିଲା ଉତ୍ସାହ ଅପାର ।
ଏହା ପରେ ଅନ୍ତଃପୁରେ ହୋଇଲେ ପ୍ରବେଶ,
ବଧୂଙ୍କ ସହିତେ ପୁତ୍ରେ ଭେଟିଲେ ନରେଶ । ୧୯୧୪

ପୁତ୍ରେ କୋଳେ ବସାଇଲେ ପ୍ରେମେ ନରୋତ୍ତମ,
କେ କହିପାରିବ ସେହି ସୁଖ ଅନୁପମ ।
ଆନନ୍ଦେ ବଧୂଙ୍କୁ କୋଳେ ବସାଇ ନୃପତି,
ଖୁସି ମନେ ବାରମ୍ବାର ଆଦର କରନ୍ତି । ୧୯୧୫
ରାଣୀହଂସପୁରେ ଦେଖି ଏ ସବୁ ଉଲ୍ଲାସ,
ସଭିଙ୍କ ହୃଦୟେ କଲା ଆନନ୍ଦ ନିବାସ ।

ଯେମନ୍ତେ ହୋଇଲା ବିଦା କହିଲେ ନୃପତି,
ତା' ଶୁଣି ସକଳେ ମନେ ହରଷ ହୁଅନ୍ତି । ୧୯୧୭

ଜନକ ରାଜାଙ୍କ ଗୁଣ ଗାରିମା ସମ୍ପଦ,
ପ୍ରୀତିପୂର୍ଣ୍ଣ ବ୍ୟବହାର ବିପୁଳ ବିଭବ;
ଭାଟ ପରି ନୃପ ବହୁ ପ୍ରକାରେ କହନ୍ତି,
ଶୁଣି ଶୁଣିରାଣୀମାନେ ହରଷ ହୁଅନ୍ତି । ୧୯୧୭

କୁମରଙ୍କ ସାଥେ ସ୍ନାନ କରି ଦଶରଥ,
ଗୁରୁ ଜ୍ଞାତି କୁଟୁମ୍ବଙ୍କୁ ଡକାଇ ତୁରନ୍ତ ।
ଏକାଠି ଭୋଜନ କଲେ ପାକ ନାନା ଜାତି,
ଏହିପରି ବିତିଗଲା ପାଞ୍ଚଦଣ୍ଡ ରାତି । ୧୯୧୮

ଗାଇଲେ ମଙ୍ଗଳ ଗୀତ ଗୃହୁ ସୀମନ୍ତିନୀ,
ଅତି ସୁଖମୟ ହେଲା ସେ ମଧୁଯାମିନୀ ।
ତାମ୍ବୁଲ ଘେନଲେ ସର୍ବେ କରି ଆଚମନ,
ସୁବାସିତ ମାଳା ପିନ୍ଧି ହେଲେ ବିଭୂଷଣ । ୧୯୧୯

ରାମଙ୍କୁ ଦର୍ଶନ କରି ତାଙ୍କ ଆଦେଶରେ,
ପ୍ରଣିପାତ କରି ସର୍ବେ ଗଲେ ନିଜ ଘରେ ।
ପ୍ରମୋଦ ବିନୋଦ ପ୍ରେମ ମହତ୍ତ୍ୱ ଗାରିମା,
ସେ ସମୟ ସେ ସମାଜ ମାଧୁର୍ଯ୍ୟର ସୀମା । ୧୯୨୦

କହି ନ ପାରିବେ ଶତ ଶେଷ ସରସ୍ୱତୀ,
ଗଣେଶ ମହେଶ ପୁଣି ନିଗମ ବିରଞ୍ଚି ।
କେଉଁ ଭାବେ କପରି ମୁଁ ପାରିବି ତା ବର୍ଣ୍ଣି,
କେଞ୍ଚୁଆ କି ଶିରେ ଧରି ପାରଇ ଧରଣୀ ? ୧୯୨୧

ସମ୍ମାନ-ସତ୍କାର କରି ସଭିଙ୍କୁ ରାଜନ,
କହିଲେ ରାଣୀଙ୍କୁ ଡାକି ମଧୁର ବଚନ—
ପିଲା ବୋହୂ, ଆସିଛନ୍ତି ପୁଣି ପର ଘରେ,
ରଖିବ, ରଖଇ ଯେହ୍ନେ ପଲକ ନେତ୍ରରେ । ୧୯୨୨

ଶ୍ରୀରାମ-ବିଦ୍ୱାସକ୍ତ-ପୁବେ ଶୁଆଅ ଏଥର,
ବିଶ୍ରାମ ଭବନେ ଗଲେ କହି ନୃପବର ।
ଶ୍ରୀରାମ ଚରଣେ ଚିତ୍ତ ନିବେଶି ନିରତ,
ସାନନ୍ଦେ ବିଶ୍ରାମ ନେଲେ ରାଜା ଦଶରଥ । ୧୯୬୩

ଶୁଣି ନୃପତିଙ୍କ କଥା ମଧୁର ଲଳିତ,
ପକାଇ ପଲଙ୍କ ସୁନା ମଣି ବିଖଚିତ ।
ଦୁଗ୍ଧ ଫେନ ନିଭ ସ୍ୱଚ୍ଛ ଧବଳ କୋମଳ,
ସୁପାଡ଼ି ସଜାଇ ଦେଲେ ରାଣୀଏ ଚଞ୍ଚଳ । ୧୯୬୪

ରୁଚି ଉପାଧାନ ଶୋଭା ନ ହୁଏ କଥିତ,
ସୁଗନ୍ଧିତ ମାଳା ମଣି-ମନ୍ଦିରେ ସଜ୍ଜିତ ।
ରମ୍ୟ ରତ୍ନ ଦୀପ ରୁଚି ଚନ୍ଦୁଆ ଶୋଭନ,
ଜାଣଇ ସେ, ଦେଖିଅଛି ଯାହାର ନୟନ । ୧୯୬୫

ସଜାଇ ସୁନ୍ଦର ଶେଯ ଜନନୀ ସକଳେ,
ରାମଙ୍କୁ ଉଠାଇ ଶୁଆଇଲେ ପ୍ରେମଭରେ ।
ବାରମ୍ବାର ଶ୍ରୀରାମଙ୍କ ଆଦେଶର ଫଳେ,
ଭାଇଏ ଶୋଇଲେ ନିଜ ନିଜ ଶଯ୍ୟା ପରେ । ୧୯୬୬

ନିରେଖି ଶ୍ୟାମଳ ମୃଦୁ ମଞ୍ଜୁ କଳେବର,
ସପ୍ରେମେ କହନ୍ତି ତାଙ୍କ ଜନନୀ ନିକର—
"ପୁଅରେ ବାଟରେ ଯାଉ ଅତି ଭୟଙ୍କର,
ମାରିଲୁ ତାଡ଼କା ନିଶାଚରୀକୁ କିପରି ? ୧୯୬୭

ବିକଟ ବିଷମୀ ବୀର ଦୁର୍ଦ୍ଧର୍ଷ ପାମର,
ରଣେ ନ ଗଣନ୍ତି କାହାରେ ଘୋର ନିଶାଚର ।
ସସେନା ମାରିଚ ଆଉ ସୁବାହୁକୁ ପୁଅ,
କେମନ୍ତେ ମାରି ପକାଇଲୁ କୁହ ଠିକେ କୁହ ? ୧୯୬୮

ମୁନିଙ୍କ ପ୍ରସାଦୁଁ ସିନା ରେ ଧନ ସଙ୍ଗାଳି,
ବହୁ ବହୁ ବିପଦକୁ ପ୍ରଭୁ ଦେଲେ ଟାଳି ।

ଯଜ୍ଞ ରକ୍ଷା କଲ ବନେ ମିଶି ବେନି ଭାଇ,
ଗୁରୁ କୃପା ଫଳେ ସବୁ ବେଦ୍ୟା ଗଲ ପାଇ । ୧୯୨୯

ତରିଗଲ ମୁନିପତ୍ନୀ ପାଇ ପାଦଧୂଳି,
ସୁଯଶ ରହିଲା ବ୍ୟାପି ଭୁବନ ଉଚ୍ଛୁଳି ।
କୂର୍ମ ପିଠି ସମ ଗିରି କୁଳିଶ କଠୋର,
ଶିବଧନୁ ଭାଙ୍ଗି ନୃପ ମେଳେ ପୁତ୍ର ମୋର ! ୧୯୩୦

ଲଭି ବିଶ୍ୱଜୟୀ ଯଶ, ଜନକ କୁମାରୀ,
ଆସିଲ ଭବନେ ବିଭା ହୋଇ ଭାଇ ଚାରି ।
ସକଳ ଅମାନୁଷିକ କରଣି ତୁମର,
କେବଳ କୌଶିକ କୃପା ଫଳେ ରଘୁବର । ୧୯୩୧

ଆଜ ତ ଜଗତେ ଆମ ଜନମ ସୁଫଳ,
ଦେଖି ପୁତ୍ର ଏହି ବଧୂ-ବଦନ ତୁମର,
କଟିଛୁ ଦିବସ ଯେତେ ତୁମ ଅଦର୍ଶନେ,
ଆମ ଆୟୁ ସାଥେ ଦୈବ ଯେହ୍ନେ ତା' ନ ଗଣେ ।" ୧୯୩୨

ବିନମ୍ର ବଚନେ ସବୁ ମାତାଙ୍କର ମନ,
ପରିତୋଷ କଲେ ତହିଁ ଶ୍ରୀରଘୁନନ୍ଦନ ।
ସ୍ମରି ଚରଣେ ଶିବ ଗୁରୁ ବିପ୍ରଜନ ପଦ,
ନିଦ୍ରାସକ୍ତ ହେଲେ ପ୍ରଭୁ ପରମ ଆସ୍ପଦ । ୧୯୩୩

ନିଦ୍ରିତ ବଦନ ଶୋଭା ଦିଶେ ମନୋହର,
ମୁଦ୍ରିତ କି ଅବା ସନ୍ଧ୍ୟାକାଳୀନ କମଳ !
ଗୃହେ ଗୃହେ ପୁରନାରୀ ଜଗାଇ ଜାଗର,
କରୁଥାନ୍ତି ମଧୁମୟ ଗାଳି ପରସ୍ପର । ୧୯୩୪

ରାଣୀଏ କହନ୍ତି, "ଆଜ ଦେଖ ସହଚରୀ,
ରାତି ଶୋଭା ଯୋଗେ ଶୋଭେ ଅଯୋଧ୍ୟା ନଗରୀ ।
ସୁନ୍ଦରୀ ବଧୂଙ୍କୁ ଧରି ଶାଶୁଏ ଶୋଇଲେ,
ଫଣୀ କି ଲୁଚାଏ ମଣି ହୃଦୟ-ଗହ୍ୱରେ ? ୧୯୩୫

କୁକ୍କୁଟ ରାବିଲେ ଯେବେ କରି ମଧୁ-ଧ୍ୱନି,
ଜାଗିଲେ ପବିତ୍ର ପ୍ରାତେ ରଘୁକୁଳ ମଣି ।
ଗାଇଲେ ଗାୟକ ବନ୍ଦୀ ଗୁଣ ଗଣି ଗଣି,
ଜୁହାର ହେବାକୁ ଦ୍ୱାରେ ଉଭା ପୁରବାସୀ । ୧୯୩୬

ବନ୍ଧୁ ବିପ୍ର ସୁର ଗୁରୁ ପୂଜ୍ୟ ପିତାମାତା,
ଲଭିଲେ ଆଶିଷ ତୋଷ ମନେ ସବୁ ଭ୍ରାତା ।
ଆଦରେ ଜନନୀଗଣ ଚୁମ୍ବିଲେ ବଦନ,
ନୃପତିଙ୍କ ସଙ୍ଗେ ଗଲେ ଦ୍ୱାରେ ପୁତ୍ରଗଣ । ୧୯୩୭

ସହଜେ ପବିତ୍ର ଚାରି ଭାଇ ଶୌଚ ଅନ୍ତେ,
ସରଜୁର ଜଳେ ସ୍ନାନ ସମାପନ ଗତେ,
ନୈମିତ୍ତିକ ସନ୍ଧ୍ୟା ବନ୍ଦାପନା କରି ଶେଷ,
ପିତାଙ୍କ ନିକଟେ ଆସି ହୋଇଲେ ପ୍ରବେଶ । ୧୯୩୮

ନବାହ୍ନ ପାରାୟଣ, ତୃତୀୟ ବିଶ୍ରାମ ।

ଦେଖିଲେ ତାହାଙ୍କୁ ନୃପ ଗୃହି ବକ୍ଷ ଦେଶେ,
ସେମାନେ ବସିଲେ ପାଶେ ରାଜାଙ୍କ ଆଦେଶେ ।
ସଭାସଦେ ହେଲେ ତୃପ୍ତ ରାମ ଦରଶନେ,
ନେତ୍ରଲାଭ ଶେଷ ସୀମା ଭାବିନେଲେ ମନେ । ୧୯୩୯

କୌଶିକ ବଶିଷ୍ଠ ତହିଁ ମିଳିଲେ ସେ କ୍ଷଣ,
ବସାଇଲେ ନୃପ ଦେଇ ବଶିଷ୍ଠ ଆସନ ।
ପଡ଼ିଲେ ଚରଣେ ପୂଜି ସପୁତ୍ର ନୃପତି,
ମୁନିଏ ରାମଙ୍କୁ ଦେଖି ହେଲେ ତୋଷ ମତି । ୧୯୪୦

କହିଲେ ବଶିଷ୍ଠ ନାନା ଧର୍ମ ଇତିହାସ,
ରାଣୀ ସହ ଶୁଣି ନୃପ ହୁଅନ୍ତି ଉଲ୍ଲାସ ।
କୌଶିକ ମହିମା ମୁନିମନ ଅଗୋଚର,
କହନ୍ତି ନାନାଦି ଭାବେ ପ୍ରେମେ ମୁନିବର । ୧୯୪୧

କହୁଥାନ୍ତି ବାମଦେବ, "କର୍ଷ୍ଣ ିତ ଏସନେ,
କଳିତ ଚରିତ ତାଙ୍କ ଖ୍ୟାତ ତ୍ରିଭୁବନେ ।
ଆନନ୍ଦିତ ସର୍ବେ କରି ସକଳ ଶ୍ରବଣ,
ଶ୍ରୀରାମ ଲକ୍ଷ୍ମଣ ବେନି ହୃଦେ ହର୍ଷ ମନ । ୧୯୪୨

ନିତ୍ୟ ନବ ମହୋତ୍ସବ ଆନନ୍ଦ ଉତ୍ସାହେ,
ଅଯୋଧ୍ୟାରେ ସଭିଙ୍କର ଦିନ ବିତିଯାଏ ।
ଅଧିକୁ ଅଧିକ ହୋଇ ଆନନ୍ଦ ଉଚ୍ଛୁଳେ,
ଭିଜାଇ ମଜ୍ଜାଇ ସୁଖ ପ୍ରତି ପ୍ରାଣ ପୁରେ । ୧୯୪୩

କଙ୍କଣ ଓ କରସୂତ୍ର ଶୁଭ ଅବସରେ,
ଫିଟାଇଲେ ପୁରୋହିତ ଯଥା ବିଧାନରେ ।
କୌଶିକ କରନ୍ତି ମନ ଯିବାକୁ ନାଇଁତ,
ରାମ ସବନପ୍ଯୁ ପ୍ରେମ ଏଡ଼ିବେ କେମିତି ?
ରାଜ ସ୍ନେହ ବଢ଼େ ଶତ ଗୁଣ ଦିନୁଁ ଦିନ,
ମୁନିମଣି ହୁଅନ୍ତି ଗର୍ବ ବଢ଼ାଇ ଅଧୀନ । ୧୯୪୫

ଶେଷେ ବିଶ୍ୱାମିତ୍ର ଦିନେ ମାଗନ୍ତେ ବିଦାୟ,
ସପ୍ରେମେ ସପୁତ୍ର ଆଗେ ଉଭା ହୋଇ ରାୟ,
କହିଲେ, "ହେ ନାଥ ସବୁ ସମ୍ପତ୍ତି ତୁମର,
ଆମେ ତ ସେବକ ଜନ ଏବେ ଆଜ୍ଞା କର । ୧୯୪୬

ସ୍ନେହ ରଖିଥିବ ସଦା ଏ ପୁତ୍ରଙ୍କ ପରେ,
ଦେଖା ଦେଉଥିବ ମାତ୍ର ମୋତେ ଥରେ ଥରେ ।"
ଏହା କହି ସୁତ ରାଣୀ ସହିତ ରାଜନ,
ପଡ଼ିଲେ ଚରଣେ, ମୁଖେ ନ ସ୍ଫୁରେ ବଚନ । ୧୦୪୭

ବହୁ ଆଶୀର୍ବାଦ କରି ଗଲେ ବିଶ୍ୱାମିତ୍ର,
ପ୍ରୀତି ରୀତି କେ କହିବ ଅଶାବ ବଚିତ୍ର ।
ଭାଇଙ୍କୁ ସଙ୍ଗରେ ନେଇ ରାମ ଭକତରେ,
ଫେରିଲେ ମେଲାଣି ଦେଇ ଆଜ୍ଞା ପାଇ ଶିରେ । ୧୯୪୮

ଶ୍ରୀରାମଙ୍କ ରୂପ ଶୋଭା, ଭୂପଙ୍କ ଭକତି,
ଭାଇଙ୍କ ବିବାହୋତ୍ସବ ସୁଖପ୍ରଦ ଅତି ।
ସବୁକୁ ପ୍ରଶଂସି ମନେ ଗାଧିକୁଳ ଚନ୍ଦ୍ର,
ଆଶ୍ରମେ ଫେରିଲେ ଲଭି ଅପାର ଆନନ୍ଦ । ୧୯୪୦

ବାମଦେବ ଆଉ ରଘୁକୁଳ ଗୁରୁ ଜ୍ଞାନୀ—
ବଶିଷ୍ଠ କହିଲେ ବିଶ୍ୱାମିତ୍ରଙ୍କ କାହାଣୀ ।
ମୁନିଙ୍କ ସୁଯଶ ଶୁଣି ରାଜା ମନେ ମନେ,
ନିଜ ପୁଣ୍ୟ ସୁପ୍ରଭାବ ସ୍ମରିଲେ ତତ୍କ୍ଷଣେ । ୧୯୫୦

ବାହୁଡ଼ିଲେ ସବୁ ଲୋକେ ପାଇ ରାଜାଦେଶ,
ସପୁତ୍ରେ ଭୂପତି ହେଲେ ମହଲେ ପ୍ରବେଶ ।
ଯହିଁ ତହିଁ ସର୍ବେ ରାମ ବିବାହ ଗାଆନ୍ତି,
ତ୍ରିଲୋକରେ ବ୍ୟାପିଗଲା ପବିତ୍ର ସୁଖ୍ୟାତି । ୧୯୫୧

ଯେ ଦିନୁଁ ଆସିଲେ ରାମ ବିଭା ହୋଇ ଘରେ,
ସେ ଦିନୁ ସକଳ ସୁଖ ରହିଲେ ନଗରେ ।
ପ୍ରଭୁଙ୍କ ବିବାହେ ହେଲା ଆନନ୍ଦ ଯେଉଁକି,
ଶେଷ ସରସ୍ୱତୀ ତାହା ନ ପାରିବେ କହି । ୧୯୫୨

କବିକୁଳ ଜୀବନର ପାବନ କରଣି,
ରାମ ସୀତା ଯଶ ଯାହା ମଙ୍ଗଳର ଖଣି ।
ତେଣୁ ରାମ କଥା କିଛି କହୁଛି ବଖାଣି,
ପବିତ୍ର କରିବା ପାଇଁ ଆପଣାର ବାଣୀ । ୧୯୫୩

ପବିତ୍ର କରିବା ପାଇଁ ନିଜର ରଚନା,
ରାମ ଯଶ କଥା କରେ ତୁଳସୀ ବର୍ଣ୍ଣନା ।
ଅପାର ବାରିଧି ସମ ରାମ କଥା ଏହି,
ତହିଁ ପଶି କହ ପାର ହୋଇଅଛି କେହି ?
ତାଙ୍କ ଯଜ୍ଞ ଉପବୀତ ବିବାହ ଚରିତ,
ମଙ୍ଗଳ ଉତ୍ସବ କଥା ଆଦର ସହିତ,

ଯେଉଁ ନର ନାରୀ ଶୁଣି ଅନ୍ୟେ ଶୁଣାଇବ,
ରାମ କୃପା ଫଳେ ସୁଖ ଶାନ୍ତି ସେ ପାଇବ । ୧୯୫୪

ରଘୁନାଥ ଯଶ ସଦା ମଙ୍ଗଳ ବିଧାନ,
ସେ ପୂତ ଗ୍ରନ୍ଥର ଏହି ପ୍ରଥମ ସୋପାନ ।
ରାମ-ସୀତା-ବିଭା ପ୍ରେମେ ଯେ ଶୁଣେ ଯେ ଗାଏ
ସେ ଅନ୍ତ ଉତ୍ସାହ ଭରି ସୁଖ ଶାନ୍ତି ପାଏ । ୧୯୫୫

ମାସ ପାରାୟଣ, ଦ୍ୱାଦଶ ବିଶ୍ରାମ ।

କଳିଯୁଗର ସକଳ ପାପ ନାଶକାରୀ ଶ୍ରୀରାମ ଚରିତ ମାନସର
ପ୍ରଥମ ସୋପାନ ବାଲକାଣ୍ଡ ସମାପ୍ତ ।

# ଅଯୋଧ୍ୟା କାଣ୍ଡ

## ଦ୍ୱିତୀୟ ସୋପାନ

ଯସ୍ୟାଙ୍କେ ଚ ବିଭାତି ଭୂଧରସୁତା ଦେବାପଗା ମସ୍ତକେ ।
ଭାଲେ ବାଳବିଧୁର୍ଗଳେ ଚ ଗରଳଂ ଯସ୍ୟୋରସି ବ୍ୟାଳରାଟ୍ ॥

ସୋଽୟଂ ଭୂତିବିଭୂଷଣଃ ସୁରବରଃ ସର୍ବାଧିପଃ ସର୍ବଦା ।
ଶର୍ବଃ ସର୍ବଗତଃ ଶିବଃ ଶଶିନିଭଃ ଶ୍ରୀଶଙ୍କରଃ ପାତୁ ମାମ୍ ॥

ପ୍ରସନ୍ନତା ଯା ନ ଗତାଭିଷେକତସ୍ତଥା ନ ମମ୍ଳେ ବନବାସଦୁଃଖତଃ ।
ମୁଖାମ୍ବୁଜଶ୍ରୀ ରଘୁନନ୍ଦନସ୍ୟ ମେ ସଦାସ୍ତୁ ସା ମଞ୍ଜୁଳମଙ୍ଗଳପ୍ରଦା ॥

ନୀଳାମ୍ବୁଜଶ୍ୟାମଳକୋମଳାଙ୍ଗ ସୀତାସମାରୋପିତ ବାମଭାଗମ୍ ।
ପାଣୌ ମହାଶାୟକଚାରୁଚାପଂ ନମାମି ରାମଂ ରଘୁବଂଶନାଥମ୍ ॥

## ଏକ

ଯାହାଙ୍କ ଅଙ୍କରେ ସଦା ଗିରୀଶନନ୍ଦିନୀ,
ମସ୍ତକେ ଶୋଭଇ ସୁର ଶ୍ରେଷ୍ଠ ମନ୍ଦାକିନୀ,
ଲଲାଟେ ଦ୍ୱିତୀୟା ଚନ୍ଦ୍ର, କଣ୍ଠେ ହଳାହଳ,
ବକ୍ଷେ ଶେଷଦେବ, ଅଙ୍ଗେ ଭସ୍ମ ଅବିରଳ,
ସୁରବର ସର୍ବେଶ୍ୱର ସଂହାର କରତା,
ସର୍ବବ୍ୟାପୀ ଶୁଭଙ୍କର ଶଶି-ଧବଳତା,
ସେହି ଶ୍ରୀ ଶଙ୍କର ରଖ ମୋତେ କାଳେ କାଳେ,
ମୋ ମାନସ-ରସ ତବ ପଦେ ମୁହିଁ ଢାଳେ । ୧

ଅଭିଷେକ ବାର୍ତ୍ତାରେ ଯା' ନୁହେଁ ହରଷିତ,
ଅମଳିନ ବନବାସ ବିଷାଦ ଜନିତ,
ସେ ଶ୍ରୀରାମ-ମୁଖପଦ୍ମ ଶୋଭାର ସଦନ,
ମଞ୍ଜୁଳ ମଙ୍ଗଳପ୍ରଦ କରୁ ମୋ ଜୀବନ । ୨

ନୀଳପଦ୍ମ ସମ ଅଙ୍ଗ ଶ୍ୟାମଳ କୋମଳ,
ବାମଭାଗେ ବିରାଜିତା ସୀତା ଯାହାଙ୍କର,
କରେ ଶୋଭେ ଯାହାଙ୍କର ଚାପ ମନୋହର,
ନମେ ରଘୁକୁଳନାଥ ଶ୍ରୀରାମ ପଯ୍ୟର । ୩

ଗୁରୁ ପାଦ-ପଦ୍ମ ରଜେ ମୋ ମନ-ମୁକୁର,
ସ୍ୱଚ୍ଛ ନିରମଳ କରି ରଚେ ସୁମଧୁର,
ରାମ ଯଶ ସୁବିମଳ ପରମ ପାବକ,
ଧର୍ମ ଅର୍ଥ କାମ ମୋକ୍ଷ ଫଳ ପ୍ରଦାୟକ । ୪

ବିବାହ ହୋଇ ରାମ ଯେବେ ଗୃହେ ଉପଗତ,
ସେ ଦିନୁଁ ମଙ୍ଗଳ ମୋଦ ବଢ଼ଇ ନିଯୂତ ।
ଚଉଦ ଭୁବନ ପୂରି ଉଚ୍ଚ ପରବତେ,
ସୁକୃତ-ବଉଦ ଢାଳେ ସୁଖ-ବାରି ସତେ ! ୫

ଋଦ୍ଧି ସିଦ୍ଧି ସୁସମ୍ପତ୍ତି ବର୍ତ୍ତି ନଦୀ ପରି,
ଅଯୋଧ୍ୟା-ସିନ୍ଧୁରେ ଯାଇ ମିଳିଲେ ଯେପରି ।
ସୁଜାତି ସରସ ମଣି ସମ ନାରୀ ନର,
ହେଲେ ସବୁମନ୍ତେ ଶୁଚି ଅମୂଲ୍ୟ ସୁନ୍ଦର । ୬

ନଗର ବିଭୂତି କିଛି କହି ନ ହୁଅଇ,
ସତେ କି ଏତିକି ବିଧି କୃତିତ୍ୱ ଅଟଇ ।
ସକଳ ଭାବରେ ଖୁସି ପୁରବାସୀ ଜନ,
ନିରେଖି ଶ୍ରୀରାମଚନ୍ଦ୍ର ଚନ୍ଦ୍ରମା-ବଦନ । ୭

ହରଷିତ ହେଲେ ମାତା ସଖୀ ସହଚରୀ,
ଦେଖି ମନୋରଥ-ଲତା ଫଳ ଅଛି ଧରି ।
ରାମ ରୂପ ଗୁଣ ଶୀଳ ସ୍ୱଭାବ ସକଳ,
ଦେଖି ଶୁଣି ପ୍ରମୋଦିତ ଅଯୋଧ୍ୟାଧୀଶ୍ୱର । ୮

ସଭିଙ୍କ ହୃଦୟେ ଏବେ ଏକଇ କାମନା,
ସିଦ୍ଧି ଆଶେ ମହେଶଙ୍କୁ କରନ୍ତି ପ୍ରାର୍ଥନା—
ଜୀଇଁ ଥାଉ ଥାଉ ଯେହ୍ନେ ଅଯୋଧ୍ୟାରାଜନ,
ଶ୍ରୀରାମଙ୍କୁ ଦେବେ ଯୁବରାଜଙ୍କ ଆସନ । ୯

ସଭା ପରିଷଦ ସହ ରାଜା ଦଶରଥ,
ରାଜ ସଭା ମଧ୍ୟେ ଦିନେ ଥିଲେ ଉପଗତ ।
ନିଜେ ପୁଣ୍ୟ ପ୍ରତିମୂର୍ତ୍ତି, ଶ୍ରୀରାମ ସୁଯଶ,
ଶୁଣି ଶୁଣି ହୃଦୟରେ ହୋଇଲେ ହରଷ । ୧୦

ଇଚ୍ଛନ୍ତି ତାଙ୍କରି କୃପା ଅନ୍ୟ ରାଜାଗଣ,
ଲୋକପାଳେ କରୁଥାନ୍ତି ପ୍ରୀତି ସମ୍ପାଦନ ।

ତ୍ରିଭୁବନେ ତିନକାଳେ ଅତି ଭାଗ୍ୟବାନ,
ଆଉ କେ ନାହାନ୍ତି ଦଶରଥଙ୍କ ସମାନ । ୧୧

ମଙ୍ଗଳର ମୂଳ ରାମ ଯାହାଙ୍କ ତନୟ,
ତାଙ୍କ ପାଇଁ ଯାହା କୁହ ଅଳପ ନିଶ୍ଚୟ ।
ସ୍ୱାଭାବିକ ଭାବେ ହାତେ ଧରି ଦରପଣ,
ମୁଖ ଦେଖି ସଳଖିଲେ ମୁକୁଟ ରାଜନ । ୧୨

କଳା ବାଳ ହୋଇଲାଣି ଧଳା କାନ ପାଶେ,
ଏଥିରେ କି ଏହି ଜରା ଉପଦେଶ ଆସେ—
ହେ ରାଜା ରାମକୁ ଦେଇ ଯୁବରାଜ ପଦ,
ଜନମ ଜୀବନ କାହିଁ ନ କର ସୁଖଦ ? । ୧୩

ମନେ ଏ ବିଚାର ଆଣି ରାଜା ଦଶରଥ,
ଶୁଭ ଦିନ ଶୁଭ ବେଳା କରିଲେ ମନସ୍ଥ ।
ପ୍ରେମ ପୁଲକିତ ତନୁ ଆନନ୍ଦ ମନରେ,
ଗୁରୁ ବଶିଷ୍ଠଙ୍କୁ ଏହା ଶୁଣାଇଲେ ଖରେ । ୧୪

କହିଲେ, "ନୃପତି ଶୁଣ ହେ ମୁନି ପ୍ରବର,
ଯୋଗ୍ୟ ସବୁମତେ ଏବେ ରାମ ରଘୁବର ।
ସେବକ ସଚିବ ସବେ ଏହି ପୁରବାସୀ,
ଯେ ଆମର ଶତ୍ରୁ ମିତ୍ର ଅବା ଯେ ଉଦାସୀ । ୧୫

ସମସ୍ତଙ୍କୁ ରାମ ପ୍ରିୟ ମୋ ଭିତ ଯେଉଁପରି,
ତବ ଶୁଭାଶିଷ ଯେହ୍ନେ ଶୋଭେ ତନୁଧରି ।
ସକଳ ସପରିବାର ବିପ୍ର ମୁନିରାୟେ,
କରନ୍ତି ତାହାକୁ ସ୍ନେହ ଆପଣଙ୍କ ପ୍ରାୟେ । ୧୬

ଶ୍ରୀ ଗୁରୁ-ଚରଣ-ରେଣୁ ମସ୍ତକେ ଯେ ଧରେ,
ସବୁ ବିଭବକୁ ସିଏ ନିଜ ବଶ କରେ ।
ମୋ ସମାନ ଅନୁଭବ ଆଉ କେହି ନାହିଁ,
ତବ ପଦ-ରଜ ପୂଜି ସବୁ ଅଛି ପାଇ । ୧୭

ଏକ ଅଭିଳାଷ ପ୍ରଭୁ ଏବେ ମୋ ମନରେ,
ପୂର୍ଣ୍ଣ ହେବ ତାହା ସିନା ତବ କୃପା ବଳେ ।”
ରାଜାଙ୍କ ସହଜ ପ୍ରେମ ନିରେଖି ମୁନିଶ,
ହରଷେ କହିଲେ, “ହେଉ କୁହ ଅବନୀଶ” । ୧୮

ହେ ରାଜା ତୁମର ନାମ ଆଉ ଯଶ ସିନା,
ପୂରଣ କରଇ ସବୁ ପ୍ରଜାଙ୍କ କାମନା ।
ଜାଗିବା ଆଗରୁ କିଛି ଇଚ୍ଛା ତୁମ ମନେ,
ପୂର୍ଣ୍ଣ ହୋଇଯାଏ ତାହା ମହୀପ ତତ୍‌କ୍ଷଣେ ।” ୧୯

ସକଳ ପ୍ରକାରେ ଜାଣି ଗୁରୁ ସୁପ୍ରସନ୍ନ,
ହରଷେ କହିଲେ ନୃପ କୋମଳ ବଚନ-
“ରାମକୁ କରନ୍ତୁ ପ୍ରଭୁ ଯୁବରାଜ ଏବେ,
କୃପା କଲେ ସାଜସଜ୍ଜା କରାଇବି ତେବେ । ୨୦

ମୋର ଥାଉ ଥାଉ ମୁହିଁ ହେଲେ ଏ ଉତ୍ସବ,
ଲଭିବେ ନୟନ ଲାଭ ଲୋକେ ହେ ପୁଙ୍ଗବ ।
ତୁମରି ପ୍ରସାଦେ ଶିବ ଦେଇଛନ୍ତି ସବୁ,
କେବଳ ଲାଳସା ଏକ ମନେ ମୋର ପ୍ରଭୁ । ୨୧

ରହିବ କି ନାହିଁ ଦେହ—ସେହି ଚିନ୍ତା ମନେ,
ପଛେ ଅନୁତାପ ଆଉ ନ ହେବ ଜୀବନେ ।”
ରାଜାଙ୍କ ମଙ୍ଗଳମୟ ମଧୁକଥା ଶୁଣି,
ଅଶେଷ ଭାବରେ ତୋଷ ହେଲେ ମହାମୁନି । ୨୨

“ଯା’ ଠାରେ ବିମୁଖ ହେଲେ ହୁଏ ଅନୁତାପ,
ଶୁଣ ରାଜା ଯା’ ଭଜନ ବିନା ହୁଏ ତାପ ।
ସେ ସ୍ୱାମୀ ତନୟ ହୋଇ ଅଛନ୍ତି ତୁମର,
ପବିତ୍ର ପ୍ରେମର ରାମ ଶିବ ସହଚର । ୨୩

ହେ ରାଜନ ଅବିଳମ୍ବେ କର ଆୟୋଜନ,
ସଜାଅ ସମାଜ ସବୁ ଯଥା ପ୍ରୟୋଜନ ।

ଯୁବରାଜ ହେବେ ରାମ ଯେତେବେଳେ ଜାଣ,
ସେହି ତ ମଙ୍ଗଳ ଶୁଭ ବେଳା ଏ ପ୍ରମାଣ ।" ୨୪

ନଅରେ ଆସିଲେ ରାଜା ଆନନ୍ଦିତ ମନେ,
ଡାକିଲେ ସେବକେ ମନ୍ତ୍ରୀ ସୁମନ୍ତ୍ର ତତ୍କ୍ଷଣେ ।
ସେମାନେ "ଯେ ଆଜ୍ଞା" କହି କଲେ ପ୍ରଣିପାତ,
ଶୁଣାଇଲେ ଏହି ଶୁଭ କଥା ନରନାଥ । ୨୫

ପଞ୍ଚଙ୍କୁ ପସନ୍ଦ ଯେବେ ଏହି କଥା ହୁଏ,
ରାମଙ୍କୁ ତିଳକ ଦିଅ ହରଷ ହୃଦୟେ । ୨୬

ହେଲେ ପ୍ରମୋଦିତ ମନ୍ତ୍ରୀ ଶୁଣି ପ୍ରିୟବାଣୀ,
ଇଚ୍ଛା-ଅଙ୍କୁରେ କି ସତେ ପଡ଼ିଗଲା ପାଣି ।
ବେନି କର ଯୋଡ଼ି ମନ୍ତ୍ରୀ କରନ୍ତି ବିନତି,
ଜୀବିତ ରହନ୍ତୁ କୋଟି ବର୍ଷ ମହୀପତି । ୨୭

ଅଖିଳ ଜଗତ ହିତେ ବିଚାର ଉତ୍ତମ,
ବିଳମ୍ବ ନ କରି ଶୀଘ୍ର କର ନରୋତ୍ତମ ।
ମନ୍ତ୍ରୀ ପ୍ରିୟ କଥା ଶୁଣି ହରଷ ରାଜନ,
ବର୍ଦ୍ଧିତା ଲତାରେ ଡାଳ ମେଲିଲା ଯେସନ । ୨୮

କହିଲେ ନୃପତି ହୋଇ ହରଷ ଅନ୍ତର,
"ରାମ ରାଜ ଅଭିଷେକ ପାଇଁ ମୁନିବର,
ଦେଇଛନ୍ତି ଯେଉଁ ଯେଉଁ ଆଦେଶ ଯେପରି,
ବିଳମ୍ବ ନ କରି କର ସବୁ ସେହିପରି ।" ୨୯

କହିଲେ ହରଷେ ମୁନିବର ମୃଦୁବାଣୀ,
ଆଣ ଏବେ ଯେତେ ସବୁ ଶ୍ରେଷ୍ଠ ତୀର୍ଥ ପାଣି ।
ନାନାବିଧ ଔଷଧ ମୂଳ ଫୁଲ ପତ୍ର ଫଳ,
ଗଣି ବତାଇଲେ ଶୁଭ ଦରବ ସକଳ । ୩୦

ବସନ ଚାମର ଚର୍ମ ରେଶମ ପଶମ,
ମୁନୀଶ କହିଲେ ଚିହ୍ନ ନାନାବିଧ ରକମ ।

ମାଙ୍ଗଳିକ ମଣିରାଜି ଧରିବ ଅନେକେ,
ଯା' ସବୁ ଜଗତେ ଲୋଡ଼ା ରାଜ ଅଭିଷେକେ । ୩୧

ବେଦ ବିଧି ଅନୁସାରେ ସକଳ ବିଧାନ,
କହିଲେ ମଣ୍ଡପମାନ କରିବ ନିର୍ମାଣ ।
କଦଳୀ ସୁପାରି ଆମ୍ବ ଫଳ ସରାନତ,
ରୋପଣି କରିବ ପ୍ରତି ଗଳିରେ ତୁରନ୍ତ । ୩୨

ଚତୁଃଷ୍କୋଣମାନ ରଚ ମଞ୍ଜୁଳ ମଣିରେ,
ବଜାର ସଜାଇବାକୁ କହିବ ପ୍ରୀତିରେ ।
ପୂଜ କୁଳ-ଇଷ୍ଟଦେବ ଗୁରୁ ଗଣପତି,
ବିପ୍ର ବ୍ରାହ୍ମଣଙ୍କୁ ସେବା କରିବ ସମ୍ପ୍ରତି । ୩୩

ସଜାଅ ପତାକା ଧ୍ୱଜା କଳସ ତୋରଣ,
ସୁସଜ୍ଜିତ କର ରଥ ଅଶ୍ୱ ହସ୍ତୀଗଣ ।
ବଶିଷ୍ଠଙ୍କ ବଚନକୁ ଧରି ଶିର ପରେ,
ଲାଗିଗଲେ ସର୍ବେ ନିଜ ନିଜର କାମରେ । ୩୪

ଯାହାଙ୍କୁ ମୁନୀଶ ଦେଲେ ଯେପରି ଆଦେଶ,
ସେ ଯେହ୍ନେ ସେ କାମ ଆଗୁଁ କରିଛନ୍ତି ଶେଷ ।
ବିପ୍ର ସାଧୁ ପଣ୍ଡିତଙ୍କୁ ପୂଜିଲେ ନୃପତି,
ରାମଙ୍କ ନିମନ୍ତେ ଶୁଭ କର୍ମ ଆଚରନ୍ତି । ୩୫

ରାମ ଶୁଭ ଅଭିଷେକ ଶୁଣିଲେ ସକଳ,
ଘନ ବାଦ୍ୟେ ଅଯୋଧ୍ୟାରେ ପଡ଼ିଲା ଚହଳ ।
ରାମ ସୀତା ଅଙ୍ଗେ ଶୁଭ ଶକୁନ ଜନ୍ମଇ,
ଅଙ୍ଗେ ସୁମଙ୍ଗଳ କେତେ ସ୍ପନ୍ଦନ ଜାଗଇ । ୩୬

ସପୁଲକେ ପ୍ରେମେ ବେନି କଲେ କଥାଭାଷା,
ଏ ଶକୁନ ଭରତର ଆଗମନ ଆଶା ।
ବହୁତ ଦିନରୁ ତାକୁ ଭେଟିବାକୁ ମନ,
ଏ ଶକୁନ ସୂଚୁଅଛି ସ୍ୱଜନ ମିଳନ । ୩୭

ଜଗତେ ଭରତ ସମ ମୋ ପ୍ରିୟ କେ ଅଛି ?
ଏହି ତ ଶକୁନ ଫଳ, ଅନ୍ୟ ନୁହେ କିଛି ।
ଦିବସ ରଜନୀ ଭାଇ ଚିନ୍ତା ରାମ ମନେ,
ଅଣ୍ଡା ପରେ କଚ୍ଛପର ହୃଦୟ ଯେସନେ । ୩୮

ଏ ଶୁଭ ସମ୍ବାଦ ଶୁଣି ରାଣୀ ଅନ୍ତଃପୁର,
ଅଶେଷ ଆନନ୍ଦେ ହୋଇ ଉଠିଲେ ଉତ୍ଫୁଲ୍ଲ ।
ସତେ ଶଶୀ ବୃଦ୍ଧି ଦେଖି ଉଚ୍ଛଳ ଲହରୀ—
ବିଳାସ ଶୋଭଇ ସିନ୍ଧୁ ବୁକେ ଯେଉଁ ଭଳି । ୩୯

ଏ କଥା ଯେ ଶୁଣାଇଲେ ପ୍ରଥମେ ନଅରେ,
ଭୂଷଣ ବସନ ବହୁ ପାଇଲେ ଆଦରେ ।
ପ୍ରେମେ ପୁଲକିତ ତନୁ ମନ ଶରଧାରେ,
ଶୁଭ କୁମ୍ଭ ସବୁ ଥାପି ଲାଗିଲେ ଦୁଆରେ । ୪୦

ଲିପିଲେ ସୁନ୍ଦର ଚିତ୍ରା ସୁମିତ୍ରା ଜନନୀ,
ତହିଁରେ ଖଞ୍ଜିଲେ ପୁଣି ନାନାବିଧ ମଣି ।
ରାମ ମାତା କଉଶଲ୍ୟା ପ୍ରମୋଦିତ ମନେ,
ବହୁ ଦ୍ରବ୍ୟ କଲେ ଦାନ ଡକାଇ ବ୍ରାହ୍ମଣେ । ୪୧

ପୂଜିଲେ ଦେବତା ନାଗ ଗ୍ରାମ ଦେବାଦେବୀ,
ମନାସିଲେ କାର୍ଯ୍ୟ ସିଦ୍ଧି ପରେ ଭୋଗ ଦେବି ।
ରାମର କଲ୍ୟାଣ ହେବ ଯେପରି ଭାବରେ,
ଦୟାକରି ସେହି ବର ଦିଅନ୍ତୁ ମୋ କରେ । ୪୨

ଗାଇଲେ ମଙ୍ଗଳ ଗୀତ କୋକିଳ-ବଚନୀ,
ଚନ୍ଦ୍ରମା ବଦନୀ ମୃଗ-ଶାବକ-ନୟନୀ । ୪୩

ଶୁଣି ରାମ ଅଭିଷେକ ହରଷ ହୃଦୟେ,
ନର ନାରୀ ବିଚାରିଲେ ବିହି ଶୁଭ ହୁଏ ।
ତେଣୁ ସଜାଇଲେ ଯେତେ ସୁମଙ୍ଗଳ ସାଜ,
ଶ୍ରୀରାମ ହୋଇବେ ବୋଲି ଏବେ ଯୁବରାଜ । ୪୪

ଏହା ପରେ ବଶିଷ୍ଠଙ୍କୁ ନୃପତି ଡକାଇ,
ପଠାଇଲେ ରାମ କକ୍ଷେ ଯଥା ଶିକ୍ଷା ପାଇଁ ।
ଗୁରୁଙ୍କ ଆସିବା କଥା ଶୁଣି ରଘୁନାଥ,
ଦ୍ୱାରେ ଆସି ପଦ ତଳେ କଲେ ପ୍ରଣିପାତ । ୪୫

ନେଲେ ଗୃହେ ସମାଦରେ କରି ଅର୍ଘ୍ୟଦାନ,
ଷୋଡ଼ଶୋପଚାରେ ପୂଜ କରିଲେ ସମ୍ମାନ ।
ସୀତା ସହ ନିଜେ ଛୁଇଁ ଚରଣ ଯୁଗଳ,
କହିଲେ ଶ୍ରୀରାମ ଯୋଡ଼ି ଶ୍ରୀକର-କମଳ । ୪୬

"ଯଦବା ସେବକ ଗୃହେ ସ୍ୱାମୀ ଆଗମନ,
ଶୁଭ ଫଳଦାୟୀ ତଥା ଅଶୁଭ ନାଶନ,
ତଥାପି ହେ ନାଥ ପ୍ରେମେ ଡକାଇ ସେବକେ,
କାର୍ଯ୍ୟ ପାଇଁ ଆଜ୍ଞା ଦେବା—ଏ ନୀତି ମୂଳକେ । ୪୭

କିନ୍ତୁ ପ୍ରଭୁ ସ୍ନେହ କରି ତେଜି ପ୍ରଭୁ-ପଣ,
ପବିତ୍ର ହୋଇଲା ତେଣୁ ଆଜି ଏ ଭବନ ।
ଗୋସାଇଁ ଆଦେଶ ହେଉ କରିବି ପାଳନ,
ସ୍ୱାମୀ ସେବା ସେବକର ଲାଭ ଅନୁକ୍ଷଣ ।" ୪୮

ରାମ ପ୍ରେମ-ସିକ୍ତ ବାଣୀ ଶୁଣି ମୁନିବର,
ପ୍ରଶଂସି କହିଲେ ଏହି କଥା ମନୋହର ।
'ରାମ ନ କହିବ କିଆଁ ଏସନ ବଚନ,
ତୁମେ ଯେ ଦିନେଶ ସୂର୍ଯ୍ୟ-ବଂଶ ବିଭୂଷଣ ।' ୪୯

ଶ୍ରୀରାମ ସ୍ୱଭାବ ଗୁଣ ଶୀଳ ପରଶଂସି,
କହିଲେ ମୁନୀଶ କଥା ପ୍ରେମ ଭରେ ହସି ।
ସଜାଇ ଅଛନ୍ତି ରାଜା ଅଭିଷେକ ସାଜ,
ଚାହାନ୍ତି ତୁମକୁ କରିବାକୁ ଯୁବରାଜ । ୫୦

ସକଳ ସଂଯମ ବ୍ରତ କର ଆଜି ରାମ,
କୁଶଳେ ସମ୍ପନ୍ନ ହେବ ଯେହ୍ନେ ସବୁ କାମ ।

ଶିକ୍ଷା ଦେଇ ଗୁରୁ ଗଲେ ନୃପତିଙ୍କ ପାଶେ,
ଶୁଣି ରାମ ହୃଦୟରେ ଏଇ ଖେଦ ଆସେ । ୫୧

ଏକ ସାଥେ ସବୁ ଭାଇ ହୋଇଲୁ ଜନମ,
ବାଲ କ୍ରୀଡ଼ା କଉତୁକ ଭୋଜନ ଶୟନ,
କର୍ଣ୍ଣବେଧ ଉପବୀତ ଗ୍ରହଣ, ବିବାହ,
ସବୁ କର୍ମ ଏକ ସଙ୍ଗେ ହୋଇଛି ନିର୍ବାହ । ୫୨

ଏ ନିର୍ମଳ ବଂଶେ ଏକ ଅନୁଚିତ କଥା,
ଜ୍ୟେଷ୍ଠ ଅଭିଷେକ ତେଜି କନିଷ୍ଠେ ସର୍ବଦା ।
ପ୍ରଭୁଙ୍କ ସପ୍ରୀତି ଅନୁତାପ ମନୋହର,
କୁଟିଳତା କରୁ ଦୂର ଭକତ ଜନର । ୫୩

ସେ କାଳେ ଆସିଲେ ତହିଁ ସୁମିତ୍ରାନନ୍ଦନ,
ଅଶେଷ ଆନନ୍ଦେ ଆଉ ପ୍ରେମେ ନିମଗନ ।
ରଘୁକୁଳ-କୁମୁଦେନ୍ଦୁ ରାମ ସେଇ କ୍ଷଣେ,
ଆଦର ସତ୍କାର କଲେ ସୁପ୍ରିୟ ବଚନେ । ୫୪

ବହୁତ ପ୍ରକାର ବାଜା ବାଜଇ ନଗରେ,
ସେ ପୁର ପ୍ରମୋଦ କିଏ ବର୍ଣ୍ଣିବ ମୁଖରେ ?
ଭରତଙ୍କ ଆଗମନ ଗୃହାନ୍ତି ସଭିଏଁ,
ବେଗି ଆସି ନେତ୍ର ଫଳ ପାଇଯିବେ ସିଏ । ୫୫

ହାଟ ବାଟ ଗୃହ ଗଳି ଛୁଟରେ ଘାଟରେ,
ନର ନାରୀ କଥାବାର୍ତ୍ତା ହେଲେ ପରସ୍ପରେ ।
କାଲି କେତେବେଳେ ଶୁଭ ମୁହୂର୍ତ୍ତ ଆସିବ,
ଆମ ଅଭିଳାଷ ପୂର୍ଣ୍ଣ ଦଇବ କରିବ । ୫୬

ଜାନକୀ ସହିତେ ରାମ ସିନା ସିଂହାସନେ,
ବସିଲେ ପୂରିବ ଅଭିଳାଷ ସେ ଲଗନେ ।
ଏକଲେ କହନ୍ତି ହେବ କେତେବେଳେ କାଳି,
ଦୁଷ୍ଟ ମନାସନ୍ତି ତେଣେ ଦେବତା କୁଚାଳି । ୫୭

ଅଯୋଧ୍ୟା ଆନନ୍ଦ ତାଙ୍କ ମନ ନ ଛୁଅଇଁ,
ଚୋରକୁ ଚନ୍ଦ୍ରମା ରାତି ଯେପରି ଲାଗଇ ।
ତହୁଁ ଶାରଦାଙ୍କ ପାଶେ କଲେ ନିବେଦନ,
ବାର ବାର ପଦ ତଳେ ଲୋଟି ଦେବଗଣ । ୫୮

ଆମରି ବିପତ୍ତି ବଡ଼ ନିରେଖି ଗୋ ମାତ,
ଆଜ କରି ଏହିପରି, ଯେହ୍ନେ ସୀତାନାଥ—
ରାମଚନ୍ଦ୍ର ରାଜ୍ୟ ତେଜି ଯିବେ ଘୋର ବନେ,
ଆଉ ସୁର କାର୍ଯ୍ୟ ସିଦ୍ଧି ହୋଇବ ଯେସନେ । ୫୯

ସୁରଙ୍କ ବିନୟେ ହେଲେ ଠିଆରେ ଅଶାନ୍ତି,
ହାସ୍ୟ ପଦ୍ମ-ବନକୁ ମୁଁ ହେଲି ହିମରାତି ।
ଦେଖି ଦେବେ ପୁଣି ତାଙ୍କୁ କହିଲେ ବିମତେ,
ମା'ଗୋ ତବ ଦୋଷ ଏଥି ନ ହେବ କିଞ୍ଚିତେ । ୬୦

ହରଷ ବିଷାଦହୀନ ଶ୍ରୀ ରଘୁନନ୍ଦନ,
ତୁମେ ଜାଣ ରାମଙ୍କର ପ୍ରଭାବ କଅଣ ।
କର୍ମ ବଶେ ଜୀବ ହୁଏ ସୁଖ ଦୁଃଖ ଭାଗୀ,
ସଅଳ ଅଯୋଧ୍ୟା ଯାଅ ଦେବ ହିତ ଲାଗି । ୬୧

ବାରମ୍ବାର ପଦେ ପଡ଼ି ଦେବତା ନିକର,
ସଙ୍କୋଚରେ ପକାଇଲେ ବାଣୀଙ୍କୁ ଆବର ।
ଦେବତାଙ୍କ ଖଳ ବୁଦ୍ଧି ବିଚାରି ହୃଦୟେ,
ଗଲେ ଦେବୀ ବୀଣାପାଣି ଭାବି ନିଃସଂଶୟେ—
ଉଚ୍ଚେ ବାସ ସିନା ତାଙ୍କ ନୀଚ ମନୋବୃତ୍ତି,
ଦେଖି ନ ପାରନ୍ତି କେବେ ପରର ବିଭୂତି । ୬୨

କିନ୍ତୁ ଆଗ କାମ କଥା କରି ବିବେଚନା—
ଚତୁର କବିଏ ମୋତେ କରିବେ କାମନା ।
ଭାବି ହର୍ଷ ହୃଦେ ଗଲେ ଦଶରଥ ବାସେ,
ସତେ ଅତି ଦୁଃଖଦାୟୀ ଗ୍ରହ ଦଶା ଆସେ । ୬୩

ଥିଲା କୈକେୟୀଙ୍କ ଏକ ଦାସୀ ମନ୍ଦମତି,
ମନ୍ଥରା ତା' ନାମ, ତାକୁ ଦେବୀ ସରସ୍ୱତୀ,
ଅପଯଶ-ପେଡ଼ି କରି ଜଗତ ଆଗରେ,
ତା'ର ବୁଦ୍ଧି ଭ୍ରଂଶ କରି ଦେଇ ଗ୍ଭଲଗଲେ । ୨୪

ପୁର ସାଜସଜ୍ଜା ଯେବେ ଦେଖିଲା ମନ୍ଥରା,
ସୁମଙ୍ଗଳ ବାଦ୍ୟ ବାଜ କମ୍ପେ ବସୁନ୍ଧରା,
ପଗ୍ଭରେ ଲୋକଙ୍କୁ ହୁଏ ଏ ଉତ୍ସବ କାହିଁ ?
ରାମ ଅଭିଷେକ ଶୁଣି ଜଳି ଉଠେ ହିଆ । ୨୫

ବିଗ୍ଭର କରଇ ମନେ କୁମତି କୁଜାତି,
ବିଗିଡ଼ିବ କେଉଁରେ ସବୁ କାମ ରାତାରାତି ।
ମଧୁଫେଣା ଦେଖି ଯେଉଁରେ କୁଟିଳା ଶବରୀ,
ଉପାୟ ଖୋଜଇ ଦେବ ଆଘାତ କପଟ୍ଟ । ୨୬

ଉଦାସ ହୋଇ ସେ ଗଲା ଭରତ ମା' କତି,
ଉଦାସ କାରଣ ହସି ରାଣୀ ପଗ୍ଭରନ୍ତି ।
ଉତ୍ତର ନ ଦେଇ ଦୀର୍ଘ ନିଃଶ୍ୱାସ ଛାଡ଼ଇ,
ନାରୀର ଚରିତ କରି ଲୋତକ ଢାଳଇ । ୨୭

କୈକେୟୀ କହିଲେ ହସି, "ତୋ ଗାଲୁ କାରଣ,
ମନେହୁଏ କିଛି ଦଣ୍ଡ ଦେଇଛି ଲକ୍ଷ୍ମଣ ।"
ତଥାପି ନ କହି କଥା ପୋଇଲୀ ପାପିନୀ,
ଛାଡ଼ଇ ନିଃଶ୍ୱାସ ଯେଉଁରେ କାଳ ଭୁଜଙ୍ଗିନୀ । ୨୮

ସଭୟେ କହିଲେ ରାଣୀ, "କହୁନୁ କମ୍ପାଇ,
କୁଶଳେ ଅଛନ୍ତି କି ରାମ ନରସାଇଁ ?
ଲକ୍ଷ୍ମଣ ଭରତ ଆଉ ଶତ୍ରୁଘ୍ନ ସମସ୍ତେ ?"
କୁବୁଜା ତା' ଶୁଣି ପୀଡ଼ା ପାଏ ହୃଦଗତେ । ୨୯

"କିଏ ଅବା ଦଣ୍ଡ ଦେବ ମୋତେ ବା କପାଇଁ,
ଗାଲୁ ବା କରିବି କହ କାହା ବଳ ପାଇ ?

ରାମକୁ ଛାଡ଼ିଲେ କା'ର କୁଶଳ ବା ଆଜ,
ଯାହାକୁ ନରେଶ କରୁଛନ୍ତି ଯୁବରାଜ । ୭୦

ଆଜ କୌଶଲ୍ୟାକୁ ବିଧି ଅତି ଅନୁକୂଳ,
ଦେଖି ତାହା ଛାତି ତା'ର ଗରବେ ଉତ୍‌ଫୁଲ୍ଲ ।
ନିଜେ ଯାଇ ସବୁ ଶୋଭା ଦେଖୁନ କାହିଁକି ?
ତା' ଦେଖି ମୋ ମନେ ଦୁଃଖ ହୋଇବ ନାହିଁକି ? ୭୧

ପୁତ୍ର ଯେ ବିଦେଶେ ଅଛି ଶୋଚନା ତୋ ନାହିଁ,
ଜାଣନ୍ତେ କି ସ୍ୱାମୀ ଆମ ବଶରେ ବା ଥାଇ ।
ଭୁଲା ଶେଯେ ନିଦ ଯିବା ସଉକ ତୋହର,
ଲକ୍ଷ୍ୟ ନ କରୁଛୁ ନୃପ କପଟ ଚତୁର ।" ୭୨

ମନ କଳୁଷିତ ଜାଣି ମିଠା କଥା ଶୁଣି,
ଉହୁଁ କି କହିଲେ ରାଣୀ, "ଆଲୋ ରହ ତୁନି ।
ଆଲୋ ଘରପୋଡ଼ି ଆଉ କହିବୁ ତୁ ଯେବେ,
ଉପାଡ଼ି ଆଣିବି ତୋ'ର ଜିଭ ଧରି ତେବେ । ୭୩

କୁଜା କେମା ଜଡ଼ା ଜାଣ କୁଟିଳ କୁମତି,
ତହିଁ ନାରୀ ପୁଣି ବିଶେଷରେ ଦାସୀ ଅତି..."
ଭରତ ଜନନୀ କହି କେବଳ ଏତିକି,
ହସିଲେ ଥରକୁ ଥର ମୁରୁକି ମୁରୁକି । ୭୪

"ପ୍ରିୟବାଦିନୀ ମୁଁ କହେ ତୋର ଶିକ୍ଷା ପାଇଁ,
କୋହିଲେ ତୋ ପ୍ରତି ସ୍ୱପ୍ନେ ରୋଷ ତିଳେ ନାହିଁ ।
ସେ ହେବ ସୁଦିନ ଶୁଭ ଦାୟକ ମୋହର,
ଏ ବଚନ ଯେବେ ସତ୍ୟ ହୋଇବ ତୋହର । ୭୫

ବଡ଼ ଭାଇ ପ୍ରଭୁ ସାନ ଭାଇ ଅନୁଚର,
ସୂର୍ଯ୍ୟ-ବଂଶ କୁଳ ରୀତି ଅତି ମନୋହର ।
ସତେ ରାମ ଅଭିଷେକ ହେବ କାଲି ଯଦି,
ମନ ଇଚ୍ଛା ବର ମାଗ ଦେବି ଲୋ ମନ୍ଥରା । ୭୬

କୌଶଲ୍ୟାଙ୍କ ପରି ଆଉ ସବୁ ମାତାଙ୍କର
ରାମ ପ୍ରିୟ ଯେଣୁ ତା'ର ସ୍ୱଭାବ ସୁନ୍ଦର ।
ଅଶେଷ ସିନେହ ତା'ର ମୋ'ଠି ରହିଛି,
ଅନେକ ପରୀକ୍ଷା କରି ମୁଁ ନିଜେ ଦେଖିଛି । ୭୭

ବିଧାତା ସୁଦୟା କରି ଦେଇଛନ୍ତି ଜନମ,
ରାମ-ସୀତା, ପୁତ୍ର ପୁତ୍ର-ବଧୂ ଅନୁପମ ।
ପ୍ରାଣରୁ ଅଧିକ ପ୍ରିୟ ରାମ ଯେ ମୋହର,
ତା'ର ଅଭିଷେକେ ଦୁଃଖ କିମ୍ପାଇଁ ତୋହର ? । ୭୮

ଆଲୋ ଲୋ ମନ୍ଥରା ତୋତେ ଭରତର ରାଣ,
କପଟ ତିଆଗି କହ ସତ କଥାମାନ ।
ହରଷ ସମୟେ କିଆଁ ତୋର ଦୁଃଖ ମନ,
ମୋ ଆଗରେ କହିଯାଅ ସବୁର କାରଣ ।" ୭୯

"ଅରେ ମାଈ କହି ଆଶା ମୋ ମେଣ୍ଟି ଯାଇଛି,
ଦୋସରା ଜିଭରେ ଏବେ କହିବି ଯା' କିଛି ।
ଅଭାଗା କପାଳ ମୋର ପୋଡ଼ିବା ଉଚିତ,
ଭଲ କହୁଥିଲେ ହୁଏ ତୋଲ ଅନୁଚିତ । ୮୦

ସତ ମିଛ କହନ୍ତି ଯେ ସେ ତୁମର ପ୍ରିୟ,
ଆଉ ମୋର କଥା ଯେତେ ଲାଗୁଛି ଅପ୍ରିୟ ।
କହିବି ତୁମକୁ ଏବେ ଖୋସାମତି କରି,
ନତୁବା ରହିବି ମୌନ ଦିବସ ଶର୍ବରୀ । ୮୧

ବିଧାତା କୁରୂପ କରି କଲା ପରବଶ,
ବୁଣେ ଯା' କାଟଇ, ପାଏ ଦିଏ ଯା' ଅବଶ୍ୟ ।
କିଏ ରଜା ହେଉ ମୋର ତହିଁରେ କି ହାନି,
ପୋଇଲି ନ ହୋଇ କ'ଣ ହେବି ପାଟରାଣୀ ? । ୮୨

ପୋଡ଼ିବା ଉଚିତ ଏଇ ସ୍ୱଭାବ ମୋହର,
ଦେଖି ପାରୁନାହିଁ ଯାହା ତୁମର ଅଭଲ ।

ସେଥିପାଇଁ କହିଥିଲି ସିନା ଯାହା କହୁଛି,
କ୍ଷମ ରାଣୀ ଅପରାଧ ମୁଁ ଯାହା କରୁଛି ।" ୮୩

ଅସ୍ଥିର-ହୃଦୟା ଦେବମାୟା-ସମାଚ୍ଛନ୍ନ,
ଶୁଣି ଛଳଯୁକ୍ତ ଗୂଢ଼ ସୁ ପ୍ରିୟ ବଚନ ।
ଶତ୍ରୁ ମନ୍ଥରାକୁ ରାଣୀ ସୁହୃଦ ମଣିଲେ,
ଏକାନ୍ତ ଆତ୍ମୀୟ ଭାବ ବିଶ୍ୱାସ କରିଲେ । ୮୪

ବାର ବାର ପଚାରନ୍ତି ଆଦର ସହିତ,
ଶବରୁଣୀ ଗୀତେ ଯେହ୍ନେ ହରିଣୀ ମୋହିତ ।
ଭାବନା ଯେସନେ ହେଲା ବୁଦ୍ଧି ସେଇମିତ,
ଦାସୀ ଖୁସି, ମନ୍ତ୍ରକାର୍ଯ୍ୟ କରିଚ ଯେମିତ । ୮୫

"ତୁମେ ପଚାରୁଛ ମୋତେ କହିବାକୁ ଡର,
ଯେଣୁ ଘରପୋଡ଼ି ନାମ ଦେଇଛ ମୋହର ।"
ବିଶ୍ୱାସ ଜନ୍ମାଇ ପୁଣି ଛଳ ନାନାମତେ,
କହେ ଦାସୀ, "ଅଯୋଧ୍ୟାର ଶୁଭଦଶା" ସତେ । ୮୬

"ତୁମେ ଯା' କହିଲ ସୀତା ରାମ ତୁମ ପ୍ରିୟ,
ତମେ ପୁଣି ରାମଙ୍କର ଅତିଶୟ ପ୍ରିୟ ।
ଏହା ସତ ଥିଲା ଆଗେ, ଏବେ ସେ ନୁହଇ,
କାଳ ବଦଳିଲେ ମିତ୍ର ଶତ୍ରୁ ପାଲଟଇ । ୮୭

ସେ ଯେଉଁ କମଳ-କୁଳେ ପାଳେ ଦିବାକର,
ତାକୁ ଜାଳ କରେ ଭସ୍ମ ନ ଥିଲେଟି ଜଳ ।
ତୋ ମୂଳ ଉପାଡ଼ିବାକୁ କୌଶଲ୍ୟା ଗୁହାଁଟ,
ଉତ୍ତମ ଉପାୟ-ବାଡ଼େ ରଖିଲେ ତୁ ବୁଜ । ୮୮

ଭଲେ ଚିନ୍ତା ନାହିଁ, ତୋର ସୁହାଗେ ନୃପତି,
ଭାବୁଅଛୁ କେବଳ ତୋ ବଶ ହୋଇଛନ୍ତି ।
କିନ୍ତୁ ମିଠା କଥା ଖାଲି ହୃଦୟ ମଳିନ,
ସରଳ ସ୍ୱଭାବ ତୋର ଛନ୍ଦ ମାୟା ହୀନ । ୮୯

ରାମ ମାତା ସୁଚତୁରା ଗମ୍ଭୀର ତୁ ଜାଣ,
ବେଳ ପାଇ କରନ୍ତିଏ ନିଜ କାମ ମାନ ।
ରାଜା ଯେ ଛାଡ଼ିଲେ ଭରତକୁ ମାମୁଁ ଘରେ,
ରାମ ମାତା ମତ ତହିଁ ଥିଲା ତ ସତରେ । ୯୦

କୌଶଲ୍ୟା ଭାବଇ ମନେ ଯେତେ ସଉତୁଣୀ,
ସକଳେ ତ ତାର ସେବା କରୁଛନ୍ତି ପୁଣି ।
ସ୍ୱାମୀ ବଳ ପାଇ ଯାହା ଭରତ-ଜନନୀ
ଅନ୍ତଃପୁରେ ରହିଅଛି ହୋଇ ଗରବିଣୀ ।
ତେଣୁ କୌଶଲ୍ୟାର ଚକ୍ଷୁଶୂଳ ଏ ହୁଅଇ,
ତା' ହୃଦ କପଟ ଭାବ ଜଣା ନ ପଡ଼ଇ । ୯୧

ନୃପଙ୍କ ତୋ' ଠାରେ ପ୍ରୀତି ଅଧିକ ଅଟଇ,
ସପତ୍ନୀ ସ୍ୱଭାବେ କଉଶଲ୍ୟା ନ ସହଇ ।
ତେଣୁ ଜାଲ ଫାନ୍ଦ ନୃପେ କରି ଆପଣାର,
ସ୍ଥିର କଲା ରାମ ଅଭିଷେକ ଲଗ୍ନ ବାର । ୯୨

ରାମ ଅଭିଷେକ କୁଳ ଧରମ ଅଟଇ,
ସମସ୍ତଙ୍କୁ ସୁଖକର—ମୋତେ ବି ଲାଗଇ ।
କିନ୍ତୁ ଭବିଷ୍ୟତ କଥା ଚିନ୍ତି ଲାଗେ ଡର,
ଦଇବ ଓଲଟି ଦେଉ କୌଶଲ୍ୟାକୁ ଫଳ ।" ୯୩

କୋଟି କୁଟ କପଟତା ରଚି କଉଶଳେ,
ମନ୍ଥରା କହିଲା କଥା କୈକେୟୀ ଆଗରେ ।
ସପତ୍ନୀ କାହାଣୀ ଶତ ଦୃଷ୍ଟାନ୍ତ ଦେଖାଇ,
ବିରୋଧ ବଢ଼ିବ ଯେହ୍ନେ ବାଟ କଲା ସେହି । ୯୪

ଭବିତବ୍ୟ ବଶ ରାଣୀ, ବିଶ୍ୱାସ ମଣିଲେ,
ବାରମ୍ବାର ଦେଇ ରାଣ କେତେ ପଚାରିଲେ ।
ଦାସୀ କହେ, "କି ପଚାର ନ ବୁଝିଲ ରାଣୀ,
ଆପଣା ଅହିତ ହିତ ପଶୁ ପାରେ ଜାଣି । ୯୫

ହେଲଣି ପଦର ବନ ପୁର ସାଜସଜା,
ମୋଅଠୁଁ ଶୁଣୁଚ ଆଜ, ଏହାହିଁ ତ ମଜା ।
ଖାଉଚ ପିନ୍ଧୁଚ ଏଇ ରାଜ୍ୟରୁ ଭୁମର,
ତେଣୁ ସତ କହ୍ମ ଦୋଷ ନ ହେବ ମୋହର । ୯୬

ମନୁ ଗଢ଼ି ମିଥ୍ୟା କଛୁ କହ୍ଵବ ମୁଁ ଯେବେ,
ଦଇବ ତା' ପାଇଁ ଦଣ୍ଡ ମୋତେ ଦେବ ତେବେ ।
କାଲ ରାମ ଅଭିଷେକ ହେଲେ ସମାପନ,
ଜାଣ ତୋ ବପତ୍ତି ବୀଜ ହୋଇଲା ରୋପଣ । ୯୭

ଭୂଇଁରେ ମୁଁ ଗାର କାଟି କହେ ଜୋର କରି,
ଏବେ ଦୁଧ ମାଛି ପରି ହେବ୍ର ଲୋ ନାଗରି ।
ପୁଅ ସହ ଏବେ କଉଶଲ୍ୟା ସେବା କଲେ,
କେବଳ ପାରିବ୍ର ରହ୍ମ ଏ ରାଜମହଲେ । ୯୮

ବନତାଙ୍କୁ କଦ୍ରୁ ଦୁଃଖ ଦେଲେ ଯେଉଁପରି,
କଉଶଲ୍ୟା ତତେ ଦୁଃଖ ଦେବଲୋ ସେପରି ।
ଭରତ ସେବବ ବାପୁ ବନ୍ଦୀଶାଳେ ଖାଲି,
ରାମର ଲକ୍ଷ୍ମଣ ହେବ ପରା ସହକାରୀ ।" ୯୯

କେକୟ୍ଵ ନନ୍ଦନୀ ଶୁଣି ଏହ୍ମ କଟୁ କଥା,
କହ୍ମ ନ ପାରିଲେ କଛି ଭୟେ ଘୂରେ ମଥା ।
ସ୍ୱେଦ ଭରି ଅଙ୍ଗ ରମ୍ଭା ବୃକ୍ଷ ପରି ଥରେ,
ଦଶା ଦେଖି କୁଜା ଦନ୍ତେ ଜଭ ଚାପି ଧରେ । ୧୦୦

କୋଟିଏ କପଟ କଥା ଦାସୀ କହ୍ମ କହ୍ମ,
ବୁଝାଇଲା ରାଣୀକୁ ସେ ଉହ ଦମ୍ଭ ବହ୍ମ ।
କୂଟ ହେଲା ରାଣୀ ପ୍ରିୟ ଓଲଟିଲା ଦଶା,
ବଗକୁ ମରାଳୀ କହ୍ମ କଲେ ପରଶଂସା । ୧୦୧

"ଶୁଣଲୋ ମନ୍ଥରା ସତ୍ୟ ତୋହର ବଚନ,
ଫଡ ଫଡ ହେଉଁଚ ମୋ ଡାହାଣ ନୟନ ।

ନାନାବିଧ ଦୁଃସ୍ୱପ୍ନ ଦେଖେ ପ୍ରତି ରଜନୀରେ,
ଅଜ୍ଞତା ବଶତଃ ତୋତେ ନ ପଚାରେ ଥରେ । ୧୦୨

କି କହିବି ସଖି ମୋର ସ୍ୱଭାବ ସରଳ,
କେଉଁଟା ଡାହାଣ ବାମ ମୋତେ ଅଗୋଚର । ୧୦୩

ଜାଣୁ ଆମେ ଆଜଯାଏଁ ମୋ ଗୃଳଚଲନେ,
କରିନି କା' ମନ୍ଦ, ଦୁଃଖ ଦେଇନି କା ମନେ ।
କାହିଁକି ଦଇବ ମୋତେ କେଉଁ ପାପ ଫଳେ,
ଏକାଠି ଦୁଃସହ ଦୁଃଖ ଦିଏ ଏତେବେଳେ ? ୧୦୪

କାଟିବି ଜୀବନ ବରଂ ଯାଇ ବାପ ଘରେ,
ନୋହିବ ସାବତ ସେବା ଏ ମୋ ଜୀବନରେ ।
ଅରି ବଶ କରି ଯାରେ ବିହି ଦିଏ ଜନ୍ମ,
ଜୀଇବା ଅପେକ୍ଷା ତା'ର ମରଣ ଉତ୍ତମ ।" ୧୦୫

କହିଲେ ବହୁତ ଭାବେ ଦୁଃଖ କରି ରାଣୀ,
ତା ଶୁଣି ମନ୍ଥରା କହେ ନାରୀ-ମାୟା ଟାଣି ।
ଏପରି କହୁଚ କିଆଁ ମନେ ଭରି ଦୁଃଖ,
ବଢ଼ିବ ଦିନକୁ ଦିନ ତୋ ସୋହାଗ ସୁଖ । ୧୦୬

ଯାଞ୍ଚୁଅଛି ଯେ ତୁମର ଅତି ଅମଙ୍ଗଳ,
ପରିଣାମେ ପାଇବ ସେ ତା'ର ପ୍ରତିଫଳ ।
ଶୁଣିବା ଦିନରୁ ଏଇ ଚକ୍ରାନ୍ତ କାନରେ,
ନ ହୁଏ ଦିନରେ ଭୋକ, ନିଦ ନିଶିଥରେ । ୧୦୭

ପଚାରିଲି ଜ୍ୟୋତିଷଙ୍କୁ ସେ ଖଡ଼ି ପକାଇ,
କହିଲେ ଭରତ ରାଜା ହେବ—ମିଥ୍ୟା ନାହିଁ ।
କୈକେୟୀ କରିବୁ ଯେବେ କହିବି ଉପାୟ,
ତୁମ ସେବା-ବଶୀଭୂତ ଏବେ ନରରାୟ ।" ୧୦୮

"କୁଅରେ ମୁଁ ପଡ଼ିପାରେ ତୋଅରି କଥାରେ,
ଅତି ସହଜରେ ପୁଅ ପତି ଛାଡ଼ିପାରେ ।,

ମୋ ଦୁଃଖେ କହୁଛୁ କଚ୍ଛ ଯଦ ମୋହ ପାଇଁ,
ମୋ ହିତକୁ ନ କରିବ ତେବେ କାହିଁପାଇଁ ?” ୧୦୯

ଦାସୀ କୈକେୟୀକି ଭାବ ବଳି-ପଶୁ ପ୍ରାୟେ,
ଛଳ-ଛୁରି କରେ ଦାଢ଼ ପାଷାଣ-ହୃଦୟେ ।
ଜାଣି ନ ପାରିଲେ ରାଣୀ ଆସନ୍ନ-ବିପାକ,
ବଳି-ପଶୁ ଯେହ୍ନେ ଚରେ ଦୂବା ତୃଣ ଶାକ । ୧୧୦

ଶୁଣିବାକୁ କଥା ମୃଦୁ ସୁକଠୋର ଅନ୍ତେ,
ମହୁରେ ମହୁରି ଗୋଳି ପିଆଏ ଯେମନ୍ତେ ।
“ସ୍ମରଣ ଅଛି ତ ରାଣୀ” ପୋଇଲି କହଇ,
ଯେଉଁ କଥା ମୋର ଆଗେ ତୁମେ ଥିଲ କହି । ୧୧୧

ପାଉଣା ନୃପଙ୍କ ଠାରୁ ଅଛି ଦୁଇ ବର,
ଆଜ ତାହା ମାଗି ହୃଦ ସୁଶୀତଳ କର ।
ପୁତ୍ରେ ରାଜ୍ୟ ପୁଣି ରାମେ ଦେଇ ବନବାସ,
ହର ହଅ ଆଗୋ ରାଣୀ ସାବତ ଉଲ୍ଲାସ । ୧୧୨

ରାମ ରାଣ ପକାଇବେ ଯେବେହି ରାଜନ,
ତେବେ ତ ମାଗିବ, ଯେହ୍ନେ ନ ଟଳେ ବଚନ ।
ରାତି ପାହିଗଲେ ହେବ ସବୁ ଅକାରଣ,
କରିବ ପରାଣୁ ପ୍ରିୟ ମାନ ମୋ ବଚନ । ୧୧୩

ପାତକୀ ମନ୍ଥରା କହେ ଆଘାତ ଲଗାଇ,—
ଏବେ ଲେ କୈକେୟୀ କୋପ ଭବନକୁ ଯାଇ—
ସାବଧାନେ କର ସବୁ କାର୍ଯ୍ୟ ସମାପନ,
ବିଶ୍ୱାସ ନ କର ବେଗି ରାଜାଙ୍କ ବଚନ । ୧୧୪

ରାଣୀ ଜାଣି କୁବୁଜାକୁ ପ୍ରାଣୁ ପ୍ରିୟ ଅତି,
ବାରମ୍ବାର ତା ବୁଦ୍ଧିକୁ ପ୍ରଶଂସା କରନ୍ତି ।
ହିତକାରୀ ତୋ ସମାନ ନାହିଁ ଜଗତରେ,
ଆଧାର ହେଲୁ ତୁ ଭାସି ଯିବା ସମୟରେ । ୧୧୫

କାଲି ରହି ପୂର୍ଣ୍ଣ କଲେ ମୋର ମନୋରଥ,
କରିବି ନୟନ-ତାରା, ଏହି ମୋ ଶପଥ ।”
ଦାସୀକୁ ଆଦର ସ୍ନେହ ବହୁ ଭାବେ ଦେଇ,
କୋପ ଭବନକୁ ଗଲେ ତୁରିତେ କୈକେୟୀ । ୧୧୬

ତୃଷା ହେଲା ବୀଜ, ବର୍ଷା ଋତୁ ପଦଚରୀ,
କୈକେୟୀ-କୁବୁଦ୍ଧି ତହିଁ ଗୃଷ ଭୂଇଁ ପରି ।
କପଟ ସଲିଳ ପାଇ ଅଙ୍କୁର ଉତ୍ପତ୍ତି,
ପତ୍ର ଦେଇ ବର ଦୁଃଖ-ଫଳ ପରିଣତି । ୧୧୭

ସାଜ କୋପ ସାଜ କୋପ-ଭବନେ ଶୋଇଲେ,
ରାଜ ସୁଖ ସଙ୍ଗେ ଖଳ ମତେ ତା' ଚୂରିଲେ ।
କୋଳାହଳ ଲାଗିଅଛି ନୃପତି ଭବନେ,
ଷଡ଼ଯନ୍ତ୍ର କଥା କେହି ନ ଜାଣିଲେ ଜଣେ । ୧୧୮

ପୁର ନର ନାରୀ ସର୍ବେ ଆନନ୍ଦିତ ମନ,
କରୁଛନ୍ତି ଶୁଭ ସୁମଙ୍ଗଳ ଆୟୋଜନ ।
କେ ଭିତରେ ଯାଏ ପୁଣି କେ ଆସେ ବାହାରେ,
ଅତିଶୟ ଭିଡ଼ ଲାଗିଅଛି ରାଜଦ୍ୱାରେ । ୧୧୯

ଶୁଣି ହରଷିତ ହୃଦେ ବାଳ ସଖାଗଣ,
ଭେଟନ୍ତି ରାମଙ୍କୁ ମିଳି ପାଞ୍ଚଦଶ ଜଣ ।
ପ୍ରେମ ଜାଣି ପ୍ରଭୁ ତାଙ୍କୁ କରନ୍ତି ଆଦର,
ପଚାରନ୍ତି ସ୍ନେହେ ତାଙ୍କ କୁଶଳ ଖବର । ୧୨୦

ବାହୁଡ଼ିଲେ ନିଜ ଘରେ ସଖା ଆଜ୍ଞା ପାଇ,
ପରସ୍ପରେ କରି ରଘୁନାଥଙ୍କ ବଡ଼ାଇ ।
କହନ୍ତି ରାମଙ୍କ ସମ କେ ଅଛି ଜଗତେ,
କେ ପାଳି ପାରିବ ଶୀଳ ସ୍ନେହ ଅବିରତେ । ୧୨୧

କର୍ମ ବଶେ ଯେ ଯୋନିରେ ଆମେ ଜନ୍ମ ହେଉ,
ବିଧାତା ଆମକୁ ରାମ ସଙ୍ଗ ସଦା ଦେଉ ।

ଆମ୍ଭେ ଯେ ସେବକ, ସ୍ୱାମୀ ଜାନକୀ-ଜୀବନ,
ଏହିପରି ଭାବେ ଦୃଢ଼ ହେଉ ଏ ବନ୍ଧନ । ୧୨୨

କରନ୍ତି ଏପରି ଆଶା ଯେତେ ପୁର ଜନେ,
କୈକେୟୀ ହୃଦୟେ ଦାହ ହୁଅଇ ଗୋପନେ ।
ମନ୍ଦ ସଙ୍ଗ ପାଇ କିଏ ନ ହୁଏ ବିନାଶ,
ନୀଚ ବୁଦ୍ଧି କଲେ ଜ୍ଞାନ ନ ହୁଏ ପ୍ରକାଶ । ୧୨୩

ସନ୍ଧ୍ୟା ସମୟରେ ରାଜା କୈକେୟୀ ଭବନେ,
ଆନନ୍ଦ ମନରେ ଗଲେ ସୁନେଲି ସପନେ ।
କଳେବର ଧରି ସ୍ନେହ ଯାଏ ଅବା ସତେ,
ନିଷ୍ଠୁରତା ନିକଟକୁ ଭେଟିବା ନିମନ୍ତେ । ୧୨୪

କୋପ ଗୃହ ଶୁଣି ନୃପ ଗଣିଲେ ପ୍ରମାଦ,
ଭୟରେ ଆଗକୁ ଆଉ ନ ପଡ଼ିଲା ପାଦ ।
ଯାର ବାହୁବଳେ ସୁଖୀ ସ୍ୱର୍ଗେ ଦେବରାଜ,
ଯା' ଇଚ୍ଛାକୁ ଚାହିଁଥାନ୍ତି ନୃପତି-ସମାଜ । ୧୨୫

ସେହି ଶୁଖିଗଲେ ପରି ଶୁଣି ନାରୀ କୋପ,
ଦେଖୁଚ ତ କନ୍ଦର୍ପର ପ୍ରଭାବ ପ୍ରକୋପ ।
ଶୂଳ ଖଡ଼୍‌ଗ ବଜ୍ରାଘାତ ଅଙ୍ଗେ ଯେ ସହନ୍ତି,
ସେ ଶିବଙ୍କୁ ପୁଷ୍ପ-ଶରେ ମାରେ ରତିପତି । ୧୨୬

ପ୍ରିୟା ନିକଟକୁ ରାଜା ଗଲେ ଡରି ଡରି,
ତାଙ୍କ ଦଶା ଦେଖି ହୃଦେ ଦୁଃଖ ଗଲା ଭରି ।
ଭୂମିରେ ଶୟନ, ମୋଟା ପୁରୁଣା ବସନ,
ପିନ୍ଧି, ଫିଙ୍ଗି ଦେଇଅଛି ଅଙ୍ଗୁ ଆଭରଣ । ୧୨୭

କୁମତି ରାଣୀକୁ ଏଇ କୁବେଶ ଦିଶଇ,
ଯେହ୍ନେ ଭାବୀ ବୈଧବ୍ୟର ବାରତା କହଇ ।
ମଧୁରେ କହିଲେ ନୃପ ନିକଟକୁ ଯାଇ,
ପ୍ରାଣପ୍ରିୟା କରିଅଛ କୋପ କାହିଁ ପାଇଁ ? ୧୨୮

"କାହିଁକି ରୁଷିଛ" କହି ଧରିଲେ ସେ କର,
ହାତ ଛିଞ୍ଚାଡ଼ନ୍ତି ରାଣୀ ଥରକୁ ଯେ ଥର ।
କ୍ରୋଧାନ୍ୱିତା ନାଗୁଣୀ କି କ୍ରୂର ନୟନରେ,
ଚାହୁଁ ଅଛି ଆହା ଦଶରଥ ନରବରେ ! ୧୨୯

କୈକେୟୀଙ୍କ ବେନି ବର ମାଗିବା ବାସନା,
ସତେ କି ସେ ଭୁଜଙ୍ଗିନୀ ଯୁଗଳ ରସନା !
ଆଉ ସେହି ବେନି ବର ଯେହ୍ନେ ବେନି ଦନ୍ତ,
ଖୋଜୁଛନ୍ତି ମର୍ମସ୍ଥଳ କରିବାକୁ କ୍ଷତ । ୧୩୦

ତୁଳସୀ କହନ୍ତି ତହିଁ ଦଶରଥ ନୃପ,
କ୍ରୂର ଭବିତବ୍ୟତାର ହୋଇ ବଶୀଭୂତ—
ଏ କି ପ୍ରେମ-ଅଭିମାନ ଭାବନ୍ତି ସେ ମନେ,
କନ୍ଦର୍ପର ଅବା କ୍ରୀଡ଼ା ପ୍ରୀତି-ଉପବନେ !! ୧୩୧

ବାରବାର କହନ୍ତି ସେ, "ହେ ଚନ୍ଦ୍ରବଦନୀ,
କୋକିଳ-ଭାଷିଣୀ ଆଗୋ କୁରଙ୍ଗ-ଲୋଚନୀ ।
ମୋ ପାଶେ ଆପଣା କୋପ କାରଣ ଜଣାଅ,
ଗଜଗାମିନୀ ଗୋ କିଆଁ ଏତେ ବ୍ୟଥା ପାଅ ? ୧୩୨

କହ ପ୍ରିୟେ କେ' କରିଛି ତବ ଅପକାର ?
କାହାକୁ କୃତାନ୍ତ ଚାହେଁ, ଶିର ଦୁଇ କା'ର ?
ସେ କେଉଁ ରଙ୍କୀକୁ ମୁହିଁ କରିବି ରାଜନ ?
ଛଡ଼ାଇବି କାହାର ବା ମୁହିଁ ରାଜପଣ ? ୧୩୩

ହେଲେ ସୁରେ ଅରି ତୋର ପାରିବି ମୁଁ ମାରି,
ଛାର ପୋକ କୀଟ ସମ ଯେତେ ନରନାରୀ ।
ରେ ଘନ-ଜଘନା ଜାଣୁ ସ୍ୱଭାବ ମୋହର,
ବଦନ-ଚନ୍ଦ୍ରକୁ ତୋର ମୋ ମନ-ଚକୋର । ୧୩୪

ହେ ପ୍ରିୟେ ମୋ ପ୍ରଜା ପୁତ୍ର କୁଟୁମ୍ବ ସମ୍ପତ୍ତି,
ଏପରିକି ପ୍ରାଣ ତୁମ ଅଧୀନ ଅଟନ୍ତି ।

କହୁଥିବ ମୁଁ କପଟେ ଯଦି କିଛି ତୋତେ,
ରାମାମଣି ରାମରାଣ ଶତବାର ମୋତେ । ୧୩୫

ମନରେ ଭାବୁଚ ଯାହା ହସି କହ ମାଗି,
ଭୂଷଣେ ସଜାଅ ଅଙ୍ଗ ଚଞ୍ଚଳ ଶୁଭାଙ୍ଗୀ ।
ବେଳ ଅବେଳକୁ ଚିନ୍ତା ନ କରୁଛ କିଆଁ,
ଅବିଳମ୍ବେ ଏ କୁବେଶ ତ୍ୟାଗ କର ପ୍ରିୟା । ୧୩୬

ଏହା ଶୁଣି ମନେ ଭାବି ରାମ ଶପଥ ରାଣ,
ହସି ଉଠି ମନ୍ଦମତି ନିଜ ଭୂଷାମାନ ।
ସଜାଇଲା ଦେହସାରା ଶବରୀ ଯେସନେ,
ମୃଗ ଦେଖି ଆଗେ ଫାନ୍ଦ ତିଆରେ ଯତନେ । ୧୩୭

ସୁହୃଦ ବଚନ ପୁଣି କହିଲେ ରାଜନ,
ପ୍ରେମ ପୁଲକିତ ମୃଦୁ ମଞ୍ଜୁଳ ବଚନ—
ତୋ ମନସ୍କାମନା ପୂର୍ଣ୍ଣ ହୋଇବ ସଜନୀ,
ମଙ୍ଗଳ ବାଜଣା ପ୍ରତି ପୁରେ ଉଠେ ରଣି । ୧୩୮

କାଲି ଯୁବରାଜ ପଦ ଦେଉଛୁ ରାମରେ,
ସଜାଅ ମଙ୍ଗଳ ସାଜ ଆନନ୍ଦ ମନରେ ।
ଶୁଣି ତା' କଠୋର ହିଆ ଦୁଲୁକି ଉଠିଲା,
ପାଚିଲା ବଥକୁ ଅବା କିଏସେ ଛୁଇଁଲା !! ୧୩୯

ଏ କଠୋର ପୀଡ଼ା ହସି ରଖେ ସେ ଗୋପନେ,
ଚୋରର ନାରୀ ପ୍ରକାଶ୍ୟରେ ନ କାନ୍ଦେ ଯେସନେ ।
ତା' ଛନ୍ଦ ଗୁରୁଭି ନୃପ ନ ଜାଣିଲେ କିଛି,
କୋଟି କୁଟିଳାଙ୍କ ମଣି ଗୁରୁ ପଢ଼ାଇଛି । ୧୪୦

ହେଲେ ବି ସକଳ ନୀତି ନିପୁଣ ନୃପତି,
ଅଗାଧ-ସାଗର କିନ୍ତୁ ଏଇ ନାରୀ ମତି ।
ବଢ଼ାଇ କପଟ ପ୍ରେମ ଛଳ ପ୍ରୀତି ଦେଇ,
କହିଲା ବଦନ ନେଇ ମୋଡ଼ି କଇକେଇ । ୧୪୧

"ମାଗ ମାଗ ବୋଲି 'ଖାଲି କହ ପ୍ରିୟତମ,
ପ୍ରକୃତରେ ନ ହେଉଛି ଦବା ନବା କର୍ମ ।
କହିଥିଲ ଦେବା ପାଇଁ ଦୁଇଗୋଟି ବର,'
ପାଇବ କି ନାହିଁ ହୁଏ ସନ୍ଦେହ ମୋହର ।" ୧୪୨

ଜାଣିଲି ମରମ" ହସି କହନ୍ତି ନୃପତି,
ତୁମକୁ ତ ରୁଷା ମାନ ପ୍ରିୟ ଲାଗେ ଅତି ।
ମୋ ପାଖେ ଥୋଇଚ ବର ମାଗିନାହଁ କେବେ,
ଭୋଳା ସ୍ୱଭାବରୁ ଭୁଲି ଯାଇଅଛି ଏବେ । ୧୪୩

ଅକାରଣେ ମୋତେ ଦୋଷ ଦଅ ନାହିଁ ପ୍ରିୟା,
ଦୁଇ ଛାଡ଼ ଚାରି ବର ନ ମାଗୁଛ କିଆଁ ?
ରଘୁକୁଳ ରୀତି ଗଡ଼ ଆସିଛି ଏସନ,
ପ୍ରାଣ ଚାଲିଯିବ ବରଂ ନ ଯିବ ବଚନ । ୧୪୪

ଅସତ୍ୟ ସମାନ ପାପ ପୁଞ୍ଜ ଆଉ ନାହିଁ;
କୋଟିଏ କାଇଞ୍ଚ ମିଶି ହେବେ ଗିରି କାହିଁ ?
ସତ୍ୟ ଯେ ଅଟଇ ସବୁ ପୁଣ୍ୟ ମୂଳାଧାର,
କହିଛି ପୁରାଣେ ବେଦେ, ମନୁଙ୍କ ବିଚାର । ୧୪୫

ତା'ପରେ ମୁଁ ପକାଇଛି ରାମଙ୍କ ଶପଥ,
ମୋ ସୁକୃତି ସ୍ନେହ ସୀମା ପରା ରଘୁନାଥ ।"
କଥା ଦୃଢ଼ କରି ହସି କୁମତି କହଇ,
କୁବୁଦ୍ଧି-କୁପକ୍ଷୀ-ଆଖିପଟି କି ଖୋଲଇ !! ୧୪୬

ନରପତି ମନୋରଥ ସୁନ୍ଦର କାନନ,
ତହିଁ ପକ୍ଷୀକୁଳ ସମ ସୁଖ ଅଗଣନ;
କ୍ରୂର ଶବରୁଣୀ ପରି କୈକେୟୀ ସେଠାରେ,
କଜର ବଚନ ରୂପ ବାଜପକ୍ଷୀ ଛାଡ଼େ । ୧୪୭

ମାସ ପାରାୟଣ, ଚତୁର୍ଦ୍ଦଶ ବିଶ୍ରାମ ।

## ଦୁଇ

"ଶୁଣ ପ୍ରାଣପ୍ରିୟ ପ୍ରାଣ ବାସନା ମୋହର,
ଭରତେ ପ୍ରଥମ ବରେ ଅଭିଷେକ କର ।
କରଯୋଡ଼ି ମାଗୁଅଛୁ ପୁଣି ଅନ୍ୟବର,
ନାଥ ମନୋରଥ ପୂର୍ଣ୍ଣ କରିବ ମୋହର । ୧୪୮

ଉଦାସୀନ ଭାବେ ଧରି ତପସ୍ୱୀର ବେଶ,
ଚଉଦ ବରଷ ରାମ ଯାଉ ବନଦେଶ ।"
ଶୁଣି ମୃଦୁବାଣୀ ରାଜା-ହୃଦ ଶୋକାକୁଳ,
ଶଶିକର ସ୍ପର୍ଶେ କୋକ ଯେପରି ବ୍ୟାକୁଳ । ୧୪୯

ଶଙ୍କିଗଲେ ରାଜା ମୁଖେ କଥା ନ ଆସଇ,
କପୋତକୁ ବାଜ ପକ୍ଷୀ ମାଡ଼ି କି ବସଇ !
କଳା କାଠ ପଡ଼ିଗଲେ ତକ୍ଷଣେ ରାଜନ,
ବିଜୁଳି ମାରିଲା ତାଳ ଗଛକୁ ଯେସନ । ୧୫୦

ଦୁଃଖ କଲେ ନେତ୍ର ବୁଜି ଶିରେ ଦେଇ କର,
ଦୁଃଖ କରେ ଦୁଃଖ ଯେହ୍ନେ ଧରି କଳେବର ।
ମୋର ମନୋରଥ ରୂପୀ ସୁର-ତରୁ ଫୁଲ,
ଫୁଟିଥିଲା ହସ୍ତିନୀ ତା କରିଲା ନିର୍ମୂଳ । ୧୫୧

କୈକେୟୀ ଉଜାଡ଼ି ଦିଏ ଅଯୋଧ୍ୟା ନଗର,
ପକାଏ ବିପତ୍ତି-ଭିତ୍ତି ସୁଦୃଢ଼ ପ୍ରସ୍ତର । ୧୫୨

କେଉଁ ସମୟରେ ହେଲା କଅଣ କପଟ
କାହାକୁ ବିଶ୍ୱାସ କରି ଏବେ ଗଲି ମରି ।

ଯୋଗ ସିଦ୍ଧି ଫଳ ଲଭ ବେଳକୁ ଯେସନେ,
ଯୋଗୀକୁ ବିନାଶ କରେ ଅବିଦ୍ୟା ତକ୍ଷଣେ । ୧୫୩

ନୃପତି ଏପରି ଯେବେ ଦୁଃଖାକୁଳ ଚିତ୍ତ,
ଦେଖି ମନ୍ଦମତି କହେ ହୋଇ କ୍ରୋଧାନ୍ୱିତ ।
"ହେ ରାଜା ଭରତ କ'ଣ ନୁହେଁ ତୁମ ପୁଅ ?
କିଣି କି ଆଣିଚ ମୋତେ ମୂଲ ଦେଇ କୁହ ? ୧୫୪

ମୋ ବଚନ ଦିଏ ଯଦି ଶର ସମ ବ୍ୟଥା,
ଆପଣ ବିଚାରି କାହିଁ ନ କହିଲ କଥା ?
ଉତ୍ତର ଦିଅନ୍ତୁ, ହଁ କି ନା ଅବା ନାହିଁ,
ରଘୁକୁଳେ ସତ୍ୟସନ୍ଧ ତୁମେ ନରସାଇଁ । ୧୫୫

ଦେବାକୁ କହିଚ ଯେବେ ମୋର ବର ଦିଅ,
ଅବା ସତ୍ୟ ଲଂଘି ତୁମେ ଅପଯଶ ନିଅ ।
ସତ୍ୟକୁ ପ୍ରଶଂସି ବର ଦେବାକୁ କହିଚ,
ଚଣା ଗଣ୍ଡେ ମାଗିଥାନ୍ତି ବୋଲି ବିଚାରିଚ ?" ୧୫୬

ଦଧୀଚି ଓ ଶିବି ବଳି ଯାହା କହିଥିଲେ,
କଥା ରଖିବାକୁ ଧନ ଜୀବନ ତେଜିଲେ ।
କୈକେୟୀ କହଇ ଅତି କର୍କଶ ବଚନ,
ପୋଡ଼ା ଘାଆରେ କି ସେହି ଦିଅଇ ଲବଣ । ୧୫୭

ଧର୍ମ ଧୂରନ୍ଧର ରାଜା ଧୈର୍ଯ୍ୟ ଧରି ମନେ,
ଆଖି ଖୋଲି ଦୀର୍ଘଶ୍ୱାସ ନେଇ କ୍ଷଣେ କ୍ଷଣେ,
ଭାବନ୍ତି ହଲାଇ ଶିର, ପାପିନୀ କୃପାଣେ,
ଆଘାତ ଦେଉଚି ଆଜ ମୋହର କୁସ୍ଥାନେ । ୧୫୮

ଉଗ୍ର କୋପେ ପ୍ରଜ୍ୱଳିତା ରାଣୀକୁ ନିରେଖି,
ମନେହୁଏ କୋଷମୁକ୍ତ କରବାଳ ସେ କି ?
କୁବୁଦ୍ଧି ତାହାର ମୂଠି ନିଷ୍ଠୁରତା ଧାର,
ମନ୍ଥରା-ଶାଣାରେ ପଜା ହୋଇଅଛି ଦାଢ଼ । ୧୫୯

କରାଳ କଠୋର ଅସି ଦେଖି ନରପତି,
ସତରେ ଏ ମୋ ପ୍ରାଣ ନେବ ବୋଲି ଡରୁଥାନ୍ତି ।
କହିଲେ ବଚନ ଘୃଣିତ ସୁକଠିନ କରି,
ସଦନଯୁ ଭରେ ତାଙ୍କୁ ସୁଖ ଦେଲି ଭଳି । ୧୬୦

"ହେ ପ୍ରିୟେ, ହେ ଭୀରୁ, ପ୍ରୀତି ବିଶ୍ୱାସ ଛୁଟାଇ,
ଏପରି ଅପ୍ରିୟ କଥା କହ କାହିଁ ପାଇଁ ?
ମୋହର ଭରତ ରାମ ଜାଣ ଦୁଇ ଆଖି,
ଏ ସତ୍ୟ କହୁଛି କରି ଶଙ୍କରଙ୍କୁ ସାକ୍ଷୀ । ୧୬୧

ଦୂତ ପଠାଇବି କାଲି ହୋଇଲେ ପ୍ରଭାତ,
ଶୁଣିଲା ମାତ୍ରକେ ଆସି ଯିବେ ଦେନି ଭ୍ରାତ ।
ଶୁଭ ବାର ବେଳା ଦେଖି ନଗର ସଜାଇ,
ଭରତଙ୍କୁ ରାଜ୍ୟ ଦେବି ନାଗରା ବଜାଇ । ୧୬୨

ରାମର ହୃଦୟେ କେବେ ରାଜ୍ୟ ଲୋଭ ନାହିଁ,
କେବଳ ତା' ସ୍ନେହ ପ୍ରୀତି ଭରତର ପାଇଁ ।
ବିଚାରି ମୁଁ ସାନ ବଡ଼ ନୃପ ନୀତି ପାଳି,
ରାମର ଏ ଅଭିଷେକ କରୁଥିଲି କାଲି । ୧୬୩

କହୁଛି ପକାଇ ଶତବାର ରାମ ରାଣ,
କହି ନାହିଁ କେବେ କିଛି ରାମମାତା ଜାଣ,
ସବୁ କରଗଲି ତୋତେ ନ ପଚାରି ଯେଣୁ,
ବିଫଳ ହୋଇଲା ମୋର ମନୋରଥ ତେଣୁ । ୧୬୪

କ୍ରୋଧ ତେଜି ସଜାଅ ଗୋ ସୁମଙ୍ଗଳ ସାଜ,
କିଛିଦିନେ ତମ ପୁଅ ହେବ ଯୁବରାଜ ।
ତମର ଗୋଟିଏ କଥା ଦୁଃଖ ଦିଏ ପ୍ରିୟା,
ଅନ୍ୟ ବର ଯେ ମାଗିଲ ବଡ଼ ଅଖାଡୁଆ । ୧୬୫

ଏବେ ବି ଜଳୁଛି ହୃଦ ସେହି ତାପ ଫଳେ,
କ୍ରୋଧେ ପରିହାସେ ଅବା କହ ବାସ୍ତବରେ ।

ରାମର କି ଦୋଷ କହି କୋପ ପରିହରି,
ସମସ୍ତେ କହନ୍ତି ରାମ ଅତି ସାଧୁ ବୋଲି । ୧୬୬

ତୁମେ ପରଶଂସି ତାଙ୍କୁ କରୁଥାଅ ସ୍ନେହ,
ଏବେ ଏହା ଶୁଣି ମୋର ଉପୁଜେ ସନ୍ଦେହ ।
ଯା' ସ୍ୱଭାବେ ତା'ର ଅନୁକୂଳ ଅରିଗଣ,
କରେ କି ସେ ମାତା ପ୍ରତିକୂଳ ଆଚରଣ ? ୧୬୭

ରୋଷ ତେଜି ହସି ପ୍ରିୟେ ବିବେକ ବିଗୃହରେ,
ଏବେ ବର ମାଗି ନିଅ ରୁଚି ଅନୁସାରେ ।
ଭରତର ଅଭିଷେକ ପୂରାଇ ନୟନ,
ଦେଖିବାକୁ ଯେପରି ମୁଁ ହୋଇବି ଭାଜନ । ୧୬୮

ଜଳ ବିନା ବଞ୍ଚିପାରେ କେଉଁଠି ବା ମୀନ,
ମଣି ବିନା ଫଣୀ ଜୀଇପାରେ ହୋଇ ଦୀନ ।
କିନ୍ତୁ ମୁଁ କହୁଛି ସତ୍ୟ ଛଳ ନାହିଁ ମନେ,
ରାମ ବିନା ନ ପାରିବି ରହି ମୁଁ ଜୀବନେ । ୧୬୯

ହୃଦୟେ ବିଗୃହ ଦେଖ ରମଣୀ ରତନ,
ଶ୍ରୀରାମ-ଦର୍ଶନ-ବଶ ମୋର ଏ ଜୀବନ ।"
ଶୁଣି ଏହି ମୃଦୁବାଣୀ କୁମତି ଜଳଇ,
ଅନଳେ ଯେସନେ ଘୃତ ଆହୁତି ପଡ଼ଇ । ୧୭୦

କହେ ସେ, "କରନ୍ତୁ ପଛେ କୋଟି କଉଶଳ,
ଏଠାରେ ଘଟିବ ନାହିଁ ଗୁଳବାଜ ଛଳ ।
ହିଅ ଅବା ଅପଯଶ ଅର୍ଜ କରି ମନା,
ଭଲ ଲାଗୁ ନାହିଁ ମୋତେ ମୋଡେ ଏ ଛଳନା । ୧୭୧

ରାମ ସାଧୁ, ତୁମେ ସାଧୁ ତୁମେ ମହାମନା,
ରାମମାତା ଭଲ ବୋଲି ମୋତେ ସବୁ ଜଣା ।
ସେ ଗୃହୁଁଛି ଯେହ୍ନେ ମୋର ଭଲ କରିବାକୁ,
ମନେ ପକାଇବା ଭଲ ଫଳ ଦେବି ତାଙ୍କୁ । ୧୭୨

ସକାଳ ହେଉଣୁ ରାମ ଧରି ମୁନିବେଶ,
ଯେବେ ଆଜ୍ଞା ପାଳି ଯିବେ ନାହିଁ ବନଦେଶ ।
ସୁନିଶ୍ଚିତ ମୋର ମୃତ୍ୟୁ ତୁମ ଅପଯଶ,
ହେ ରାଜା ଏ କଥା ମନେ ବିଚାରି ଅବଶ୍ୟ ।" ୧୭୩

କୁଟିଳା ହୋଇଲା ଠିଆ କହି ଏହିପରି,
ମନେ ହେଲା କ୍ରୋଧ-ନଦୀ ସତେ ଗଲା ବଢ଼ି ।
ପାପ-ପାହାଡ଼ରୁ ଅବା ସେ ଗଡ଼ି ଆସୁଚି,
କ୍ରୋଧ ଜଳେ ଭରି, ଆଖି କାହିଁ ନ ପାଉଚି । ୧୭୪

ଏ କ୍ରୋଧ-ନଦୀର ଦୁଇ କୂଳ ଦୁଇ ବର,
କୈକେୟୀ କପଟ ତହିଁ ସ୍ରୋତ ଅତି ଖର ।
ମନ୍ଥରା-ପ୍ରେରଣା ଯେତେ ଭଉଁରି ପରାୟେ,
ନୃପ-ତରୁ-ମୂଳ ତାଡ଼ି ଦୁଃଖ-ସିନ୍ଧୁ ଧାଏଁ । ୧୭୫

ସବୁ ସତ୍ୟ ବୋଲି ଯେବେ ଜାଣିଲେ ଭୂପାଳ,
ଭାବିଲେ ସେ ନାରୀ ରୂପେ ଶିରେ ନାଚେ କାଳ ।
ବିନୟେ ବସାଇ ଧରି ଚରଣ ତାହାର,
କହିଲେ, "ନ ହୁଅ ରଘୁକୁଳକୁ କୁଠାର । ୧୭୬

ମାଗ ଏ ମସ୍ତକ ଦେବି ଏଇକ୍ଷଣି ତୋତେ,
ଶ୍ରୀରାମ ବିରହେ ପ୍ରିୟା ମାରି ନାହିଁ ମୋତେ ।
ମୋ ରାମକୁ ରଖ ପୁରେ ଯାହା କିଛି କରି,
ନୋହିଲେ ଜଳିବ ଗୁପ୍ତ ତୋ ଜୀବନ ଭରି ।" ୧୭୭

ଦେଖି ଏ ଅସାଧ୍ୟ ବ୍ୟାଧି ଅଯୋଧ୍ୟା ନୃପତି,
ମଥା କୋଡ଼ି ବିକଳରେ ଭୂମିରେ ଲୋଟନ୍ତି ।
କହନ୍ତି ଅଶେଷ ଦୁଃଖ ଆରତ ବଚନ,
"ହେ ରାମ, ହେ ରାମ, ରଘୁକୁଳର ଚନ୍ଦନ ।" ୧୭୮

ଶରୀର ଶିଥିଳ ହେଲା ବ୍ୟସ୍ତ ଦଣ୍ଡଧାରୀ,
କରିଣୀ କି କଳ୍ପତରୁ ପିଙ୍ଗିଲା ଉପାଡ଼ି ।

କଣ୍ଠ ଶୁଖିଗଲା-ମୁଖେ ନ ଆସେ ବଚନ,
ପାଣି ବିନା ସକୁଉର ଜୀବନ ଯେସନ । ୧୭୯

କଠୋର ହୃଦୟା ପୁଣି କଟୁ କୈକେୟୀ କହଇ,
ମନେ ହୁଏ ଘାଆରେ ସେ ଗରଳ ଲେପଇ ।
"ଶେଷକୁ ଏପରି ଯେବେ କରିବାର ଥିଲା,
"ମାଗ ମାଗ" କହିବାକୁ କିଏ କହିଥିଲା ? ୧୮୦

ଠୋ' ଠୋ' ହସିବ ଓ ଗାଲ ଫୁଲାଇବ,
ଏକାବେଳେ ଦୁଇ କଥା କିପରି ହୋଇବ ?
ଦାନୀ ବୋଲାଇବ ତେଣେ କାର୍ପଣ୍ୟ କରିବ,
ରଣେ ବାହାଦୁରି ନେବ, ଘାତ ନ ଲାଗିବ । ୧୮୧

ସତ୍ୟ ଲଙ୍ଘ ଅବା ସତ୍ୟ ପାଳ ଧୈର୍ଯ୍ୟ ଧରି,
କାନ୍ଦୁଛ କାହିଁକି ରାଜା ଅବଳାଙ୍କ ଭଳି ।
ଦେହ ଧନ ଧାମ ନାରୀ ସୁତ ବସୁନ୍ଧରା,
ସତ୍ୟବ୍ରତୀ ପାଶେ ସବୁ ତୃଣ ସମ ପରା !!" ୧୮୨

ରାଣୀ ମର୍ମଭେଦୀ କଥା ଶୁଣି ନରସାଇଁ,
କହିଲେ, "ଯା' କହୁ କହ ତୋର ଦୋଷ ନାହିଁ ।
ମୋ କାଳ ପିଶାଚ ହୋଇ ତୋଅଠି ଲାଗୁଛି,
ସେହି ତୋତେ ଏହି ସବୁ କଥା କୁହାଉଛି । ୧୮୩

ଭରତ ରାଜୁହେବା କେବେହେଲେ ରାଜପଦେ,
ବିଧି ବଶେ ବସିଅଛି କୁମତି ତୋ ହୃଦେ ।
ସେ ସକଳ ଅଟେ ମୋର ପାପ ପରିଣାମ,
ଅସମୟେ ସେଥିପାଇଁ ବିଧି ହେଲା ବାମ । ୧୮୪

ପୁଣି ଏ ଅଯୋଧ୍ୟା ସୁଖ ସମ୍ପଦେ ପୂରିବ,
ସର୍ବ ଗୁଣ ଧାମ ରାମ ରାଜତ୍ୱ ଆସିବ ।
କରିବେ ତାହାର ସେବା ମିଳି ସବୁ ଭାଇ,
ତ୍ରିଭୁବନେ ବ୍ୟାପିଯିବ ରାମର ବଡ଼ାଇ । ୧୮୫

କଲୁ ତୋ କଳଙ୍କ ଆଉ ସନ୍ତାପ ମୋହର,
ଲାଭବନ୍ତ କାଳ କାଳ ଭିଲେକ ମାତର ।
କରିସାʼ ଏବେ ତୁ ଯାହା ତୋତେ ଭଲ ଲାଗେ,
ଲୁଚାଇ ମୁହଁକୁ ବସ, ନ ରହ ମୋ ଆଗେ । ୧୮୬

ଯେ ଯାଏଁ ମୁଁ ବଞ୍ଚିଥିବ ସେ ପର୍ଯ୍ୟନ୍ତ ମୋତେ,
କିଛି ନ କହିବୁ, ହାତ ଯୋଡ଼ି କହେ ତୋତେ ।
ଅନ୍ତେ ପୁଣି ଅନୁତାପ କରିବୁ ତୁ ଯାଇ,
ସିଂହ ଶିଶୁ ପାଳିବାକୁ ବଧ କରୁ ଗାଈ । ୧୮୭

କାହିଁକି ଏ ସର୍ବନାଶ କର୍ମ କଲୁ ତୁହି ?”
କୋଟିବାର କହି ରାଜା ମୂର୍ଚ୍ଛା ଗଲେ ଭୂଇଁ ।
କପଟ-ଚତୁରୀ କିଛି ବଚନ ନ କହେ,
ମଶାଣି ସାଧକ ଯେହ୍ନେ ସିଦ୍ଧି ନାଶ ଭୟେ । ୧୮୮

“ରାମ ରାମ” କହି ରାଜା ହୁଅନ୍ତି ବିକଳ,
ଡେଣାକଟା ଚଢ଼େଇର ଯେହ୍ନେ ହୃଦସ୍ଥଳ ।
ହୃଦୟେ ସେ ମନାସନ୍ତି ପ୍ରଭାତ ନ ହେଉ,
ଏକଥା କଏ ବା ଯାଇ ରାମକୁ ନ ଦେଉ । ୧୮୯

ରଘୁକୁଳ-ଗୁରୁ ସୂର୍ଯ୍ୟ ନ ହୁଅ ଉଦୟ,
ଅଯୋଧ୍ୟାକୁ ଦେଖି ଦାହ ହୋଇବ ହୃଦୟ ।
ରାଜାଙ୍କର ସ୍ନେହ ଆଉ ରାଣୀ କଠୋରତା,
ଦୁଇ ସୀମା ରଚି ଯେହ୍ନେ ଗଢ଼ିଛି ବିଧାତା । ୧୯୦

ନୃପତି ବିଳାପ କରୁ କରୁ ହେଲା ଭୋର,
ଦୁଆରେ ଶୁଭିଲା ବୀଣା ବେଣୁ ଶଙ୍ଖସ୍ୱର ।
ପଢ଼ନ୍ତି ସୁଯଶ ଭାଟ ଗାଆନ୍ତି ଗାୟକ,
ଶୁଣି ନୃପତିଙ୍କୁ ଲାଗେ ଯେସନେ ଶାୟକ । ୧୯୧

ସତୀ ଯିବା ନାରୀ ପାଶେ ଯେହ୍ନେ ବିଭୂଷଣ,
ଏ ମଙ୍ଗଳ-ସାଜ ତେହ୍ନେ ରାଜାଙ୍କୁ ଦୂଷଣ ।

ରାମ-ଦରଶନ ଇଚ୍ଛା ଉତ୍ସାହ ମନରେ,
ତେଣୁ କାର ନିଦ ନାହିଁ ସେହି ନିଶିଥରେ । ୧୯୨

ଦ୍ୱାରେ ଭିଡ଼ ମନ୍ତ୍ରୀ ଭୃତ୍ୟ ସେବକ ସକଳ,
ସୂର୍ଯ୍ୟୋଦୟ ଦେଖି କଥା ହେଲେ ପରସ୍ପର ।
ଏତେବେଳ ଯାଏଁ ଆଜି ଅଯୋଧ୍ୟା ନୃପତି,
କି କାରଣେ ଭଲ ଶଯ୍ୟା ତ୍ୟାଗ ନ କରନ୍ତି ? ୧୯୩

ପାହାନ୍ତା ପହରୁ ନିତି ଉଠନ୍ତି ନୃପତି,
ଲାଗଇ ଆମକୁ ଆଜି ଅଦଭୁତ ଅତି ।
ଉଠାଅ ସୁମନ୍ତ୍ର ଯାଇ ଭବନେ ଝଟତି,
କରିବା ତ କର୍ମ ପାଇ ଗୁରୁ ଅନୁମତି । ୧୯୪

ସୁମନ୍ତ୍ର ଚାଲିଲେ ତହୁଁ ରାଜ ଅନ୍ତଃପୁରେ,
ମହଲକୁ ଭୟଙ୍କର ଦେଖି ଗୁଡ଼ି ଥରେ ।
ଖାଇ ଗୋଡ଼ାଉଛି କିଏ, କସ ଅବା ହେଲ,
ବିପତ୍ତି-ବିଷାଦ ସତେ ପକାଇଛି ଡେରା । ୧୯୫

ପଚାରିଲେ କେହି କିଛି ନ ଦିଏ ଉତ୍ତର,
ଗଲେ ସେ କୈକେୟୀ ପୁରେ ଯହିଁ ନୃପବର ।
"ଜୟ ଜୀବ" କହି ଶିର ନୁଆଁଇ ବସିଲେ,
ରାଜାଙ୍କ ଦୁର୍ଦ୍ଦଶା ଦେଖି ମଉଳ ପଡ଼ିଲେ । ୧୯୬

ଦୁଃଖେ କଳା ପଡ଼ି ତଳେ ଗଡ଼ନ୍ତି ରାଜନ,
ମୂଳରୁ ଉପୁଡ଼ି ପଦ୍ମ ଲୋଟଇ ଯେସନ ।
ପଚାରି ପାରନ୍ତି ନାହିଁ ସଚିବ ଭୟରେ,
ଅଶୁଭ-କୈକେୟୀ ତହୁଁ ଅଶୁଭେ କହିଲେ— । ୧୯୭

"ରାଜାଙ୍କୁ ତ ନିଦ ନାହିଁ ରାତି ଉଜାଗର,
କାରଣ ଜାଣନ୍ତି ସିନା ଜଗତ ଈଶ୍ୱର ।
ରାମ ରାମ ରଟି ରଟି କଲେ ସେ ସକାଳ,
କିନ୍ତୁ ନ କହନ୍ତି କିଛି ରହସ୍ୟ ତାହାର । ୧୯୮

ଯାଇ ଡାକ ଆଣ ଏବେ ରାମଙ୍କୁ ସତ୍ୱର,
ଫେରି ଆସି ପଗୃରିବ ଆଉ ଯା' ଖବର ।"
ରାଜ ଅଭିପ୍ରାୟ ଜାଣି ଚଳିଲେ ସୁମନ୍ତ୍ର,
ଭାବିଲେ ସେ ରାଣୀଙ୍କର କିଛୁ ଷଡ଼ଯନ୍ତ୍ର । ୧୯୯

ଚିନ୍ତା ବିକଳରେ ବାଟେ ନ ପଡ଼େ ଚରଣ,
ରାମ ଗଲେ ରାଜା ଅବା କହିବେ କଅଣ ?
କୌଣସି ପ୍ରକାରେ ଦମ୍ଭି ରାମ ଦ୍ୱାରେ ଗଲେ,
ଦୁଃଖ ମନ ଦେଖି ଲୋକେ କେତେ ପ୍ରଶ୍ନ କଲେ । ୨୦୦

ସଭିଙ୍କୁ ବୁଝାଇ କରି ପ୍ରଶ୍ନ ସମାଧାନ,
ଗଲେ ଯହିଁ ଥିଲେ ରାମ କରୁଣା-ନିଧାନ ।
ସୁମନ୍ତ୍ରଙ୍କୁ ଆସିବାର ଦେଖି ରଘୁମଣି,
ସମ୍ମାନ ସତ୍କାର କଲେ ପିତୃ ତୁଲ୍ୟ ମଣି । ୨୦୧

ଶ୍ରୀମୁଖ-ନିରେଖି ମନ୍ତ୍ରୀ "ଆଜ୍ଞା" ଜଣାଇଲେ,
ସଙ୍ଗେ ନେଇ ରଘୁକୁଳ-ଦୀପଙ୍କୁ ଚଳିଲେ ।
ମନ୍ତ୍ରୀ ସଙ୍ଗେ ବିନା ବେଶେ ଗଲେ ରଘୁପତି,
ପଥେ ଦେଖି ଲୋକେ ଅତି ଦୁଃଖିତ ହୁଅନ୍ତି । ୨୦୨

ରଘୁବଂଶ ମଣି ରାମ ଦେଖିଲେ ସେଠାରେ,
ରାଜା ପଡ଼ିଛନ୍ତି ଅତି ଦୀନ ଅବସ୍ଥାରେ ।
ସିଂହୀକୁ ନିରେଖି ଯେସନ୍ତେ ପରାଣ ବିକଳେ,
ବୃଦ୍ଧ ଗଜରାଜ ଲୋଟି ପଡ଼ିଅଛୁ ତଳେ । ୨୦୩

ଶୁଖିଛି ଅଧର ସାରା ଶରୀର ଜଳୁଛି,
ମଣିହୀନ ଭୁଜଙ୍ଗ କି ବିକଳେ ଗଡ଼ୁଛି ।
ଦେଖିଲେ ସେ କ୍ରୋଧାନ୍ୱିତା କୈକେୟୀଙ୍କି ତହିଁ,
ଶେଷ ଘଡ଼ି ଗଣେ ଯେସନ୍ତେ କାଳ ବସି ରହି । ୨୦୪

ଶ୍ରୀରାମ କରୁଣାମୟ କୋମଳ ପରମ,
କେବେ ନ ଶୁଣିବା ଦୁଃଖ ଦେଖିଲେ.ପ୍ରଥମ ।

ତଥାପି ସେ ବଳ୍ପ ଧରି ବେଳା ଜାଣି ମନେ,
ପଚାରିଲେ ଜନନୀଙ୍କୁ କୋମଳ ବଚନେ । ୨୦୫

"କହ ମାତ ପିତାଙ୍କର ଦୁଃଖର କାରଣ,
କରିବ ଯତନ ଯେଣେ ହେବ ନିବାରଣ ।"
"ଶୁଣ ସେ କାରଣ ରାମ-କହିଲେ କୈକେୟୀ,-
ତୁମ ପ୍ରତି ଅତି ସ୍ନେହ-ଏ ଦୁଃଖ ସେ ନେଇ । ୨୦୬

ଦେବା ପାଇଁ କହିଥିଲେ ମୋତେ ଦୁଇ ବର,
ମାଗିଲି ମୁଁ ଯାହା ମୋତେ ଲଗିଲା ସୁନ୍ଦର ।
ତାହା ଶୁଣି ହୃଦେ ଦୁଃଖ କରନ୍ତି ରାଜନ,
ଛାଡ଼ି ନ ପାରନ୍ତି ତୁମ ସ୍ନେହ ଆକର୍ଷଣ । ୨୦୭

ଏଣେ ପୁତ୍ର ସ୍ନେହ, ତେଣେ ପ୍ରତିଜ୍ଞା ବଚନ,
ସଙ୍କଟରେ ପଡ଼ି ଦୁଃଖ ପାଆନ୍ତି ରାଜନ ।
ଏବେ ଶିରୋଧାର୍ଯ୍ୟ କରି ରାଜାଙ୍କ ଆଦେଶ,
ମେଣ୍ଟାଅରେ ପୁତ୍ର ତୁହି ଏ ଅସହ୍ୟ କ୍ଳେଶ ।" ୨୦୮

ନିଧଡ଼କ ବସି ସିଏ କହେ କଟୁ କଥା,
ଶୁଣି ନିଜେ 'କଠିନତା' ଲଭିବ ତ ବ୍ୟଥା ।
ରସନା ଶାୟକ, ବକ୍ର ଶର ସେ ବଚନ,
ମନେ ହୁଏ ଲକ୍ଷ୍ୟ ତାର କେବଳ ରାଜନ । ୨୦୯

"କଠୋର ପଣ" କ ଶ୍ରେଷ୍ଠ ବୀର ତନୁ ଧରି,
ଏଇଠାରେ ଧନୁର୍ବିଦ୍ୟା ଶିଖଇ ଯେପରି ।
ରାମଙ୍କୁ ଶୁଣାଇ ସବୁ ବସିଲା ଏପରି,
ବସିଅଛି ନିଷ୍ଠୁରତା ଅବା ଦେହ ଧରି । ୨୧୦

ଭାନୁକୁଳ-ଭାନୁ ରାମ ଆନନ୍ଦ ଆଧାର,
ମୁରୁକି ହସିଲେ ମନେ ମନେ ବାରବାର ।
କହିଲେ ଦୂଷଣହୀନ କୋମଳ ବଚନ,
ଯତେ କି ସେ କଥା ବାଣୀ ଅଙ୍ଗ ବିଭୂଷଣ । ୨୧୧

"ଶୁଣ ଗୋ ଜନନୀ ସେହି ପୁତ୍ର ଭାଗ୍ୟଧର,
ପିତା ମାତା କଥାକୁ ଯେ କରଇ ଆଦର ।
ଜନକ ଜନନୀ ତୋଷ କରେ ଯେ ତନୟ,
ସଂସାରେ ସେପରି ପୁତ୍ର ଦୁର୍ଲ୍ଲଭ ନିଶ୍ଚୟ । ୨୧୨

ମିଳନ ହୋଇବ ବନେ ମୁନିଙ୍କ ସହିତ,
ଏଥିରେ ମୋହର ହେବ ସବୁ ଭାବେ ହିତ ।
ପିତାଙ୍କ ଆଦେଶ ଏଥିଁ ହୋଇବ ପାଳନ,
ତହିଁ ସଙ୍ଗେ ପୁଣି ତବ ପୂର୍ଣ୍ଣ ସମର୍ଥନ । ୨୧୩

ଭରତ ହେ। ପ୍ରାଣ ପ୍ରିୟ ହେବ ଯୁବରାଜ,
ସବୁ ମତେ ବିଧାତା ମୋ ଅନୁକୂଳ ଆଜ ।
ଏପରି କାର୍ଯ୍ୟରେ ଯଦି ନ ଯିବି ମୁଁ ବନ,
ମୂର୍ଖ ସମାଜରେ ହେବ ପ୍ରଥମେ ଗଣନ । ୨୧୪

ଛାଡ଼ି କଳ୍ପତରୁ ଯେହୁ ସେବେ ରବ ଗଛ,
ବିଷକୁ ମାଗଇ କରି ଅମୃତକୁ ପର ।
ସେହି ମହାମୂର୍ଖ ମଧ୍ୟ ଏ ସୁଯୋଗ ପାଇ,
ଭାବି ଦେଖ ମାତା କେବେ ହରାଇବ ନାହିଁ । ୨୧୫

ବିଶେଷ ଭାବରେ ମୋର ଦୁଃଖ ଏକ ମାତା,
ଦେଖି ନୃପତିଙ୍କ ଏହି ବ୍ୟାକୁଳ ଅବସ୍ଥା ।
ଏ ତୁଚ୍ଛ କଥାକୁ ଦୁଃଖ ପିତାଙ୍କର ଏତେ,
ଏହାକୁ ବିଶ୍ୱାସ ଯିବ କହ ମୁଁ କେମନ୍ତେ ? । ୨୧୬

ରାଜା ବଡ଼ ଧୀର ଗୁଣସାଗର ଅଗାଧ,
ଜାଣି ମୋର କିଛି ଗୁରୁତର ଅପରାଧ ।
କହନ୍ତିନ କିଛି କଥା ମୋତେ ମାତା ଜାଣ,
ତୁମେ ସତ ସତ କୁହ ତୁମକୁ ମୋ ରାଣ । ୨୧୭

ସହଜେ ସରଳ ଅତି ରଘୁବର ବାଣୀ,
ବଙ୍କା କରି ବୁଝେ କିନ୍ତୁ ମନ୍ଦମତି ରାଣୀ ।

ସମାନ ହେଲେ ବି ଜଳ ଜୋକ ଯେଉଁଭଳି,
ସେ ଜଳ ଭିତରେ ଗୁଳେ ବଙ୍କ ଗତି କରି । ୨୧୮

ରାମ ସମ୍ମୁଖରେ ରାଣୀ ହୋଇ ହର୍ଷମନା,
କହିଲେ କପଟେ କରି ସ୍ନେହର ଛଳନା ।
ତୋ ଶପଥ ଦିଏ ପୁଣି ଭରତର ରାଣ,
ଜାଣିନ ମୁଁ ନୃପଙ୍କର ଦୁଃଖ ହେତୁ ଆନ । ୨୧୯

ଅପରାଧ କରିବାର ପୁଅ ତୁ'ରେ ନୁହଁ,
ବାପ ମାଆ ବନ୍ଧୁଜନ ସୁଖର ତୁ ସୁଅ ।
ଯା' କହୁ କହନ୍ତୁ ରାମ ସବୁ ତାହା ସତ,
ତୁହି ବାପ ମାଆଙ୍କର ଚିର ଅନୁଗତ । ୨୨୦

ତୁ'ଛୁ ଯାଏ ରାମ କହ ପିତାଙ୍କୁ ବୁଝାଇ,
ବୃଦ୍ଧକାଳେ ଅପଯଶ ହେବ କାହିଁପାଇଁ ?
ଯେ ପୁଣ୍ୟେ ଦେଇଛି ତାଙ୍କୁ ପୁତ୍ର ତୁମ ସମ,
ତାକୁ ଅନାଦର କେବେ ନ ହେବ ଉତ୍ତମ ।" ୨୨୧

ମଗଧେ ଗୟାଦି ତୀର୍ଥ ରାଜେ ଯେଉଁଭଳି,
କୁମୁଖେ ଏ ଶୁଭ କଥା ଲାଗେ ସେହିପରି ।
ରାମଙ୍କୁ ଲାଗଇ ଭଲ ମାତାଙ୍କ ବଚନ,
ଗଙ୍ଗାରେ ପବିତ୍ର ସବୁ ସଲିଳ ଯେସନ । ୨୨୨

ମୂର୍ଚ୍ଛା ଭଙ୍ଗ ଅନ୍ତେ ରାଜା ରାମ ରାମ କହି,
ନେଉଠାଇଲେ ସେ କଡ଼ ହୃଦେ ଦୁଃଖ ବହି ।
ଏ ସମୟେ ମନ୍ତ୍ରୀ କହି ରାମ ଆଗମନ,
ବିପଦେ ଧଇର୍ଯ୍ୟ ଲାଗି କଲେ ନିବେଦନ । ୨୨୩

ନୃପତି ଶୁଣିଲେ ଯେବେ ରାମ ଆଗମନ,
ହୃଦୟରେ ଧୈର୍ଯ୍ୟଧରି ମେଲିଲେ ନୟନ ।
ରାଜାଙ୍କୁ ସମ୍ଭାଳି ଧରି ମନ୍ତ୍ରୀ ବସାଇଲେ,
ରାମ ଯେ ପଡ଼ିଛି ପଦେ ନୃପତି ଦେଖିଲେ । ୨୨୪

ସ୍ନେହ ବଳଲରେ ନେଲେ କୋଳକୁ ଉଠାଇ,
ହଜିଥିବା ମଣି ଫଣୀ ପାଇଲା କି ଫେରି ।
ଶ୍ରୀରାମଙ୍କୁ ଦେଖି ରାଜା ନେତ୍ର ଅପଲକେ,
ରହିଲେ, ଲୋତକ ଧାର ବହିଲା ହରଷେ । ୨୨୫

ଶୋକାକୁଳରେ କିଛି କଥା କହି ନ ପାରନ୍ତି,
ବାର ବାର ଯାହା କୋଳେ ସେ ଯାକି ଧରନ୍ତି ।
ମନେ ମନେ ବିଧାତାଙ୍କୁ କରନ୍ତି ଗୁହାରି,
ନ ଯାଉ ଯେପରି ରାମ ଘୋର ବନେ ଚାଲି । ୨୨୬

ହୃଦୟେ କହନ୍ତି ମହେଶ୍ୱରଙ୍କୁ ସୁମରି,
ଶୁଣ ପ୍ରଭୁ ସଦାଶିବ ବିନତି ମୋ ହରି ।
ତୁମେ ପରା ଆଶୁତୋଷ ଅଢେଳ ଦାନୀ,
ମୋ ଦୁଃଖ ହରଣ କର ଦୀନଜନ ଜାଣି । ୨୨୭

ବୁଦ୍ଧିର ପ୍ରେରକ ତୁମେ ସଭିଙ୍କ ହୃଦୟେ,
ରାମଙ୍କୁ ଏପରି ବୁଦ୍ଧି ଦିଅ ମୋ ବିନୟେ ।
ମୋ ବଚନ ମୋ ସ୍ନେହ ସବୁ ତ୍ୟାଗ କରି,
ମୋ ଆଦେଶ ଲଂଘି ଘରେ ରହିବ ଯେପରି । ୨୨୮

ଜଗତେ ଅଯଶ ହେଉ ଯଶ ପାଉ ନାଶ,
ନରକେ ପଡ଼ିବ ଅବା ନୋହୁଁ ସ୍ୱର୍ଗ ବାସ,—
ସହିବି ଦୁଃସହ ଦୁଃଖ ଯେତେବେ ଘଟଇ ଆଉ
ରାମ ଆଖି ଆଗୁ ମୋର କଦାପି ନ ଯାଉ । ୨୨୯

କିଛି ନ କହନ୍ତି ରାଜା, ବିଚାରନ୍ତି ମନେ,
ଥରେ ମନ ଉପ୍ରଜିତ ଥରଇ ଯେସନେ ।
ପିତା ସ୍ନେହ-ବଶ ବୋଲି ରଘୁନାଥ ଜାଣି,
ପୁଣି କିଛି କହିଦେବେ ମାତା ଅନୁମାନି । ୨୩୦

ଦେଶ କାଳ ଅବସର ବିଚାରି ମନରେ,
କହିଲେ ଶ୍ରୀ ରଘୁନାଥ ବିନୀତ ସ୍ୱରରେ—

"ଧୃଷ୍ଟତା କରି ମୁଁ କହୁଛି ଏଠାରେ,
ଅନୁଚିତ ହେଲେ କ୍ଷମ ବାତ୍ସଲ୍ୟ ବଶରେ । ୨୩୧

ଏ ଇଚ୍ଛା କଥାରୁ ଦୁଃଖ ସକଳ କମାଇ,
ପ୍ରଥମରୁ ମୋତେ କେହି ଜଣାଇଲେ ନାହିଁ ।
ଆପଣଙ୍କ ଦଶା ଦେଖି ମାଏ ପଚାରିଲି,
ଶୁଣି ସବୁ କଥା ଏବେ ଶୀତଳ ହୋଇଲି । ୨୩୨

ଏହି ଶୁଭ କାଳେ ପିତା ହେଇ ସ୍ନେହ ବଶ,
ପରିହରି ଦୁଃଖ ହୋଇ ହୃଦୟେ ହରଷ ।
"ଆଦେଶ ଦିଅନ୍ତୁ"—ଏହା କହିବା ସମୟେ,
ଆନନ୍ଦେ ପ୍ରଭୁଙ୍କ ତନୁ ପୁଲକିତ ହୁଏ । ୨୩୩

"ଯାହାର ବଚନ ଶୁଣି ପିତା ପ୍ରମୋଦିତ,
ଧରା ତଳେ ତା' ଜନମ ଧନ୍ୟ ସୁନିଶ୍ଚିତ ।
ଯେ ପୁତ୍ରକୁ ପିତାମାତା ପ୍ରାଣ ସମ ପ୍ରିୟ,
ତାର କରଗତ ସର୍ବ ପଦାର୍ଥ-ଅମିୟ । ୨୩୪

ଆଜ୍ଞା ପାଳି ଅରଜିବି ଜୀବନର ଫଳ,
ପୁଣି ରାଜା ହେବ ଫେରି ବନରୁ ଚଞ୍ଚଳ ।
ଯାଉଛୁ ମାତାଙ୍କଠାରୁ ବିଦାୟ ହୋଇବ,
ପୁଣି ଆସି ପାଦେ ପଡ଼ି ବନକୁ ମୁଁ ଯିବ ।" ୨୩୫

ଏହିପରି କହି ତହୁଁ ଗଲେ ରଘୁପତି,
ଶୋକ ବଶେ ରାଜା କିଛି କହି ନ ପାରନ୍ତି ।
ଏହି ଅଶୁଭ କଥା ବେଗେ ବ୍ୟାପିଲା ନଗରେ,
ଛୁଇଁ ବିଚ୍ଛୁ ବିଷ ଯେସନ୍ତେ ବ୍ୟାପେ ସର୍ବାଙ୍ଗରେ । ୨୩୬

ନରନାରୀ ଶୁଣି ସର୍ବେ ହୋଇଲେ ବିକଳ,
ଲତା ଝାଉଁଳଇ ଯେସନ୍ତେ ଦେଖି ଦାବାନଳ ।
ଯେ ଯହିଁ ଶୁଣିଲା ତହିଁ ମଥା କଚାଡ଼ିଲା,
ଅତି ବଡ଼ ଦୁଃଖେ ଧୈର୍ଯ୍ୟ ଧରି ନ ହୋଇଲା । ୨୩୭

ମୁହଁ ଶୁଖିଗଲା ନେତ୍ରୁ ଅଶ୍ରୁ ଗଲା ଝରି,
ହୃଦୟ ପାତରେ ଦୁଃଖ ନ ଧରେ ଯେପରି ।
ସତେ କି କରୁଣ ରସ ତା' ସେନା ସଜାଇ,
ବାଦ୍ୟ ସହ ଅଯୋଧ୍ୟାରେ ପଡ଼ିଲା ଓହ୍ଲାଇ । ୨୩୮

ଶୁଭ ସଂଯୋଗକୁ ବିଧି ଦେଲା ଯେ ବିଗାଡ଼ି,
କୈକେୟୀଙ୍କି ଯହିଁ ତହିଁ ଲୋକେ କଲେ ଗାଳି ।
ପାପିନୀକୁ କିପରି ବା ଏ ବୁଦ୍ଧି ଦିଶିଲା,
ଛପର ହୋଇବା ଘରେ ନିଆଁ ଲଗାଇଲା । ୨୩୯

କରେ ତାଡ଼ି ନିଜ ନେତ୍ର ଦେଖିବାକୁ ଚାହେଁ,
ଅମୃତ ଫୋପାଡ଼ି ହଳାହଳ ଚାଖି ଖାଏ ।
ମନ୍ଦ ବୁଦ୍ଧି ଅଭାଗିନୀ କଠୋର କୁଟିଳ,
ହେଲା ରଘୁବଂଶ-ବେଣୁ-ବନକୁ ଅନଳ । ୨୪୦

ପତ୍ର ପରେ ବସି ଇଏ କାଟୁଅଛି ଡାଳ,
ସୁଖ ପରେ ନଦେ ଶୋକ ସନ୍ତାପ ଅପାର ।
ରାମଚନ୍ଦ୍ର ଥିଲେ ତାର ସଦା ପ୍ରାଣ ସମ,
କି କାରଣୁ କଲା ଭଲା ଏ କୁଟିଳ କର୍ମ । ୨୪୧

କବି ଯା କହନ୍ତି ସତ ଏ ନାରୀ ଚରିତ୍ର,
ଅଗମ୍ୟ ଅଗାଧ କୂଟ କପଟେ ପୂରିତ ।
କେ ଗୃହ୍ନିଲେ ନିଜ ପ୍ରତିବିମ୍ବ ଧରିପାରେ,
ମାତ୍ର ନାରୀ ଗତି ଧରା ନ ପଡ଼େ ସଂସାରେ । ୨୪୨

ଅନଳ କାହାକୁ କହ ଜାଳି ନ ପାରଇ !
ସମୁଦ୍ରରେ ଅବା କେଉଁ ଦ୍ରବ୍ୟ ନ ଧରଇ !!
କାରେ କବଳିତ କାଳ ନ କରେ ସଂସାରେ !!
ଅବଳା ପ୍ରବଳା ନାରୀ କଣ କି ନ ପାରେ !!! ୨୪୩

କି ଶୁଣାଇ ବିଧି ପୁଣି କିସ ଶୁଣାଉଛି,
କି ଦେଖାଇ ଦେଖାଇବା ପାଇଁ କି ଚାହୁଁଛି ।

କଏ କହୁ ଭଲ କଲେ ନାହିଁ ନୃପବର,
ବିଚାର ନ କରି ଦେଲେ କୁମତିକୁ ବର । ୨୪୦

ହଠ କରି ବର ।ରି ହେଲେ ଦୁଃଖ ଭାଗୀ,
ଜ୍ଞାନ ଗୁଣ ହଜେ ହେଲେ ନାରୀ ଅନୁରାଗୀ ।
ଅନ୍ୟ ଜଣେ ଧର୍ମର ଯେ ମହତ୍ତ୍ୱ ଜାଣଇ,
ସେ ଚତୁର ଜନ ନୃପେ ଦୋଷ ନ ଦଅଇ । ୨୪୫

ଶିବି ହରିଶ୍ଚନ୍ଦ୍ର ଆଉ ଦଧୀଚି କାହାଣୀ,
ଅପର ନିକଟେ କେତେ କହଇ ବଖାଣି ।
ଏ କାର୍ଯ୍ୟେ ଭରତ ପୂର୍ବ ସମ୍ମତ କେ କହେ,
ଆନ କଏ ଶୁଣି ଉଦାସୀନ ହୋଇ ରହେ । ୨୪୬

ହସ୍ତେ କର୍ଣ୍ଣ ମୁଦି, ଜିଭ କାମୁଡ଼ି ଦାନ୍ତରେ,
ଏହା ମିଥ୍ୟା ବୋଲି କଏ କହେ ଉଚ୍ଚସ୍ୱରେ ।
ଏପରି କହିଲେ ତୁମ ପୁଣ୍ୟ ହେବ କ୍ଷୟ,
ଭରତଙ୍କୁ ପ୍ରାଣୁ ପ୍ରିୟ କୌଶଲ୍ୟା ତନୟ । ୨୪୭

ଚନ୍ଦ୍ରମାରୁ ଝରିପାରେ କେବେ ବି ଅନଳ,
ଅମୃତ ପାଲଟି ପାରେ ଅବା ହଳାହଳ ।
କୈକେୟୀ ତନୟ କିନ୍ତୁ କଦାପି ସପନେ,
ରାମ ପ୍ରତିକୂଳ କିଛି ନ କରିବେ କ୍ଷଣେ । ୨୪୮

କଏ ବିଧାତାକୁ ଦୋଷ ଦେବାରେ ଲାଗିଲା,
ଅମୃତ ଚଖାଇ ଶେଷେ ବିଷ ଖୁଆଇଲା ।
ଅଯୋଧ୍ୟାରେ ହାହାକାର ହୋଇଲେକ ପଡ଼ିଲା,
ଦୁଃସହ ଦାହରେ ହୁହୁଁ ଉନ୍ମାଦ ଉଠିଲା । ୨୪୯

ବ୍ରାହ୍ମଣୀ ବୟସ୍କା କୁଳ ସୀମନ୍ତିନୀଗଣ,
ଥିଲେ ଯିଏ କୈକେୟୀଙ୍କ ଶରଧା ଭାଜନ–
ନିଟରେଶି ଏ ଶାନ୍ତି କେତେ କହନ୍ତି ବୁଝାଇ,
କଥା ବାଣ ସମ ଲାଗେ ହିତ ହୁଏ ନାହିଁ । ୨୫୦

"ରାମ ରାମ ପ୍ରିୟ ମୋର ନୁହଇ ଭରତ,
ଏକଥା ତୁ କହୁଥିଲୁ ଜାଣଇ ଜଗତ ।
ସହଜେ ରାମଙ୍କୁ ତୁ ଯେ ସ୍ନେହ କରୁଥିଲୁ,
କେଉଁ ଅପରାଧେ ତାଙ୍କୁ ବନେ ପଠାଇଲୁ ? ୨୫୧

କରୁ ତ ନ ଥିଲୁ କେବେ ସଉତୁଣୀ ଦ୍ୱେଷ,
ଜଣା ତୋର ସ୍ନେହ ପ୍ରୀତି ଏ ସମସ୍ତ ଦେଶ ।
ଅବା କଉଶଲ୍ୟା ତୋର ଷଡ଼ କଲ କସ,
ଯାହା ପାଇଁ କଗୃଢ଼ିଲୁ ଏ ପୁରେ କୁଳଶ ? ୨୫୨

ପ୍ରିୟ ପତି ଗୃହ ପୁରେ ରହିବେ କ ସୀତା,
ଲକ୍ଷ୍ମଣଙ୍କୁ ରାମହୀନ ପୁର ହେବ ପିତା ।
ଭରତ ଅଯୋଧ୍ୟା ରାଜ୍ୟ ଭୋଗି କ ପାରିବେ ?
ରାମ ବିନା ରାଜା ସତେ ଜୀବନେ ରହିବେ ? ୨୫୩

ହୃଦୟେ ବିଚାର ସବୁ କୋପ ପରିହର,
ଶୋକ-କଳଙ୍କର-କୋଠି ନିଜକୁ ନ କର ।
ଯୁବରାଜ ପଦ ପଛେ ଦିଅ ଭରତକୁ,
ଅଯଥା ରାମଙ୍କୁ କିଆଁ ପଠାଅ ବନକୁ ? ୨୫୪

ଜାଣ ରାମ ରାଜ୍ୟ ଲୋଭୀ କଦାପି ନୁହନ୍ତି,
ଧାର୍ମିକ ବିଷୟ ଭୋଗ-ବିରାଗୀ ଅଟନ୍ତି ।
ରହନ୍ତୁ ଶ୍ରୀରାମ ଗୁରୁ-ବାସେ ତେଜି ଘର,
ନୃପ ପାଶୁଁ ମାଗିନିଅ ଏ ଦ୍ୱିତୀୟ ବର । ୨୫୫

ଆମ୍ଭର କହିବା କଥା ନ ମାନିବୁ ଯେବେ,
କିଛି ଲଭ ତୋ' ହାତରେ ପଡ଼ିବନି ତେବେ ।
କରିଥାଅ ଯେବେ ସବୁ ଛଳ ପରିହାସେ,
କୈକେୟୀ ପ୍ରକାଶ କର ସମସ୍ତଙ୍କ ପାଶେ । ୨୫୬

ରାମ ପର ପୁଅ କ'ଣ ରହଇ ବନସ୍ତେ,
ଏହା ଶୁଣି ତୋପତି କସ କହିବେ ସମସ୍ତେ ?

ଏବେ ନେଲ୍ ଚଞ୍ଚଳ ଉଠି କର ତୁ ଯତନ,
ବିଷାଦ କଳଙ୍କ ଦୂର ହୋଇବ ଯେସନ । ୨୫୭

ଅଯୋଧ୍ୟାର ଦୁଃଖ ପୁଣି ତୁମର କଳଙ୍କ,
ଯିବ ଯେ ଉପାୟେ ତାହା କରି କୁଳ ରଖ ।
ବନ ଯିବା ରାମଙ୍କୁ ତୁ ଆଣ ଲେଉଟାଇ,
କୌଣସି କଥାକୁ ଆଜେ ଆଉ ବଢ଼ାନାହିଁ ।"
ଯେସ୍ନେ ସୂର୍ଯ୍ୟ ବିନା ଦିନ ଦେହ ପ୍ରାଣ ବିନା,
ଚନ୍ଦ୍ରମା ବିହୁନେ ଜଣି ଶୋଭାହୀନ ଯିନା ।
ରାମ ବିନା ସେହିପରି ଅଯୋଧ୍ୟା ନଗର,
ତୁଳସୀ କହଇ ନାରୀ ହୃଦେ ଚିନ୍ତା କର । ୨୫୮

ସଖୀ ଶିକ୍ଷା ଦେଲେ ଯେତେ ଶ୍ରୁତି-ପ୍ରୀତିକର,
ଉପଦେଶମାନ ପରିଣାମେ ହିତକର ।
କିନ୍ତୁ ଯେ କୈକେୟୀ କୁଜା-ମନ୍ତ୍ରଣା-ଦୀକ୍ଷିତା,
ଟିକେ ଏହା ଶୁଣିବାକୁ କଲେ ନାହିଁ ଚିନ୍ତା । ୨୫୯

ଉତ୍ତର ନ ଦେଇ ଗୃହେଁ ସରୋଷ ନୟନେ,
ଦେଖିଲି ବାଘୁଣୀ ଗୃହେଁ ମୃଗକୁ ଯେସନେ ।
ସବେ ଗଲେ ଫେରି ଜାଣି ଅସାଧ୍ୟ ଏ ବ୍ୟାଧି,
କହି ଏ'ତ ମନ୍ଦମତି ବିଗୁରି ଅଭାଗୀ । ୨୬୦

ରାଜସୁଖ ଭୋଗେ ତାକୁ ବିଧି ହେଲା ବାମ,
କେହି ଯାହା ନ କରିବେ, କଲା ସେହି କାମ ।
ମନ୍ଦମତି କୈକେୟୀକି ଦେଇ କୋଟି ଗାଳି,
ବିଳାପ କରନ୍ତି ଯେତେ ପୁର ନରନାରୀ । ୨୬୧

ଜଳି ସେ ବିଷମ-ଜ୍ୱରେ ଛାଡ଼ିଲେ ନିଃଶ୍ୱାସ,
କହି ରାମ ବିନା ଆଉ ଜୀବନେ କି ଆଶ ?
ଏ ମହାବିୟୋଗେ ପ୍ରଜା ହେଲେ ବ୍ୟସ୍ତାକୁଳ,
ଜଳ ଶୁଖିଗଲେ ଯେସ୍ନେ ଜଳଚରକୁଳ । ୨୬୨

ଅଶେଷ ବିଷାଦଗ୍ରସ୍ତ ପୁର ନାରୀନର,
ମାତାଙ୍କ ସମୀପେ ତେଣେ ଗଲେ ରଘୁବର ।
ପ୍ରସନ୍ନ ବଦନ ମନେ ଚୌଗୁଣ ଉତ୍ସାହ,
ଆଜି ଚିନ୍ତା ନାହିଁ-ଅଟକିବେ ନରନାହ । ୨୬୩

ନୂଆ ଧରା ହାତୀପରି ରଘୁନାଥ ମନ,
ଲୁହାର ଶିଙ୍କୁଳି ସତେ ରାଜ୍ୟର ବନ୍ଧନ ।
ବନ ଯିବେ ଜାଣି ହେଲେ ବିମୁକ୍ତ ବନ୍ଧନ,
ଅଧିକ ଆନନ୍ଦେ ହୃଦ ହେଲା ସୁପ୍ରସନ୍ନ । ୨୬୪

ରଘୁକୁଳ ମଣି ରାମ ଯୋଡ଼ି ବେନି ହାତ,
ଆନନ୍ଦେ ମାତାଙ୍କ ପଦେ କଲେ ପ୍ରଣିପାତ ।
ହୃଦୟେ ଲଗାଇ ମାତା ଆଶୀର୍ବାଦ କରି,
ଦାନ କଲେ ବାସ ଅଳଙ୍କାର ମନ ଭରି । ୨୬୫

ଚୁମ୍ବିଲେ ବଦନ ମାତା ଥରକୁ ଯେ ଥର,
ଅଙ୍ଗ ପୁଲକିତ ନେତ୍ରେ ପ୍ରେମାଶ୍ରୁ ଝର ।
କୋଳେ ନେଇ ଲଗାଇଲେ ବୁକୁରେ ଆଦରେ,
ସ୍ତନରୁ ସ୍ରବିଲା କ୍ଷୀର ଜନନୀ ପ୍ରେମରେ । ୨୬୬

ସେ ପ୍ରେମ ଆନନ୍ଦ କିଛି କହି ହେବ ନାହିଁ,
କୁବେର ପଦବୀ ସତେ ରଙ୍କୀ ଗଲା ପାଇ ।
ଜନନୀ ନିରେଖି ସ୍ନେହେ ସୁନ୍ଦର ବଦନ,
କହିଲେ ମଧୁରେ ପ୍ରୀତି କୋମଳ ବଚନ । ୨୬୭

କହ ଆରେ ବାପ ମୋର ତୁ'ଛୁଯାଏ ମାତା,
କେବେ ସେହି ଶୁଭବେଳା ସୁମଙ୍ଗଳଦାତା ।
ଯାହା ପୁଣ୍ୟ ଶୀଳ ସୁଖ ସୀମା ମନୋରମ,
ସାର୍ଥକ ହୋଇବ ଯାହା ଲାଗି ଏ ଜନମ । ୨୬୮

ସେ ଶୁଭ ଲଗନ କେବେ ଯାହାକୁ ରେ ଧନ,
ଚାହିଁଛନ୍ତି ଲୋକେ ହୋଇ ଆତୁର ଉଚ୍ଛନ୍ନ ।

ଚାତକ ଚାତକୀ ଯେହ୍ନେ ତୃଷିତ ନୟନେ,
ଚାହାନ୍ତି ଶରଦ ସ୍ୱାତୀ ବୃଷ୍ଟିକୁ ଯେସନେ । ୨୬୯

ନୁ'ଛୁଯାଏ ପୁତ୍ର ଏବେ ସ୍ନାନ କରି ଯାଅ,
ମନ ରୁଚି ଅନୁସାରେ ମିଠା କିଛି ଖାଅ ।
ତା'ପରେ ପିତାଙ୍କ ପାଖେ ଯିବୁ ଆରେ ସୁତ,
ନୁଛୁଯାଏ ମାତା ବେଳ ହେଲାଣି ବହୁତ । ୨୭୦

ଶୁଣିଲେ ଜନନୀ କଥା ଅତି ଅନୁକୂଳ,
ସ୍ନେହ-ସୁରତରୁର କି ଏଗୁଡ଼ିକ ଫୁଲ ।
ସୁଖ-ମକରନ୍ଦେ ଭରା ଲକ୍ଷ୍ମୀ ମୂଳ ଯହିଁ,
ରାମ-ମନ-ଭୃଙ୍ଗ କିନ୍ତୁ ନ ଭୁଲିଲା ତହିଁ । ୨୭୧

ଧରମ ଧୁରୀଣ ରାମ ଧର୍ମ ଗତି ଜାଣି,
କହିଲେ, "ଶୁଣ ଗୋ ମାତ, ସୁକୋମଳ ବାଣୀ—
ରାଜା ଦେଇଛନ୍ତି ମୋତେ ଜାଣି ବନରାଜ୍ୟ,
ସେଇଠି ହୋଇବ ମୋର ସିଦ୍ଧି ସବୁ କାର୍ଯ୍ୟ । ୨୭୨

ହରଷିତ ମନେ ଆଜ୍ଞା ଦିଅ ଏବେ ମାତା,
ଆନନ୍ଦ ମଙ୍ଗଳ ହେବ ଯେହ୍ନେ ବନଯାତ୍ରା ।
ମୋହ ସ୍ନେହବଶେ କେବେ ନ କରିବ ଭୟ,
ମୋ ଆନନ୍ଦ ହେବ ଲଭି ତୁମ ଅନୁଗ୍ରହ । ୨୭୩

ବର୍ଷ ଚାରି ଦଶ ରହି ମାତା ଆଗୋ ବନେ,
ପିତାଙ୍କ ବଚନ ପାଳି ହରଷିତ ମନେ,
ଲେଉଟି ଚରଣ ପୁଣି କରିବି ଦର୍ଶନ,
ନ କର ମଳିନ ମାଗୋ ତିଳେ ତୁମ ମନ ।" ୨୭୪

ରଘୁବର ସୁମଧୁର ବିନୀତ ବଚନ,
ମାତା ହୃଦେ ଶର ସମ ବିନ୍ଧିଲା କଷଣ ।
ଭୟେ ଶୁଖିଗଲେ ଶୁଣି ସେ ଶୀତଳ ବାଣୀ,
ଶୁଖଇ ଅରଖ ଯେହ୍ନେ ଲଭି ବର୍ଷା ପାଣି । ୨୭୫

କହି ନ ହୁଅଇ ତଲେ ହୃଦୟ ବିଷାଦ,
ହରିଣୀ ଯେସନେ ବନେ ଶୁଣେ ସିଂହନାଦ ।
ଥରି ଥରି ଥରେ ତନୁ ନୟନ ସଜଳ,
ନୂଆ ବର୍ଷା-ଫେଣ ଖାଇ ମାଛ କି ବିକଳ ! ୨୭୬

ହୃଦେ ଦମ୍ଭ ଧରି ଗୃହ୍ଣି ପୁତ୍ରର ବଦନେ,
କହିଲେ ଜନନୀ ଦୁଃଖେ ଗଦଗଦ ବଚନେ—
ତୁମ୍ଭ ପ୍ରାଣସମ ପ୍ରିୟ ପିତାଙ୍କର ବାପ,
ତୋ ଗୁଣେ ମେ ନିତି ସୁଖ ମାଆନ୍ତି ଅମାପ । ୨୭୭

ରାଜ୍ୟ ଦେବା ପାଇଁ ସେ ତ ବାଛୁଥିଲେ ବେଳା,
କହନ୍ତି ଯିବାକୁ ବନେ କିବା ଦୋଷ ହେଲା ?
ଶୁଣାଅରେ ପୁତ୍ର ମୋତେ କାରଣ ସକଳ,
ସୂର୍ଯ୍ୟ-ବଂଶ-ବନକୁ କେ ହୋଇଲା ଅନଳ ? ୨୭୮

ରାମ ମୁଖ ଭାବ ଦେଖି ସଚିବ-ନନ୍ଦନ,
କହିଲେ ବୁଝାଇ ତହିଁ ସମସ୍ତ କାରଣ ।
ମୂକ ହୋଇ ରହିଗଲେ ତାହା ଶୁଣି ମାତା,
କିଏ ବର୍ଣ୍ଣିପାରେ କହ ସେ କାଳ ଅବସ୍ଥା ? ୨୭୯

ରଖି ନ ପାରନ୍ତି କହି ନୋହେ ବନେ ଯାଅ,
ବେନି ପକ୍ଷେ ହେଉଥାଏ ହୃଦେ ଘୋର ଦାହ ।
ବିଧି ଗତି ବାମ ସଦା ସଭିଙ୍କ ନିମନ୍ତେ,
ଚନ୍ଦ୍ର ଲେଖୁଥିଲେ ଆଙ୍କି ହୁଏ ରାହୁ ସତେ । ୨୮୦

ମତି ବ୍ୟସ୍ତ କଲେ ବେନି—ଧର୍ମ ଆଉ ପ୍ରୀତି,
ଭୁଜଙ୍ଗ ଛୁଚୁନ୍ଦ୍ରା ପ୍ରାୟ ହେଲା ତାଙ୍କ ରୀତି ।
ଭାବିଲେ ସେ ସ୍ନେହେ ରଖିପାରନ୍ତି ବା ଘରେ,
ଧର୍ମହାନି ହେବ ବାଦ ଭାଇଙ୍କ ମଧ୍ୟରେ । ୨୮୧

କହିଲେ ଯିବାକୁ ବନ ହୁଏ ବଡ଼ କ୍ଷତି,
ସଙ୍କଟ-ବିଷାଦବଶ ହୁଏ ରାଣୀ ମତି ।

ଘରେ ବୁଦ୍ଧିମନ୍ତ ହୃଦେ ବୁଝି ନାରୀ ଧର୍ମ,
ଭରତ ଶ୍ରୀରାମ ବେନ ଜାଣି ପୁତ୍ରସମ, ୨୮୨

ସରଳ ସ୍ୱଭାବା ଧୈର୍ଯ୍ୟ ଧରି ରାମମାତା,
କହିଲେ କୋମଳ କଥା "ଶୁଣ ଆରେ ବାପା ।
ଭଲ ତୁ କରିଛୁ ସତ ମରିଯାଏ ଧନ,
ପୁତ୍ରର କର୍ତ୍ତବ୍ୟ ପିତା ବଚନ ପାଳନ । ୨୮୩

ରାଜା ରାଜ୍ୟ ଦେବେ କହି ଦେଲେ ଘୋର ବନ,
ଏଥିରେ ମୋ ହୃଦେ ନାହିଁ ତିଳେକ କଷଣ ।
ଏତିକ ମାତ୍ରକ ଦୁଃଖ ପୁତ୍ରରେ ତୋ' ବିନା,
ରାଜା ପ୍ରଜା ଭରତକୁ କ୍ଲେଶ ହେବ ସିନା !! ୨୮୪

କେବଳ ପିତାଙ୍କ ଆଜ୍ଞା ହୋଇଥିଲେ ଧନ,
ମାତା ବଡ଼ ଭାବି ତୁହି ଯାଅ ନାହିଁ ବନ ।
କହିଲେ ଉଭୟେ କନ୍ତୁ ଯିବା ପାଇଁ ବନେ,
ଶତେକ ଅଯୋଧ୍ୟା ସମ ଭାବିବୁ କାନନେ । ୨୮୫

ମାତା ବନଦେବୀ ପିତା ବନଦେବଗଣ,
ପଶୁ ପକ୍ଷୀ ସେବିବେ ତୋ କମଳ-ଚରଣ ।
ଅନ୍ତଃକାଳେ ବନବାସ ରାଜାର ଉଚିତ,
ମାତ୍ର ତୋ ବୟସ ଭାବି ହୁଅଇ ଦୁଃଖିତ । ୨୮୬

ବନ ଭାଗ୍ୟବାନ ମାତ୍ର ତୋତେ ପରିହରି,
ଅତି ଅଭାଗିନୀ ଏଇ ଅଯୋଧ୍ୟା ନଗରୀ ।
ସଙ୍ଗେ ମୋତେ ନିଅ ବୋଲି କହିଲେ ରେ ଧନ,
ଅମାପ ସନ୍ଦେହେ ଭରିଯିବ ତୋର ମନ । ୨୮୭

ପୁତ୍ରରେ ତୁ ସଭିଙ୍କର ସୁପ୍ରିୟ ସ୍ୱଜନ,
ପ୍ରାଣର ତୁ ପ୍ରାଣ ପୁଣି ଜୀବର ଜୀବନ ।
ସେହି ପ୍ରାଣାଧାର କହୁ,—'ମାତା ଯିବି ବନ,
ତୋ' କଥା ମୁଁ ଶୁଣି ହୁଏ ସନ୍ତାପିତ ମନ । ୨୮୮

ଏ ସବୁ ବିଷୟର ସିଦ୍ଧ କରୁନରେ ଧନ,
ନ ବଢ଼ାଇ ହୃଦେ ମିଥ୍ୟା ସ୍ନେହ ଅକାରଣ ।
ନଜଚ୍ଛୁ ଯାଉଚ ବାମ ତୋତେ ନବେଦନ,
ଭୁଲବୁନ ମାତା ସ୍ନେହ ମମତା ବନ୍ଧନ । ୨୮୯

ହେ ଗୋସାଇଁ, ସବୁ ପିତୃ ପୁରୁଷେ ଦେବତା,
ରଖନ୍ତୁ, ରଖଇ ଡୋଳା ଯେମନ୍ତେ ଆଖିପତା ।
ବନବାସ କାଳ ଜଳ, ପରିଜନେ ମୀନ,
ତୁମେ ତ କରୁଣାସିନ୍ଧୁ ଧରମ ଧୂରୀଣ । ୨୯୦

ଏ କଥା ବିଷୟର କାମ କରିବୁ ତନୟ,
ବଞ୍ଚିଥାଉଁ ଆସି ସବେ ଭେଟିବୁ ନିଶ୍ଚୟ ।
ମରିଯାଏଁ ପୁତ୍ର, ସୁଖେ ବନକୁ ତୁ ଯାଆ,
ନାଥ ହୀନ କରି ପ୍ରଜା ପରିଜନ ଗାଆଁ । ୨୯୧

ସଭିଙ୍କ ସରିଲା ଆଜ ସୁକୃତ ନିଶ୍ଚିତ,
ଆମ୍ଭଙ୍କୁ କରାଳ କାଳ ହେଲା ବିପରୀତ ।
ଆପଣାକୁ ଅତି ଭାଗ୍ୟହୀନା ବୋଲି ଜାଣି,
ଲୋଟିଲେ ପଦୂର ତଳେ ବିଳପନ୍ତୀ ରାଣୀ । ୨୯୨

ଦାରୁଣ ଦୁଃସହ ଦୁଃଖ ହୃଦେ ଗଲା ବ୍ୟାପି
ସେ କରୁଣ ବିଳାପକୁ କେ ପାରିବ ମାପି ?
ମାତାଙ୍କୁ ଉଠାଇ ରାମ ବୁକୁରେ ଲଗାଇ,
କହିଲେ କୋମଳ କଥା ବହୁତ ବୁଝାଇ । ୨୯୩

ସେ ସମସ୍ତ ସମାଚାର ସୀତା ବେଗେ ପାଇ,
ଅତି ବିକଳରେ ଶାଶୁ ପାଶେ ଗଲେ ଧାଇଁ ।
ବନ୍ଦି ଶାଶୁଙ୍କର ଦୁଇ ଚରଣ-କମଳ,
ମଥା ଅବନତ କରି ବସିଗଲେ ତଳ । ୨୯୪

ମୃଦୁ ବାକ୍ୟେ ଶାଶୁ ଆଶୀର୍ବାଦ ଦେଲେ ଢାଳ,
ବ୍ୟାକୁଳ ହୋଇଲେ ପୁଣି ଜାଣି ସୁକୁମାରୀ ।

ରୂପମୟୀ ପତିପ୍ରେମେ ପୁଣ୍ୟମୟୀ ସୀତା,
ମୁହଁକୁ ଚଳକୁ ଯୋଡ଼ି ବସି କଲେ ଚିନ୍ତା । ୨୯୫

ସୃହାନ୍ତି ଜୀବନନାଥ ଯିବା ପାଇଁ ବନେ,
କେଉଁ ପୁଣ୍ୟବନ୍ତ ଯିବ ତାଙ୍କର ଗହଣେ ?
ତନୁ-ପ୍ରାଣ ଯିବ ଅବା ଏ ପ୍ରାଣ କେବଳ,
ଜାଣି ନ ହୁଅଇ ବିଧି ରଚନା କୌଶଳ । ୨୯୬

କି ଲେଖନ୍ତି ସ୍ୱଚ୍ଛ ପଦ ନଖେ ଭୂମି ପରେ,
ଏ କାଳେ ନୂପୁର ମଧୁ ଧ୍ୱନି ସୃଷ୍ଟି କରେ ।
କବି ଭାବେ ସେ ନୂପୁର କରନ୍ତି ବିନତି,
ସୀତା-ପଦ ଯେମନ୍ତେ ତାଙ୍କୁ ତ୍ୟାଗ ନ କରନ୍ତି !! ୨୯୭

ସ୍ୱଚ୍ଛ ନେତ୍ରୁ ଝରି ଯାଉଥାଏ ଅଶ୍ରୁଧାର,
କହିଲେ ଏ ଦଶା ଦେଖି ମାତା କଉଶଲ୍ୟା—
"ଶୁଣ ବାପ ଏଇ ସୀତା ଅତି ସୁକୁମାରୀ,
ସୁହୃଦ ଶ୍ୱଶୁର ଶାଶୁ ପ୍ରିୟ ଯେ ତାହାର । ୨୯୮

ଜନକ ତାହାର ପିତା ନୃପ ଶିରୋମଣି,
ଶ୍ୱଶୁର ତ ଦିନକର-କୁଳ ଦିନମଣି ।
ରବିକୁଳ-କୋକନଦ-ବନ ସୁଧାକର,
ରୂପ ଗୁଣାକର ପତି-ଦେବତା ତାହାର । ୨୯୯

ମୁଁ ପୁଣି ପାଇଲି ପୁତ୍ର-ବଧୂ ପ୍ରିୟ ଅତି,
ରମଣୀୟ ରୂପରାଶି ଗୁଣ ଶୀଳବତୀ ।
ନୟନ-ପିତୁଳା କରି ପୀରତି ବଢ଼ାଇ,
ରଖିଥିଲି ଏ ଜୀବନ ତା'ଠାରେ ଲଗାଇ । ୩୦୦

କଳ୍ପଲତା ସମ ତାକୁ ଯତନ ଲଗାଇ,
ପାଳିଥିଲି ବୁକୁ ସ୍ନେହ-ସଲିଳେ ସିଞ୍ଚାଇ ।
ଫୁଟିବା ଫଳିବା କାଳେ ବିଧି ହେଲା ବାମ,
ଜଣା ଯାଉନାହିଁ ହେବ କେଉଁ ପରିଣାମ । ୩୦୧

ପଲଙ୍କ ସୁପାତି ଦୋଳା କୋଳ ଗୁଡ଼ କାହିଁ,
କଠୋର ଭୂମିରେ ସୀତା ପାଦ ଦେଇ ନାହିଁ ।
ସଞ୍ଜୀବନୀ ମୂଳ ପ୍ରାୟେ ସାଇତି ମୁଁ ଥିଲି,
ଦୀପ ତେଜିବାକୁ କେବେ କହି ତ ନ ଥିଲି । ୩୦୨

ସେ ସୀତା କହୁଛି ଏବେ ସଙ୍ଗେ ଯିବ ବନ,
ତାକୁ କି ଆଦେଶ ଦେଉ ରେ ରଘୁନନ୍ଦନ ।
ଚନ୍ଦ୍ରମୁଖୀ-ରସାମୃତ-ଲୋଲୁପ-ଚକୋରୀ,
ସୂର୍ଯ୍ୟ କିରଣକୁ ଆଖି ପାରିବ କି ଯୋଡ଼ି ? ୩୦୩

ବନରେ ଅସୁର ହସ୍ତୀ ସିଂହ ଦୁଷ୍ଟ ପ୍ରାଣୀ,
ବିଚରଣ କରୁଥିବେ କେତେ ଯେ କେଜାଣି ।
ବିଷ ବାଟିବାରେ ସଞ୍ଜିବନୀ ମୂଳୀ କୁହ,
କେତେବେଳେ ଶୋଭା ପାଇ ପାରେ କରେ ପୁଅ ? ୩୦୪

ସୁଖ-ଭୋଗ-ଅଙ୍କ କୋଲ୍ହ କରିତ କୁମାରୀ,
ବନେ ବାସ ଯୋଗ୍ୟ ବିଧି ଗଢ଼ିଛି ବିଗୁର ।
ଶିଳା-କାଠ ସମ ତାଙ୍କ ସ୍ୱଭାବ କଠୋର,
ତାହାଙ୍କୁ ନ ଲାଗେ କ୍ଲେଶ ଏହି ବନ ଘୋର । ୩୦୫

କିମ୍ବା ମୁନି ଋଷି ନାରୀ ରହିଥିବେ ବନେ,
ତପ ପାଇଁ ତେଜିଛନ୍ତି ଭୋଗ ଯେ ଜୀବନେ ।
ଚିତ୍ର-ବାନରଙ୍କୁ ଦେଖି ଯିଏ ଯାଏ ଡରି,
ପୁତ୍ରରେ ସେ ସୀତା ବନେ ରହିବ କିପରି ? ୩୦୬

ସୁର-ସରୋବର-ପଦ୍ମ-ବନଗୃହ ହଂସୀ.
ରହି କି ପାରିବ କେବେ ଗାଡ଼ିଆରେ ପଶି ?
ଏ ସବୁ ବିଚାରି ଆଜ୍ଞା ଦେବୁ ଯେଉଁପରି,
ଜାନକୀକି ଶିଖାଇବି ମୁହିଁ ସେହିପରି ।” ୩୦୭

କହିଲେ ଜନନୀ, “ସୀତା ରହିଲେ ଭବନେ,”
ମାହାତ୍ମ୍ୟ କଳନା କରିବ ମନେ ଅନୁକ୍ଷଣେ ।”

ଶୁଣି ରଘୁବୀର ପ୍ରିୟ ଜନନୀ ବଚନ,
ସତେ କି ସୋହାଗ ସ୍ନେହ-ସୁଧା-ବିଲେପନ । ୩୦୮

ବିବେକ ବିସ୍ତରଯୁକ୍ତ ପ୍ରିୟ କଥା କହି,
ଜନନୀଙ୍କୁ କଲେ ତୋଷ ଅନୁକମ୍ପା ବହି ।
ତାହାପରେ କହି ବନ ଦୋଷଗୁଣ ଯେତେ,
ଲାଗିଲେ ବୁଝାଇବାକୁ ଜାନକୀଙ୍କୁ କେତେ । ୩୦୯

ମାସ ପାରାୟଣ, ଚତୁର୍ଦ୍ଦଶ ବିଶ୍ରାମ ।

# ତିନି

କିଛି କହିବାକୁ କଥା ମାତାଙ୍କ ଆଗରେ,
ସଙ୍କୋଚ ଲାଗଇ କିନ୍ତୁ ବଧୂର ମନରେ,
କହିଲେ, "ମୋ କଥା ଶୁଣ ହେ ରାଜକୁମାରୀ,
ହୃଦୟରେ ଆଉ ଅନ୍ୟ କିଛି ନ ବଧୂର । ୩୧୦

ଯଦ ଆପଣାର ଆଉ ମୋର ହିତ ଗୃହଁ,
ତେବେ କଥା ମ'ନ ତୁମେ ଗୃହେ ରହିଥାଅ ।
ଏଥି ହେବ ଶାଶୁ ସେବା, ମୋ ଆଜ୍ଞା ପାଳନ,
ସକଳ ପ୍ରକାରେ ସୀତା ଗୃହର କଲ୍ୟାଣ । ୩୧୧

ସାଦରେ ଶଶୁର ଶାଶୁ ପଦ ବନ୍ଦାପନ,
ଏହାଠୁଁ ଅଧିକ ଧର୍ମ ନାହିଁ ଆଉ ଅନ୍ୟ ।
ଯେବେ ଯେବେ ମାତା ମୋତେ ମନେ ପକାଇବେ,
ପ୍ରେମ ବିକଳରେ ମତ୍ତ-ବିହ୍ୱଳା ହୋଇବେ । ୩୧୨

ସେତେବେଳେ କହି ଯେତେ ପୁରୁଣା କାହାଣୀ,
ଜାନକୀ ବୁଝାଉଥିବ କହି ମୃଦୁ ବାଣୀ ।
କହୁଛ ସ୍ୱଭବେ ଶତ ରାଣ ଦେଇ ମୋତେ,
ସୁନ୍ଦରୀ ମାତାଙ୍କ ପାଇଁ ରଖୁଅଛି ତୋତେ । ୩୧୩

ମୋ ଆଦେଶେ ଘରେ ରହି ଗୁରୁ ବେଦ ମତ,
ଧର୍ମଫଳ ଅନାୟାସେ ହୋଇବ ପ୍ରାପତ ।
ମୋ କଥା ନ ମାନ ଯେବେ ବସ କରି ହଠ,
ନହୁଷ ଗାଲବ ସମ ଭୋଗିବ ସଙ୍କଟ । ୩୧୪

ପିତାଙ୍କ ଆଦେଶ ପୁଣି ମୁଁ ପାଳନ କରି,
ସଅଳ ଫେରିବ ଶୁଣ ଚତୁରା ସୁନ୍ଦରୀ ।
ଦିନ ଗଡ଼ିଯିବା ଲାଗି ବିଳମ୍ବ ନ ହୁଏ,
ଶୁଣ ଉପଦେଶ ମୋର ଶୁଣ ଯାହା କୁହେ । ୩୧୫

ପ୍ରେମ ବଶେ ଯଦି ଜିଦ୍ଦି ବାମା ଗୋ କରିବ,
ଶେଷ ପରିଣାମେ ବହୁ ଯାତନା ଭୋଗିବ ।
ଅରଣ୍ୟ ଦୁର୍ଗମ ଅତି ଭୀମ ଭୟଙ୍କର,
ଘୋର ଖରା ବର୍ଷା ଶୀତ ପବନ କାକର । ୩୧୬

ବହୁ କୁଶ କଣ୍ଟା ନାନା ପ୍ରସ୍ତର ପଥରେ,
ପାଦୁକା ନ ଥିବ ଖାଲି ଚାଲିବ ପାଦରେ ।
ଚରଣ-କମଳ ତବ ମୃଦୁ ସୁକୋମଳ,
ପଥ ଦୁରୁଗମ ତହିଁ ପାହାଡ଼ ଭୂଧର । ୩୧୭

ନଦୀ ନଦ ନାଳ ଗିରି ସଙ୍କଟ କନ୍ଦର,
ବିକଟ ଗଭୀର ଅତି ଚାହିଁବା ଦୁଷ୍କର ।
ବାଘ ଭାଲୁ ସିଂହ ହାତୀ ଭୟାନକ ପ୍ରାଣୀ,
ଗର୍ଜନ ଶୁଣି କା ଛାତି ନ ହୋଇବ ପାଣି !! ୩୧୮

ଭୂମିରେ ଶୟନ ବନେ ବଲ୍‌କଲ ବସନ,
ଯାହା କନ୍ଦମୂଳ ଫଳ ଫୁଲୁରି ଭୋଜନ ।
ସବୁ ଦିନେ ସବୁ କାଳେ ମିଳିବ କି ତାହା,
ଅନୁକୂଳ ଋତୁ ମାସ ଅନୁସାରେ ଯାହା । ୩୧୯

ରାକ୍ଷସେ ମଣିଷ କଞ୍ଚା କରନ୍ତି ଆହାର,
କପଟେ ଧରନ୍ତି ବେଶ କୋଟିଏ ପ୍ରକାର ।
ପିଇବାକୁ ହେବ ପାହାଡ଼ିଆ ଝର ପାଣି,
ବନର ବିପତ୍ତି କିଏ ପାରିବ ବଖାଣି ? ୩୨୦

ବନେ ଭୟଙ୍କର ସର୍ପ ଭୟାନକ ପକ୍ଷୀ,
ନିଶାଚରେ ନର ନାରୀ ବୁଲେଇ ନିଅନ୍ତି ।

ବନ ଭୀଷଣତା ଶୁଣି ଦାମ୍ଭିକେ ଡରନ୍ତି,
ହେ ମୃଗନୟନୀ ଭୀରୁ ସ୍ୱଭାବେ ତୁ ଅତି । ୩୨୧

ହଂସଗମନୀ ତୁ ବନ ଯୋଗ୍ୟ ନୁହଁ କେବେ,
ସଙ୍ଗେ ନେଲେ ଲୋକେ ପୁଣି ଅପଯଶ ଦେବେ ।
ସୁର-ସର-ସୁଧା-ଜଳେ ପାଳିତା ମରାଳୀ,
ଲବଣ ପୟୋଧି ଜଳେ ବଞ୍ଚିବ କପରି ? ୩୨୨

ନବୀନ-ରସାଳ-ବନେ-ବିହରଣ ଶୀଳା—
ତାଙ୍ଗ ସିଜୁ ବନେ କେବେ ଶୋଭେ କି କୋକିଳା ?
ଏ ସବୁ ବିଚାରି ହୃଦେ ରହ ଗୋ ଭବନେ,
ହେ ଚନ୍ଦ୍ର-ବଦନୀ ବହୁ କଷଣ କାନନେ । ୩୨୩

ସହଜେ ସୁହୃଦ ଗୁରୁ ସ୍ୱାମୀଙ୍କ ବଚନ,
ଶିରୋଧାର୍ଯ୍ୟ କରି ଯିଏ ନ କରେ ପାଳନ ।
ଅନୁତାପ କରି ହୃଦେ ଲଭଇ କଷଣ,
ସକଳ ମଙ୍ଗଳ ତା'ର ହୁଅଇ ସ୍ଖଳନ ।" ୩୨୪

ପ୍ରିୟତମ ପ୍ରିୟ ମୃଦୁ କୋମଳ ବଚନେ,
ଅଶ୍ରୁ ଭରିଗଲା ସୀତା ଲଳିତ ଲୋଚନେ ।
ଏ ଶୀତଳ ଶିକ୍ଷା ଭରେ ଦାହ ହୃଦୟରେ,
ଶରତ ଚନ୍ଦ୍ରମା ଯେସନେ ଚକୋରି ପକ୍ଷରେ । ୩୨୫

ଉତ୍ତର ନ ଆସେ କିଛି ବିକଳ ବୈଦେହୀ,
ଭାବନ୍ତି ସେ ତେଜି ଯିବେ ସ୍ୱାମୀ ଶୁଚି ସ୍ନେହୀ ।
ଦୃଢ଼ ସହକାରେ ରୋଧି ନୟନର ବାରି,
ହୃଦୟେ ଧରିଲେ ଧୈର୍ଯ୍ୟ ଅବନୀ କୁମାରୀ । ୩୨୬

ଶାଶୁଙ୍କର ପଦେ ନମି ଯୋଡ଼ି ବେନି କର,
କହିଲେ, "ଗୋ ଦେବୀ କ୍ଷମ ଧୃଷ୍ଟତା ମୋହର ।
ପତି ଦେଉଛନ୍ତି ମତେ ସେହି ଉପଦେଶ,
ଯେପରି ହୋଇବ ମୋର କଲ୍ୟାଣ ଅଶେଷ । ୩୨୭

ମୁଁ ପୁଣି ଭାବୁଛି ଦେଖି ମୋର ହୃଦଗତେ,
ଦୟିତ ବିରହ ସମ ଦୁଃଖ ନାହିଁ ମର୍ତ୍ତ୍ୟେ । ୩୨୮

ଆହେ ପ୍ରାଣନାଥ ଆହେ କରୁଣା ନିଧାନ,
ହେ ସୁନ୍ଦର ହେ ସୁଖଦ ହେ ସୁଜ୍ଞ ମହାନ୍ ।
ରଘୁକୁଳ-କୁମୁଦିନୀ-ବିଧୁ ପ୍ରିୟତମ,
ତୁମ ବିନା ମୋତେ ସ୍ୱର୍ଗ ସିନା ନର୍କ ସମ । ୩୨୯

ମାତା ପିତା ଭାଇ ଭଗ୍ନୀ ପ୍ରିୟ ପରିଜନ,
ସୁହୃଦ ଶ୍ୱଶୁର ଶାଶୁ ଆତ୍ମୀୟ ସ୍ୱଜନ ।
ଗୁରୁ ସାଧୁ ସନ୍ଥ ପ୍ରୀତିଜନ ସହାୟକ,
ସୁନ୍ଦର ସୁଶୀଳ ସୁତ ସୁଖ ପ୍ରଦାୟକ ।
ଯେତେ ସ୍ନେହ ଅନୁବନ୍ଧୀ ସର୍ବେ ପତି ବିନା,
ତହିଁକୁ ସୂର୍ଯ୍ୟଙ୍କ ତାପଠାରୁ ବଳି ସିନା ।
ଦେହ ଧନ ଧାମ ଧରା ରାଜ୍ୟ ବସୁନ୍ଧରା,
ପତିବିନା ସବୁ ଶୋକ-ପାରାବାର ପରା । ୩୩୦

ଭୋଗ ରୋଗ ସମ ଅଟେ ବିଭୂଷଣ ଭାର,
ଯମର ଯାତନା ସମ ଲଗିବ ସଂସାର ।
ତୁମ ବିନା ଏ ଜଗତେ ଶୁଣ ପ୍ରାଣସାଇଁ,
କିଛି କାହିଁ ନାହିଁ ସୁଖ-ଦାୟକ ମୋ' ପାଇଁ । ୩୩୧

ପ୍ରାଣ ବିନା ଦେହ, ଜଳ ବିନା ନଦୀ ଯେହ୍ନେ,
ପୁରୁଷ ବିହୁନେ ପ୍ରାଣନାଥ ନାରୀ ତେହ୍ନେ ।
ତୁମ ସନ୍ନିତରେ ଥିଲେ ମୋର ସବୁ ସୁଖ,
ଦେଖୁଥିବି ଶରତର ଚନ୍ଦ୍ର ସମ ମୁଖ । ୩୩୨

ଖଗ ମୃଗ ହେବେ ବନେ ସ୍ୱଜନ ମୋହର,
ବଲ୍‌କଳ ବିମଳ ବସ୍ତ୍ର, ବନ ଯେ ନଅର ।
ସ୍ୱର୍ଗ ସମ ସୁଖ-ମୂଳ ହେବ ପର୍ଣ୍ଣଶାଳ,
କେବଳ ସାଙ୍ଗରେ ଥିଲେ ନାଥ ମୋ ଉଦାର । ୩୩୩

ବନଦେବୀ ବନଦେବ ମହତ ଯେପରି,
ପାଳିବେ ତ ମୋତେ ଶାଶୁ ଶ୍ୱଶୁରଙ୍କ ଭଳି ।
କୁଶ କିଶଳୟ ଶଯ୍ୟା ହେବ ମୋ ନିମନ୍ତେ
ପ୍ରଭୁ ସଙ୍ଗେ ମଞ୍ଜୁ କାମ-ତଳପ ଯେମନ୍ତେ । ୩୩୪

ଫଳ କନ୍ଦମୂଳ ହେବ ଅମୃତ ଆହାର,
ଅଯୋଧ୍ୟାର ଶତ ସୌଧ ହୋଇବେ ପାହାଡ଼ ।
କ୍ଷଣେ କ୍ଷଣେ ପ୍ରଭୁ ପାଦ-ପଦ୍ମ ଦରଶନେ,
ରହିବି ଦିବସେ ସୁଖୀ ଚକୋଇ ଯେସନେ । ୩୩୫

ବନସ୍ତର ଦୁଃଖ ନାଥ କହିଲ ବହୁତ,
ଶ୍ୱାପଦ ସଙ୍କୁଳ ପୁଣି ଭୟ ଭୀତିଯୁକ୍ତ ।
ହେଲେ ତବ ବିଚ୍ଛେଦର ଦୁଃଖ କଣିକାକୁ,
ହେବେ ନାହିଁ ସବୁ ମିଳି ସମାନ ହେବାକୁ । ୩୩୬

ସୁଜ୍ଞ ଶିରୋମଣି ଏହି ସବୁକୁ ବିଚାରି,
ସଙ୍ଗେ ମୋତେ ନେଇ ଚାଲ ଏଠାରେ ନ ଛାଡ଼ି ।
ବହୁତ ବିନତି କରି କହୁଅଛି ସ୍ୱାମୀ,
ତୁମେ ତ କରୁଣାମୟ ହୃଦ ଅନ୍ତର୍ଯ୍ୟାମୀ । ୩୩୭

ହେ ସୁନ୍ଦର ଦୀନବନ୍ଧୁ ହେ ସୁଖ-ଦାୟକ,
ଶୀଳ ପ୍ରେମ ନିଧାନ ହେ ଅଯୋଧ୍ୟା-ନାୟକ ।
ମୋତେ ଅଯୋଧ୍ୟାରେ ରଖି ବନେ ଗଲେ ଜାଣ,
ଫେରିବା ବେଳକୁ ଆଉ ନ ଥିବ ଏ ପ୍ରାଣ । ୩୩୮

ବାଟଚଲା କଷ୍ଟ ମୋତେ ନ ଲାଗିବ ଟିକେ,
କ୍ଷଣେ କ୍ଷଣେ ତବ ପାଦ-ପଦ୍ମ ଦେଖୁଥିଲେ ।
ସକଳ ପ୍ରକାର ସେବା ସ୍ୱାମୀଙ୍କର କରି,
ପଥ କ୍ଳେଶ ସବୁ ମୋର ପାରିବି ମୁଁ ହରି । ୩୩୯

ପଖାଳି ଚରଣ ତରୁ ଛାଇ ତଳେ ବସି,
ବିଞ୍ଚୁଥିବି ଆପଣଙ୍କୁ ମନେ ମନେ ହସି ।

ଶ୍ରମ-ବାରି-ଝର ତବ ଶ୍ୟାମ ତନୁ ଗୁହିଁ,
ମୁଖ ଦେଖୁଥିଲେ ଦୁଃଖ ପାଇଁ ବେଳ କାହିଁ । ୩୪୦

ବାଲୁଇବ ତୃଣ ପଥ ଦେଖି ସମତଳ,
ସାର ନଶି ମଞ୍ଜାଳବ ଏ ଦାସୀ ପଦ୍ମର ।
ବାରମ୍ବାର ଦେଖିଲେ ସେ ମୃଦୁଳ ମୂରତି,
ଗରମ ପବନ କରି ପାରିବନି କ୍ଷତି । ୩୪୧

ପ୍ରଭୁ ସଙ୍ଗେ ଥିଲେ ମୋତେ କେ ପାରିବ ଗୁହିଁ,
ଶଶକ ଶୃଗାଳ ହରେ ସିଂହବଧୂ କାହିଁ ?
ମୁହିଁ ସୁକୁମାରୀ ନାଥ ତୁମେ ବନଯୋଗ୍ୟ,
ତୁମେ ତପ ଆଚରିବ ମୁଁ କରିବ ଭୋଗ ? ୩୪୨

ତୁମଠାରୁ ଶୁଣି ଏହି ବଚନ କଠୋର,
ନ ଫାଟି ଏ ଛାତି ଯାହା ରହିଅଛି ମୋର ।
ତେଣୁ ପ୍ରଭୁ-ବିରହର ଦାରୁଣ କଷଣ,
ପାମର-ପ୍ରାଣ କି ଆଉ ସହିବ କଅଣ ?" ୩୪୩

ଏହା କହି ସୀତା ଅତି ବ୍ୟାକୁଳ ହୋଇଲେ,
ବିୟୋଗର କଥା ମଧ୍ୟ ସହି ନ ପାରିଲେ ।
ଏ ଦଶା ନିରେଖି ଜାଣିଗଲେ ରଘୁବର,
ହଠେ ମନା କଲେ ସୀତା ନ ରଖିବ ପ୍ରାଣ । ୩୪୪

କହିଲେ କୃପାଳୁ ଭାନୁ-କୁଳ-ବିମଣ୍ଡନ,
"ଚିନ୍ତା ପରିହରି ପ୍ରିୟେ ସଙ୍ଗେ ଚାଲ ବନ ।
ଦୁଃଖ କରିବାର ଆଜ ନୁହେଁ ଅବସର,
ବନ ଯିବା ପାଇଁ ଏବେ ଆୟୋଜନ କର ।" ୩୪୫

ପ୍ରିୟ କଥା କହି ରାମ ପ୍ରିୟାକୁ ବୁଝାଇ,
ମାତା ପଦେ ପଡ଼ି ଗଲେ ଆଶୀର୍ବାଦ ପାଇ ।
କହିଲେ ସେ, "ବାହୁଡ଼ି ରେ ପ୍ରଜା ଦୁଃଖ ହର,
ନିଠୁର ମାତାକୁ ତୋର ନ ଭୁଲ କୁମର । ୩୪୬

ସତେ ଫେରାଇବ ବନ୍ଧି ଏ ଦଶା ମୋହର,
ଆଖିରେ ଦେଖିବ ପୁଣି ଯୋଡ଼ି ନୋହର ।
କେବେ ସେ ସୁଦିନ ବାପ ସୁସଙ୍ଗ ହୋଇବ,
ଏ ମାତା ଜୀବତେ ଚନ୍ଦ୍ର ବଦନ ଦେଖିବ !! ୩୪୭

ରଘୁପତି, ରଘୁବର, ରେ ବତ୍ସ, ରେ ଧନ,
କହି କେବେ କରିବି ମୁଁ ହୃଦେ ଆଲିଙ୍ଗନ ।
ଆଜ ପୁଣି କେବେ ଡାକି ଆନନ୍ଦ ମନରେ,
ନିରେଖିବି ପୁତ୍ର ତୋର ଗୃହ କଲେବରେ !! ୩୪୮

ଏପରି ଅଧୀର ହେଲେ ମାତା ସ୍ନେହବଶେ,
ଅତି ବିକଳରେ ମୁଖୁଁ ବଚନ ନ ଖସେ ।
ବୁଝାଇ କହିଲେ ରାମ ଅନେକ ପ୍ରକାରେ,
ସେ ସମୟ ସେ ସେନେହ କିଏ ବର୍ଣ୍ଣିପାରେ ? ୩୪୯

ଛନ୍ତି ଶାଶୁ ପଦେ ପଡ଼ି ଜନକ-ନନ୍ଦିନୀ,
କହିଲେ, "ମା ଶୁଣ ମୁଁ ତ ଅତି ଅଭାଗିନୀ ।
ସେବା କାଳେ ମୋତେ ବିଧି ଦେଲା ବନବାସ,
ନ କଲା ସଫଳ ମୋର ଜୀବନର ଆଶ । ୩୫୦

ତେଜିବ ମା' ମନୁ ଦୁଃଖ, ସ୍ନେହ ନ ଛାଡ଼ିବ,
କିଛି ଦୋଷ ନାହିଁ ମୋର କଠୋର ଦଇବ ।
ବ୍ୟାକୁଳିତ ହେଲେ ଶାଶୁ ଜାନକୀ ବଚନେ,
ସେ ସମୟ ଦଶା ମୁହିଁ ବର୍ଣ୍ଣିବି କେସନେ ? ୩୫୧

ଥରକୁ ଥର ସେ ତାଙ୍କୁ ବୁକେ ଯାକି ଧରି,
ଉପଦେଶ ଦେଲେ କେତେ ଗୁରି ଦମ୍ଭ କରି ।
ଆଶୀର୍ବାଦ କଲେ, ଗଙ୍ଗା ଯମୁନାରେ ଜଳ,
ଥିବା ଯାଏଁ ହାତକାତ ବଜ୍ର ହେଉ ତୋର । ୩୫୨

ସୀତାଙ୍କୁ ଆଶିଷ ବହୁ ନାନା ଉପଦେଶ,
ଦେଲେ ଶାଶୁ ହୃଦେ ଭରି ସିନେହ ଅଶେଷ ।

ସୀତା ଶାଶୂ ପାଦ-ପଦ୍ମେ ଥର ଥର କରି,
ମସ୍ତକ ଲଗାଇ ଅତି ସୁଖେ ଗଲେ ଚଳି । ୩୫୩

ପାଇଗଲେ ଯେବେ ଏହି ବାରତା ଲକ୍ଷ୍ମଣ,
ଉଠି ଦଉଡ଼ିଲେ ବ୍ୟସ୍ତ ବିରସ ବଦନ ।
କମ୍ପୁଛି ଶରୀର ନେତ୍ରେ ଭରି ଅଶ୍ରୁ କ'ଣ,
ପ୍ରେମାବେଗେ ଧରିଲେ ସେ ରାମଙ୍କ ଚରଣ । ୩୫୪

ଠିଆରେ ଦେଖନ୍ତି କିଛି ନ ପାରନ୍ତି କହି,
ଜଳ-କଢ଼ା ମୀନ ମୀନ ଯେ ଦଶା ଭୋଗଇ ।
ଭାବନ୍ତି ବିଧାତା ଏ କି ଘଟିବାକୁ ଯାଏ,
ଆମ ସୁଖ ସୁକୃତ କି ସବୁ ଶେଷ ହାଏ ? ୩୫୫

ରଘୁନାଥ ମୋ ବିଷୟେ କହିବେ କଅଣ,
ରଖାଇବେ ଗୃହେ ଅବା ସଙ୍ଗେ ନେବେ ବନ ।
ଭାଇକୁ ଦେଖିଲେ ରାମ ଯୋଡ଼ି ବେନି କର,
ଜଳି ତୃଣ ସମ ତେଜି ପୁରି କଳେବର । ୩୫୬

କହିଲେ ସସ୍ନେହେ ନୀତିନିପୁଣ ଶ୍ରୀରାମ,
ସରଳ ପବିତ୍ର ଶୀଳ ଗୁଣ ସୁଖ-ଧାମ ।
"ଅଧୈର୍ଯ୍ୟ ହୁଅନା ଭାଇ ହୋଇ ପ୍ରେମବଶ,
ଶେଷକୁ ଜାହ୍ନ ସୁଖ ମିଳିବ ଅବଶ୍ୟ । ୩୫୭

ଯିଏ ପିତା ମାତା ଗୁରୁ ସ୍ୱାମୀଙ୍କର କଥା,
ମସ୍ତକେ ମୁଣ୍ଡାଇ କରେ ପାଳନ ସର୍ବଦା ।
ମଣିଷ ଜନମ ଯିନା ସାର୍ଥକ ତାହାର,
ଅନ୍ୟଥା ଜନମ ବ୍ୟର୍ଥ ସଂସାରେ ଅସାର । ୩୫୮

ତୁହେ ଶୁଣ ଏହା ମୋର ଉପଦେଶ ମତେ,
ପିତା ମାତା ପଦ ସେବା କର ଅବିରତେ ।
ଭରତ ଶତ୍ରୁଘ୍ନ ବେନି ନାହାନ୍ତି ଭବନେ,
ରାଜା ବୃଦ୍ଧ ପୁଣି ଦୁଃଖ ମୋ ସକାଶେ ମନେ । ୩୫୯

ମୁହିଁ ବନ ଗଲେ ଯେବ ତୁମକୁ ସଙ୍ଗତେ,
ଅଯୋଧ୍ୟା ଅନାଥ ହେବ ନିଶ୍ଚେ ସବୁମତେ ।
ଗୁରୁ ପିତା ମାତା ପ୍ରଜା ପୁଣି ପରିବାର,
ପଡ଼ିବ ସଭିଙ୍କ ପରେ ଅତି ଦୁଃଖ ଭାର । ୩୬୦

ଗୃହେ ରହି କର ଭାଇ ସମସ୍ତଙ୍କୁ ତୋଷ,
ନୋହିଲେ ହୋଇବ ଆମ ପାଇଁ ବଡ଼ ଦୋଷ ।
ଯେଉଁ ରାଜ୍ୟେ ପ୍ରିୟ ପ୍ରଜା ହୁଅନ୍ତି ଦୁଃଖିତ,
ସେ ରାଜା ନରକଗାମୀ ହୁଅଇ ନିଶ୍ଚିତ । ୩୬୧

ବିଚାରି ସକଳ ମିତ୍ର ଭାଇ ଗୃହେ ରହ ।"
ଏହି କଥା ଶୁଣି ହେଲେ ଲକ୍ଷ୍ମଣ ଅଥୟ ।
ଶୀତଳ କଥାରେ ଶୁଖି ପଡ଼ିଲେ ଲକ୍ଷ୍ମଣ,
ଶିଶିର କଣିକା ସ୍ପର୍ଶେ କମଳ ଯେସନ । ୩୬୨

ପ୍ରେମବଶେ କିଛି କଥା କହି ନ ପାରିଲେ,
ବ୍ୟାକୁଳେ ପୟର ଧରି ଏତିକ କହିଲେ—
ହେ ନାଥ ମୁହିଁ ତ ଦାସ ତୁମେ ମୋର ସ୍ୱାମୀ,
ତୁମେ ତ୍ୟାଗ କଲେ ହେବ କା'ର ଅନୁଗାମୀ ? ୩୬୩

ଭଲ ମିତ୍ର ଉପଦେଶ ଦେଲ ମୋତେ ପ୍ରଭୁ,
ମୋ ଅଜ୍ଞତାବଶେ ହେଲା ଅଗମ୍ୟ ସେ ସବୁ ।
ଧର୍ମ ଧୁରନ୍ଧର ଧୀର ଯେଉଁ ନରବର,
ମିତ୍ର ନିୟମର ଅଧିକାରୀ ସେ କେବଳ ।
ମୁଁ କେବଳ ଦାସ ମାତ୍ର ସେବା ଅଧିକାରୀ,
ନିଗମ ଅଗମ ଶାସ୍ତ୍ର କେମନ୍ତେ ବୁଝିପାରି ? ୩୬୪

ମୁଁ ତ ଶିଶୁ ପ୍ରଭୁଙ୍କର ସ୍ନେହରେ ପାଳିତ,
ମରାଳ କି ବହିପାରେ ମେରୁ କଦାଚିତ ?
ଗୁରୁ ପିତା ମାତା ବୋଲି ନ ଜାଣେ କାହାକୁ,
ସ୍ୱଭାବେ କହୁଚି କର ବିଶ୍ୱାସ କଥାକୁ । ୩୬୫

ସିନେହ ସମ୍ବନ୍ଧ ପ୍ରେମ ବିଶ୍ୱାସ ଜଗତେ,
ଯା' ସବୁ ଜଗତେ ସ୍ୱାମୀ ବେଦ ଶାସ୍ତ୍ର ମତେ ।
ମୋ' ନିମନ୍ତେ ସବୁ ସିନା ଅଟନ୍ତି ଆପଣ,
ଦୀନବନ୍ଧୁ ଅନ୍ତର୍ଯ୍ୟାମୀ ହେ ରଘୁନନ୍ଦନ । ୩୬୬

ଯଶ କୀର୍ତ୍ତି ଅଇଶ୍ୱର୍ଯ୍ୟ ଲୋଡ଼େ ଯେ ସଂସାରେ,
ନୀତି ଉପଦେଶ ପ୍ରଭୁ ଦିଅନ୍ତୁ ତାହାରେ
କାୟମନୋବାକ୍ୟେ ଯା'ର ରତି ଶ୍ରୀଚରଣେ,
ହେ ଦୟାସାଗର ତାକୁ ଛାଡ଼ୁଛ କେମନେ ?" ୩୬୭

ଶୁଣିଲେ ଭାଇର ମୃଦୁ ବିନୀତ ବଚନ—
କରୁଣା ସାଗର ପ୍ରଭୁ ଶ୍ରୀ ରଘୁନନ୍ଦନ ।
ଜାଣି ସ୍ନେହ ଭଙ୍ଗ ଭୟେ ଭୀତ ଅତିଶୟ,
କହିଲେ ହୃଦୟେ ଯାକ କୌଶଲ୍ୟା-ତନୟ—୩୬୮

"ଲକ୍ଷ୍ମଣ ବିଦାୟ ହୁଅ ମାତା ପାଶେ ଯାଇ,
ଚଞ୍ଚଳ ଆସିଲେ ବନେ ସଙ୍ଗେ ଯିବୁ ଭାଇ ।"
ରଘୁବର ବାଣୀ ଶୁଣି ହେଲେ ହର୍ଷୋତ୍ଫୁଲ୍ଲ,
ହେଲା ବଡ଼ ଲାଭ, ବଡ଼ କ୍ଷତି ହେଲା ଦୂର । ୩୬୯

ଆସିଲେ ସେ ମାତା ପାଶେ, ହରଷିତ ମନ,
ଭାବିଲେ ଜନନୀ, ଅନ୍ଧ ପାଏ କି ଲୋଚନ ।
ତହୁଁ ମାତା ପଦେ ଯାଇ ନୁଆଁଇଲେ ଶିର,
ରାମ-ସୀତା ସାଥେ କିନ୍ତୁ ମନ ଥିଲା ସ୍ଥିର । ୩୭୦

ହରଷିତ ମନ ଦେଖି ମାତା ପଚାରିଲେ,
ଲକ୍ଷ୍ମଣ ସମସ୍ତ କଥା ବୁଝାଇ କହିଲେ ।
ଚୌଦିଗେ ଦାବାଗ୍ନି ଦେଖି ଶଙ୍କେ ମୃଗୀ ଯେହ୍ନେ,
କଠୋର ବଚନେ ମାତା ଶଙ୍କି ଗଲେ ତେହ୍ନେ । ୩୭୧

ଲକ୍ଷ୍ମଣ ଭାବିଲେ ଏବେ ହେଲା କି ଅନର୍ଥ,
ଅତି ସ୍ନେହବଶେ ସବୁ କାର୍ଯ୍ୟ ହେବ ବ୍ୟର୍ଥ ।

ଭୟେ ସଙ୍କୁଚିତ ହେଲେ ବିଦା ମାଗିବାକୁ,
କହିବେ କି ନାହିଁ ବିହ୍ନ ସଙ୍ଗରେ ଯିବାକୁ !! ୩୭୨

ରାମ-ସୀତା ରୂପ ଶୀଳ ସ୍ୱଭାବ ସକଳ,
·ପୁଣି ତାଙ୍କ ପ୍ରତି ଅତି ପ୍ରୀତି ରାଜାଙ୍କର ।
ସୁମର ସୁମିତ୍ରାରାଣୀ କରିହେଲେ ମଥା,
କହିଲେ ପାପିନୀ ଦେଲା କେତେ ବଡ଼ ବ୍ୟଥା । ୩୭୩

ପୁଣି ହୃଦେ ଧୈର୍ଯ୍ୟ ଧରି କୁସମୟ ମଣି,
କହିଲେ ସହଜେ ମୃଦୁ ହିତକାରୀ ବାଣୀ ।
"ବାପରେ ଜନନୀ ତୋର ଜାଣ ବଇଦେହୀ,
ଜନକ ଶ୍ରୀରାମ ସବୁ ପ୍ରକାରେ ସେନେହୀ । ୩୭୪

ସେହି ତ ଅଯୋଧ୍ୟା ଯହିଁ ଶ୍ରୀରାମ ନିବାସ,
ସେଠାରେ ଦିବସ ଯହିଁ ଭାନୁ ପରକାଶ ।
ରାମ ସୀତା ଯାଉଛନ୍ତି ଯେବେ ଘୋର ବନେ,
ତୋର କିଛି କାର୍ଯ୍ୟ ନାହିଁ ଅଯୋଧ୍ୟା ଭୁବନେ । ୩୭୫

ଗୁରୁ ପିତା ମାତା ଭାଇ ସ୍ୱାମୀ ଓ ଦେବତା,
ପ୍ରାଣ ସମ ସମସ୍ତଙ୍କୁ ସେବିବାର କଥା ।
ଶ୍ରୀରାମ ତ ପ୍ରାଣପ୍ରିୟ ଜୀବର ଜୀବନ,
ସେହି ତ ସଭିଙ୍କ ସ୍ୱାର୍ଥହୀନ ବନ୍ଧୁଜନ । ୩୭୬

ଯେ ପରମ ପ୍ରିୟ ପୂଜନୀୟ ଏ ଜଗତେ,
ସେ' ତ ମହନୀୟ ରାମ ସମ୍ବନ୍ଧ ନିମନ୍ତେ ।
ଏ କଥା ବିଚାରି ହୃଦେ ସଙ୍ଗେ ଯାଅ ବନ,
ଜଗତେ ଉଠାଅ ଲାଭ ଧରି ଏ ଜୀବନ । ୩୭୭

ମୋ ସହିତେ ହେଲୁ ପୁତ୍ର ଭୂରି ଭାଗ୍ୟଧର,
ନିଜଛି ଯାଉଛି ପେଟ ପୂରଇ ମୋହର ।
ମନରୁ କପଟ ତେଜି ଯେଣୁ ଅନୁକ୍ଷଣେ,
ଲଗାଇ ପାରିଛୁ ମନ ତୁ ରାମ ଚରଣେ । ୩୭୮

ସେ ଯୁବତୀ ପୁତ୍ରବତୀ ଯଥାର୍ଥ ଜଗତେ,
ରଘୁପତି ଭକ୍ତ ଯା'ର ତନୟ ନିରତେ ।
ବରଂ ବନ୍ଧ୍ୟା ଶ୍ରେୟ, ବୃଥା ସନ୍ତାନ ଉଆଣ,
ଯେ ରାମ-ବିମୁଖ ମାତ୍ର ଜାଣେ ସ୍ୱକଲ୍ୟାଣ । ୩୭୯

ତୋ ଭାଗ୍ୟରୁ ରାମଚନ୍ଦ୍ର ଯାଉଛନ୍ତି ବନ,
ବାପରେ ଆଉ ତ ନାହିଁ ଦୋସର କାରଣ ।
ସ୍ୱଭାବକ ସ୍ନେହ ସୀତା-ରାମ ଶ୍ରୀଚରଣ,
ସବୁ ସୁକୃତର ବଡ଼ ଫଳ ଏହି ମଣି । ୩୮୦

ରାଗ ରୋଷ ଈର୍ଷା ମଦ ମୋହେ କଦାଚନ,
ସ୍ୱପ୍ନେ ବଶ ନ ହୋଇବୁ ଆରେ ମୋର ଧନ ।
ସକଳ ବିକାର କରି ମନରୁ ଅନ୍ତର,
ମନ କର୍ମ ବାକ୍ୟେ ସେବୁଥିବୁ ନିରନ୍ତର । ୩୮୧

ସୁଖପ୍ରଦ ହେବ ବନ ତୋର ସବୁମତେ,
ଯେଣୁ ପିତା ମାତା ରାମ ସୀତା ତୋ ସଙ୍ଗତେ ।
କେବଳରେ ପୁତ୍ର ମୋର ଏହି ଉପଦେଶ,
ଦେଖିବୁ ଯେପରି ରାମ ନ ପାଆନ୍ତି କ୍ଳେଶ । ୩୮୨

ଏହି ଉପଦେଶ ପୁତ୍ର ରଖିବୁ ତୁ ମନେ,
ରାମ-ସୀତା ଯେହ୍ନେ ସୁଖେ ରହିବେ କାନନେ ।
ପିତା ମାତା ପ୍ରିୟ ପରିବାର ପୁର ସୁଖ,
ଭୁଲିବେ ଯେପରି ବନେ ଦେଖି ତୋର ମୁଖ ।
ପୁଣି ଆଶୀର୍ବାଦ କରି କହିଲେ ବଚନ,
ରାମ-ସୀତା ପଦେ ରହୁ ନିରତେ ତୋ ମନ ।" ୩୮୩

ସଶଂକତେ ଶିର ନୋଇଁ ମାତାଙ୍କ ପଦ୍ମରେ,
ସୁମିତ୍ରା ନନ୍ଦନ ତହୁଁ ବେଗେ ଚଳିଗଲେ ।
ସତେ କି ସୌଭାଗ୍ୟ କ୍ରମେ ବନ୍ଧନ ତୁଟାଇ,
ବନର ହରିଣ ଏକ ଯାଉଛି ପଳାଇ । ୩୮୪

ଚଳଲେ ଲକ୍ଷ୍ମଣ ଯହିଁ ଥିଲେ ସୀତା-ସାଇଁ,
ହୋଇଲେ ଆନନ୍ଦ ମନ ପ୍ରିୟ ସାଥି ପାଇ ।
ବନ୍ଦି ରାମ-ସୀତା ପାଦ-ପଦ୍ମ ସୁଶୋଭନ,
ଆସିଲେ ତାଙ୍କର ସଙ୍ଗେ ସେ ରାଜଭବନ । ୩୮୫

କହନ୍ତି ନଗର ନର ନାରୀ ପରସ୍ପର,
ବିଧି ବିଗିଡ଼ିଲା ରଚି ଯୋଗ ମନୋହର ।
ତନୁ କୃଶ ମନ ଦୁଃଖ ବଦନ ମଳିନ,
ମଧୁ ଲୁଟି ନେଲେ ମହୁମାଛି ଯେହ୍ନେ ଦୀନ । ୩୮୬

ଶୋଚନା କରନ୍ତି ମଥାକୋଡ଼ି କର ମଳି,
ପକ୍ଷ ବିନା ବିହଙ୍ଗମେ ବିକଳ ଯେପରି ।
ବଡ଼ ଭିଡ଼ ହେଉଥାଏ ରାଜ ଦରବାର,
ଘଷାଛିତ ମିନା ଧୁର ବିଷାଦ ଅପାର । ୩୮୭

"ରାମ ଆସିଛନ୍ତି" କହି ଏ ପ୍ରିୟ ଖବର,
ଉଠାଇ ରାଜାଙ୍କୁ ବସାଇଲେ ମନ୍ତ୍ରୀବର ।
ଜାନକୀଙ୍କ ସହ ଦୁଇ ତନୟଙ୍କୁ ଚାହିଁ,
ଅଶେଷ ବିକଳ ହେଲେ ଅଯୋଧ୍ୟାର ସାଇଁ । ୩୮୮

ସୀତା ସହ ବେନି ପୁତ୍ରେ ଦେଖି ବାରମ୍ବାର
ପୀଡ଼ିତ ହୃଦୟେ ହେଲେ ବିକଳ ଅପାର ।
ସ୍ନେହବଶେ ବାର ବାର ହୃଦୟେ ଲଗାଇ,
ଆଲିଙ୍ଗନ କରୁଥିଲେ ଦୁଃଖେ ନରସାଇଁ । ୩୮୯

କହି ନ ପାରନ୍ତି କିଛି ବିକଳେ ରାଜନ,
ଶୋକ ହେତୁ ହୃଦ ଯାଏ ଦାରୁଣ ଦହନ ।
ଅନୁରାଗେ ରଘୁନାଥ କୋମଳ ବଚନେ,
ବିଦାୟ ମାଗିଲେ ଶିର ନୁଆଇଁ ଚରଣେ । ୩୯୦

ଆଶିଷ ଦିଅନ୍ତୁ ପିତା କରନ୍ତୁ ଆଦେଶ,
ହରଷ ସମୟେ ଦୁଃଖ ନ କରନ୍ତୁ ଲେଶ ।

ହେ ପିତା ସ୍ୱଜନ ପ୍ରୀତି ହୋଇ ପ୍ରେମବଶ,
ତ୍ରୁଟି କଲେ ଯଶ ଯାଏ, ମିଳେ ଅପଯଶ । ୩୯୧

ପୁଣି ଅତି ସ୍ନେହ ବଶେ ଉଠି ନରନାହା,
ଧରି ବସାଇଲେ ରଘୁନାଥଙ୍କର ବାହା ।
ଶୁଣ ପୁଣ ମୁନି ଜନେ ତୁମକୁ କହନ୍ତି—
"ରାମ ଚରାଚର ସ୍ୱାମୀ—କେ ଅନ୍ୟ ନୁହନ୍ତି । ୩୯୨

ଜୀବର ଅଶୁଭ ଶୁଭ କର୍ମ ଅନୁସାରେ,
ବିଶ୍ୱର ଈଶ୍ୱର ଫଳ ଦିଅନ୍ତି ତାହାରେ ।
ଯେ କର୍ମ କରଇ ତା'ର ଫଳ ସେ ଭୋଗଇ,
ଏସନ ନିଗମ ନୀତି ସଂସାର କହଇ । ୩୯୩
ଏଥି ପୁଣି ଅପରାଧ କିଏ ସେ କରୁଚି,
ଫଳ ତା'ର ଆଉ ଜଣେ କିପରି ଭୋଗୁଛି ?
ଅଶେଷ ବିଚିତ୍ର ଆହା ଦଇବର ଗତି,
ଜଗତେ ଜାଣିବା ଯୋଗ୍ୟ ବ୍ୟକ୍ତି କେ ଅଛନ୍ତି ?" ୩୯୪

ରାମକୁ ରଖିବା ପାଇଁ ରାଜା ତେଜି ଛଳ,
ନାନାବିଧ ପ୍ରକାରେ ସିନା କଲେ କଉଶଳ ।
ମାତ୍ରକ ଜାଣିଲେ ମୁଖୁଁ ରହିବେନି ରାମ,
ସେ'ତ ବୁଦ୍ଧିମାନ ଧୀର ଗୁଣ ଧର୍ମ-ଧାମ । ୩୯୫
ତା'ପରେ ସୀତାଙ୍କୁ ବୁକେ ଲଗାଇ ନୃପତି,
ଦେଲେ ନାନା ଉପଦେଶ ସ୍ନେହ ବଶେ ଅତି ।
କହି ଶୁଣାଇଲେ ଯେତେ ଅରଣ୍ୟର ଦୁଃଖ
କହିଲେ ଶ୍ୱଶୁର ଶାଶୁ ପିତାଘର ସୁଖ । ୩୯୬

ସୀତା ମନ ଅନୁରକ୍ତ ଶ୍ରୀରାମ ଚରଣେ,
ଭଲ ନ ଲଗଇ ଘର, ଭୟ ନୋହେ ବନେ ।
ସମସ୍ତେ ସୀତାଙ୍କୁ ପୁଣି କହନ୍ତି ବୁଝାଇ,
କହି କହି ବନ୍ଧୁ ବନ ଦୁଃଖ ଆଉ ନାହିଁ । ୩୯୭

ବୁଦ୍ଧିମତୀ ମନ୍ତ୍ରୀ ପତ୍ନୀ ଗୁରୁପତ୍ନୀ ଆସି,
କହିଲେ ଆଦରରେ ଅତି ମୃଦୁ କଥା ଭାଷି ।
"ତୁମକୁ ତ ବନବାସ କେହି ଦେଇ ନାହିଁ,
ଶାଶୁ ଶ୍ୱଶୁରଙ୍କ କଥା ନ କର କମ୍ପାଇ ?" ୩୯୮

ଏ ଶୀତଳ ହିତ ମଧୁ ବଚନ କୋମଳ,
ସୀତାଙ୍କୁ ତ କେବେହେଲେ ନ ଲାଗିଲା ଭଲ ।
ଶରତ ଚନ୍ଦ୍ରମା ସ୍ପର୍ଶେ ଚକୋଇ ଯେସନେ,
ବ୍ୟାକୁଳ ହୁଅଇ, ସୀତା ବ୍ୟାକୁଳ ତେସନେ । ୩୯୯

ସଙ୍କୋଚେ ଉତ୍ତର ସୀତା ନ ପାରିଲେ ଦେଇ,
ତାହା ଶୁଣି ରୋଷ ଭରେ ଚଞ୍ଚଳ କୈକେୟୀ—
ମୁନିବାସ କମଣ୍ଡଳୁ ମାଳା ଆଭୂଷଣ,
ରାମ ଆଗେ ରଖି କହେ କୋମଳ ବଚନ । ୪୦୦

ତୁମେ ତ ରାଜାଙ୍କ ପ୍ରାଣପ୍ରିୟ ରଘୁପତି,
ଥିଲୁ ରାଜା ତୁମ ସ୍ନେହ ଶୀଳ ନ ତେଜନ୍ତି ।
ପୁଣ୍ୟ ଯଶ ପରଲୋକ ପଛେ ପୋଡ଼ିଯାଉ,
ନୃପ ନ କହିବେ କେବେ ରାମ ବନେ ଯାଉ । ୪୦୧

ଏ ସବୁ ବିଚାରି ଯାହା ଭଲ ତାହା କର,
ମାତା ଉପଦେଶେ ସୁଖୀ ହେଲେ ରଘୁବର ।
ଏ କଥା ରାଜାଙ୍କ ହୃଦେ ଲାଗେ ଯେହ୍ନେ ବାଣ,
ଭାବନ୍ତି ଯାଉନ କାହିଁ ଏ ଅଭାଗା ପ୍ରାଣ । ୪୦୨

ସକଳେ ବିକଳ ହେଲେ ମୂର୍ଚ୍ଛିତ ରାଜନ,
କେହି ଜାଣି ନ ପାରିଲେ କରିବେ କଅଣ ।
ମୁନିବେଶ ରଚି ରଘୁପତି ତରତରେ,
ଚାଲିଲେ ପ୍ରଣମି ପିତା ମାତାଙ୍କ ପୟରେ । ୪୦୩

ବନର ସକଳ ସାଜ ସାମଗ୍ରୀ ସଜାଇ,
ସଙ୍ଗେ ନେଇ ପତ୍ନୀ ସୀତା ଆଉ ପ୍ରିୟ ଭାଇ ।

କରି ଗୁରୁ ବ୍ରାହ୍ମଣଙ୍କ ଚରଣ ବନ୍ଦନ,
ପ୍ରଭୁ ଗଲେ ସମସ୍ତଙ୍କୁ କରି ଅଚେତନ । ୪୦୪

ବଶିଷ୍ଠଙ୍କ ଦ୍ୱାରେ ରାମ ଯାଇ ହେଲେ ଛିଡ଼ା,
ଦେଖିଲେ ପାଆନ୍ତି ଲୋକେ ବିରହାଗ୍ନି ପୀଡ଼ା ।
ସଭିଙ୍କୁ ବୁଝାଇ କହି ସୁପ୍ରିୟ ବଚନ,
ପରେ ଡକାଇଲେ ପାଶେ ଯେତେ ବିପ୍ରଗଣ । ୪୦୫

ଗୁରୁଙ୍କୁ ବିଷ୍କର ଦେଲେ ବର୍ଷକ ଭୋଜନ,
ବିନୟ ଆଦର ଦାନେ ବଶ କଲେ ମନ ।
ଯାଚକଙ୍କୁ ଦାନ ମାନ ଦେଇ କଲେ ତୋଷ,
ମିତ୍ରଙ୍କୁ ପବିତ୍ର ପ୍ରେମେ କଲେ ପରିତୋଷ । ୪୦୬

ଦାସ ଦାସୀ ଅନୁଗତେ ଡକାଇ ଆବର,
ଗୁରୁଙ୍କୁ ଅରପି କହିଲେ ସେ ଯୋଡ଼ି କର ।
"ନାଥ ଏ ସମସ୍ତଙ୍କର ପାଳନ ପୋଷଣ,
କରୁଥିବେ ନିଜେ ପିତା ମାତାଙ୍କ ସମାନ ।" ୪୦୭

ବିନୟରେ ବାରମ୍ବାର ଯୋଡ଼ି ବେନି ପାଣି,
କହନ୍ତି ଶ୍ରୀରାମ ସମସ୍ତଙ୍କୁ ମୃଦୁ ବାଣୀ ।
"ଯାହାଙ୍କ ଚେଷ୍ଟାରେ ହେବେ ସୁଖୀ ମହାରାଜ,
ସେ ମୋ ହିତକାରୀ ବନ୍ଧୁ, ସେ ମୋହିତ କାର୍ଯ୍ୟ । ୪୦୮

ମୋ ବିରହେ ମୋ ଜନନୀ ନିକର ଯେସନେ,
କାଳ ନ କାଟିବେ ହୋଇ ଦୀନ ଦୁଃଖୀ ମନେ ।
ସେପରି ଉପାୟ ଭବ କରିବ ଯତନ,
ପରମ ପ୍ରବୀଣ ଯେତେ ମୋର ପୁରଜନ ।" ୪୦୯

ଏସନ ପ୍ରକାରେ ରାମ ବୁଝାଇ ସକଳେ,
ଶିର ନୁଆଁଇଲେ ଗୁରୁ ପାଦ-ପଦ୍ମ ତଳେ ।
ଶିବ ଗୌରୀ ଗଣପତି ହୃଦୟେ ସୁମରି,
ଆଶୀର୍ବାଦ ପାଇ ରଘୁନାଥ ଗଲେ ଚଳି । ୪୧୦

ରାମ ଯିବା ପରେ ହେଲା ଦାରୁଣ ବିଷାଦ,
ଶୁଣା ଯାଇ ନ ପାରଇ ପୁର ଆର୍ତ୍ତନାଦ ।
ଲଙ୍କାପୁରେ କୁଶକୁନ ଅଯୋଧ୍ୟାରେ ଶୋକ,
ହରଷ-ବିଷାଦ-ବଶ ହେଲେ ସୁରଲୋକ । ୪୧୧

ମୂର୍ଚ୍ଛା ଅନ୍ତେ ମହାରାଜା ଯେ କାଳେ ଜାଗିଲେ,
ମନ୍ତ୍ରୀ ସୁମନ୍ତ୍ରଙ୍କୁ ଡାକ ଏପରି କହିଲେ—
ରାମ ଚାଲିଗଲେ ବନ ଜୀବନ ନ ଗଲା,
କେଉଁ ସୁଖ ପାଇଁ ରହେ ଏ ଦେହରେ ଭଲା ! ୪୧୨

ଏହାଠାରୁ ବଳି କେଉଁ ବ୍ୟଥା ବଳବାନ,
ଯେଉଁ ଦୁଃଖ ପାଇ ତନୁ ତେଜିବ ଏ ପ୍ରାଣ ।
କହିଲେ ପୁଣି ଦମ୍ଭ ଧରି ନରରାୟ,
"ସଖା ରଥ ନେଇ ତୁମେ ରାମ ସଙ୍ଗେ ଯାଅ । ୪୧୩

ହେ ସୁମନ୍ତ୍ର ଅତି ସୁକୁମାର ପୁତ୍ର ଦେନି,
ଯାଉଛନ୍ତି ସୁକୁମାରୀ ସୀତା ସଙ୍ଗେ ନେଇ ।
ରଥେ ବସାଇ ତାଙ୍କୁ ଦେଖାଇ କାନନ,
ଦିନ ଚାରି ଅନ୍ତେ ଫେରି ଅଯୋଧ୍ୟା ଭୁବନ । ୪୧୪

ଯଦି ବାହୁଡ଼ିବେ ନାହିଁ ଧୀର ଦେନି ଭାଇ,
ସତ୍ୟସନ୍ଧ ଦୃଢ଼ବ୍ରତ ରଘୁକୁଳ ସାଇଁ,
ତେବେ କରଯୋଡ଼ି ତୁମେ କରିବ ଗୁହାରି,
ଲେଉଟାଇ ଦିଅ ପ୍ରଭୁ ଜନକ-କୁମାରୀ । ୪୧୫

ବନପ୍ରାନ୍ତ ଦେଖି ଯେବେ ଜାନକୀ ଡରିବ,
ଅବସର ଦେଖି ତମେ ମୋ କଥା କହିବ ।
ତୋ ଶାଶୁ ଶ୍ୱଶୁର ଦେଇ ଅଛନ୍ତି ସନ୍ଦେଶ,
ଘରକୁ ବାହୁଡ଼ ପୁତ୍ରୀ ବନ ଅତି କ୍ଲେଶ । ୪୧୬

କେବେ ବାପଘରେ ଅବା କେବେ ଶାଶୁଘରେ,
ରହିବ ଯେପରି ରୁଚି ହୋଇବ ମନରେ ।

ଏପରି ଉପାୟମାନ କରିବ ନିଶ୍ଚୟ,
ସୀତା ବାହୁଡ଼ିଲେ ପ୍ରାଣ ଲଭିବ ଆଶ୍ରୟ । ୪୧୭

ନୋହିଲେ ନିଶ୍ଚେ ମୋ ମୃତ୍ୟୁ ଶେଷ ପରିଣାମ,
କିଛି ନୋହିବ ନାହିଁ ବିଧି ହୋଇଥିଲେ ବାମ ।
କେ ଅନ୍ତ ଦେଖା ମୋ ରାମ ଜାନକୀ ଲକ୍ଷ୍ମଣ,
କହି ବସୁଧାରେ ମୂର୍ଚ୍ଛା ହୋଇଲେ ରାଜନ । ୪୧୮

ରାଜାଙ୍କ ଆଦେଶେ ମନ୍ତ୍ରୀ ମସ୍ତକ ନୁଆଁଇ,
ଅତି ଶୀଘ୍ର ରାଜପୁର ବିମାନ ସଜାଇ ।
ନଗର ବାହାରେ ଯହିଁ ଜାନକୀ ସହିତ,
ଥିଲେ ଦୁଇ ଭାଇ ତହିଁ ହେଲେ ଉପସ୍ଥିତ । ୪୧୯

ସୁମନ୍ତ୍ର ରାଜାଙ୍କ କଥା କହି ଶୁଣାଇଲେ,
ରାମଙ୍କୁ ବିନତି କରି ରଥେ ବସାଇଲେ ।
ସୀତା ସହ ଚଢ଼ି ବେନି ଭାଇ ରଥ ପରେ,
ଯାତ୍ରା କଲେ ଅଯୋଧ୍ୟାକୁ ପ୍ରଣମି ଅନ୍ତରେ । ୪୨୦

ଅଯୋଧ୍ୟା ଅନାଥ, ରାମ ଛାଡ଼ି ଯାଉଛନ୍ତି,
ବିକଳରେ ପୁରଜନରେ ସାଥି ଧରିଛନ୍ତି ।
ବୁଝାନ୍ତି କରୁଣା-ସିନ୍ଧୁ ବହୁତ ଭାବରେ,
ଫେରି ପୁଣି ପ୍ରେମବଶେ ଆସନ୍ତି ସାଙ୍ଗରେ । ୪୨୧

ଲାଗଇ ଅଯୋଧ୍ୟାପୁରୀ ଅତ୍ୟନ୍ତ ଭୀଷଣ,
ଅନ୍ଧକାର ପୂର୍ଣ୍ଣ-କାଳ-ରଜନୀ ଯେସନ ।
ଭୟଙ୍କର ଜନ୍ତୁ ସମ ପୁର ନର ନାରୀ,
ଏକକୁ ଆରେକ ଦେଖି ଡରନ୍ତି ଚକ୍ଷାରି । ୪୨୨

ଭବନ ଶ୍ମଶାନ ସମ ପରିଜନେ ଭୂତ,
ପୁତ୍ର ମିତ୍ର ହିତକାରୀ ଯେହ୍ନେ ଯମଦୂତ ।
ଉପବନେ ତରୁଲତା ପଡ଼ିଲେ ଝାଉଁଳି,
ନଦୀ ସରୋବରେ ରୁହିଁ ନ ହୁଏ ଯେପରି । ୪୨୩

କୋଟି କେଳିମୃଗ ଅଶ୍ୱ, ହସ୍ତୀ ଓ ଗୋଧନ,
ଚାତକ ମୟୂର ପିକ ଶୁଆ ସାରୀଗଣ ।
ହଂସ ଚକ୍ରବାକ ପୁଣି ଚକୋର ସାରସ,
ଶ୍ରୀରାମ ବିରହେ ହୋଇ ପଡ଼ନ୍ତି ବିବଶ । ୪୨୪

ଶ୍ରୀରାମ ବିରହ ଦୁଃଖେ ଯିଏ ଯେଉଁଠାରେ,
ଠିଆ ହୋଇ ରହିଗଲେ ପ୍ରତିମା ଆକାରେ ।
ଫଳ ଫୁଲଭରା ପୁର ଗହନ କାନନ,
ପଶୁ ପକ୍ଷୀ ପ୍ରାୟେ ନରନାରୀ ଅଚେତନ । ୪୨୫

କୈକେୟୀଙ୍କୁ ବିଧି କଲା କପାଡିଣୀ ଚଢ଼େଇଁ,
ଦୁଃସହ ଅନଳେ ଦଶଦିଗ ଦିଏ ଦହି ।
ରାମ ବିରହାଗ୍ନି ସହି ନ ପାରିଲେ କେହି,
ସବୁ ଲୋକମାନେ ଗଲେ ବ୍ୟାକୁଳେ ପଳେଇ । ୪୨୬

ସରବେ ବିଚାର କଲେ ମନେ ଦୁଃଖ ପାଇ,
ଶ୍ରୀରାମ ଲକ୍ଷ୍ମଣ ସୀତା ବିନା ସୁଖ ନାହିଁ ।
ଯହିଁ ରାମଚନ୍ଦ୍ର ତହିଁ ସକଳ ସମାଜ,
ରଘୁନାଥ ବିନା କିସ ଅଯୋଧ୍ୟାରେ କାର୍ଯ୍ୟ ? ୪୨୭

ଗଲେ ସଙ୍ଗେ ଏ ବିଚାର ହୃଦେ ଦୃଢ଼ କରି,
ଦେବତା ଦୁର୍ଲ୍ଲଭ ସୁଖ-ଧାମ ପରିହରି ।
ଯାହାଙ୍କର ପ୍ରିୟ ରାମ-ପଦ-ତାମରସ,
ବିଷୟ ଭୋଗ କି ତାଙ୍କୁ କରିପାରେ ବଶ । ୪୨୮

ବାଳକ ବୃଦ୍ଧଙ୍କୁ ଛାଡ଼ି ପୁରବାସୀ ଘରେ,
ସମସ୍ତେ ଚଳିଲେ ରଘୁନାଥଙ୍କ ସାଙ୍ଗରେ ।
ପ୍ରଥମ ଦିବସେ ରାମ ଯେ ଜଗନ୍ନିବାସ,
ତଟିନୀ ତମସା ତୀରେ କରିଲେ ନିବାସ । ୪୨୯

ପ୍ରେମବଶ ପ୍ରଜାଗଣେ ଦେଖି ରଘୁପତି,
ସଦୟ ହୃଦୟେ ଦୁଃଖ ଉପୁଜିଲା ଅତି ।

ପ୍ରଭୁ ତ କରୁଣାମୟ ମଙ୍ଗଳ କାରଣ,
ପର ପୀଡ଼ା ବେଗି ଅଙ୍ଗେ କରନ୍ତି ଗ୍ରହଣ । ୪୩୦

ଅଶେଷ ପ୍ରେମରେ ପ୍ରିୟ କୋମଳ ବଚନେ,
ନାନା ଭାବେ ବୁଝାଇଲେ ରାମ ପ୍ରଜାଗଣେ ।
କେତେ ଧର୍ମ ଉପଦେଶ ତାହାଙ୍କୁ ଦିଅନ୍ତି,
ଯେତେ ଫେରାଇଲେ ସେହୁ କେବେ ନ ଫେରନ୍ତି । ୪୩୧

ସେ ନିଜ ସ୍ୱଭାବ ସ୍ନେହ ଛାଡ଼ି ନ ପାରନ୍ତି,
ତେଣୁ ବଡ଼ ଦ୍ୱିଧାଗ୍ରସ୍ତ ହେଲେ ରଘୁପତି ।
ଶୋକେ ପଥଶ୍ରମେ କେତେ ଲୋକ ଗଲେ ଶୋଇ,
ଆଉ କେତେକଙ୍କୁ ଦେବମାୟା ଦେଲା ମୋହି । ୪୩୨

ଯେତେବେଳେ ରାତି ଦୁଇ ପ୍ରହର ବିଗତ,
ସପ୍ରେମେ କହିଲେ ରାମ, "ହେ ତାତ ସୁମନ୍ତ !
ରଥ ଚାଲ ଯେହ୍ନେ ଖୋଜ ନ ପଡ଼ିବ କାହିଁ,
ଏହା ଛଡ଼ା ଆଉ ଅନ୍ୟ ଉପାୟ ଯେ ନାହିଁ ।" ୪୩୩

ଶ୍ରୀରାମ ଲକ୍ଷ୍ମଣ ସୀତା ଶମ୍ଭୁପାଦ ତଳେ,
ପ୍ରଣତି ଜଣାଇ ଚଢ଼ି ବସିଲେ ରଥରେ ।
ଏଣେ ତେଣେ ଅଶ୍ୱ ଖୋଜ ଲୁଚାଇ ସୁମନ୍ତ,
ସେହିକ୍ଷଣି ସେ ସ୍ଥାନରୁ ଚଳାଇଲେ ରଥ । ୪୩୪

ଉଠିଲେ ସକଳ ଲୋକ ହେଲାରୁ ପ୍ରଭାତ,
କୋଳାହଳ ହେଲା-ଚାଲିଗଲେ ରଘୁନାଥ ।
ରଥ ପଥ କେହି କାହିଁ ଖୋଜ ନ ପାଇଲେ,
ରାମ ରାମ କହି ଚାରି ଦିଗକୁ ଧାଇଁଲେ । ୪୩୫

ଜାହାଜ କି ବୁଡ଼ିଗଲା ଅତଳ ସାଗରେ,
ବିକଳ ହୁଅନ୍ତି ତେଣୁ ବଣିକ ନିକରେ ।
ଏକକୁ ଆରେକ ଡାକି ଦିଏ ଉପଦେଶ,
ରାମ ଛାଡ଼ିଗଲେ ଜାଣିପାରି ଆମ କ୍ଲେଶ । ୪୩୬

ଆପଣାକୁ ନିନ୍ଦା କରି ପ୍ରଶଂସନ୍ତି ମୀନେ,
ଧିକ ଏ ଜୀବନ ରଘୁନାଥଙ୍କ ବିହୀନେ ।
ଯଦି ବିନ୍ହି ଦିଏ ପ୍ରିୟ ବିରହ କଷଣ,
ମାଗିଲା ମାତ୍ରକେ କିଆଁ ନ ଦିଏ ମରଣ । ୪୩୭

ଏହିପରି କରି ବହୁ ବିଳାପ ପ୍ରଳାପ,
ଲେଉଟିଲେ ଅଯୋଧ୍ୟାକୁ ଲଭି ପରିତାପ ।
ବିଷମ ବିରହ କରି ନ ହୁଏ ବର୍ଣ୍ଣନ,
ରାମ ବାହୁଡ଼ିବା ପାଏଁ ରଖିଲେ ଜୀବନ । ୪୩୮

ପୁନଃ ରାମ ଦରଶନ ଆଶେ ନର ନାରୀ,
କଲେ ନାନା ଉପାବ୍ରତ ନିଷ୍ଠାଭରେ ପାଳି ।
ଚକ୍ରବାକ ଚକ୍ରବାକୀ କମଳ ଯେସନେ,
ସୂର୍ଯ୍ୟ ବିନା ଦୁଃଖୀ, ହେଲେ ସର୍ବେ ତେସନେ । ୪୩୯

ସଚିବ ଜନକ-ସୁତା ସହ ବେନି ଭାଇ,
ଶୃଙ୍ଗବେର ପୁର ପ୍ରାନ୍ତେ ପହଞ୍ଚିଲେ ଯାଇ ।
ଗଙ୍ଗାନଦୀ ଦେଖି ଓହ୍ଲାଇଲେ ରଘୁନାଥ,
ଆନନ୍ଦ ମନରେ ତାଙ୍କୁ କଲେ ପ୍ରଣିପାତ । ୪୪୦

ଲକ୍ଷ୍ମଣ ସଚିବ ସୀତା କରିଲେ ପ୍ରଣାମ,
ସଭିଙ୍କ ସହିତେ ସୁଖ ଲଭିଲେ ଶ୍ରୀରାମ ।
ଆନନ୍ଦ ମଙ୍ଗଳ ମୂଳ ସୁର-ତରଙ୍ଗିଣୀ,
ସୁଖ ପ୍ରଦାୟିନୀ ପୀଡ଼ା ପରାସ-ନାଶିନୀ । ୪୪୧

କହି କହି ବହୁବିଧ ପୁରାଣ ପ୍ରସଙ୍ଗ,
ନିରେଖନ୍ତି ରଘୁପତି ଜାହ୍ନବୀ ତରଙ୍ଗ ।
ସଚିବ ଅନୁଜ ପ୍ରିୟା ସଭିଙ୍କୁ ଶୁଣାନ୍ତି,
ସୁରନଦୀ ଗଙ୍ଗାନଦୀ ମହିମା ସୁଖ୍ୟାତି । ୪୪୨

ତହିଁ ସ୍ନାନ କରି ପଥଶ୍ରମ କଲେ ଦୂର,
ପାନ କରି ଶୁଚି ଜଳ ହୋଇଲେ ପ୍ରଫୁଲ୍ଲ ।

ଯାହାଙ୍କୁ ସ୍ମରିଲେ ଯାଏ ଭବ-ଶ୍ରମ ଘର,
ତାଙ୍କୁ ଶ୍ରମ ହେବା ଏ ତ ଲୌକିକ ବେଭାର । ୪୪୩

ବିଶୁଦ୍ଧ ସଚ୍ଚିଦାନନ୍ଦମୟ କନ୍ଦ ରୂପ,
ସୂର୍ଯ୍ୟ-କୁଳ କେତୁ ଭଗବାନ ରାମରୂପ ।
ନର ପରି ଯେଉଁ ଲୀଳା କରନ୍ତି ସଂସାରେ,
ତା' ଯେତୁ ଯତୃଶ ଜାଣ ଭବ-ପାରାବାରେ । ୪୪୪

ନିଷାଦ ରାଜନ ଗୁହ ଏ ଖବର ପାଇ,
ଆନନ୍ଦ ମନରେ ପ୍ରିୟ ବନ୍ଧୁଙ୍କୁ ଡକାଇ ।
ଭେଟି ପାଇଁ ଫଳ ମୂଳେ ପୂର୍ଣ୍ଣ କରି ଭାର,
ମିଳିବାକୁ ଗଲେ ହୃଦେ ହରଷ ଅପାର । ୪୪୫

ପ୍ରଣିପାତ କରି ଭେଟି ରଖି ପୁରୋଭାଗେ,
ପ୍ରଭୁଙ୍କୁ ଧ୍ୟେ ନିରେଖନ୍ତି ହୃଦ ଅନୁରାଗେ ।
ସହଜ ସ୍ନେହରେ ବଶ ରଘୁକୁଳ ସାଇଁ,
କରନ୍ତି କୁଶଳ ପ୍ରଶ୍ନ ପାଖରେ ବସାଇ । ୪୪୬

"ମୋ କୁଶଳ, କରି ପାଦ-ପଦ୍ମ ଦରଶନ,
ଭାଗ୍ୟବନ୍ତ ଭକ୍ତଜନେ ହେଲି ମୁଁ ଗଣନ ।
ହେ ଦେବ, ଏ ଧରା ଧନ ଧାମ ତ ତୁମର,
ସପରିବାରେ ମୁଁ ନୀଚ ସେବକ ମାତର । ୪୪୭

ଏବେ କୃପା କରି ପୁରେ କର ପଦାର୍ପଣ,
ଦାସ ଯଶ ବଢ଼ୁ ଲୋକେ କରନ୍ତୁ କୀର୍ତ୍ତନ ।"
ଉତ୍ତରେ କହିଲେ ରାମ, "ହେ ସଖା ସୁଜାଣ,
ପିତାଦେଶ ହୋଇଅଛି-ମୋହ ପ୍ରତି ଆନ । ୪୪୮

ମୁନିବ୍ରତ ମୁନିବେଶ ଆହାର ଓ ବାସ,
ଚଉଦ ବରଷ କାଳ କାନନେ ନିବାସ ।
ଉଚିତ ନୁହଇ ତେଣୁ ଗ୍ରାମବାସ ମୋର ।"
ଶୁଣି ତା' ଗୁହକ କଲେ ମନେ ଦୁଃଖ ଘୋର । ୪୪୯

ସୀତା-ରାମ ଲକ୍ଷ୍ମଣଙ୍କ ରୂପ ଦରଶନେ
କହିଲେ ସପ୍ରେମେ ଗ୍ରାମ ନରନାରୀଗଣେ,—
"ଯିଏ ପଠାଇଲେ ବନେ ବାଳକେ ଏପରି
ସେମାନଙ୍କ ପିତାମାତା କହନ୍ତୁ କପରି ?" ୪୫୦

ଜଣେ କହେ ଭଲ କରିଛନ୍ତି ନରପତି,
ବିଧାତା ଆମକୁ ଦେଲା ନେତ୍ର ଫଳ ଅତି ।
ସେକାଳେ ନିଷାଦରାଜ କଲେ ଅନୁମାନ
ସୁନ୍ଦର ଅଶୋକ ତଳ ହେବ ଯୋଗ୍ୟ ସ୍ଥାନ । ୪୫୧

ପ୍ରଭୁଙ୍କୁ ସେ ନେଇ ଦେଖାଇଲେ ସେହି ସ୍ଥାନ,
ଅତି ଉପଯୁକ୍ତ ବୋଲି କହିଲେ ଶ୍ରୀରାମ ।
ଗ୍ରାମବାସୀ ଘରେ ଗଲେ କରି ପ୍ରଣିପାତ,
ତହୁଁ ସନ୍ଧ୍ୟା କରିବାକୁ ଗଲେ ରଘୁନାଥ । ୪୫୨

କୁଶ କିଶଳୟେ ଶେଯ ମୃଦୁ ସୁକୋମଳ,
ବିଛାଇଲେ ଦେଖି ସମତଳ ମନୋହର ।
ମଧୁ ଶୁଚି ଫଳ ମୂଳେ ଜଳେ ଭରି ଦନା,
ଭକତ ଗୁହକ କଲେ ସେବା ଅରଚନା । ୪୫୩

ସୁମନ୍ତ୍ର ଜନକସୁତା ଅନୁଜ ସହିତେ,
କନ୍ଦମୂଳ ଫଳମୂଳ ଖାଇ ହର୍ଷଚିତ୍ତେ,
ରଘୁବଂଶମଣି କଲେ ଶୟନ ତହିଁରେ,
ଚରଣ ଚିପିଲେ ଭାଇ ଲକ୍ଷ୍ମଣ ସଧୀରେ । ୪୫୪

ପ୍ରଭୁ ନିଦ୍ରାଗତ ଜାଣି ଉଠିଲେ ଲକ୍ଷ୍ମଣ,
କହିଲେ ମନ୍ତ୍ରୀଙ୍କୁ "ଶୁଅ" କୋମଳ ବଚନ ।
ଅଳ୍ପ ଦୂରେ ସୁସଜ୍ଜିତ ଧନୁବାଣ ରଖି,
ଲକ୍ଷ୍ମଣ ପହରା ଦେଲେ ବୀରାସନେ ବସି । ୪୫୫

ବିଶ୍ୱସ୍ତ ପ୍ରହରୀ ଡାକି ନିଷାଦ ରାଜନ,
ସ୍ଥାନେ ସ୍ଥାନେ ପ୍ରୀତି ଭରେ କଲେ ନିୟୋଜନ ।

ବସିଲେ ଲକ୍ଷ୍ମଣ ପାଶେ ନିଜେ ଜାଗରେ,
କଟୀରେ ତୂଣୀର ଗୃହ ବାଣ ଧର କରେ । ୪୫୬

ଭୂମିରେ ନିଦ୍ରିତ ପ୍ରଭୁ ନିରେଖି ନିଷାଦ,
ପ୍ରେମବଶେ ହୃଦୟରେ ଜାଗିଲା ବିଷାଦ ।
ତନୁ ପୁଲକିତ ବହେ ନୟନରୁ ଜଳ,
କହନ୍ତି ଲକ୍ଷ୍ମଣ ଆଗେ ବଚନ କୋମଳ । ୪୫୭

ନରପତି ଭବନ ତ ସ୍ୱଭାବେ ସୁନ୍ଦର,
ବାସବ-ସଦନ ହେବ ନାହିଁ ପଟାନ୍ତର ।
ମଣିମୟ ଚନ୍ଦ୍ରଶାଳା ସୁରମ୍ୟ ଶୋଭିତ,
ସତେ କି ତା' ରତିପତି ସ୍ୱକରେ ନିର୍ମିତ । ୪୫୮

ଉପଭୋଗ୍ୟ ସେ ପ୍ରାସାଦ ଶୁଚି ସୁପବିତ୍ର,
ନାନା ଦ୍ରବ୍ୟେ ପୂର୍ଣ୍ଣ, ପୁଷ୍ପ ଗନ୍ଧେ ସୁଗନ୍ଧିତ ।
ସୁନ୍ଦର ପଲଙ୍କ ମଣି ପ୍ରଦୀପ ଶୋଭନ,
ଭରି ଯହିଁ ସର୍ବ ବିଧ ବିଳାସ ବ୍ୟସନ । ୪୫୯

ନାନା ଝିନିବାସ ତୂଳୀ ତଳପ ତକିଆ,
ଦୁଗ୍ଧ ଫେନନିଭ ମୃଦୁ ଚନ୍ଦ୍ରମା-ଉଦିଆ ।
ରାତି ଶୋଉଥିଲେ ତହିଁ ଜାନକୀ-ରାଘବ,
ନିଜ ରୂପେ ଦଳି ରତି-କନ୍ଦର୍ପ ଗରବ । ୪୬୦

ସେହି ସୀତା ରାମ ଆଜ କୁଶ ଘାସ ପରେ,
ବିନା ବସ୍ତ୍ରେ ଶାୟିତ, କେ' ଚାହିଁବ ନେତ୍ରରେ ?
ମାତା ପିତା ପରିଜନ ନଗର ନିବାସୀ,
ସୁଶୀଳ ସୁହୃଦ ସଖା ଦାସ ଆଉ ଦାସୀ । ୪୬୧

ସର୍ବେ ପ୍ରାଣ ସମ ଯାରେ ଜଗି ରହୁଥିଲେ,
ସେ ରାମ ଗୋସାଇଁ ଏବେ ଭୂଇଁରେ ଶୋଇଲେ ।
ଯାହାର ଜନକ ବିଶ୍ୱ-ବନ୍ଦିତ ଜନକ,
ଶ୍ୱଶୁର ସୁରେଶ-ସଖା ଅଯୋଧ୍ୟା-ନାୟକ, ୪୬୨

ପତି ରାମଚନ୍ଦ୍ର, ତଳେ ସେହ୍ନ ବଇଦେହୀ,
ଶୋଇଛନ୍ତି ବନ୍ଧୁ ବାମ କାହାର ନୁହଇ ?
ବନବାସ ଯୋଗ୍ୟ କ'ଣ ସୀତା ରଘୁପତି,
ଲୋକ କଥା ସତ୍ୟ—କର୍ମ ବଳବାନ ଅତି । ୪୭୩

କୁମତି କେକୟସୁତା କଇକେଇ ମନେ,
କଠୋର କୁଟିଳ ପଣ କଲେ କି କାରଣେ ?
ଯେ ରଘୁନନ୍ଦନ ରାମ ସୀତା ସୁଖ କାଳେ,
ଦେଲେ ଅସହଣି ଦୁଃଖରାଶି ଅବସ୍ଥରେ । ୪୭୪

ସୂର୍ଯ୍ୟବଂଶ ବୃକ୍ଷ ପାଇଁ ହେଲେ ସେ କୁରାଡ଼ି,
କୁମତି ସମଗ୍ର ବିଶ୍ୱେ ଦୁଃଖ ଦେଲେ ବାଡ଼ି ।
ନିରେଖି ଶ୍ରୀରାମ ସୀତା ଶାୟିତ ଭୂତଳେ,
ନିଷାଦ-ନୃପତି ହୃଦେ ଅତି ଦୁଃଖ ଭରେ । ୪୭୫

ଲକ୍ଷ୍ମଣ କହିଲେ ମୃଦୁ ମଧୁର ବଚନ,
ବିବେକ ବୈରାଗ୍ୟ ଜ୍ଞାନ ଭକ୍ତି ବିଲେପନ ।
ଭାଇ ସୁଖ ଦୁଃଖ କିଏ କାହାକୁ ନ ଦିଏ,
ନିଜ କୃତ କର୍ମଫଳ ସିନା ଭୋଗେ ସିଏ । ୪୭୬

ବିରହ ମିଳନ ଶତ୍ରୁ ମିତ୍ର ମଧ୍ୟମ,
ଭଲ ମନ୍ଦ ଭୋଗ—ସବୁ ଏ ସଂସାର ଭ୍ରମ ।
ସମ୍ପତ୍ତି ବିପତ୍ତି ଜନ୍ମ ମୃତ୍ୟୁ କର୍ମ କାଳ,
ଜଗତର ଯେତେ ଯେତେ ଏ ସବୁ ଜଞ୍ଜାଳ ।
ଏ ଧରଣୀ ଧନ ଧାମ ପୁର ପରିବାର,
ସ୍ୱର୍ଗ ନର୍କ ଆଦି ଯେତେ ଲୋକ ବ୍ୟବହାର ।
ଦେଖାଯାଏ ଶୁଣାଯାଏ ଗୁଣାଯାଏ ଯାହା,
ମୋହ ମୂଳ, ବାସ୍ତବିକ ସତ୍ୟ ନୁହେ ତାହା । ୪୭୭

ସ୍ୱପ୍ନରେ ନୃପତି ଯେହ୍ନେ ହୁଅଇ ଭିକାରୀ,
ରଙ୍କୀ ହୁଏ ଶଚୀପତି ଇନ୍ଦ୍ର ବଜ୍ରଧାରୀ ।

ଲାଭ କ୍ଷତି ନ ଥାଏ ତ ମାନବକ ଜାଗ୍ରତେ,
ସେପରି ଦେଖିବ ଏଇ ପ୍ରପଞ୍ଚ ଜଗତେ । ୪୬୮

ଏସନ ବିଚାରି ହୃଦେ କର ନାହିଁ ରୋଷ,
ଅଥବା ବୃଥାରେ କାହାରେ ଦିଅନାହିଁ ଦୋଷ ।
ମୋହ-ରଜନୀରେ ସର୍ବେ ନିଦ୍ରା ଅଭିଭୂତ,
ଅଜ୍ଞତା ବଶତଃ ସ୍ୱପ୍ନ ଦେଖନ୍ତି ବହୁତ । ୪୬୯

ଏ ଜଗତ-ଯାମିନୀରେ ଉଜାଗର ଯୋଗୀ,
ପରମାର୍ଥ ପଥଦର୍ଶୀ ସଂସାର-ବିୟୋଗୀ ।
ବିଷୟ-ବିଳାସୁ ଯେବେ ହୁଅଇ ବିରତ,
ଜାଣିବ ସେ କାଳେ ଜୀବ ଜଗତେ ଜାଗ୍ରତ । ୪୭୦

ବିବେକ ଉଦୟେ ମୋହ-ଭ୍ରମ ଅପସରେ,
ହୁଏ ଅନୁରାଗ ଜାତ ଶ୍ରୀରାମ-ପଦରେ ।
ହେ ସଖା ପରମ ପରମାର୍ଥ ଅଟେ ଏହି,
ମନ କର୍ମ ବାକ୍ୟେ ହେବା ରାମ-ପଦ-ସ୍ନେହୀ । ୪୭୧

ପରମାର୍ଥ ସ୍ୱରୂପ ଯେ ରାମ ପରଂବ୍ରହ୍ମ,
ଅଲେଖ ଅନାଦି ଅବିଗତ ଅନୁପମ ।
ସେ ସକଳ ଭେଦ ଶୂନ୍ୟ ବିକାର-ରହିତ,
ନେତି ନେତି ବୋଲି ଯେ ତ ବେଦେ ନିରୂପିତ । ୪୭୨

ଭକ୍ତ ଭୂମି ଦ୍ୱିଜ ଧେନୁ ଦେବ ହିତ ଅର୍ଥେ,
ସେ ତ ନର ରୂପେ ଲୀଳା କରନ୍ତି ଜଗତେ ।
ସେହି ଲୀଳା କଥା କଲେ କର୍ଣ୍ଣରେ ଶ୍ରବଣ,
ଜଗତ ଜଞ୍ଜାଳ-ଜାଲ ହୁଏ ବିମୋଚନ । ୪୭୩

# ଚାରି

ହେ ସଖା ଏସନ ବୁଦ୍ଧି ମୋହ କର ତ୍ୟାଗ,
ରାମ-ସୀତା ଚରଣରେ ଭର ଅନୁରାଗ ।"
କହୁ କହୁ ରାମ ଗୁଣ ହୋଇଲା ପାହାନ୍ତା,
ଜାଗିଲେ ସଂସାର-ସୁଖ-ସୁମଙ୍ଗଳ ଦାତା । ୪୭୪

ଶୌଚାଦି ଶେଷରେ ନିତ୍ୟ-ଶୁଚି କଲେ ସ୍ନାନ,
ବଟ କ୍ଷୀର ମଗାଇଲେ ଚତୁର ସୁଜାଣ ।
ରଚନ୍ତି ଅନୁଜ ସାଥେ ସେବେ ଜଟା ଭାର,
ଦେଖି ସୁମନ୍ତ୍ରଙ୍କ ନେତ୍ରୁ ବହେ ଅଶ୍ରୁ ଧାର । ୪୭୫

ହୃଦୟେ ଅଶେଷ ଦାହ ବଦନ ମଳିନ,
କର ଯୋଡ଼ି କହିଲେ ସେ ହୋଇ ଅତି ଦୀନ ।
"କୋଶଳ ପତିଙ୍କ ପ୍ରଭୁ ଆଦେଶ ଏହି ତ,
ରଥ ଘେନିଯାଅ ରଘୁବରଙ୍କ ସହିତ । ୪୭୬

କାନନ ଦେଖାଇ, କରି ଗଙ୍ଗାରେ ସ୍ନାହାନ,
ଏ ବେନି ଭାଇଙ୍କୁ ବେଗି ବାହୁଡ଼ାଇ ଆଣ ।
ସନ୍ଦେହ ସଙ୍କୋଚ କିଛି ନ ରଖି ମନରେ,
ଲେଉଟାଇ ଆଣ ସୀତା ଲକ୍ଷ୍ମଣ ରାମରେ । ୪୭୭

ନରପତି କହିଥିଲେ ମୋତେ ଏହିପରି,
ଯେପରି କହିବେ ପ୍ରଭୁ କରିବ ସେପରି ।
ଅଶେଷ ବିନତି କରି ପଡ଼ି ପାଦ ତଳେ,
କାନ୍ଦିଲେ ଯେସନେ ଶିଶୁ କାନ୍ଦଇ ବିକଳେ । ୪୭୮

"କୃପା କରି ସେହିପରି କରନ୍ତୁ ହେ ନାଥ,
ଯେପରି ଅଯୋଧ୍ୟାପୁରୀ ନ ହେବ ଅନାଥ ।"
ମନ୍ତ୍ରୀଙ୍କୁ ଉଠାଇ ରାମ ସାନ୍ତ୍ୱନା ଦିଅନ୍ତି,
"ପିତା ତୁମେ ଜାଣିଅଛ ଧରମର ଗତି ।" ୪୭୯

ଶିବି ଓ ଦଧିଚି ହରିଶ୍ଚନ୍ଦ୍ର ନରସାଇଁ,
କୋଟି କ୍ଳେଶ ସହିଛନ୍ତି ଧର୍ମ ରକ୍ଷା ପାଇଁ ।
ରାଜା ରନ୍ତିଦେବ, ସୁଜ୍ଞ ବଳି ନରପତି,
ନାନା ସଙ୍କଟରେ ଧର୍ମ ରକ୍ଷା କରିଛନ୍ତି । ୪୮୦

ସତ୍ୟ ସମ ଆଉ ଧର୍ମ ନାହିଁ ବୋଲି ଜାଣି,
ବଖାଣି ଅଛନ୍ତି ବେଦ ନିଗମ ପୁରାଣ ।
ସହଜେ ସେ ଧର୍ମ ମୋତେ ହୋଇଛି ପ୍ରାପତି,
ତେଜିଲେ ଅଯଶ ଛାଇଯିବ ତ୍ରିଜଗତି । ୪୮୧

ପ୍ରତିଷ୍ଠିତ ବ୍ୟକ୍ତି ପକ୍ଷେ ନିନ୍ଦା ଅପଯଶ,
ସନ୍ତାପ ଦାୟକ କୋଟି ମରଣ ସଦୃଶ ।
କି ଅବା ଅଧିକ ଆଉ କହିବି ହେ ତାତ,
ଲେଉଟି ଉତ୍ତର ଦେଲେ ହୋଇବ ମୋ ପାପ । ୪୮୨

ପିତାଙ୍କ ପଦ୍ମରେ ପଡ଼ି ଯୋଡ଼ି ବେନି ହାତ
କରିବ ବିନତି, କହି କୋଟି ପ୍ରଣିପାତ;
ଏତିକି ପ୍ରାର୍ଥନା ମୋର ଅଛି ଆହେ ପିତା,
ମୋ ବିଷୟେ କେବେହେଲେ ନ କରିବେ ଚିନ୍ତା । ୪୮୩

ମୋ ପିତା ସମାନ ତୁମେ ମୋର ହିତକାରୀ,
ହାତ ଯୋଡ଼ି ତାତ ତେଣୁ କରୁଛି ଗୁହାରି ।
ସକଳ ପ୍ରକାରେ ଏହି କର୍ତ୍ତବ୍ୟ ତୁମର,
ଯେହ୍ନେ ଦୁଃଖ ନ ପାଇବେ ଜନକ ମୋହର ।" ୪୮୪

ରଘୁନାଥ-ସୁମନ୍ତ୍ରଙ୍କ ଶୁଣି ଏ ସମ୍ବାଦ,
ସ୍ୱଜନଙ୍କ ସହ ହେଲେ ବିକଳ ନିଷାଦ ।

କଛୁ କଟୁବାଣୀ ତହିଁ କହିଲେ ଲକ୍ଷ୍ମଣ,
ଅନୁଚିତ ଜାଣି ପ୍ରଭୁ କରିଲେ ବାରଣ । ୪୮୫

ସଙ୍କୋଚେ କହିଲେ ରାଣ ଦେଇ ରଘୁମଣି,
"ଲକ୍ଷ୍ମଣର ପିଲାପଣ ତାତ କହିବନ ।"
କହିଲେ ସୁମନ୍ତ୍ର ପୁଣି ରାଜାଙ୍କ ସନ୍ଦେଶ,
ସୀତା ସହି ନ ପାରିବେ ଅରଣ୍ୟର କ୍ଲେଶ । ୪୮୬

ଯେ ପ୍ରକାରେ ଅଯୋଧ୍ୟାକୁ ଫେରିବେ ବୈଦେହୀ,
ତୁମର ଓ ରାମଙ୍କର କର୍ତ୍ତବ୍ୟ ଅଟଇ ।
ନୋହିଲେ ମୁଁ ନଷ୍ଟେ ହୋଇ ଭରସା ବିହୀନ,
ବଞ୍ଚି ନ ପାରିବି, ଯେହ୍ନେ ଜଳ ବିନା ମୀନ । ୪୮୭

ସବୁ ସୁଖ ବାପଘରେ ଶଶୁରଙ୍କ ଘରେ,
ଯେତେବେଳେ ଯହିଁ ରୁଚି ହୋଇବ ମନରେ,
ସେଇଠି ରହିବେ ସୁଖେ ନାହିଁ କିଛି କ୍ଷତି,
ଯେତେଦିନ ଯାଏଁ ଶେଷ ନୋହିଛି ବିପତ୍ତି । ୪୮୮

ପନ ଲୁଟିବ ଯେହ୍ନେ କହି ଅଛନ୍ତି ନୃପତି,
କେ ମାପି ପାରିବ, ନାହିଁ ସେ ହୃଦ ଆରତି ।
ପିତାଙ୍କ ସନ୍ଦେଶ ଶୁଣି କରୁଣା ନିଧାନ,
ଜାନକୀଙ୍କୁ ଦେଲେ ନାନା ଉପଦେଶମାନ । ୪୮୯

ଶାଶୁ ଓ ଶଶୁର ଗୁରୁ ପରିବାର ଚିନ୍ତା,
ତୁଟିଯିବ ଯେବେ ତୁମେ ଫେରିଯିବ ସୀତା ।
କହିଲେ ବୈଦେହୀ ଶୁଣି ସ୍ୱାମୀଙ୍କ ବଚନ--
"ହେ ପରମ ସ୍ନେହଶୀଳ ଶୁଣ ପ୍ରିୟତମ ।୪୯୦

ପରମ ବିବେକୀ ପ୍ରଭୁ କରୁଣା ସାଗର,
କହ କାୟା ତେଜି ଛାୟା ହୁଏ କି ଅନ୍ତର ?
ସୂର୍ଯ୍ୟଙ୍କୁ ବରଜି ପ୍ରଭା ଯାଇ ପାରେ କାହିଁ,
ଚନ୍ଦ୍ର ତେଜି ଚନ୍ଦ୍ରମା ତ କାହିଁ ରହେ ନାହିଁ ।" ୪୯୧

ପତିଙ୍କୁ ଶୁଣାଇ ପ୍ରୀତିମୟ ମଧୁ ବାଣୀ,
କହନ୍ତି ମନ୍ତ୍ରୀଙ୍କୁ ମୃଦୁ କଥା ଠାକୁରାଣୀ—
ତୁମ୍ଭେ ହିତକାରୀ ପିତା ଶଶୁରଙ୍କ ସମ,
ପ୍ରତ୍ୟୁତ୍ତର ଦେଉଛୁ ଯା' ଅନୁଚିତ ମମ । ୪୯୨

ଅତି ଆର୍ତ୍ତେ ମୁଁ ହେଉଛୁ ତୁମର ସମ୍ମୁଖ,
କିଛି ମନେ ନ ଧରିବ ନ କରିବ ଦୁଃଖ ।
ଆର୍ଯ୍ୟସୁତ ପାଦ-ପଦ୍ମ ବନ୍ଧନେ ମୋହର,
ସଂସାରେ ସମ୍ବନ୍ଧ ଯେତେ ସବୁ ଅବାନ୍ତର । ୪୯୩

ପିତା ରାଜ-ବଇଭବର ଛଟା ମୁଁ ଜାଣଇ,
ପାଦାସନେ ଯାର ନୃପ ମୁକୁଟ ଲୋଟଇ ।
ଏମନ୍ତ ସୁଖର ଘର ମୋର ବାପଘର,
ପତି ବିନା ତିଳେ ମୋତେ ନ ଲାଗଇ ଭଲ । ୪୯୪

ମୋ ଶଶୁର ଚକ୍ରବର୍ତ୍ତୀ ଅଯୋଧ୍ୟା ନୃପତି,
ଚଉଦ ଭୁବନେ ବ୍ୟାପ୍ତ ତାଙ୍କର କୀରତି ।
ଯାହାଙ୍କୁ ସମ୍ମୁଖେ ଇନ୍ଦ୍ର ସ୍ୱାଗତ କରନ୍ତି,
ସିଂହାସନ ଅର୍ଦ୍ଧଭାଗେ ଆସନ ଦିଅନ୍ତି । ୪୯୫

ଏପରି ଶ୍ୱଶୁର ବାସ ଅଯୋଧ୍ୟା ଭୁବନେ,
ମାତା ସମ ଶାଶୁଗଣ, ପ୍ରିୟ ପରିଜନେ ।
କିନ୍ତୁ ପ୍ରିୟ ପାଦ-ପଦ୍ମ-ପରାଗ ବିହୁନେ,
କେହି ତ ସୁଖଦ ମୋର ନୁହନ୍ତି ସପନେ । ୪୯୬

ଏ ଦୁର୍ଗମ ପଥ ବନଭୂମି ମହୀଧର,
ସରିତ କେଶରୀ କରୀ ଅଗଣିତ ସର ।
କିରାତ ଆବର କୋଲ୍ହ କୁରଙ୍ଗ ବିହଙ୍ଗେ,
ସମସ୍ତେ ସୁଖଦ ମୋତେ ପ୍ରାଣପତି ସଙ୍ଗେ । ୪୯୭

ଶାଶୁ ଶଶୁରଙ୍କ ପାଦ ଧରି ମୋ ବିନତି,
କହିବ, ମୋ ପାଇଁ ଚିନ୍ତା ଯେମନ୍ତେ ନ କରନ୍ତି ।

ସ୍ୱଭାବେ ମୁଁ ସୁଖୀ ଅଛି ଏ ଘୋର କାନନେ,
ଏତିକ ମାଗୁଣି ମୋର ତାଙ୍କ ଶ୍ରୀଚରଣେ । ୪୯୮

ମୋର ପ୍ରାଣପ୍ରିୟ ପ୍ରିୟ ଦେବର ମୋ ସାଥେ,
ବୀର ଶ୍ରେଷ୍ଠ ଧନୁଶର ଶୋଭିତ ଯା' ହାତେ ।
ତେଣୁ ନାହିଁ ପଥ କ୍ଲାନ୍ତି, ନାହିଁ ଦୁଃଖ ମନେ,
ଚିନ୍ତା ନ କରିବେ ମୋହ ପାଇଁ କଦାଚନେ ।'' ୪୯୯

ସୀତାଙ୍କ କୋମଳ ବାଣୀ ଶୁଣି ମନ୍ତ୍ରୀବର,
ମଣିହରା ଫଣୀ ସମ ହୋଇଲେ ବିକଳ ।
ନ ଦିଶେ ନୟନେ କିଛି କାନେ ନ ଶୁଭଇ,
ଅତି ବିକଳରେ କିଛି ନ ପାରିଲେ କହି । ୫୦୦

ଦେଲେ ଆଶ୍ୱାସନା ରାମ ଅନେକ ପ୍ରକାରେ,
ତଥାପି ଶୀତଳ ଚିତ୍ତ ନ ହୋଇଲା ବାରେ ।
ଫେରାଇ ନେବାକୁ ଯେତେ କଲେ ସେ ଯତନ,
ଯଥୋଚିତ କହିଥାନ୍ତି ଶ୍ରୀରଘୁନନ୍ଦନ । ୫୦୧

ଶ୍ରୀରାମ ଆଦେଶ କରି ନ ହୁଏ ଲଙ୍ଘନ,
କର୍ମ ଗତି ଶକ୍ତ, ବୃଥା ବଳ ପ୍ରଦର୍ଶନ ।
ଶ୍ରୀରାମ ଲକ୍ଷ୍ମଣ ସୀତା ପଦେ ଶିର ନୋଇଁ,
ଫେରିଲେ ବେପାରୀ ପରି ମୂଳବୁଡ଼ା ହୋଇ । ୫୦୨

ସୁମନ୍ତ୍ର ଚଳାନ୍ତେ ରଥ ତହିଁ ଅଶ୍ୱଗଣ,
ରାମେ ଚାହିଁ ହ୍ରେଷା ରବେ କଲେ କ୍ରନ୍ଦନ ।
ବିଷାଦବଶେ ତା' ଦେଖି ନିଷାଦ ନୃପତି,
ଶିର କୋଡ଼ି ଅତି ଉଚ୍ଚେ ଖେଦ ପ୍ରକାଶନ୍ତି । ୫୦୩

ଯାହାଙ୍କ ବିୟୋଗେ ପଶୁ ବିକଳ ଏପରି,
ତାଙ୍କ ପ୍ରଜା ପିତା ମାତା ବଞ୍ଚିବେ କପରି ?
ବଳାତ୍କାରେ ସୁମନ୍ତ୍ରଙ୍କୁ ପଠାଇ ନଗରେ,
ରାମ ନିଜେ ପହଞ୍ଚିଲେ ଜାହ୍ନବୀ କୂଳରେ । ୫୦୪

ଡଙ୍ଗା ମାଗିବାରୁ ରାମ ନ ଆଣେ କେଉଟ,
"ମୁଁ ଜାଣେ ମରମ"—ଦିଏ ଉତ୍ତର ଲେଉଟ ।
"ସମସ୍ତେ କହନ୍ତି ତୁମ ପାଦ-ପଦ୍ମ ଧୂଳି,
ମନୁଷ୍ୟ-କାରଣୀ ଅବା କିଛି ଚେର ମୂଳି । ୫୦୫

ପଥର ପରଶେ ହେଲା ସୁନ୍ଦରୀ ତରୁଣୀ,
ଏ କାଠ କଠିନ ନୁହେଁ ଶିଳାଠାରୁ ପୁଣି ।
ତରଣୀ ମୋ ଯେବେ ମୁନି ଘରଣୀ ହୋଇବ,
ବାଟ ପଡ଼ିଯିବ ମୋର ନାଆ ଉଡ଼ିଯିବ । ୫୦୬

ଏଥିରେ ପୋଷଇ ମୋର ସାରା ପରିବାର,
ଜାଣେ ନାହିଁ କିଛି ଆନ ବୃତ୍ତି କାରବାର ।
ପାରି ହେବା ପାଇଁ ପ୍ରଭୁ ଯେବେ କର ମନ,
ମୋତେ ଧୋଇବାକୁ କୁହ ସେ ପଦ୍ମ-ଚରଣ । ୫୦୭

ଧୋଇ ପାଦ-ପଦ୍ମ ବେନି ନାବେ ଚଢ଼ାଇବି,
ନାଆ ପାରି ମାହାସୁଲ କେବେ ନ ମାଗିବି ।
ତୁମ ରାଣ ପକାଉଛି ଦଶରଥ ରାଣ,
ଏ ସତ୍ୟ ବଚନ, ସତ୍ୟ କହୁଚି ମୁଁ ଜାଣ ।
ଲକ୍ଷ୍ମଣ ପଛକେ ମାରୁ ଏ ବୁକୁରେ ଶର,
ପାରି କରି ପାରିବିନି ନ ଧୋଇ ପୟର ।
ହେ କରୁଣା-ପାରାବାର ତୁଳସୀର ସ୍ୱାମୀ,
ଜୀବ ମନ ବୁଝ ପର ତୁମେ ଅନ୍ତର୍ଯ୍ୟାମୀ ।" ୫୦୮

ଯିଦ୍‌ଯୁକ୍ତ ପ୍ରେମସିକ୍ତ ଧୀବର ବଚନେ,
କରୁଣା-ବାରିଧି ରାମ ଶୁଣି ହର୍ଷ ମନେ,
ଅନୁଜ ଲକ୍ଷ୍ମଣ ପ୍ରିୟା ଜାନକୀଙ୍କୁ ଚାହିଁ,
ଅଳପ ହସିଲେ ତା'ର ଚତୁରତା ପାଇଁ । ୫୦୯

କହିଲେ ମଧୁରେ ହସି କରୁଣା-ସାଗର,
"ନାଆ ଯିବ ନାହିଁ ଯେହ୍ନେ ସେଇପରି କର ।

ବେଗି ଜଳ ଆଣି ତୁମେ ଧୋଇଦିଅ ପଦ,
ତୁରନ୍ତ କରଅ ପାରି ହେଉଛି ବିଳମ୍ବ ।” ୫୧୦

ଥରେ ମାତ୍ର ଯାହାଙ୍କର ନାମ ଚିତ୍ତେ ସ୍ମରି,
ଏ ମଣିଷ ଯାଏ ହେଲେ ଭବସିନ୍ଧୁ ତରି,
ସେ କୃପାଳୁ ଧୀବରକୁ ନେହୁରି ହୁଅନ୍ତି,
ତିନ ପାଦେ ଯିଏ ଊଣା କଲେ ବସୁମତୀ । ୫୧୧

ପଦ-ନଖ ଦେଖି ଗଙ୍ଗା ହେଲେ ହରଷିତ,
ଚହିଁ ପ୍ରଭୁ ବାଣୀ ଶୁଣି ବୁଦ୍ଧି ବିମୋହିତ ।
ରାମଙ୍କ ଆଦେଶ ସତ୍ୟ ପାଇଲା ଧୀବର,
କାଷ୍ଠ-ପାତ୍ରେ ପୂର୍ଣ୍ଣକରି ଆଣିଲା ସେ ଜଳ । ୫୧୨

ଆନନ୍ଦେ ଉଚ୍ଛୁଳ ଅତି ମନ ଅନୁରାଗେ,
ପ୍ରଭୁଙ୍କ ଚରଣ-ପଦ୍ମ ଧୋଇବାକୁ ଲାଗେ ।
କରନ୍ତି ଦେବତା ଈର୍ଷା କୁସୁମ ବରଷି,
ଏହା ସମ ଭାଗ୍ୟବାନ ଭୁବନେ କେ ଅଛି ? ୫୧୩

ପ୍ରଭୁ ପଦ ଧୋଇ ସେହି ଜଳ କରି ପାନ,
ନିଜ ସାଥେ ପରିବାର ଜନେ କଲା ତ୍ରାଣ ।
ପୁଣି ପିତୃପୁରୁଷଙ୍କୁ ଧୀବର ଉଦ୍ଧାରି,
ଆନନ୍ଦେ ପ୍ରଭୁଙ୍କୁ କରିଦେଲା ଗଙ୍ଗା ପାରି । ୫୧୪

ଗୁହକ ଲକ୍ଷ୍ମଣ ସୀତା ସଙ୍ଗେ ରଘୁରାଇ,
ଗଙ୍ଗା ବାଲି କ୍ଷେପେ ଉଭା ହୋଇଲେ ଓହ୍ଲାଇ ।
ଧୀବର ଓହ୍ଲାଇ କଲା ସପ୍ରେମେ ପ୍ରଣାମ,
ପାଉଣା ନ ଦେଇ ପାରି ସଙ୍କୋଚିଲେ ରାମ । ୫୧୫

ପ୍ରିୟ ହୃଦୟର ଭାବ ସୀତା ବୁଝିପାରି,
ଆନନ୍ଦରେ ଦେଲେ ମଣି ମୁଦ୍ରିକାଟି କାଢ଼ି ।
କହିଲେ କୃପାଳୁ ପ୍ରଭୁ, “ନିଅ ପାରି ମୂଲ,”
ଧୀବର ଚରଣ ଧରି ହେଲା ବ୍ୟସ୍ତାକୁଳ । ୫୧୬

କହେ, "କି ପାଇଲି ନାହିଁ ଆଜ ମୁହିଁ ପ୍ରଭୁ,
ଦାରିଦ୍ର୍ୟ ଦହନ ଦୁଃଖ ଦୋଷ ଦୂର ସବୁ ।
ବହୁତ କାଳରୁ ମୁହିଁ ଖଟିଲି ମଜୁରି,
ଆଜ ବିଧି ଦେଲେ ମୂଲ ଭଲ ପୁରାପୁରି । ୫୧୭

ଏବେ ନାଥ କିଛି ନାହିଁ ମାଗୁଣି ମୋହର,
ହେ ଦୀନ ଦୟାଳୁ ଯାହା କରୁଣା ତୁମର ।
ଫେରିବା ସମୟେ ଯାହା ଦେବ ପ୍ରଭୁ ମତେ,
ପ୍ରସାଦ ସ୍ୱରୂପ ତାହା ନେଇବି ମସ୍ତକେ ।" ୫୧୮

ବହୁତ କହିଲେ ରାମ ଲକ୍ଷ୍ମଣ ଜାନକୀ,
ସେ ଧୀବର ଏକମନା, ନେଲେ ନାହିଁ କିଛି ।
ଏହାପରେ ରାମଚନ୍ଦ୍ର କରୁଣା-ନିଧାନ,
ବିଦା କଲେ ଦେଇ ନିରମଳ-ଭକ୍ତି ଦାନ । ୫୧୯

ତା'ପରେ ଶ୍ରୀରାମ କରି ଗଙ୍ଗାରେ ସ୍ନାହାନ,
ପୂଜି ମାଟି ଶିବଲିଙ୍ଗ କରିଲେ ପ୍ରଣାମ ।
କହିଲେ ଗଙ୍ଗାଙ୍କୁ ସୀତା ଯୋଡ଼ି ବେନି ହସ୍ତ,
"ଜନନୀ ଗୋ ପୂର୍ଣ୍ଣ କର ମୋର ମନୋରଥ । ୫୨୦

ମୋ ପତି ଦିଅର ସଙ୍ଗେ ସକୁଶଳେ ଫେରି,
ମାତା ପୁଣି ତୁମ ପୂଜା କରିବି ଯେପରି ।"
ସୀତା ସବିନୟ କଥା ଭରା ପ୍ରୀତି କ'ଣ
ଶୁଣି ସ୍ୱଚ୍ଛ ନୀରୁଁ ଫୁଟେ କି ଶ୍ରେଷ୍ଠ ବଚନ— । ୫୨୧

"ଶୁଣ ରଘୁବୀର-ପ୍ରିୟା ଆଗୋ ବଇଦେହୀ,
ତୁମର ପ୍ରଭାବ କଥା ନ ଜାଣେ କି କେହି ?
ତୁମ କୃପା-କଟାକ୍ଷେ ଗୋ ନର ନରପତି,
ସିଦ୍ଧି ସବୁ କର ଯୋଡ଼ି ତୁମକୁ ସେବନ୍ତି । ୫୨୨

ବହୁତ ବିନୟ ମୋତେ ତୁମେ କଲ ଯାହା,
ବଢ଼ାଇଲ ମୋ ବଡ଼ାଇ, ତୁମ କୃପା ତାହା ।

ତଥାପି କରୁଚି ଦେବୀ ଆଶୀର୍ବାଦ ତୋତେ,
ନିଜ ବାଣୀ ଫଳବତୀ ହୋଇବା ନିମନ୍ତେ । ୫୨୩

ପତି ଦେବରଙ୍କ ଲୁଟିଲ ଫେରିବୁ ତୁ ସୀତା,
କୁଶଳେ କୋଶଳ ପୁରେ ନ କରିବୁ ଚିନ୍ତା ।
ତୋ ମନ କାମନା ପୂର୍ଣ୍ଣ ନିଶ୍ଚୟ ହୋଇବ,
ସୁବିମଳ ଯଶରାଶି ଜଗତେ ବ୍ୟାପିବ ।” ୫୨୪

ମଙ୍ଗଳ ଆଧାର ଗଙ୍ଗା ବଚନ ଶ୍ରବଣେ,
ଅନୁକୂଳ ଜାଣି ସୀତା ଖୁସି ହେଲେ ମନେ ।
ଗୁହକେ କହିଲେ ପ୍ରଭୁ, “ଏବେ ଘରେ ଯାଅ—”
ଶୁଣି ଶୁଖିଗଲା ମୁଖ ହେଲା ହୃଦେ ଦାହ । ୫୨୫

ହାତ ଯୋଡ଼ି ଦୀନ ଭାବେ କହିଲା ଗୁହକ,
“ମୋ ବିନତି ଶୁଣ ପ୍ରଭୁ ହେ ରଘୁନାୟକ ।
ସାଥେ ରହି ଦେଖାଇବ ପଥ ଏ ଅଧୀନ,
ଚରଣ ସେବିବ ରହି ଚାରି ପାଞ୍ଚ ଦିନ । ୫୨୬

ଯେ ବନେ ରହିବେ ଯାଇ ପ୍ରଭୁ ରଘୁରାଣ,
ସୁନ୍ଦର କୁଟୀର ପର୍ଣ୍ଣେ କରିବ ନିର୍ମାଣ ।
ମୋତେ ରଘୁବୀର ରାଣ, ସେ କାଳେ ଆପଣ,
ମୋତେ ଯା’ ଆଦେଶ ଦେବେ କରିବ ପାଳନ ।” ୫୨୭

ତାହାର ସରଳ ସ୍ନେହ ଦେଖି ରଘୁପତି,
ସଙ୍ଗେ ନେଇଗଲେ ହୃଦ ହରଷରେ ଅତି ।
ଗୁହ ଡକାଇଲେ ତହିଁ କୁଟୁମ୍ବ ସ୍ୱଜନେ,
ପରିତୋଷି ସର୍ବେ ବିଦା କଲେ ସେହି କ୍ଷଣେ । ୫୨୮

ତା’ ପରେ ସୁମରି ପ୍ରଭୁ ଶମ୍ଭୁ ଗଣପତି,
ଶିରେ ସୁର-ସରିତକୁ ଜଣାଇ ପ୍ରଣତି ।
ସଙ୍ଗେ ନେଇ ସଖା ସୀତା ସୁମିତ୍ରାନନ୍ଦନ,
ରଘୁନାଥ ରାମ କଲେ ବନକୁ ଗମନ । ୫୨୯

ସେ ଦିନ ରହଣି ତାଙ୍କ ହେଲା ତରୁ ତଳେ,
ଲକ୍ଷ୍ମଣ ଗୁହକ ସବୁ ସୁବ୍ୟବସ୍ଥା କଲେ ।
ପ୍ରଭାତରେ ପ୍ରାତଃ କର୍ମ କରି ସମାପନ,
ପ୍ରଭୁ ଯାଇ ତୀର୍ଥରାଜ କଲେ ଦରଶନ । ୫୩୦

ସେ ରାଜାଙ୍କ ମନ୍ତ୍ରୀ ସତ୍ୟ, ଶ୍ରଦ୍ଧା ପ୍ରିୟ ନାରୀ,
ଶ୍ରୀ ବେଣୀମାଧବ ମିତ୍ର ପ୍ରିୟ ହିତକାରୀ ।
ଚାରି ପୁଣ୍ୟ ଦ୍ରବ୍ୟ ପୂର୍ଣ୍ଣ ଭଣ୍ଡାର ଅଶେଷ,
ଏ ପୁଣ୍ୟ ପ୍ରଦେଶ ସେହି ରାଜାଙ୍କର ଦେଶ । ୫୩୧

ଏ କ୍ଷେତ୍ର ଅଗମ୍ୟ ଗଡ଼ ସୁନ୍ଦର ଦୁର୍ଭେଦ୍ୟ,
ପ୍ରତିପକ୍ଷୀ ସ୍ୱପ୍ନେ ସୁଦ୍ଧା ନ ଲଭନ୍ତି ଭେଦ ।
ତାଙ୍କର ସକଳ ତୀର୍ଥ ଶ୍ରେଷ୍ଠ ସୈନ୍ୟ ଚାରୁ,
ପାପ-ସେନା ଦଳିବାକୁ ମହା ରଣଧୀର । ୫୩୨

ଏ ସଙ୍ଗମ ଶୋଭେ ଯେହ୍ନେ ଦିବ୍ୟ ସିଂହାସନ,
ତା' ଛତ୍ର ଅକ୍ଷୟ ବଟ ମୋହେ ମୁନିମନ ।
ଗଙ୍ଗା-ଯମୁନାର ବୀଚି ତରଙ୍ଗି ତ ଚାମର,
ଦେଖି ନାଶଯାଏ ଦୁଃଖ ଦାରିଦ୍ର୍ୟ ସକଳ । ୫୩୩

ସାଧୁ ଶୁଚିବନ୍ତେ ତୀର୍ଥରାଜେ ସେବା କରି,
ମନ ଅଭିଳାଷ ପୂର୍ଣ୍ଣ କରନ୍ତି ତାଙ୍କର ।
ଭାଟଙ୍କ ପରାୟେ ସବୁ ନିଗମ ପୁରାଣ,
କରନ୍ତି ନିର୍ମଳ ଯଶ ଗୁଣଗ୍ରାମ ଗାନ । ୫୩୪

ପ୍ରୟାଗ ପ୍ରଭାବ ପାରେ କେ କହି କିପରି ?
ପାତକ ସମୂହ ହସ୍ତୀ ନିଧନେ କେଶରୀ ।
ନିରେଖି ଏମନ୍ତ ତୀର୍ଥରାଜ ମନୋହର,
ସୁଖ ଲଭ କଲେ ସୁଖ-ସିନ୍ଧୁ ରଘୁବର । ୫୩୫

ପ୍ରୟାଗ ମହିମା ଯେତେ ନିଜ ମୁଖେ ଗାଇ,
ସଖା ସୀତା ଲକ୍ଷ୍ମଣଙ୍କୁ କହିଲେ ଶୁଣାଇ ।

ପ୍ରଣାମ ଜଣାଇ ଦେଖି ବନ ଉପବନ,
ତୀର୍ଥର ମହିମା ରାଜ କରନ୍ତି ବର୍ଣ୍ଣନ । ୫୩୬

ଏହାପରେ ଆସି କଲେ ତ୍ରିବେଣୀ ଦର୍ଶନ,
ସ୍ମରଣେ ଦିଅନ୍ତି ଯିଏ ଶୁଭ ଅଗଣନ ।
ଆନନ୍ଦେ ଗାଧୋଇ ତହିଁ ଶିବ ସେବା କଲେ,
ଯଥାବିଧି ପୂଜ ତୀର୍ଥ ଦେବତା ସକଳେ । ୫୩୭

ତା'ପରେ ଆସିଲେ ପ୍ରଭୁ ଭରଦ୍ୱାଜ ପାଶେ,
ପ୍ରଣିପାତ କରୁଁ ମୁନି ଧେନଲେ ଉରସେ ।
ମୁନିଙ୍କ ଆନନ୍ଦ କଥା କେ ପାରେ ପ୍ରକାଶି,
ମିଳିଗଲା ତାଙ୍କୁ ଅବା ବ୍ରହ୍ମାନନ୍ଦ ରାଶି । ୫୩୮

ଆଶୀର୍ବାଦ କଲେ ଭରଦ୍ୱାଜ ମୁନୀଶ୍ୱର,
ଭାବିଲେ ହୃଦୟେ ହୋଇ ହରଷ ଅନ୍ତର ।
ରାମ ସୀତା ଲକ୍ଷ୍ମଣଙ୍କ ଦର୍ଶନ କରାଇ,
ସବୁ ପୁଣ୍ୟ ଫଳ ବିଧି ଆଗେ ଆଣି ଥାଇ । ୫୩୯

ପଚାରି କୁଶଳ ପ୍ରଶ୍ନ ଦେଇ ସୁଆସନ,
ପ୍ରେମ ଭରେ ପୂଜ ତାଙ୍କୁ କଲେ ତୋଷ ମନ ।
ଭଲ ଭଲ କନ୍ଦମୂଳ ଫଳ ଫୁଲମାନ,
ଆଣିଦେଲେ ମୁନିବର ଅମୃତ ସମାନ । ୫୪୦

ଗୁହକ ଲକ୍ଷ୍ମଣ ସୀତା ଶ୍ରୀ ରଘୁନନ୍ଦନ,
ସେହି ଫଳମୂଳ କଲେ ଆନନ୍ଦେ ଭୋଜନ ।
ପଥ ଶ୍ରମ ଗଲେ ରାମ ଯେବେ ହର୍ଷମନ ।
କହିଲେ ମୁନୀଶ ତହୁଁ ମଧୁର ବଚନ । ୫୪୧

"ହେ ରାମ ସଫଳ ଆଜ ତୀର୍ଥବାସ ତପ,
ସଫଳ ବୈରାଗ୍ୟ ତ୍ୟାଗ ଯୋଗ ଆଦି ଜପ ।
ସଫଳ ମୋ ଆରାଧନା ତପସ୍ୟା ସାଧନ,
ସର୍ବ ସିଦ୍ଧି ପ୍ରଭୁ କରି ତବ ଦରଶନ । ୫୪୨

ସେ ଦର୍ଶନ ବିନା ଲାଭ ସୁଖ କିଛି ନାହିଁ,
ସେ ଦର୍ଶନେ ଆଶାପୂର୍ଣ୍ଣ—ସବୁ ଗଲି ପାଇ ।
ତୁମ ପାଦ-ପଦ୍ମେ ରହୁ ସହଜ ପୀରତି,
ଦୟାକରି ଏହି ବର ଦିଅ ରଘୁପତି । ୫୪୩

ମନ କର୍ମ ବଚନରୁ ତ୍ୟାଗ କରି ଛଳ,
ତବ ଦାସ ନ ହୋଇଛି ଯେ ପର୍ଯ୍ୟନ୍ତ ନର,
କୋଟି ଉପଚାର କଲେ କି ଅବା ହୋଇବ,
ସ୍ୱପ୍ନେ ହେଲେ ତିଳେ ଶାନ୍ତି ସେହି ନ ପାଇବ । ୫୪୪

ମୁନିଙ୍କ ବଚନ ଶୁଣି ଦେଖି ଭାବଭକ୍ତି,
ତୃପ୍ତ ହୋଇ ସଙ୍କୁଚିତ ହେଲେ ରଘୁପତି ।
ମୁନି ଯଶରାଶି ରାମ କହି ନାନାମତେ,
ଶୁଣାଇଲେ ସମସ୍ତଙ୍କୁ ପରମ ପୁଲକେ । ୫୪୫

"ହେ ମୁନୀଶ ତୁମେ କର ଯାହାକୁ ଆଦର,
ସେ ତ ବଡ଼, ସେ ସକଳ ଗୁଣର ଆକାର ।"
ରାମ-ଭରଦ୍ୱାଜ ସବିନୀତ ପରସ୍ପରେ,
ଅନିର୍ବଚନୀୟ ସୁଖ ଲଭନ୍ତି ଅନ୍ତରେ । ୫୪୬

ଏହି ସମାଚାର ପାଇ ପ୍ରୟାଗ ନିବାସୀ,
ସିଦ୍ଧ ମୁନି ବ୍ରହ୍ମଚାରୀ ତାପସ ଉଦାସୀ ।
ଭରଦ୍ୱାଜ ଆଶ୍ରମକୁ ଆସିଲେ ସମସ୍ତେ,
ଦଶରଥ ତନୟଙ୍କୁ ଦେଖିବା ନିମନ୍ତେ । ୫୪୭

ସବିନୟେ ରାମ କଲେ ସଭିଙ୍କୁ ପ୍ରଣାମ,
ନେତ୍ର ଲାଭ ଫଳେ ସର୍ବେ ଲଭିଲେ ଆରାମ ।
କୋଟି ଆଶୀର୍ବାଦ କଲେ ଅତି ସୁଖ ପାଇ ।
ଫେରିଗଲେ ସୌନ୍ଦର୍ଯ୍ୟକୁ ଜଣାଇ ବଧାଇ । ୫୪୮

ସେ ରାତି ସେଠାରେ ରହି ଶ୍ରୀରାମ ପ୍ରଭାତେ,
ପ୍ରୟାଗେ ସ୍ନାହାନ କରି ମୁନି ପଦ ପ୍ରାନ୍ତେ,

ପ୍ରଣମି ଚଳିଲେ ହୋଇ ହରଷିତ ମନ,
ସଙ୍ଗେ ସେନ ସଖା ଗୁହ ଜାନକୀ ଲକ୍ଷ୍ମଣ । ୫୪୯

ସପ୍ରେମେ କହିଲେ ରାମ ମୁନିଙ୍କ ଆଗରେ,
କହନ୍ତୁ 'ହେ ନାଥ ଯିବୁ ସେ କେଉଁ ପଥରେ ।'
ମୁନି ମନେ ମନେ ହସି କହିଲେ, "ହେ ରାମ,
ତୁମ ପାଇଁ ସବୁ ପଥ ଅଟଇ ସୁଗମ ।" ୫୫୦

ସଙ୍ଗେ ଯିବା ପାଇଁ ମୁନି ଶିଷ୍ୟଙ୍କୁ ଡାକିଲେ,
ଶୁଣି ତା' ଆନନ୍ଦେ ପାଶେ ପଚାଶ ଆସିଲେ ।
ରାମ ପଦେ ସଭିଙ୍କର ଅନୁରାଗ ଅତି,
"ଆମେ ବାଟ ଦେଖିଅଛୁ"—ସମସ୍ତେ କହନ୍ତି । ୫୫୧

ମୁନି ବ୍ରହ୍ମଚାରୀ ଚାରି ସଙ୍ଗେ ପଠାଇଲେ,
ବହୁତ ଜନ୍ମରୁ ଯିଏ ପୁଣ୍ୟ ସଞ୍ଚିଥିଲେ ।
ମୁନିଙ୍କଠୁଁ ଆଜ୍ଞା ପାଇ କରି ପ୍ରଣିପାତ,
ହରଷ ହୃଦୟେ ଗଲେ ରଘୁକୁଳ କାନ୍ତ । ୫୫୨

କୌଣସି ଗାଁ ପାଖ ଯେବେ ହୁଅନ୍ତି ସେ ଯାଇ,
ଦେଖନ୍ତି ତାଙ୍କର ରୂପ ନରନାରୀ ଧାଇଁ ।
ସନାଥ ହୁଅନ୍ତି ଦେଖି ଜନ୍ମ ଫଳ ପାଇ,
ଦୁଃଖେ ଲେଉଟନ୍ତି ସଙ୍ଗେ ମନକୁ ପଠାଇ । ୫୫୩

ବିନୟେ ବିଦାୟ କଲେ ବଟୁଙ୍କୁ ଶ୍ରୀରାମ ।
ସେ ଫେରିଲେ ତହୁଁ ହୋଇ ପୂର୍ଣ୍ଣ ମନଃସ୍କାମ ।
ଯମୁନାକୁ ପାର ହୋଇ ସ୍ନାନ କଲେ ତହିଁ,
ରାମ ରୂପ ସମ ଶ୍ୟାମ ଜଳଧାର ଯହିଁ । ୫୫୪

ତୀରବାସୀ ନରନାରୀ ଶୁଣି ଦେଲେ ଧାଡ଼,
ଧାଇଁଲେ ନିଜର ସବୁ କାମଧନ୍ଦା ଛାଡ଼ି ।
ରାମ ସୀତା ଲକ୍ଷ୍ମଣଙ୍କ ସୌନ୍ଦର୍ଯ୍ୟ ଦର୍ଶନେ,
ଭାଗ୍ୟକୁ ବଡ଼ାଇ କରୁଥାନ୍ତି ମନେ ମନେ । ୫୫୫

ସଭିଙ୍କ ମନରେ ଅତି ଲାଲସା ଜାଗଇ,
ନାମ ଗ୍ରାମ ବୁଝିବାକୁ ସଂକୋଚ ଲାଗଇ ।
ସେମାନଙ୍କ ମଧ୍ୟେ ଯେତୁ ବୟୋବୃଦ୍ଧ ଥିଲେ,
ଯୁକ୍ତି କରି ସେହିମାନେ ରାମଙ୍କୁ ଚହ୍ନିଲେ । ୫୫୬

ସଭିଙ୍କୁ ସେ ଶୁଣାଇଲେ ସବୁ ବିବରଣ,
ପିତାଙ୍କ ଆଦେଶ ପାଳି ଆସିଛନ୍ତି ବନ ।
ଶୁଣି ସର୍ବେ ଅତି ଦୁଃଖେ ହୁଅନ୍ତି ବିକଳ,
କହିଲେ, "ନୃପତି ରାଣୀ କଲେ ନାହିଁ ଭଲ" । ୫୫୭

ସେହି ସମୟରେ ଏକ ଆସିଲେ ତାପସ,
ମନୋହର ତେଜ ପୁଞ୍ଜ ଅଳପ ବୟସ ।
କବି ଅଗୋଚର ଗତି ବେଶ ବଇରାଗୀ,
ମନ କର୍ମ ବଚନରେ ରାମ ଅନୁରାଗୀ । ୫୫୮

ସଜଳ ନୟନ ତନୁ ହେଲା ପୁଲକିତ,
ଜାଣିଲେ ସେ ନିଜ ଇଷ୍ଟଦେବତା ସେହିତ ।
ଦଣ୍ଡପ୍ରାୟେ ପଡ଼ିଗଲେ ଭୂମିରେ ସହସା,
ବଚନେ କେ ବଖାଣିବ ସେ କାଳ ଅବସ୍ଥା । ୫୫୯

ସପ୍ରେମ ପୁଲକେ ରାମ ନେଲେ ବକ୍ଷେ ଟାଣି,
ଅତି ରଙ୍କୀ ପାଇଗଲା କି ପରଶମଣି !!
ପ୍ରେମ ପରମାର୍ଥ ବେନି ଦେହ ଧରି ମତେ,
ଏଥି ମିଳିଗଲେ ବୋଲି କହନ୍ତି ସମସ୍ତେ । ୫୬୦

ସେ ପୁଣି ଲକ୍ଷ୍ମଣ ପଦେ ଶିର ଲଗାଇଲେ,
ଅନୁରାଗେ ରାମାନୁଜ ତାଙ୍କୁ ଉଠାଇଲେ ।
ଶିରେ ସୀତା ପଦ ରଜ ଲଗାଇ ଆହ୍ଲାଦ,
ଜନନୀ ବାଳୁତ ଜାଣି କଲେ ଆଶୀର୍ବାଦ । ୫୬୧

ଦଣ୍ଡବତ କଲେ ତାଙ୍କୁ ନିଷାଦ ରାଜନ,
ହରଷେ ମିଶିଲେ ଜାଣି ରାମ ପ୍ରିୟଜନ ।

ରାମ-ରୂପ-ସୁଧା-ରସ ପିଇଲେ ନୟନେ,
ହରଷ ଭୋଜନ ପାଇ କ୍ଷୁଧାର୍ତ୍ତ ଯେସନେ । ୫୬୨

ସତ୍ୟ କେ ସେ ବାପ ମାଆ ଅଟନ୍ତି କେମିତି,
ଯିଏ ପଠାଇଲେ ବନେ ବାଳକ ଏମିତି ।
ଶ୍ରୀରାମ ଲକ୍ଷ୍ମଣ ସୀତା ରୂପ ଦରଶନେ,
ବିକଳ ହୁଅନ୍ତି ସ୍ନେହେ ଗ୍ରାମବାସୀ ଜନେ । ୫୬୩

ନାନା ଉପଦେଶ ଦେଇ ସଖାଙ୍କୁ ଶ୍ରୀରାମ,
ଗୁହକୁ ବିଦାୟ ଦେଲେ ଯିବାକୁ ସ୍ୱଧାମ ।
ଶ୍ରୀରାମଚନ୍ଦ୍ରଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି,
ଲେଉଟିଲା ଗୁହ ଗୃହେ ପ୍ରଭୁ-ପ୍ରେମ ଧରି । ୫୬୪

ପୁଣି ହାତଯୋଡ଼ି ସୀତା ସଙ୍ଗିନୀ ରାମ,
ଯମୁନାକୁ ଆଦରରେ କରିଲେ ପ୍ରଣାମ ।
ଚଳିଲେ ହରଷେ ସୀତା ସହ ବେନି ଭାଇ,
କରି କରି ରବି-ସୁତା ଯମୁନା ବଡ଼ାଇ । ୫୬୫

ପଥେ ଯାଉ ଯାଉ ବହୁ ପଥିକ ମିଳନ୍ତି,
ଏ ବେନି ଭାଇଙ୍କୁ ଦେଖି ସପ୍ରେମେ କହନ୍ତି—
"ନୃପତି ଲକ୍ଷଣ ଅଙ୍ଗେ ରାଜଇ ତୁମରି,
ତା' ଦେଖି ହୃଦୟେ ଚିନ୍ତା ହୁଅଇ ଆମରି । ୫୬୬

ତା' ସତ୍ତ୍ୱେ ବୁଲିଚ ଖାଲି ପାଦେ ଏ ବନରେ,
ତା' ହେଲେ ଜ୍ୟୋତିଷ ଶାସ୍ତ୍ର ମିଥ୍ୟା ଜଗତରେ ।
ଏ ଦୁର୍ଗମ ଗିରି ପଥ ଗହନ ଯେ ଭାରି,
ତହିଁକି ସାଙ୍ଗରେ ତୁମ ନାରୀ ସୁକୁମାରୀ । ୫୬୭

ଗୁହାଁ ନୋହେ, ହସ୍ତୀ ସିଂହ ସଙ୍କୁଳ ବନସ୍ତ,
ସଙ୍ଗେ ଯିବୁ ଆମେ ସବୁ ଯେବେ ଦେବ ମତ ।
ଯେଉଁଠିକି ଯିବ ଆମେ ତହିଁ ପହୁଞ୍ଚାଇ,
ବାହୁଡ଼ି ଆସିବୁ ପୁଣି ମସ୍ତକ ନୁଆଁଇ ।" ୫୬୮

ପ୍ରେମ ପୁଲକିତ ତନୁ ସାଶ୍ରୁ ନୟନରେ,
କହନ୍ତି ଏପରି ଯେବେ ପଥିକ ନିକରେ,
କୃପାସିନ୍ଧୁ କହି ନମ୍ର କୋମଳ ବଚନେ,
ଫେରାଇ ଦିଅନ୍ତି ତେବେ ସେ ପଥିକଜନେ । ୫୬୯

ରାମ ଯିବା ପଥେ ପଡ଼େ ଯେଉଁ ଯେଉଁ ଗ୍ରାମ,
ପ୍ରଶଂସା କରନ୍ତି ତାଙ୍କୁ ନାଗ ସୁର-ଧାମ ।
କେ ପୁଣ୍ୟାତ୍ମା କ ବେଳାରେ କରିଛି ସ୍ଥାପନ,
ଧନ୍ୟ ପୁଣ୍ୟମୟ ଦେଶ ପରମ ଶୋଭନ । ୫୭୦

ଯେଉଁ ଯେଉଁ ପଥେ ପଡ଼େ ଶ୍ରୀରାମ ଚରଣ,
ତା' ସଙ୍ଗେ ନୋହିବ ସମ ଅମର ଭୁବନ ।
ଆଜ ପୁଣ୍ୟବାନ ସେହି ପଥ ପାର୍ଶ୍ୱବାସୀ,
କରନ୍ତି ପ୍ରଶଂସା ତାଙ୍କୁ ସୁରେ ସ୍ୱର୍ଗବାସୀ । ୫୭୧

ନେତ୍ର ଭରି ଦେଖନ୍ତି ଯେ ସୀତା ସଲକ୍ଷ୍ମଣ
ଶ୍ରୀରାମଙ୍କ ଘନଶ୍ୟାମ ଶୁଦ୍ଧ ଅପଘନ,
ଯେ ସର ସରିତେ ରାମ ସ୍ନାହାନ କରନ୍ତି,
ଦେବତା ମାନସ ଗଙ୍ଗା ତାଙ୍କୁ ପ୍ରଶଂସନ୍ତି । ୫୭୨

ଯେଉଁ ତରୁ ତଳେ ପ୍ରଭୁ ବସୁଥିଲେ ଯାଇ
କଳ୍ପତରୁ ସ୍ପୃହା ତାର କରଇ ବଡ଼ାଇ ।
ଶ୍ରୀରାମ ଚରଣ-ପଦ୍ମ-ପରାଗ ପରଶେ,
ଭାଗ୍ୟବନ୍ତ ବୋଲି ଧରା ଭାବଇ ମାନସେ । ୫୭୩

ଛାଇ କରୁଥାନ୍ତି ଚଲାପଥେ ମେଘମାଳ,
କୁସୁମ ବରଷି ସୁରେ ନଭେ ମଙ୍ଗୁଆଳ ।
ଦେଖି ଦେଖି ପଶୁ ପକ୍ଷୀ କାନନ ଭୂଧର,
ମାର୍ଗେ ଅଗ୍ରସର ହେଉଥାନ୍ତି ରଘୁବର । ୫୭୪

ଶ୍ରୀରାମ ଲକ୍ଷ୍ମଣ ଯେବେ ସୀତାଙ୍କ ସାଙ୍ଗରେ,
ଯାଇ ପହଞ୍ଚନ୍ତି କେଉଁ ଗ୍ରାମ ନିକଟରେ,

ଶୁଣି ନର ନାରୀ ବୃଦ୍ଧ ବାଳକ ବନିତା,
ମିଳନ୍ତି ସତ୍ୱର ଛାଡ଼ି ଘରକାମ ଚିନ୍ତା । ୫୭୫

ଶ୍ରୀରାମ ଲକ୍ଷ୍ମଣ ସୀତା ରୂପ ଦରଶନେ,
ନେତ୍ର ଫଳ ପାଇ ସର୍ବେ ସୁଖୀ ହେଲେ ମନେ ।
ନୟନ ସଜଳ ହୁଏ ପୁଲକ ଶରୀରେ,
ପ୍ରେମାନନ୍ଦେ ନମନ୍ତି ଦେଖି ଦୁଇ ବୀରେ । ୫୭୬

ବର୍ଣ୍ଣନା କରିବ କିଏ ସେମାନଙ୍କ ଦଶା,
ଚିନ୍ତାମଣି ପାଆନ୍ତି କି ରଙ୍କିଏ ସହସା ।
ଏକକୁ ଆରେକ ଡାକି ଶିକ୍ଷା ଦେଉଥାଇ,
ନୟନର ଲାଭ ନିଅ ଏକ୍ଷଣି ଉଠାଇ । ୫୭୭.

ଶ୍ରୀରାମଙ୍କୁ ଦେଖି କେହି ଅନୁରାଗ ଚିତ୍ତେ,
ରହିଁ ରହିଁ ଚାହିଁଥାଏ ପ୍ରଭୁଙ୍କ ସହିତେ ।
ନେତ୍ର ପଥୁଁ ଛବି କେହୁ ଆଣି ହୃଦଗତେ,
ମନ କର୍ମ ବାକ୍ୟେ ହୁଏ ଶିଥିଳ ନିରତେ । ୫୭୮

ବର ଛାଇ ତଳେ ପାରି ପଲ୍ଲବ ଆସନ,
କେହୁ କହେ କ୍ଳାନ୍ତି ହର ରହି କିଛିକ୍ଷଣ ।
ତା'ପରେ ଯାଆନ୍ତୁ ଏବେ ଅବା ଯିବ କାଲି,
କିଛି କହିବାର ନାହିଁ, ଉଚ୍ଚ କ୍ଷଣେ ଖାଲି । ୫୭୯

ଅନ୍ୟ କେହି କଳସୀରେ ଆଣି ଭରି ଜଳ,
"ମୁହଁ ହାତ ଧୁଅ" କହେ ବଚନ କୋମଳ ।
ଶୁଣି ପ୍ରିୟ ବାଣୀ ପୁଣି ଦେଖି ପ୍ରୀତି ଅତି,
ସୁଶୀଳ କରୁଣାମୟ ପ୍ରଭୁ ରଘୁପତି । ୫୮୦

ଜାନକୀ ଅଶେଷ କ୍ଳାନ୍ତ ଜାଣି ରାମ ମନେ,
ବର ଗଛ ଛାଇ ତଳେ ରହିଗଲେ କ୍ଷଣେ ।
ହରଷରେ ନରନାରୀ କରନ୍ତି ଦର୍ଶନ,
ଅନୁପମ ରୂପ, ଲୁବ୍ଧ କରେ ନେତ୍ର ମନ । ୫୮୧

ରାମ ମୁଖ-ଚନ୍ଦ୍ରମାକୁ ସର୍ବେ ଅପଲକେ,
ରହାନ୍ତି ଚକୋର ସମ ହେଉ ଚଉଦକେ ।
ନବୀନ ତମାଳ ଶ୍ୟାମ ରାମ କଳେବର,
କୋଟି କାମ-ମନ-ବିମୋହିତ ମନୋହର । ୫୮୨

ବିଦ୍ୟୁତ ବରନ ଅତି ସୁନ୍ଦର ଲକ୍ଷ୍ମଣ,
ଆପାଦ ମସ୍ତକ କରେ ଚିତ୍ତ ଆକର୍ଷଣ ।
ମୁନିବାସ ପରିହିତ କଟୀରେ ତୂଣୀର,
କର-କମଳରେ ଶୋଭା ପାଏ ଧନୁଃଶର । ୫୮୩

ଶିରେ ମନୋହର ଜଟା ମୁକୁଟ ଶୋଭଇ,
ବିଶାଳ ହୃଦୟ ଭୁଜ ବିଲୋଚନ ଦୁଇ ।
ଶରଦ ଚନ୍ଦ୍ରମା ସମ ବଦନ ମଣ୍ଡଳେ,
ଅତି ମନୋହର ଶ୍ରମ ସ୍ୱେଦ ବିନ୍ଦୁ ଝଳେ । ୫୮୪

ବର୍ଣ୍ଣି ନ ହୁଅଇ ଯୁଗ୍ମ ମଧୁର ମୂରତି,
ଶୋଭା ଅପ୍ରମିତ ମୋର ମତି ଅଳ୍ପ ଅତି ।
ଶ୍ରୀରାମ ଲକ୍ଷ୍ମଣ ସୀତା ସୌନ୍ଦର୍ଯ୍ୟ ଅମିତ,
ସକଳେ ଦେଖନ୍ତି ଦେଇ ମନ ବୁଦ୍ଧି ଚିତ୍ତ । ୫୮୫

ପ୍ରୀତି-ପିପାସିତ ନର ନାରୀଏ ଚକିତ,
ଦୀପ୍ ଶିଖା ଦେଖି କି ମୃଗ ମୃଗୁଣୀ ସ୍ତମ୍ଭିତ ।
ଯାଆନ୍ତି ସୀତାଙ୍କ ପାଶେ ଗ୍ରାମବଧୂମାନେ,
କିନ୍ତୁ ସ୍ନେହେ କହିବାକୁ ଶଙ୍କିତ ପରାଣେ । ୫୮୬

ବାରବାର ସର୍ବେ ପଡ଼ି ସୀତାଙ୍କ ଚରଣେ,
କହନ୍ତି ମଧୁର ମୃଦୁ ବିନୀତ ବଚନେ ।
"ହେ ରାଜକୁମାରୀ କିଛି କରୁଛୁ ବିନୟ,
ନାରୀ ସ୍ୱଭାବରୁ କିଛି କହିବାକୁ ଭୟ । ୫୮୭

ଧୃଷ୍ଟତା କରିବ କ୍ଷମା ସ୍ୱାମିନୀ ଆମର,
ଗାଉଁଲିଆ ଭାବ କର ନାହିଁ ହତାଦର ।

ଏ ରାଜକୁମାର ବେଶ ସୁନ୍ଦର ସ୍ୱଭାବ,
ତାଙ୍କଠୁଁ ମର୍କତ ସ୍ୱର୍ଣ୍ଣ ଦ୍ୟୁତି କରେ ଲାଭ । ୫୮

ଶ୍ୟାମଳ ଗଉର ବର୍ଣ୍ଣ କିଶୋର ଯୁଗଳ,
ସୁଷମା ସଦନ ପୁଣି ପରମ ସୁନ୍ଦର ।,
ଶରଦ ପୂର୍ଣ୍ଣିମା ଚନ୍ଦ୍ର ସମ ସେ ବଦନ,
ଶରତର ପଦ୍ମ ପତ୍ର ଯୁଗଳ ନୟନ । ୫୯

ମାସ ପାରାୟଣ, ଷୋଡ଼ଶ ବିଶ୍ରାମ
ନବାହ୍ନ ପାରାୟଣ, ଚତୁର୍ଥ ବିଶ୍ରାମ ॥

କୋଟି କାମ ଛବିକୁ ଯେ ଲଜ୍ଜିତ କରନ୍ତି,
ସୁମୁଖୀ ତୁମର କହ—ଏ କା' ହୁଅନ୍ତି ?
ଶୁଣି ଅତି ସ୍ନେହମୟ ବଚନ ମଞ୍ଜୁଳ,
ସଙ୍କୋଚେ ଜାନକୀ ମନେ ହସନ୍ତି ମଧୁର । ୫୯୦

ସେମାନଙ୍କୁ ଦେଖି ନିଜ ତଳକୁ ଚାହାନ୍ତି,
ଉଭୟ ଦେବର ସୀତା ସଙ୍କୋଚ ପାଆନ୍ତି ।
ସଲଜେ ସପ୍ରେମେ ବାଳ କୁରଙ୍ଗ-ଲୋଚନୀ,
କହିଲେ ମଧୁର ସ୍ୱରେ କୋକିଳ-ବଚନୀ । ୫୯୧

"ସହଜ ସ୍ୱଭାବ ଯେଉଁ ଗୌର ବପୁଧର,
ଲକ୍ଷ୍ମଣ ତାହାଙ୍କ ନାମ, ମୋ ସାନ ଦେଅର ।
ପରେ ଶଶିମୁଖୀ କାନପଣନ୍ତେ ଲୁଚାଇ,
ପ୍ରିୟଙ୍କୁ ଅନାଇ ଦେଲେ ଭ୍ରୂଲତା ନଚାଇ । ୫୯୨

ଖଞ୍ଜନ ମଞ୍ଜୁଳ ନେତ୍ର ତେରେଛା ଗତିରେ,
ଏ ମୋ' ପ୍ରିୟ ପତି ବୋଲି ସୀତା ଜଣାଇଲେ ।
ରଙ୍କ କୋଟିନିଧି ଲୁଟି ଆନନ୍ଦ ଯେସନେ,
ତେସନେ ଆନନ୍ଦ ହେଲେ ଗ୍ରାମବଧୂଗଣେ । ୫୯୩

ସପ୍ରେମେ ସେମାନେ ପଡ଼ି ଜାନକୀ ଚରଣେ,
ବହୁଭାବେ ଆଶୀର୍ବାଦ କରନ୍ତି ସେ କ୍ଷଣେ ।
—ଯେତେ କାଳ ଶେଷ ଶିରେ ଧରା ରହିଥିବ,
ସେଯାଏ ସୌଭାଗ୍ୟବତୀ ହୋଇ ତୁମେ ଥିବ । ୫୯୪

ପାର୍ବତୀ ସମାନ ତୁଅ ପତି ଅନୁରାଗୀ,
ଦେବା ଆମ୍ଭପ୍ରତି ସ୍ନେହ ନ ଦେବ ତଆଗି ।
କରଯୋଡ଼ି କରୁ ଆମେ ବନସ୍ତ୍ର ସମସ୍ତେ,
ଯଦ୍ଦ କେବେ ଫେରିବ ଗୋ ପୁଣି ଏଇ ପଥେ । ୫୯୫

ନିଜ ଦାସୀ ମନେକରି ଦେବ ଦରଶନ ।"
ଜାନକୀ ଦେଖିଲେ ସର୍ବେ ପ୍ରେମସିକ୍ତ ମନ ।
ତୋଷ କଲେ ତହୁଁ ତାଙ୍କୁ ମଧୁର ବଚନେ,
କୌମୁଦୀ ପୋଷଇ ଯେହ୍ନେ କୁମୁଦ୍ଦନୀଗଣେ । ୫୯୬

ପ୍ରଭୁଙ୍କର ଇଚ୍ଛା ଜାଣି ସୁମିତ୍ରାନନ୍ଦନ,
ଲୋକଙ୍କୁ ପୁଚ୍ଛିଲେ ପଥ କହ୍ନି ସୁବଚନ ।
ଶୁଣିବା ମାତ୍ରକେ ଦୁଃଖ କଲେ ନର ନାରୀ,
ତନୁ ପୁଲକିତ ନେତ୍ରେ ଭରିଗଲା ବାରି । ୫୯୭

ସରିଗଲା ସୁଖ, ମନେ ଦୁଃଖ କେତେ କାହିଁ,
ବିଧି ଦେଇ ନିଧି ଅବା ନେଉଛି ଛଡ଼ାଇ ।
କର୍ମଗତି ବୁଝି ଧରି ଧୈର୍ଯ୍ୟ ହୃଦୟରେ,
ବାଛିଣ ସୁଗମ ପଥ କହିଲେ ସଭିଏଁ । ୫୯୮

ଅଗ୍ରସର ହେଲେ ତହୁଁ ରାମ ହର୍ଷ ଚିତ୍ତେ,
ବିଦେହ-ନନ୍ଦିନୀ ସୀତା ଲକ୍ଷ୍ମଣ ସହିତେ ।
ଫେରାଇଲେ ସର୍ବେ ସିନା କହି ସୁବଚନ,
କିନ୍ତୁ ସଙ୍ଗେ ନେଇଗଲେ ସେମାନଙ୍କ ମନ । ୫୯୯

ଯିବା ବେଳେ ନରନାରୀ କରି ଅନୁତାପ,
ମନେ ମନେ ବିଧି ପରେ କଲେ ଦୋଷାରୋପ ।
ପରସ୍ପରେ କୁହାକୁହି ହୁଅନ୍ତି ଦୁଃଖରେ,
ସବୁ କର୍ମ ବିଧାତାର ଓଲଟା ଶେଷରେ । ୬୦୦

ସେ ନିପଟ ନିରଙ୍କୁଶ ନିଠୁର ନିଶଙ୍କ,
ଚନ୍ଦ୍ରମାକୁ କଲା ଯିଏ ରୋଗୀ ସକଳଙ୍କ ।

କଳପ ତରୁକୁ ବୃକ୍ଷ, ସାଗରକୁ ଖାର,
ସେହି ବନେ ପଠାଇଲା ଏ ରାଜକୁମାର । ୬୦୧

ଏମାନଙ୍କୁ ଦେଲା ଯଦି ବିଧି ବନବାସ,
ସୃଷ୍ଟି କଲା ତେବେ କଆଁ ବିଭବ ବିଳାସ ।
ଏ ପଥ ଚାଲିବେ ଯେବେ ବିନା ପଦତ୍ରାଣେ,
ବୃଥା ବିରଚିଲା ବିଧି ବିବିଧ ବାହାନେ । ୬୦୨

ଭୂଇଁରେ ଶୋଇବେ କୁଶ ପଲ୍ଲବ ବିଛାଇ,
ତୂଳୀ ତଳ୍ପ ଶେଯ ବିଧି ରଚିଲା କମ୍ପାଇ ?
ତରୁ ତଳେ ବାସ ଦେଇ ଏହାଙ୍କୁ ବିରଞ୍ଚି,
ବୃଥା ଶ୍ରମ କଲା ସିନା ଅଟ୍ଟାଳିକା ରଚି । ୬୦୩

ଏ ସୁନ୍ଦର ସୁକୁମାର ହୋଇ ମୁନିଯୋଗ୍ୟ,
ବଳ୍କଳ ପିନ୍ଧିବେ ପୁଣି ଶିରେ ଜଟା ଯୋଗ ।
ତେବେ ବୃଥା ବିରଚିଲା ସ୍ରଷ୍ଟା ଏ ଜଗତେ,
ବିଭୂଷଣ ରାଜ ଝୀନ ବାସ ନାନା ମତେ । ୬୦୪

ଯେବେ ଏ ବଞ୍ଚିବେ କନ୍ଦମୂଳ ଫଳ ଖାଇ,
ଅମୃତ ଭୋଜନ ବ୍ୟର୍ଥ ନ ହେବ କମ୍ପାଇ ?
ଅନ୍ୟ କେହୁ କହେ ଏହୁ ସହଜେ ସୁନ୍ଦର,
ସ୍ୱୟଂ ପ୍ରକାଶିତ, ରଚି ନାହିଁ ବେଦବର । ୬୦୫

ଶ୍ରବଣ ନୟନ ମନ ଗୋଚର ଆମର,
ବେଦରେ ବର୍ଣ୍ଣିତ ଯେତେ କୀର୍ତ୍ତି ବ୍ରହ୍ମାଙ୍କର ।
ଚଉଦ ଭୁବନ ମଧ୍ୟେ ଦେଖ ଖୋଜକରି,
ଏମନ୍ତ ପୁରୁଷ କାହିଁ ରମଣୀ ଏପରି ? ୬୦୬

ଏହାଙ୍କୁ ନିରେଖି ମନ ଆନନ୍ଦେ ବିରଞ୍ଚି,
ଉପଯୁକ୍ତ ପଟାନ୍ତର ଲାଗିଲା ବିରଚି,
କଲେ ହେଁ ବହୁତ ଶ୍ରମ ସମାନ ନୋହିଲା,
ତେଣୁ ଈର୍ଷାବଶ ଆଣି ବନେ ଲୁଚାଇଲା । ୬୦୭

କେ କହେ ଅଧିକ କଷ୍ଟ ଆମେ ଜାଣୁ ନାହିଁ,
ଜନକୁ ସୁଭଗ ମଣୁ ଯାହା ତାଙ୍କୁ ଚାହିଁ ।
ଆମ ମତେ ସେହି ଅଛି ପୁଣ୍ୟାତ୍ମା ଅତ୍ୟନ୍ତ,
ଯେ ଦେଖିବ, ଦେଖୁଛନ୍ତି ବା ଦେଖି ଅଛନ୍ତି । ୭୦୮

ଏହିପରି କହି କହି ସୁପ୍ରିୟ ବଚନ,
ପ୍ରେମାଶ୍ରୁ ଜଳରେ ଭରି ଯୁଗଳ ନୟନ,
ମନେ ବିଚାରନ୍ତି, ଏ ତ ଅତି ସୁକୁମାର,
କେମନେ ଦୁର୍ଗମ ବନ ଗିରି ହେବେ ପାର ? ୭୦୯

ସ୍ନେହବଶେ ନାରୀମାନେ ହୁଅନ୍ତି ବିକଳ,
ପ୍ରଦୋଷ ସମୟେ ଯେସନେ ଚକ୍ରବାକୀଦଳ ।
ମାର୍ଗ ଯେ କଠିନ ମୃଦୁ ଚରଣ-କମଳ,
କହନ୍ତି ବ୍ୟଥିତ ହୃଦେ ବଚନ ସୁନ୍ଦର । ୭୧୦

କୋମଳ-ଅରୁଣ-ପଦ ଛୁଇଁ ବସୁମତୀ,
ଆମ ହୃଦ ପରି ହୁଏ ସଙ୍କୁଚିତ ଅତି ।
ବିଧି ଯେବେ ଦେଲା ଯାଙ୍କୁ ବନ-ପଥ-ଚଲା,
ସେ ପଥକୁଂପୁଷ୍ପମୟ କାହିଁକି ନ କଲା ? ୭୧୧

ମାଗିବା ଦରବ ଯେବେ ବିଧିଠୁଁ ପାଇବି,
ତାଙ୍କୁ ଆଣି ସଖି ମୋର ନୟନେ ରଖିବି ।
ସେ ସମୟେ ଯେଉଁ ନର ନାରୀ ନ ଆସିଲେ,
ସେ ରାମ-ସୀତାଙ୍କୁ ନେତ୍ରେ ଦେଖି ନ ପାରିଲେ । ୭୧୨

ରୂପ ଶୁଣି ଆକୁଳେ ସେ ପଚାରନ୍ତି ଭାଇ,
ଏ ଭିତରେ କେଉଁଯାଏ ହୋଇଥିବେ ଯାଇ ।
ସମର୍ଥ ପୁରୁଷେ ଧାଇଁ ଦେଖନ୍ତି ସେ ଛବି,
ଫେରନ୍ତି ହରଷ ମନେ ଜନ୍ମ-ଫଳ ଲଭି । ୭୧୩

ଦର୍ଶନେ ଅକ୍ଷମ ଯେତେ ବାଳ ବୃଦ୍ଧ ନାରୀ,
ହାତ ମଳି ମଳି ଦୁଃଖେ ହେଉଥାନ୍ତି ଭାରି ।

ଯେ ଯେ ଗ୍ରାମ ଦେଇ ରାମ କରନ୍ତି ଗମନ,
ପ୍ରେମବଶ ହୋଇଯାନ୍ତି ସେ ସେ ପୁର ଜନ । ୭୧୪

ପ୍ରତିଗ୍ରାମେ ଏହିପରି ହୁଅଇ ଆନନ୍ଦ,
ଦେଖି ଦିନକର-କୁଳ-କଇରବ ଚନ୍ଦ୍ର ।
ଯେ କିଛି ଏ ବନବାସ ସମ୍ବାଦ ଶୁଣନ୍ତି,
ସେ ରାଜା ରାଣୀଙ୍କୁ ଯାହା କସୁର ଦିଅନ୍ତି । ୭୧୫

କେ କହେ ଅଯୋଧ୍ୟାପତି କରିଛନ୍ତି ଭଲ,
ଆମ୍ଭଙ୍କୁ ଦିଆଇଛନ୍ତି ନେତ୍ର ଲାଭ ଫଳ ।
ସରଳ ସେନେହ ଭରା ଆଳାପ ସୁନ୍ଦର,
କରୁଥାନ୍ତି ନରନାରୀଗଣେ ପରସ୍ପର । ୭୧୬

ଧନ୍ୟ ପିତାମାତା ଦେଇଛନ୍ତି ଯେ ଜନମ,
ଯହୁଁ ଆସିଛନ୍ତି ଧନ୍ୟ ନଗର ଉତ୍ତମ ।
ସେ ଦେଶ ଶଇଳ ବନ ଗାଆଁ ମାଟି ଧନ୍ୟ,
ଯହିଁ ଯହିଁ ଦେଇ ସେହି କରନ୍ତି ଗମନ । ୭୧୭

ଯାହାଙ୍କୁ ଶ୍ରୀରାମ ସବୁ ପ୍ରକାରେ ସେନେହୀ,
ସୁଖ ଲଭିଛନ୍ତି ବିଧି ତାଙ୍କୁ ଗଢ଼ି ଦେଇ ।
ପାନ୍ଥ ରାମ ଲକ୍ଷ୍ମଣଙ୍କ ମନୋହର କଥା,
ବ୍ୟାପିଲା କାନନ ବନ ନଗରେ ସର୍ବଥା । ୭୧୮

ରଘୁକୁଳ କଞ୍ଜ-ରବି ଶ୍ରୀରାମ ଏସନେ,
ସୁଖୀକରି ପଥଗୃହୀ ପୁରବାସୀ ଜନେ
ଦେଖି ଦେଖି ଅପାଶୋରା ଶୋଭା ଭରା ବନ,
ସୀତା ସଉମିତ୍ରୀ ସହ କରନ୍ତି ଗମନ । ୭୧୯

ଆଗରେ ଶ୍ରୀ ରଘୁନାଥ ପଛରେ ଲକ୍ଷ୍ମଣ,
ଧରିଚି ତାପସ ବେଶ ଅତି ସୁଶୋଭନ ।
ବ୍ରହ୍ମ ଜୀବ ମଧ୍ୟେ ମାୟା ବିରାଜେ ଯେପରି,
ଉଭୟଙ୍କ ମଧ୍ୟେ ସୀତା ଶୋଭନ୍ତି ସେପରି । ୭୨୦

ପୁଣି କହେ ଛବ ଯେହ୍ନେ ମନକୁ ଆସଇ,
ମଦନ ବସନ୍ତ ମଧ୍ୟେ ରତି କ ଶୋଭଇ ?
ହୃଦସ୍ଥ ବିଗ୍ରହେ ପୁଣି ଏ ଉପମା ଆସେ,
ବୁଧ ବୁଧ ମଧ୍ୟେ ଯେହ୍ନେ ରୋହିଣୀ ପ୍ରକାଶେ । ୭୨୧

ପ୍ରଭୁ ପଦାଙ୍କିତ ଚିହ୍ନ ମଧ୍ୟେ ମଧ୍ୟେ ସୀତା,
ଚାଲନ୍ତି ପକାଇ ପାଦ ଅନ୍ତରେ ସଭୀତା ।
ସୀତା ରାମ ପଦ ଚିହ୍ନ ତାହାଙ୍କୁ ଛାଡ଼ି,
ଲକ୍ଷ୍ମଣ କାନନ ପଥେ ପଛେ ଥାନ୍ତି ଚାଲି । ୭୨୨

ଶ୍ରୀରାମ ଲକ୍ଷ୍ମଣ ସୀତା ମନୋହର ପ୍ରୀତି,
ଅନିର୍ବଚନୀୟ କହ ହୋଇବ କେମିତି ?
ନିରେଖି ସେ ଛବ ଖଗ ମୃଗ ବିମୋହିତ,
ପଥିକ ଶ୍ରୀରାମ ହରି ନେଲେ ତାଙ୍କ ଚିତ୍ତ । ୭୨୩

ଯେ କେହି ଦେଖିଲେ ପ୍ରିୟ ପଥିକ ବେଶରେ
ସୀତା ସହ ଏହି ବେନି ଭାଇଙ୍କୁ ପଥରେ ।
ସଂସାର ଦୁର୍ଗମ ପଥ ଅନାୟାସେ ଅତି,
ମହାନନ୍ଦେ ସେମାନେ ତ ସମାପ୍ତ କରନ୍ତି । ୭୨୪

ଏବେ ବି ଯା' ହୃଦେ ସ୍ୱପ୍ନେ ପାତିବେ ଆସନ,
ପଥିକ ଶ୍ରୀରାମ-ସୀତା ଅନୁଜ ଲକ୍ଷ୍ମଣ ।
ରାମ-ଧାମ-ପଥ ସେ ତ ଲଭିବ ନିଶ୍ଚିତ,
ଯେ ପଥ ଲଭନ୍ତି ଯୋଗୀ ମୁନି କଦାଚିତ । ୭୨୫

ସୀତା ପଥକ୍ଳାନ୍ତ ବୋଲି ରାମ ଚିତ୍ତେ ଜାଣି,
ନିକଟେ ନିରେଖି ବଟ ସୁଶୀତଳ ପାଣି,
ତହିଁ ରାତ୍ରି ରହି ଖାଇ କନ୍ଦମୂଳ ଫଳ,
ସକାଳେ ସ୍ନାନାନ୍ତେ ଚଳିଗଲେ ରଘୁବର । ୭୨୬

ଦେଖି ଦେଖି ବନ ଗିରି ସର ଶୋଭାରାଶି,
ବାଲ୍ମୀକି ଆଶ୍ରମେ ପ୍ରଭୁ ପହଞ୍ଚିଲେ ଆସି ।

ଦେଖିଲେ ଶ୍ରୀରାମ ମୁନି ବାସ ମନୋହର,
ସଲିଳ ପାବନ ଗିରି କାନନ ସୁନ୍ଦର । ୭୨୭

ସରେ ସରସିଜ ବନେ ବୃକ୍ଷ କୁସୁମିତ,
ମକରନ୍ଦ-ରସେ ଅଳିକୁଳ ମତ୍ତ-ଚିତ୍ତ ।
ଖଗ ମୃଗ କୋଳାହଳେ ଆଶ୍ରମ ମୁଖର,
ବୈରତା ପାଶୋରି ସୁଖେ କରନ୍ତି ବିହାର । ୭୨୮

ନିରେଖି ଆଶ୍ରମ ଶୋଭା ପୂତ ମନୋହର,
ରାଜୀବଲୋଚନ ହେଲେ ହରଷ ଅନ୍ତର ।
ରାମ ଆଗମନ ବାର୍ତ୍ତା ଶୁଣି ମୁନିବର,
ପାଗ୍ଲେଟି ନେବାକୁ ତାଙ୍କୁ ଆସିଲେ ସତ୍ୱର । ୭୨୯

ଶ୍ରୀରାମ ପ୍ରଣାମ କଲେ ବାଲ୍ମୀକି ଚରଣେ,
ଆଶୀର୍ବାଦ କଲେ ତାଙ୍କୁ ମୁନି ତୋଷ ମନେ ।
ରାମ ଛବି ଦେଖି ହେଲା ନୟନ ଶୀତଳ,
ସସମ୍ମାନେ ଆଶ୍ରମକୁ ନେଲେ ମୁନିବର । ୭୩୦

ପ୍ରାଣପ୍ରିୟ ଅତିଥିଙ୍କୁ ପାଇ ମୁନୀଶ୍ୱର,
ମଗାଇଲେ କନ୍ଦମୂଳ ନାନା ମିଷ୍ଟ ଫଳ ।
ଭୁଞ୍ଜିଲେ ସେ ଫଳ ସୀତା ଶ୍ରୀରାମ ଲକ୍ଷ୍ମଣ,
ତା'ପରେ ମୁନୀଶ ଦେଲେ ସୁନ୍ଦର ଆସନ । ୭୩୧

ପରମ ଆନନ୍ଦ ଜାତ ବାଲ୍ମୀକିଙ୍କ ମନେ,
ସୁମଙ୍ଗଳମୟ ମୂର୍ତ୍ତି ନିରେଖି ନୟନେ ।
ତହୁଁ କର-ପଦ୍ମ ଯୋଡ଼ି ଶ୍ରୀରଘୁନନ୍ଦନ,
କହିଲେ ଶ୍ରବଣ-ସୁଖ-ଦାୟକ ବଚନ । ୭୩୨

ତ୍ରିକାଳଦରଶୀ ତୁମେ ପରା ହେ ମୁନୀଶ,
ବରକୋଳ ପ୍ରାୟେ ତୁମ ହାତେ ଏଇ ବିଶ୍ୱ ।
ଏହା କହି ପ୍ରଭୁ ସବୁ କଥା ଶୁଣାଇଲେ,
ଯେପରି ଭାବରେ ବନେ ରାଣୀ ପଠାଇଲେ । ୭୩୩

ମାତାଙ୍କ ମଙ୍ଗଳ ପିତା ବଚନ ପାଳନ,
ପ୍ରିୟ ଭାଇ ଭରତର ରାଜସିଂହାସନ ।
ଏ ବନେ ମୋହର ପୁଣି ତବ ଦରଶନ,
ପ୍ରଭୁ ସବୁ ମୋ ପୁଣ୍ୟର ପ୍ରଭାବ କାରଣ । ୬୩୪

ଦରଶନ କରି ତବ ଚରଣ-କମଳ,
ସୁକୃତ ସକଳ ମୋର ଲଭିଅଛୁ ଫଳ ।
ଏବେ ଯିବୁ ଯହିଁ ତବ ହୋଇବ ଆଦେଶ,
ଆମ ଲାଗି ମୁନ ଯହିଁ ନ ପାଇବେ କ୍ଲେଶ । ୬୩୫

ଯା' ପାଇଁ ଲଭନ୍ତି ମୁନ ଋଷିଏ କଷଣ,
ବିନା ଅନଳରେ ଦଗ୍ଧ ହୁଏ ସେ ରାଜନ ।
ସବୁ ମଙ୍ଗଳର ମୂଳ ବିପ୍ରଙ୍କ ସନ୍ତୋଷ,
ବହଇ କୋଟିଏ କୁଳ ଏକା ବ୍ରହ୍ମରୋଷ । ୬୩୬

ହୃଦୟେ ବିଚାରି ଏବେ ସେହି ସ୍ଥାନ କହ
ଯେଉଁଠିକି ଯିବ ସୀତା ମଉମିତ୍ରୀ ସହ ।
ସେଠାରେ ବିରଚି ଏକ ତୃଣ-ପର୍ଣ୍ଣଶାଳ
ରହିଯିବି କୃପାମୟ ସୁଖେ କିଛି କାଳ । ୬୩୭

ସହଜ ସରଳ ଶୁଣି ଶ୍ରୀରାମ ବଚନ,
ସାଧୁ ସାଧୁ କହି ପ୍ରଶଂସିଲେ ତପୋଧନ ।
କହିଲେ ସେ, "ରଘୁକୁଳ-କେତୁ କିଆଁ ତୁମେ,
କଥା ନ କହିବ ବେଦ-ତ୍ରାତା ମର୍ତ୍ତ୍ୟ ଭୂମେ । ୬୩୮

ବେଦ ଧର୍ମ ରକ୍ଷକ ହେ ଜଗତ କରତା,
ତୁମର ସ୍ୱରୂପଭୂତା ମାୟା ସିନା ସୀତା ।
ସେ ମାୟା ପ୍ରକୃତି ତୁମ ଇଚ୍ଛା ଅନୁସାରେ,
ଜଗତ ସୃଜଇ ପାଳେ ପୁଣି ଯେ ସଂହାରେ । ୬୩୯

ସହସ୍ର ଶିରେ ଯେ ମହୀ କରନ୍ତି ଧାରଣ,
ଚରାଚର ସ୍ୱାମୀ ସଙ୍କର୍ଷଣ ଯେ ଲକ୍ଷ୍ମଣ ।

ଦେବ କାର୍ଯ୍ୟ ପାଇଁ ରାଜ-ଶରୀର ଧାରଣେ,
ବାହାରିଛ ଖଳ ନିଶାଚରଙ୍କ ଦଳନେ । ୬୪୦

ସ୍ୱରୂପ ତୁମର ରାମ ବାକ୍ୟେ ଅଗୋଚର,
ବୁଦ୍ଧି ଊର୍ଦ୍ଧ୍ୱେ, ଅବ୍ୟକତ, ଅକଥ ଅପାର ।
ନେତି ନେତି କହି ବେଦଗଣେ ନିରନ୍ତର,
ତୁମର ବର୍ଣ୍ଣନା କରିଥାନ୍ତି ରଘୁବର । ୬୪୧

ଦୃଶ୍ୟ ଏ ଜଗତ, ରାମ ଦର୍ଶକ ଆପଣ,
ବ୍ରହ୍ମା ବିଷ୍ଣୁ ଶିବେ ସୁଦ୍ଧା କରାଅ ନର୍ତ୍ତନ ।
ସେ ଯେବେ ବୁଝନ୍ତି ନାହିଁ ରହସ୍ୟ ତୁମର,
ଜାଣିବ ତୁମକୁ ଅବା ଆଉ କେଉଁ ନର ? ୬୪୨

ଯାହାକୁ ଜଣାଇ ଦିଅ ସେ ଜାଣି ପାରଇ,
ଜାଣିବା ମାତ୍ରକେ ତୁମ ସ୍ୱରୂପ ହୁଅଇ ।
ତୁମକୁ ଜାଣନ୍ତି ଭକ୍ତେ ତୁମ କୃପା ଫଳେ,
ଶୀତଳ ଚନ୍ଦନ ତୁମେ ଭକ୍ତ ହୃଦ ସ୍ଥଳେ । ୬୪୩

ଚିଦାନନ୍ଦମୟ ପ୍ରଭୁ ତୁମ ଅପଘନ,
ଅବିକାରୀ ବୋଲି ଜାଣେ ଅଧିକାରୀ ଜନ ।
ଦେବ ସାଧୁ ସନ୍ଥ କାର୍ଯ୍ୟେ ନର ଦେହ ଧରି,
ପ୍ରାକୃତ ନୃପତି ସମ କହ ଆଉ କରି । ୬୪୪

ହେ ରାମ, ଚରିତ ତବ ଶ୍ରବଣେ ଦର୍ଶନେ,
ମୂର୍ଖ ହୁଏ ମୋହଗ୍ରସ୍ତ ଜ୍ଞାନୀ ସୁଖୀ ମନେ ।
ଯାହା କିଛି କର ସବୁ ପ୍ରମାଣ ନିଶ୍ଚିତ,
ଯେଉଁପରି ବେଶ ତେହ୍ନେ ନାଚିବା ଉଚିତ । ୬୪୫

କେଉଁଠି ରହିବ ବୋଲି ପଚାରୁଛ ମୋତେ,
ତୁମକୁ ପଚାରେ କିନ୍ତୁ ମୁହିଁ ସସଙ୍କୋଚେ ।
କହନ୍ତୁ ଆପଣ ଯହିଁ ନୁହଁ ବିଦ୍ୟମାନ,
ତା' ପରେ କହିବି ତମ ରହିବାର ସ୍ଥାନ । ୬୪୬

ପ୍ରେମ ରସ ସିକ୍ତ ମୁନିବରଙ୍କ ବଚନେ,
ହସିଲେ ସଙ୍କୋଚ ଲଭି ରାମ ମନେ ମନେ ।
ହସି ବାଲମିକୀ ଋଷି କହିଲେ ଆବର,
ମଧୁର ପୀୟୂଷେ ମିଶା କଥା ମନୋହର । ୬୪୭

"ଆହେ ରଘୁନାଥ ଶୁଣ ତୁମର ନିବାସ,
ଯହିଁ ସୀତା ସଲକ୍ଷ୍ମଣ କରିପାର ବାସ ।
ଯାହାଙ୍କ ଶ୍ରବଣ ସଦା ପୟୋନିଧି ସମ,
ବହୁ ନଦ ନଦୀ ତୁମ କଥା ମନୋରମ
ଭରୁଥାଏ ନିରନ୍ତର କେବେ ହେଁ ନ ପୂରେ,
ସଦନ ବରିଶ ରହ ସେହି ହୃଦ ପୁରେ । ୬୪୮

ନିଜ ନୟନକୁ କରି ଚାତକ ପରାୟେ,
ତୁମ ଦରଶନ-ମେଘେ ଚାହିଁ ରହିଥାଏ,
ସର-ସିନ୍ଧୁ ନଦୀ ବାରି କରି ଅନାଦର,
ତବ ରୂପ-ଜଳ ବିଂନ୍ଦୁ କରେ ଯେ ଆହାର,
ତା' ହୃଦୟ ସୁଖ-ପ୍ରଦ-ଗୃହ ତହିଁ ଯାଇ,
ହେ ରଘୁନନ୍ଦନ ରହ ଘେନି ସୀତା ଭାଇ । ୬୪୯

ତୁମରି ସୁଯଶ-ସ୍ୱଚ୍ଛ-ମାନ ସରୋବରେ,
ତବ ଗୁରୁ ଗୁଣାବଳି-ମୁକୁତା ନିକରେ,
ଯା' ରସନା ହଂସୀ ହୋଇ ଚୁଣି ଖାଉଥାଏ,
ତା' ହୃଦୟେ ଯାଇ ରହ ରଘୁପତି ଆହେ । ୬୫୦

ଯା' ନାସିକା କରେ ଘ୍ରାଣ ଆଦର ସହିତ,
ପ୍ରଭୁଙ୍କ ପ୍ରସାଦ ପୂତ ସୁବାସିତ ନିତ୍ୟ
ତୁମକୁ ନୈବେଦ୍ୟ କରି କରଇ ଭୋଜନ,
ଘେନଇ ପ୍ରସାଦ ରୂପେ ବସନ ଭୂଷଣ ।
ଦେବତା ବ୍ରାହ୍ମଣ ଗୁରୁ ଦେଖି ତୋଷ ଚିତ୍ତେ,
ମସ୍ତକ ଯେ କରେ ନତ ବିନୟ ସହିତେ ।

ଯା' କର ପୂଜଇ ନିତ୍ୟ ଶ୍ରୀରାମ ଚରଣ,
ତା' ମନରେ ବସା ବାନ୍ଧ ହେ ରଘୁନନ୍ଦନ । ୨୫୧

ପ୍ରତିଦିନ ମନ୍ତ୍ରରାଜ ତୁମର ଜପଇ,
ପରିବାର ସହିତେ ଯେ ତୁମକୁ ପୂଜଇ,
ନାନା ବିଧି କରେ ଯିଏ ପୂଜା ତର୍ପଣ,
ବହୁ ଦାନ କରୁଥାଏ ଡକାଇ ବ୍ରାହ୍ମଣ;
ତୁମଠୁଁ ଅଧିକ ଗୁରୁ, ବୋଲି ଯିଏ ଜାଣେ,
କରଇ ସକଳ ସେବା ଉଚିତ ସମ୍ମାନେ;
ସବୁ କରି ମାଗେ ଯିଏ ଏକମାତ୍ର ଫଳ-
ପ୍ରଭୁ ରଘୁନାଥ ପଦେ ପୀରତି କେବଳ;
ହେ ରଘୁନନ୍ଦନ ଦୁଇ ସୀତା ମହାରାଣୀ,
ତା' ମନ-ମନ୍ଦିରେ ଯାଇ ବସ ଯୋଗ୍ୟ ଜାଣି । ୨୫୨

ଯା' ହୃଦୟେ କାମ କ୍ରୋଧ ମଦ ମାନ ମୋହ,
ନାହିଁ ଲୋଭ କ୍ଷୋଭ ପୁଣି ଅନୁରାଗ ଦ୍ରୋହ ।
ଛଳ ଦମ୍ଭ ମାୟା ଆଦି ନାହିଁ ଯାହାଙ୍କର,
ରଘୁନାଥ ରହ ହୃଦ-ଭବନେ ତାଙ୍କର । ୨୫୩

ସଭିଙ୍କର ପ୍ରିୟ, ହିତକାରୀ ସଭିଙ୍କର,
ଦୁଃଖ ସୁଖ ନିନ୍ଦା ସ୍ତୁତି ସମାନ ଯାହାର;
କହନ୍ତି ବିଚାରି ସତ୍ୟ ସୁପ୍ରିୟ ବଚନେ,
ନିଦ୍ରା ଜାଗରଣେ ଥାନ୍ତି ତୁମରି ଶରଣେ;
ତୁମକୁ ଛାଡ଼ି ଯାର ଅନ୍ୟ ଗତି ନାହିଁ,
ତାଙ୍କରି ହୃଦୟେ ଯାଇ ରହ ରଘୁସାଇଁ । ୨୫୪

ଜାଣନ୍ତି ଜନନୀ ସମ ଯେତୁ ପରନାରୀ,
ପର ଦର୍ବ ବିଷ ଠାରୁ ବଳି ବିଷ ଭାରି;
ପରଶ୍ରୀ ନିରେଖି ଯେତୁ ସଦା ହର୍ଷ ଚିତ୍ତ,
ପର ବିପତ୍ତିରେ ଯେତୁ ଅନ୍ତରେ ବ୍ୟଥିତ;

ଯାହାଙ୍କର ପ୍ରାଣପ୍ରିୟ ତୁମେ ରଘୁବର,
ତାଙ୍କର ହୃଦୟ ଶୁଭ-ସଦନ ତୁମର । ୭୫୫

ସ୍ୱାମୀ ସଖା ଗୁରୁ ପିତା ମାତା ସବୁ ବୋଲି,
ହୃଦୟେ ତୁମକୁ ଯିଏ ରଖିଅଛୁ ତୋଳି;
ସେ ମନ-ମନ୍ଦିରେ ସୀତା ସହ ବେନି ଭାଇ,
ରଘୁନାଥ ପ୍ରୀତି ଭରେ ଏବେ ରହ ଯାଇ । ୭୫୬

ତେଜି ନିଜ ଅବଗୁଣ ପର ଗୁଣ ଘେନେ,
ଧେନୁ ବିପ୍ର ପାଇଁ ଦୁଃଖ ସହେ ଅକାରଣେ ।
ସୁନୀତି ନିପୁଣ ଖ୍ୟାତି ଯାହାର ଜଗତେ,
ତା' ମନ ଉତ୍ତମ ଗୃହ ତୁମର ନିମନ୍ତେ । ୭୫୭

ତୁମ ଗୁଣ ବୁଝି ନିଜ ଦୋଷ ଯେ ଧରଇ,
ସବୁମନ୍ତେ ତୁମଠାରେ ଭରସା ରଖଇ;
ଶ୍ରୀରାମ-ଭକତ ଯାର ପ୍ରିୟ ଅତିଶୟ,
ଜାନକୀ ସହିତେ ଯାଇ ତା' ହୃଦୟେ ରହ । ୭୫୮

ଜାତିପାଁତି ଧନ ଧର୍ମ ସକଳ ବଡ଼ାଇ,
ପ୍ରିୟ ପରିବାର ନିଜ ଗୃହ, ସୁଖଦାୟୀ,
ସକଳ ବରିଜ ଯିଏ ରହେ ତୁମ ଲୟେ,
ରଘୁକୁଳ-ମଣି ରହ ତାହାର ହୃଦୟେ । ୭୫୯

ଯା'ପାଶେ ସମାନ ସ୍ୱର୍ଗ ନର୍କ ମୋକ୍ଷ ସବୁ,
ସବୁଠି ଦେଖଇ ଧନୁଶର-ଧାରୀ-ପ୍ରଭୁ;
ମନ କର୍ମ ବଚନେ ଯେ ପ୍ରଭୁଙ୍କର ଦାସ,
ହେ ରଘୁନନ୍ଦନ କର ତା' ହୃଦୟେ ବାସ । ୭୬୦

ଯାହାର ଜଗତେ ନାହିଁ କିଛୁ ପ୍ରୟୋଜନ,
ସ୍ୱଭାବେ ତୁମଠି ଯିଏ ରଖିଅଛି ମନ,
ତାହାର ହୃଦୟ-ପୁରେ ରହ ନିରନ୍ତର,
ଜାଣିବ ସେହି ତ ଅଟେ ତୁମ ନିଜ ଘର ।" ୭୬୧

ଦେଖାଇଲେ ଏହାପରି ମୁନୀଶ ସଦନ,
ସୁଖୀ ହେଲେ ରାମ ଶୁଣି ସପ୍ରେମ ବଚନ ।
ତା' ପରେ କହିଲେ ମୁନି, "ହେ ରଘୁନାୟକ,
କହୁଛି ଆଶ୍ରମ ଏକ ସୁଖ-ପ୍ରଦାୟକ ।" ୨୬୨

ଚିତ୍ରକୂଟ ପର୍ବତରେ ବାସ କର ଯାଇ,
ସମସ୍ତ ସୁବିଧା ହେବ ତହିଁ ତୁମ ପାଇଁ ।
ଶୈଳ ସୁନ୍ଦର ବନ ମନୋହର ଅତି,
ବିହରନ୍ତି ତହିଁ ହରି, କରି ମୃଗ ପକ୍ଷୀ । ୨୬୩

ପୁରାଣ ପ୍ରସିଦ୍ଧ ଅତି ପୂତ ସ୍ରୋତସ୍ୱିନୀ,
ଅତ୍ରି-ପ୍ରିୟା ନିଜ ତପ ଫଳେ ଥିଲେ ଆଣି ।
ସେ ତ ସୁରଧୁନୀ ଧାର ନାମ ମନ୍ଦାକିନୀ,
ପାପ-ଶିଶୁ ଗ୍ରାସିବାକୁ ଯେସନେ ଡାକିନୀ । ୨୬୪

ରହନ୍ତି ଅତ୍ରିଙ୍କ ସହ ବହୁ ମୁନିବର,
ତହିଁ ତପେ ତନୁ କୃଶ କରନ୍ତି ତାଙ୍କର ।
ସଭିଙ୍କର ଶ୍ରମ ଯେତେ କର ଫଳବତୀ,
ଗଉରବ ଦିଅ ଗିରିବରେ ରଘୁପତି । ୨୬୫

ମହାମୁନି ଚିତ୍ରକୂଟ ମହିମା ଅମିତ,
ବଖାଣି କହିଲେ ତାଙ୍କୁ ହୋଇ ହର୍ଷ ଚିତ୍ତ ।
ତା'ପରେ ସୀତାଙ୍କ ସହ ବେନି ଭାଇ ଖରେ,
ସ୍ନାନ କଲେ ନଦୀବର ମନ୍ଦାକିନୀ ଜଳେ । ୨୬୬

ଶ୍ରୀରାମ କହିଲେ, "ଭାଇ ଏ ଘାଟ ସୁନ୍ଦର,
ଏଥି କାହିଁ ରହିବାକୁ ସ୍ଥାନ ସ୍ଥିର କର ।"
ଲକ୍ଷ୍ମଣ ଦେଖିଲେ ନଦୀ ଉତ୍ତର ଦିଗରେ,
ବହି ଯାଉଅଛି ନାଳ ଧନୁ ଆକାରରେ । ୨୬୭

ନଦୀ ଅଟେ ଗୁଣ, ଶର ଶମ ଦମ ଦାନ,
କଳିର ସକଳ ଦୋଷ କ୍ଷିକାଳ ସମାନ ।

ଚିତ୍ରକୂଟ ଅବିଚଳ ଶିକାରୀ ଅଟଇ,
ସମ୍ମୁଖେ ମାରଇ ଲକ୍ଷ୍ୟ ଭ୍ରଷ୍ଟ ନ ହୁଅଇ । ୭୭୮

ଏହା କହି ଦେଖାଇଲେ ସ୍ଥାନେକ ଲକ୍ଷ୍ମଣ,
ଦେଖି ତାହା ସୁଖୀ ହେଲେ ଶ୍ରୀରଘୁନନ୍ଦନ ।
ଦେବଗଣେ ଜାଣି ରାମ ମନ ବିମୋହିତ,
ସୁର ପାଟ ଶିଳ୍ପୀ ସହ ହେଲେ ଉପସ୍ଥିତ । ୭୭୯

କୋଲ୍ହ ଓ କିରାତ ବେଶେ ମିଳିଲେ ସରବେ,
ବିରଚିଲେ ରମ୍ୟ ଗୃହ ତୃଣ ଓ ପଲ୍ଲବେ ।
ସେ ବେନି କୁଟୀର ଶୋଭା ବର୍ଣ୍ଣି ନ ହୁଅଇ,
ଏକ କ୍ଷୁଦ୍ର ରମ୍ୟ ଆନ ବିଶାଳ ଅଟଇ । ୭୮୦

ଜାନକୀ ଲକ୍ଷ୍ମଣ ସହ ରମ୍ୟ ପର୍ଣ୍ଣଶାଳେ,
ହୋଇଲେ ବିରାଜମାନ ରାମ ହେନ୍ତଠାରେ ।
ଶୋଭନ୍ତି କି ଅବା କାମଦେବ ମୁନି ବେଶେ,
ରତି ଓ ବସନ୍ତ ସାଥେ ଏଇ ବନ ଦେଶେ । ୭୮୧

ମାସ ପାରାୟଣ, ସପ୍ତଦଶ ବିଶ୍ରାମ ।

# ସାତ

ଅମର କିନ୍ନର ନାଗ ଦିଗପାଳଗଣ,
ଚିତ୍ରକୂଟେ ସେ ସମୟେ କଲେ ଆଗମନ ।
ପ୍ରଣମିଲେ ସମସ୍ତଙ୍କୁ ଶ୍ରୀରାମ ଆଦରେ,
ନେତ୍ର ଫଳ ପାଇ ଖୁସି ହୋଇଲେ ଅମରେ । ୬୭୨

କରିଲେ କୁସୁମ ବୃଷ୍ଟି କରି ଦେବଗଣେ,
"ହେ ନାଥ, ସନାଥ ହେଲୁ ତବ ଦରଶନେ ।"
ବନସ୍ତେ ଦୁଃସହ ଦୁଃଖ ଶୁଣାଇ ଆତୁରେ,
ପ୍ରସନ୍ନ ମନରେ ଗଲେ ନିଜ ନିଜ ପୁରେ । ୬୭୩

ଚିତ୍ରକୂଟେ କଲେ ବାସ ଶ୍ରୀରଘୁନନ୍ଦନ
ମୁନିଏ ବାରତା ପାଇ କଲେ ଆଗମନ ।
ପ୍ରସନ୍ନ-ମାନସ-ମୁନିଗଣେ ଦେଖି ରାମ,
ରଘୁକୁଳ-ଚନ୍ଦ୍ର କଲେ ପାଦରେ ପ୍ରଣାମ । ୬୭୪

ଶ୍ରୀରାମଚନ୍ଦ୍ରଙ୍କୁ ନେଇ ବୁକୁରେ ମୁନୀଶ,
କୃତକାର୍ଯ୍ୟ ହେବାପାଇଁ ଦିଅନ୍ତି ଆଶିଷ ।
ଦେଖନ୍ତି ଶ୍ରୀରାମ ସୀତା ଲକ୍ଷ୍ମଣ ମୂରତି,
ନିଜ ନିଜ ସାଧନାକୁ ସୁଫଳ ମଣନ୍ତି । ୬୭୫

ଉଚିତ ସମ୍ମାନ ସହ ମୁନିଋଷିଗଣେ,
ପାଦରେ ବିଦାୟ କଲେ ପ୍ରଭୁ ହର୍ଷମନେ ।
ସେ ନିଜ ଆଶ୍ରମେ ଯାଇ ନିର୍ଭୟ ଚିତ୍ତରେ,
ଜପ ତପ ଯୋଗ ଯାଗମାନ ଆଦି କଲେ । ୬୭୬

ଏ ଖବର ପାଇ କୋଲ୍ହ କିରାତେ ଉତ୍‌ଫୁଲ୍ଲେ,
ମିଳିଲେ ସତେ କି ନବନିଧି ତାଙ୍କ ପୁରେ ।

ଗଲେ ଦନା ଦନା କନ୍ଦ ଫଳମୂଳ ଧରି,
ସୁନା ଲୁଟିବାକୁ ରଙ୍କ ଯାଉଛୁ ଯେପରି । ୭୭୭

ତାଙ୍କର ଭିତରୁ ଯିଏ ଏ ଭ୍ରାତା-ଯୁଗଳେ
ଦେଖିଥିଲେ ତାଙ୍କୁ ଅନ୍ୟ ପଥିକ ସକଳେ
ପଚାରନ୍ତ ରାମ କଥା ଅତି ଉଦ୍‌ବେଗରେ,
କହି ଶୁଣି ସବେ ହେଲେ ରାମଙ୍କ ଆଗରେ । ୭୭୮

ସାଦରେ ଜୁହାର କଲେ ଭେଟି ଥୋଇ ଆଗେ,
ପ୍ରଭୁଙ୍କୁ ଦେଖିଲେ ସବେ ଅତି ଅନୁରାଗେ ।
ଚିତ୍ର ପ୍ରାୟ ହେଲେ ଠିଆ, ନେତ୍ର-ଅପଲକ,
ନୟନେ ପ୍ରେମାଶ୍ରୁ ଧାର ଶରୀରେ ପୁଲକ । ୭୭୯

ସବେଁ ପ୍ରେମମଗ୍ନ ଜାଣି ଶ୍ରୀ ରଘୁନନ୍ଦନ,
କଲେ ସମାଦର କହି ସୁପ୍ରିୟ ବଚନ ।
ପ୍ରେମେ ପଡ଼ି ବାରମ୍ବାର ପ୍ରଭୁଙ୍କ ଚରଣେ,
କର ଯୋଡ଼ି କହିଲେ ସେ ବିନୟ ବଚନେ । ୭୮୦

"ପ୍ରଭୁ-ପଦ ଦରଶନେ ଆମେ ଆଜ ନାଥ,
ଯେତେ ବନବାସୀ ସବୁ ହୋଇଲୁ ସନାଥ ।
ହେ କୋଶଳରାଜ ଜାଣ ଆମ ଭାଗ୍ୟବଳେ,
ତବ ଶୁଭ ଆଗମନ ହୋଇଛି ଏ ସ୍ଥଳେ । ୭୮୧

ହେ ନାଥ ଚରଣ ତୁମେ ପକାଇଛ ଯହିଁ,
ଧନ୍ୟ ସେହି ବନ ପଥ ଗିରିମାଳ ମହୀ ।
ଧନ୍ୟ ବିହଙ୍ଗମ ମୃଗ କାନନ ବିହାରୀ,
ତୁମଙ୍କୁ ନିରେଖି ଜନ୍ମ ସଫଳ ତାଙ୍କର । ୭୮୨

ପରିବାର ସହ ଆମେ ସବେଁ ହେଲୁ ଧନ୍ୟ,
ନୟନ ପୂରାଇ କରି ତୁମର ଦର୍ଶନ ।
ବଡ଼ିର ଉତ୍ତମ ସ୍ଥାନ କରିଅଛ ବାସ,
ସକଳ ଋତୁରେ ଏଥି ଲଭନ୍ତି ଉଲ୍ଲାସ । ୭୮୩

କରିବୁ ସକଳ ସେବା ଆମ୍ଭେମାନେ ଥାଇ,
ହସ୍ତୀ ସିଂହ ସର୍ପ ବ୍ୟାଘ୍ର ଭୟରୁ ବଞ୍ଚାଇ ।
ଏ ଗହନ ବନ ଗିରି ସଙ୍କଟ କନ୍ଦର,
କନ୍ଦ ଓ ବିକନ୍ଦ ପ୍ରଭୁ ଆମରି ଗୋଚର । ୬୮୪

ସେ ସ୍ଥାନେ ପାରିଧି ସାଙ୍ଗେ ନେଇ ଖେଳାଇବୁ,
ସର ଝରଣାଦି ଜଳ ସ୍ଥାନ ଦେଖାଇବୁ ।
ପରିବାର ସହ ଆମ୍ଭେ ସେବକ ତୁମର,
ଆଜ୍ଞା ଦେବା ପାଇଁ କେବେ ସଙ୍କୋଚ ନ କର ।" ୬୮୫

ଯେ ନିଗମ ତତ୍ତ୍ୱ ମୁନି-ମନ ଅଗୋଚର,
କରୁଣା-ସଦନ ସେହି ପ୍ରଭୁ ରଘୁବର
ଶୁଣନ୍ତି କିରାତ କୋଲହମାନଙ୍କ ବଚନ,
ଶିଶୁର କଥାକୁ ପିତା ଶୁଣନ୍ତି ଯେସନ । ୬୮୬

ନିର୍ମଳ-ହୃଦୟ-ପ୍ରେମ ରାମଙ୍କର ପ୍ରିୟ,
ଯେ ଜିଜ୍ଞାସୁ ଜନ ଏହି କଥା ଜାଣି ନିଅ ।
ତା'ପରେ ଶ୍ରୀରାମ ପ୍ରେମ କୋମଳ ବଚନେ,
ପରିତୋଷ କଲେ ଯେତେ ବନେଚର ଜନେ । ୬୮୭

ବିଦାୟ କଲାରୁ ପୁଣି ସର୍ବେ ଶିର ନୋଇଁ
ଗୃହେ ଗଲେ ରାମ ଗୁଣ କୁହାକୁହି ହୋଇ ।
ଏହିପରି ରାଘବେ ସୀତା ସହ ବେନିଭାଇ,
ସେ ବନେ ରହିଲେ ସୁର-ମୁନି-ସୁଖଦାୟୀ । ୬୮୮

ଯେ ଦିନୁଁ ରହିଲେ ଆସି ଶ୍ରୀରଘୁନାୟକ,
ସେହି ଦିନୁଁ ହେଲା ବନ ମଙ୍ଗଳଦାୟକ ।
ଫୁଟିଲା କୁସୁମ ବୃକ୍ଷ ଫଳ ଭରାନତ,
ଆବୃତ୍ତ ମଞ୍ଜୁଳ-ଲତା-ବିତାନ ଯେମନ୍ତ । ୬୮୯

କଳ୍ପତରୁ ସମ ବୃକ୍ଷେ ଦିଶନ୍ତି ଶୋଭନ,
ନନ୍ଦନ ଆସିଛନ୍ତି ଅବା ନନ୍ଦନ-କାନନ ।

ସୁମଧୁରେ ଗୁଞ୍ଜରନ୍ତି ମଧୁକର ଯୂଥ,
ବହଇ ଆନନ୍ଦଦାୟୀ ତ୍ରିବିଧ ମରୁତ । ୭୯୦

ମୟୂର କୋକିଳ ଶୁଆ ଚକୋଇ ଚକୋର,
ରବନ୍ତି ନାନାବିଧ ଭାବେ କରି ନାନା ସ୍ୱର ।
ସେମାନଙ୍କ କଳରବ ଅପୂର୍ବ ନିଃସ୍ୱନ,
ଶ୍ରବଣ ସୁଖଦ, ଚୋରି କରେ ଚିତ୍ତ ମନ । ୭୯୧

ସିଂହ ହସ୍ତୀ କପି ଆଉ ଶୂକର କୁରଙ୍ଗେ,
ବୈରିତା ବରଜି ବିହରନ୍ତି ଏକ ସଙ୍ଗେ ।
ପାରିଧି କାଳରେ ରାମ ଛବି ଦରଶନେ,
ହରଷ ହୁଅନ୍ତି ପଶୁକୁଳ ମନେ ମନେ । ୭୯୨

ଜଗତେ ବିଦିତ ଯେତେ ବିବୁଧ କାନନ,
ସମସ୍ତେ କରନ୍ତି ଈର୍ଷା ଦେଖି ରାମ-ବନ ।
ସୁରନଦୀ ସରସ୍ୱତୀ ଦିନେଶ-ତନୟା,
ନରମଦା ଗୋଦାବରୀ ସିନ୍ଧୁ ପୁଣ୍ୟତୋୟା,
ସବୁ ନଦ ନଦୀ ସିନ୍ଧୁ ସବୁ ସରୋବର,
ମନ୍ଦାକିନୀ ପ୍ରଶଂସାରେ ହୁଅନ୍ତି ମୁଖର ।
ଉଦୟ ପର୍ବତ ଅସ୍ତ ଗିରି କଇଳାସ,
ମନ୍ଦର ସୁମେରୁ ସବୁ ଦେବତା ନିବାସ,
ହିମାଳୟ ଆଦି ଯେତେ ଗିରି ପରବତ,
ଚିତ୍ରକୂଟ ଯଶ ରାଜି ଗାଆନ୍ତି ନିରତ ।
ବିନ୍ଧ୍ୟାଚଳ ଆନନ୍ଦିତ ସୁଖ ନ ସମ୍ଭାଇ,
ବିନା ଶ୍ରମେ ପାଇଗଲେ ବିପୁଳ ବଡ଼ାଇ । ୭୯୩

ଚିତ୍ରକୂଟ ଖଗ ମୃଗ ତୃଣ ତରୁ ଲତା,
ସର୍ବେ ଧନ୍ୟ ବିବାଗିତ କହନ୍ତି ଦେବତା ।
କରିଥିଲେ କେତେ ପୁଣ୍ୟ ରାଶି ଅରଜନ,
ସଙ୍ଗେ ବାସ କଲେ ଆସି ଶ୍ରୀରଘୁନନ୍ଦନ । ୭୯୪

ଚକ୍ଷୁବନ୍ତ ଯାବେ କରି ରାମ ଦରଶନ,
ଜନ୍ମ ଫଳ ପାଇ ହେଲେ ଶୋକ-ବିମୋଚନ ।
ଅଚର ସ୍ଥାବରେ ପାଇ ପଦ-ରଜ ସ୍ପର୍ଶ,
ପରମ ପଦକୁ ଲଭି ହୋଇଲେ ହରଷ । ୬୯୫

ଏହି ବନ ପରବତ ସହଜେ ସୁନ୍ଦର,
ଅଶେଷ ମଙ୍ଗଳମୟ ପୂତ ପରସର ।
ସୁଖ-ସିନ୍ଧୁ ରାମ ଯହିଁ କରନ୍ତି ନିବାସ,
ତା' ମହିମା କହିବାକୁ କେ କରେ ସାହସ ? ୬୯୬

କ୍ଷୀର-ପାରାବାର ଆଜି ଅଯୋଧ୍ୟା ନଗରୀ,
ଶ୍ରୀରାମ ଲକ୍ଷ୍ମଣ ସୀତା ହେଲେ ତ୍ୟାଗ କରି ।
ଯହିଁ ରହିଛନ୍ତି, ସେହି ବନ ଶୋଭା-ରାଶି,
ଶେଷ ଲକ୍ଷାନନ ହେଲେ ନ ପାରିବ ଭାଷି । ୬୯୭

ତାହା ମୁଁ ବର୍ଣ୍ଣନା କରି କହିବି କେମନ୍ତ,
ସର-କଇଁଚ କି ବହେ ମନ୍ଦର ପର୍ବତ ?
କାୟମନୋବାକ୍ୟେ ସେବା କରନ୍ତି ସୌମିତ୍ରୀ,
ସେ ସ୍ନେହ ସୌହାର୍ଦ୍ଦ୍ୟ କିଏ ବର୍ଣ୍ଣିବ କେମିତି ? ୬୯୮

ରାମ-ଶ୍ରୀଚରଣ ସୀତା ଦେଖି ଅନୁକ୍ଷଣ,
ଜାଣି ନିଜ ପରେ ତାଙ୍କ ସ୍ନେହ ଅକଳନ,
ପିତା ମାତା ଗୃହ ଅବା ବନ୍ଧୁ ପରିଜନେ,
ସ୍ୱପ୍ନେ ମଧ୍ୟ ନ ପକାନ୍ତି ଊର୍ମିଳୀ ମନେ । ୬୯୯

ରହନ୍ତି ରାମଙ୍କ ସଙ୍ଗେ ଆନନ୍ଦରେ ସୀତା,
ପାଶୋରି ସ୍ୱଗୃହ ପୁର ପରିବାର ଚିନ୍ତା ।
ସୁଖୀ ଗୃହିଁ ପ୍ରିୟ ମୁଖ-ଚନ୍ଦ୍ରେ କ୍ଷଣେ କ୍ଷଣେ,
ଚକୋର କୁମାରୀ ଗୃହିଁ ଚନ୍ଦ୍ରକୁ ଯେସନେ । ୭୦୦

ନିତ୍ୟ ସ୍ୱାମୀ ସ୍ନେହ ବୃଦ୍ଧି ନିରେଖି ହରଷେ,
ରହନ୍ତି ଚକୋଇ ଯଥା ପ୍ରସନ୍ନ ଦିବସେ ।

ସୀତା ମନ ରଘୁନାଥ ଚରଣାନୁରାଗେ,
ସହସ୍ର ଅଯୋଧ୍ୟା ସମ ବନ ପ୍ରିୟ ଲାଗେ । ୭୦୧

ପତର-କୁଡ଼ିଆ ପ୍ରିୟ ପ୍ରିୟତମ ଭୁଲେ,
ପ୍ରିୟ ପରିବାର ବନ ମୃଗ ପକ୍ଷୀକୁଳେ ।
ମୁନି ମୁନିପତ୍ନୀ ଯେହ୍ନେ ଶାଶୁ ଓ ଶ୍ୱଶୁର,
କନ୍ଦମୂଳ ଫଳାହାର ସୁଧାଠୁଁ ମଧୁର । ୭୦୨

ସ୍ୱାମୀଙ୍କ ସାଥିରେ କୁଶ-ଶଯ୍ୟା ମନୋରମ,
ଦିଅଇ ଆନନ୍ଦ ଶତ କାମ-ଶଯ୍ୟା ସମ ।
ଯା' କୃପା କଟାକ୍ଷେ ଲୋକ ହୁଏ ଲୋକପାଳ,
ଭୋଗ ବିଳାସ କି ତାଙ୍କୁ ମୋହି ପାରେ ସ୍ଥିର ? ୭୦୩

ଯେଉଁ ରାମ ନାମ ଧରି ଜଗତେ ଭକତ,
ବିଷୟ ବିଳାସ ତେଜି ପାରେ ତୃଣ ବତ ।
ସେ ରାମଙ୍କ ପ୍ରିୟ-ପତ୍ନୀ ଜଗତ-ଜନନୀ,
ସୀତାଙ୍କ ଏ ତ୍ୟାଗ ନୁହେଁ ଆଶ୍ଚର୍ଯ୍ୟ କରଣୀ । ୭୦୪

ଯହିଁରେ ସୌମିତ୍ରୀ ସୀତା ଲଭିବେ ଆନନ୍ଦ,
କହନ୍ତି କରନ୍ତି ସେହିପରି ରାମଚନ୍ଦ୍ର ।
କହନ୍ତି ପ୍ରାଚୀନ କଥା କାହାଣୀ ଆଗରେ,
ଶୁଣନ୍ତି ଲକ୍ଷ୍ମଣ ସୀତା ଅଶେଷ ଆଦରେ । ୭୦୫

ଅଯୋଧ୍ୟାର କଥା ଯେବେ ପଡ଼ିଯାଏ ମନେ,
ଅଶ୍ରୁଜଳ ଭରିଯାଏ ରାମଙ୍କ ନୟନେ ।
ସୁମରି ସେ ପିତାମାତା ଭାଇ ପରିଜନ,
ବିଶେଷେ ଭରତ ଶୀଳ ସ୍ନେହ ସେବା ପଣ । ୭୦୬

ଦୁଃଖିତ ହୁଅନ୍ତି ମନେ ମନେ କୃପାମୟ,
କୁସମୟ ଭାବି ଦମ୍ଭ କରନ୍ତି ହୃଦୟ ।
ତା'ଦେଖି ବିକଳ ଅତି ଜାନକୀ ଲକ୍ଷ୍ମଣ,
ପୁରୁଷଙ୍କୁ ଛାୟା ଅନୁସରଇ ଯେସନ । ୭୦୭

ଭାଇ ପତ୍ନୀ ଗଣ ଦେଖି ଶ୍ରୀରଘୁନନ୍ଦନ—
ଧୀର କୃପାମୟ ଭକ୍ତ ହୃଦୟ ଚନ୍ଦନ—
କହନ୍ତି କେତେକ ପୁଣ୍ୟ କାହାଣୀ ସରସ,
ଶୁଣି ସୀତା ସଉମିତ୍ରୀ ଲଭନ୍ତି ହରଷ ।
ପ୍ରିୟ ପତ୍ନୀ ଶଚୀ, ପୁତ୍ର ଜୟନ୍ତ ସାଥିରେ,
ନବସନ୍ତ ଯେହ୍ନେ ଇନ୍ଦ୍ର ଅମରାବତୀରେ ।
ତେହ୍ନେ ସଙ୍ଗେ ଧରି ସୀତା ଅନୁଜ ଲକ୍ଷ୍ମଣ,
ପର୍ଣ୍ଣଶାଳେ ବିରାଜନ୍ତି ଶ୍ରୀରଘୁନନ୍ଦନ । ୭୦୮

ପ୍ରଭୁ ସୀତା ଲକ୍ଷ୍ମଣଙ୍କୁ ରଖନ୍ତି ତେସନେ,
ପଲକ ରଖଇ ଚକ୍ଷୁ ତାରାକୁ ଯେସନେ ।
ସେବନ୍ତି ଲକ୍ଷ୍ମଣ ସୀତା ରାମଙ୍କୁ ସେପରି,
ଅଜ୍ଞାନୀ ସେବଇ ନିଜ ଦେହକୁ ଯେପରି । ୭୦୯

ଏପରି ରହିଲେ ପ୍ରଭୁ ବନେ ସୁଖେ ଅତି,
ଖଗ ମୃଗ ମୁନି ସୁର ହିତେ ହୋଇ ବ୍ରତୀ ।
କହିଲି ରାମଙ୍କ ରମ୍ୟ କାନନ ଗମନ,
ଶୁଣ ଅଯୋଧ୍ୟାକୁ ମନ୍ତ୍ରୀ ଫେରିଲେ ଯେସନ । ୭୧୦

ଗୁହ ବନେ ପହୁଞ୍ଚାଇ ପ୍ରଭୁଙ୍କୁ ଫେରିଲା,
ଆସି ରଥ ସହିତରେ ମନ୍ତ୍ରୀଙ୍କୁ ଦେଖିଲା ।
ଅଶେଷ ବିକଳ ଦେଖି ମନ୍ତ୍ରୀଙ୍କୁ ନିଷାଦ,
କହି ହେବ ନାହିଁ ଯେତେ ଲଭିଲା ବିଷାଦ । ୭୧୧

"ହା ରାମ, ହା ସୀତା ହାୟ ଲକ୍ଷ୍ମଣ" ଉଚ୍ଚାରି,
ପଡ଼ନ୍ତି ବିକଳ ଭରେ ଭୂତଳେ କରୁଡ଼ି ।
ଦକ୍ଷିଣକୁ ଗୁହିଁ ଅଶ୍ୱେ, ହିଁ ହିଁ ହିଁ କରନ୍ତି,
ଯେହ୍ନେ ପକ୍ଷ ବିନା ପକ୍ଷୀ ବ୍ୟାକୁଳ ହୁଅନ୍ତି । ୭୧୨

ତୃଣ ନ ଚରନ୍ତି ସେହି ନ ପିଅନ୍ତି ଜଳ,
ନୟନୁ ଲୋତକ ଧାର ବୁହାନ୍ତି କେବଳ ।

ଶ୍ରୀରାମଙ୍କ ଅଶ୍ୱଙ୍କର ଦେଖି ଏ ଅବସ୍ଥା,
-ସକଳ ନିଷାଦ ହୃଦେ ଲଭୁଥିଲେ ବ୍ୟଥା । ୭୧୩

ହୃଦେ ଧୈର୍ଯ୍ୟ ଧରି ତହୁଁ କହିଲେ ନିଷାଦ,
"ହେ ସୁମନ୍ତ୍ର, ମନୁ ତବ ତେଜ ଏ ବିଷାଦ ।
ତମେ ତ ପଣ୍ଡିତ ଧୀର ପରମାର୍ଥ ଜ୍ଞାତା,
ହୃଦେ ଦମ୍ଭ ଧର ଭାବ ବିମୁଖ ବିଧାତା । ୭୧୪

କୋମଳ ବାଣୀରେ କହି କଥା ନାନାମତେ
ବାଧ୍ୟ କରି ବସାଇଲେ ତାଙ୍କୁ ନେଇ ରଥେ ।
ଶୋକାବେଗେ ନ ପାରିଲେ ସେ ରଥ ଚଳାଇ
ଶ୍ରୀରାମ ବିରହେ ହୃଦ ଯାଉ ହେଉଥାଇ । ୭୧୫

ଛଟପଟ ଅଶ୍ୱ ସବୁ ନ ଚାଲନ୍ତି ପଥେ
ବଣ ପଶୁ ଅବା ଯୋଚୁ ହୋଇଛନ୍ତି ରଥେ ।
କାହିଁ ଝୁଣ୍ଟିପଡ଼ ଫେରି ପଛକୁ ଚାହାନ୍ତି,
ଶ୍ରୀରାମ ବିରହେ ବହୁ ଯାତନା ପାଆନ୍ତି । ୭୧୬

ଶ୍ରୀରାମ ଲକ୍ଷ୍ମଣ ସୀତା ନାମ ଯେ ଉଚ୍ଚାରେ,
ହିଁ ହିଁକାର ରବେ ଅଶ୍ୱେ ଚାହାନ୍ତି ତାହାରେ ।
ଅଶ୍ୱଙ୍କ ବିରହ ଗତି କେ କହି ପାରଇ,
ମଣି ବିନା ଫଣୀ ଅବା ବିକଳ ହୁଅଇ । ୭୧୭

ଅଶ୍ୱ ଓ ମନ୍ତ୍ରୀଙ୍କୁ ଦେଖି ନିଷାଦ ରାଜନ,
ହୃଦେ ହେଲେ ଅତିଶୟ ବିଷାଦ ମଗନ ।
ତହୁଁ ଚାରିଜଣ ନିଜ ସେବକ ଡକାଇ,
ମନ୍ତ୍ରୀ ସୁମନ୍ତ୍ରଙ୍କ ସାଥେ ଦେଲେ ପଠାଇ । ୭୧୮

ଫେରିଲେ ବିଦାଇ ବାଟ ସାରଥୀଙ୍କୁ ଗୁହ,
ସେ ବିରହ-ବିଷାଦକୁ କେ ବର୍ଣ୍ଣିବ କୁହ ।
ଅଯୋଧ୍ୟାକୁ ଗଲେ ରଥ ସହିତେ ନିଷାଦେ,
କ୍ଷଣକୁ କ୍ଷଣ ସେ ମଗ୍ନ ହୁଅନ୍ତି ବିଷାଦେ । ୭୧୯

ଶ୍ରବନ୍ତି ବନକେ ମନ୍ତ୍ରୀ ହୋଇ ଦୁଃଖୀ ଦୀନ,
ଧିକ ଏ ଜୀବନ ହୋଇ ଶ୍ରୀରାମ ବିହୀନ ।
ଅଧମ ଶରୀର ଶେଷେ ନଷ୍ଟ ଯିବ କାହିଁ,
ରାମ-ବନା ଯାଇ ଯଶ ନ ନିଏ କମାଇ ? ୭୨୦

ଅପଯଶ ପାପ ଭାଣ୍ଡ ହେଲଣି ଏ ପ୍ରାଣ,
ତେବେ କମା ଏବେ ଦେହୁଁ ନ କରେ ପ୍ରୟାଣ ?
ହାୟ ମନ୍ଦ ମତି ଗଲା ଭଲ ବେଳ କାଳ,
ଏବେ ବି ନ ଫୁଟେ ହୃଦ କମାଇ ଦୋ'ଫାଳ ? ୭୨୧

କର ମଳ କଲେ ଦୁଃଖ ଶିରେ ମାରି ହାତ,
କୃପଣ ହରାଇ ଯେସନେ ସମ୍ପତ୍ତି ଅମାପ ।
ବାନ୍ଧି ବୀରବାନା ବୀର ପ୍ରବର ବୋଲାଇ,
ପଛଘୁଞ୍ଚା ଦେଇ ଯାଏ ଯୋଦ୍ଧା କି ପଳାଇ ? ୭୨୨

ବିବେକୀ ବେଦଜ୍ଞ କେହି କୁଳୀନ ବ୍ରାହ୍ମଣ,
ଯେସନେ ପ୍ରତାରିତେ କରି ମଦିରା ସେବନ
ଅନୁତାପ କରେ, ସେହି ପ୍ରକାରେ ସୁମନ୍ତ୍ର,
ହେଉଥାନ୍ତି ମନେ ମନେ ଅତି ଅନୁତପ୍ତ । ୭୨୩

କୁଳୀନା ସୁନ୍ଦରୀ ସତୀ ସାଧ୍ୱୀ କେହି ନାରୀ,
ମନ କର୍ମ ବାକ୍ୟେ ପତି ଦେବତା ଯାହାରି
କର୍ମ ବଶେ ପତିଛଡ଼ା ହୋଇ ଯେଉଁପରି,
ଦୁଃଖ ଦାହ ସହେ, ମନ୍ତ୍ରୀ ବେଦନା ସେପରି । ୭୨୪

ନୟନ ସଜଳ, ଦୃଷ୍ଟି ହୋଇଲା ଶିଥିଳ,
ଶ୍ରବଣ ନ ଶୁଣେ, ମତି ବ୍ୟାକୁଳେ ଅଥିର ।
ଶୁଖିଯାଏ ଓଠ, ମୁଖ ଅଠା ଲାଗିଯାଏ,
ଅବଧି-କବାଟ ବକ୍ଷେ ଜୀବନ ନ ଯାଏ । ୭୨୫

ବିବର୍ଣ୍ଣ ହୋଇଲେ ତାଙ୍କୁ ଚିହ୍ନି ହୁଏ ନାହିଁ,
ପିତାମାତାଙ୍କୁ ବା ମାରି ଦେଇଛନ୍ତି କାହିଁ ?

ରାମହୀନ ଦୁଃଖ ଗ୍ଲାନି ବ୍ୟାପିଅଛି ମନେ,
ଯମପୁର ପଥ ପାପୀ ଚଳଇ ଯେସନେ । ୭୨୬

ବୁକୁ ସନ୍ତାପରୁ ମୁଖଁ ନ ଫୁଟେ ବଚନ,
ଯାଇ କି ଦେଖିବ ମୁହିଁ ଅଯୋଧ୍ୟା ଭୁବନ ?
ରାମହୀନ ରଥକୁ ମୋ' ଯେ କେହି ଦେଖିବ,
ମୋତେ ମଧ୍ୟ ଚାହିଁବାକୁ ସେ କୁଣ୍ଠା କରିବ । ୭୨୭

ବ୍ୟାକୁଳେ ଦଉଡ଼ ଆସି ପୁର ନରନାରୀ,
ପଚାରିବେ ମୋତେ ଯେବେ ଦେଖି ରଥ ଖାଲି ।
ହୃଦ ପରେ ରଖି ଯିନା ବଜ୍ର ସୁକଠୋର,
ସେମାନଙ୍କୁ ଦେବ ମୁହିଁ କିଛି ସ୍ପଷ୍ଟ ଉତ୍ତର । ୭୨୮

ପଚାରିବେ ଯେବେ ସବୁ ଶୋକାତୁର ମାତା,
ସେମାନଙ୍କୁ କି ଉତ୍ତର ଦେବି ମୁଁ ବିଧାତା ।
ଲକ୍ଷ୍ମଣ-ଜନନୀ ଯେବେ ପଚାରିବେ ଆସି,
କହିବି କି ଅବା ସୁଖ ସମାଚାର ରାଶି । ୭୨୯

ରାମଙ୍କ ଜନନୀ ଯେବେ ଆସିବେଟି ଧାଇଁ,
ଧାଏଁ ଯେସ୍ନେ ବତ୍ସ ସ୍ମରି ପ୍ରସୂତିକା ଗାଈ ।
ପୁଣି ପଚାରିବେ, ତାଙ୍କୁ ଦେବି ଏ ଉତ୍ତର,
ବନେ ଗଲେ ରାମ ସୀତା ସୁମିତ୍ରା କୁମର । ୭୩୦

ସିଏ ପଚାରିବେ ତାଙ୍କୁ ଏ ଉତ୍ତର ଦେବି,
ଅଯୋଧ୍ୟାକୁ ଫେରି ଏବେ ଏହି ଯଶ ନେବି ।
ପଚାରିବେ ଯେବେ ନୃପ ହୋଇ ଦୁଃଖୀ ଦୀନ,
ଯାହାଙ୍କ ଜୀବନ ରଘୁନାଥଙ୍କ ଅଧୀନ— । ୭୩୧

କେଉଁ ପୋଡ଼ା ମୁହେଁ ତାଙ୍କୁ ଦେବି ମୁଁ ଉତ୍ତର,
ଭଲରେ ଆସିଲି ଛାଡ଼ି ବନସ୍ତେ କୁମର ।
ସୀତା ରାମ ଲକ୍ଷ୍ମଣଙ୍କ ଏ ସମ୍ବାଦ ପାଇଁ,
ତେଜିବେ ପରାଣ ତୃଣ ସମ ନରସାଇଁ । ୭୩୨

ପ୍ରିୟତମ ରାମ-ରୂପ-ସଲିଳ ବିରହେ,
ପଙ୍କ ପରି ନ ଫାଟି ମୋ ହୃଦ କେମନ୍ତେ ରହେ ?
ବିଧାତା ଦେଇଛନ୍ତି ମତେ ଜାଣ କରି ସ୍ଥିର,
ନର୍କ ଭୋଗ ପାଇଁ ଏହି ଯାତନା-ଶରୀର । ୭୩୩

ସୁମନ୍ତ୍ର ଏପରି ଦୁଃଖ କରୁ କରୁ ପଥେ,
ରଥ ପହଞ୍ଚିଲା ଆସି ତମସାର ତଟେ ।
ମନ୍ତ୍ରୀ ଭୃତ୍ୟେ ବିଦା କଲେ ବିନମ୍ର ବଚନେ;
ସେମାନେ ଫେରିଲେ ପଡ଼ି ବନ୍ଦିଲେ ଚରଣେ । ୭୩୪

ପୁରେ ପଶିବାକୁ ମନ୍ତ୍ରୀ ସଙ୍କୋଚ କରନ୍ତି,
ସତେ କି ସେ ବିପ୍ର ଗୁରୁ ଗାଈ ମାରିଛନ୍ତି ।
ବସି ବୃକ୍ଷ ତଳେ ସାରା ଦିବସ କଟାଇ,
ସନ୍ଧ୍ୟା ସମୟକୁ ତହୁଁ ଅବସର ପାଇ । ୭୩୫

ଅଯୋଧ୍ୟାରେ ପ୍ରବେଶିଲେ ରାତି ଅନ୍ଧକାରେ,
ନୃପତି ଭବନେ ଗଲେ ରଥ ରଖି ଦ୍ୱାରେ ।
ଯେଉଁ ଯେଉଁମାନେ ଏହି ଖବର ପାଇଲେ,
ରଥ ଦେଖିବାକୁ ରାଜଦୁଆରେ ଆସିଲେ । ୭୩୬

ରଥକୁ ଚିହ୍ନିଲେ ଦେଖି ଅଶ୍ୱଙ୍କ ବ୍ୟସ୍ତତା,
ହୃଦ ଗଲା ଦ୍ରବି ଯେସନ୍ତେ ଖରାକୁ କରକା ।
ଅଯୋଧ୍ୟାର ନର ନାରୀ ଅତି ବ୍ୟସ୍ତାତୁର,
ଶୁଖିଗଲେ ଜଳ ଯେସନ୍ତେ ବ୍ୟସ୍ତ ମୀନକୁଳ । ୭୩୭

ଏକାକୀ ସଚିବ ଫେରି ଆସିଛନ୍ତି ପୁରି,
ଶୁଣି ରାଣୀ ଅନ୍ତଃପୁର ହୋଇଲା ବ୍ୟାକୁଳ ।
ସେମାନଙ୍କ ମନେ ହେଲା ଏପରି ବିଶ୍ୱାସ,
ଏ ରାଜମହଲ ସତେ ପ୍ରେତଙ୍କ ନିବାସ । ୭୩୮

ଅତି ଆର୍ତ୍ତେ ପଚାରନ୍ତି ରାଣୀଏ ସକଳ,
ଫାଟି ଯାଏ କଣ୍ଠ ନ ଆସେ ଉତ୍ତର ।

କାନ ନ ଶୁଣଇ ଆଖି କିଛୁ ଦେଖେ ନାହିଁ,
ପଚାରିଲେ କହନ୍ତି ସେ, "ନୃପ ଛନ୍ତି କାହିଁ ?" ୭୩୯

ସଚିବଙ୍କ ବ୍ୟାକୁଳତା ଦେଖି ଦାସୀଗଣେ,
ଚଳିଲେ ତାହାଙ୍କୁ ନେଇ କୌଶଲ୍ୟା ଭବନେ ।
ସୁମନ୍ତ୍ର ଦେଖିଲେ ଯାଇ ତହିଁ ନରପତି,
ସୁଧା-ହୀନ ଚନ୍ଦ୍ର ପ୍ରାୟେ ବିରଜୁ ଅଛନ୍ତି । ୭୪୦

ଅସନ ଶୟନ ଅଙ୍ଗ ବିଭୂଷଣ ହୀନ,
ଭୂତଳେ ଲୋଟନ୍ତି ହୋଇ ବିଷାଦ ମଳିନ ।
ଚିନ୍ତାରେ ନିଅନ୍ତି ଘନ ନିଃଶ୍ୱାସ ଏପରି,
ସ୍ୱର୍ଗରୁ ଯଯାତି ଖସି ଚିନ୍ତିତ ଯେପରି । ୭୪୧

ଚିନ୍ତାରେ କ୍ଷଣକୁ କ୍ଷଣ ଭରିଯାଏ ଛାତି,
ପକ୍ଷ ଜଳିଯାଇ କିବା ପଡ଼ିଛି ସମ୍ପାତି ।
"ରାମ ରାମ" ଉଚ୍ଚାରନ୍ତି ରଘୁବର-ସ୍ନେହୀ,
କହନ୍ତି ସେ ପୁଣି "ରାମ ଲକ୍ଷ୍ମଣ ବୈଦେହୀ ।" ୭୪୨

ନୃପଙ୍କୁ ସଚିବ ଦେଖି 'ଜୟଜୀବ' କହି,
କଲେ ଦଣ୍ଡ ପ୍ରଣିପାତ ହୃଦେ ବ୍ୟଥା ବହି ।
ଶୁଣିବା ମାତ୍ରକେ ରାଜା ବ୍ୟାକୁଳେ ଉଠିଲେ,
'ସୁମନ୍ତ୍ର, ମୋ ରାମ କାହିଁ' ବୋଲି ଚିତ୍କାରିଲେ । ୭୪୩

ଧରିଲେ ମନ୍ତ୍ରୀଙ୍କୁ ରାଜା ହୃଦୟେ ଲଗାଇ,
ବୁଡ଼ିବା କାଳେ କି କିଛି ଆଶ୍ରା ଗଲେ ପାଇ ?
ଅତି ଶରଧାରେ ନୃପ ପାଖରେ ବସାଇ,
ପଚାରିଲେ ବେନି ନେତ୍ର ଲୋତକେ ଭସାଇ । ୭୪୪

କହ "ସ୍ନେହୀ-ସଖା ବେଗେ ରାମର କୁଶଳ,
କାହାନ୍ତି ଲକ୍ଷ୍ମଣ ସୀତା ରାମ ରଘୁବର ?
ଆଣିଲ ଫେରାଇ ଅବା ଗଲେ ଘୋର ବନେ ?"
ତା' ଶୁଣି ଝରିଲା ନୀର ସୁମନ୍ତ୍ର ନୟନେ । ୭୪୫

ପୁଣି ପଚାରନ୍ତି ଶୋକାକୁଳେ ନୃପବର,
"କହ ସୀତା ରଘୁବର ଲକ୍ଷ୍ମଣ ଖବର ।"
ରାମ ରୂପ-ଗୁଣ ଶୀଳ ସ୍ୱଭାବ ସକଳ,
ବ୍ୟଥିତ ହୃଦୟେ ରାଜା ଚିନ୍ତନ୍ତି କେବଳ । ୭୪୬

"ରାଜ୍ୟ ଦେବି" ବୋଲି କହି ଦେଲି ବନବାସ,
ଶୁଣି ମନେ ନ ହୋଇଲା ବ୍ୟଥିତ ଉଲ୍ଲାସ ।
ସେ ପୁତ୍ର ବିରହେ ମୋର ଯାଉନାହିଁ ପ୍ରାଣ,
ଜଗତେ କେ ପାପୀ ଆନ କହ ମୋ ସମାନ ? ୭୪୭

ଶ୍ରୀରାମ ଲକ୍ଷ୍ମଣ ସୀତା ଯହିଁ ଛନ୍ତି ଯାଇ,
ମୋତେ ନେଇ ତହିଁ ସଖା ଦିଅ ପହଞ୍ଚାଇ ।
ନୋହିଲେ କହୁଚି ସତ ମୋର ଏହି ପ୍ରାଣ,
ଏକ୍ଷଣି ଯିବାକୁ ଚେଷ୍ଟା କରୁଅଛି ଜାଣ ।" ୭୪୮

ବାରମ୍ବାର ପଚାରନ୍ତି ମନ୍ତ୍ରୀଙ୍କୁ ନରେଶ,
ଶୁଣାଅ ସୁମନ୍ତ୍ର ପ୍ରିୟ ପୁତ୍ରଙ୍କ ସନ୍ଦେଶ ।
ହେ ସଖା ସୁମନ୍ତ୍ର କର ଉପାୟ ତେସନେ,
ରାମ ସୀତା ଲକ୍ଷ୍ମଣଙ୍କୁ ଦେଖାଅ ନୟନେ ।" ୭୪୯

କହିଲେ ସଚିବ ଧୈର୍ଯ୍ୟ ଧରି ମୃଦୁବାଣୀ,
"ମହାରାଜା ତୁମେ ପରା ସୁପଣ୍ଡିତ ଜ୍ଞାନୀ ।
ତୁମ୍ଭେ ଧୀର ଶୂର ବୀରଗଣେ ସୁଅଗ୍ରଣୀ,
ସାଧୁ ସମାଜକୁ ସେବିଅଛ ନରମଣି । ୭୫୦

ଜନମ ମରଣ ଯେତେ ସୁଖ ଦୁଃଖ ଭୋଗ,
ଲାଭ ଲୋକସାନ ପ୍ରିୟ ମିଳନ ବିୟୋଗ ।
ସବୁ କାଳ କର୍ମାଧୀନ ନରପତି ଜାଣ,
ଘଟେ ଏ ସଂସାରେ ଦିବା ରଜନୀ ସମାନ । ୭୫୧

ମୂର୍ଖ ସୁଖେ ହର୍ଷ, ଦୁଃଖେ କରଇ ରୋଦନ,
ସୁଖେ ଦୁଃଖେ ସଦା-ସମଭାବ ଧୀରଜନ ।

ବିବେକ ବିସ୍ତୁର ବଳେ ଏବେ ଧୈର୍ଯ୍ୟଧର,
ସର୍ବ ହିତକାରୀ ପ୍ରଭୁ ଶୋକ ପରିହର । ୭୫୨

କାଟିଲେ ପ୍ରଥମ ଦିନ ତମସା କିନାରେ,
ଦ୍ୱିତୀୟ ଦିବସ ଗଲି ଗଙ୍ଗାନଦୀ ଧାରେ ।
ସୀତାଙ୍କ ସହିତ ଦୁଇ ଭାଇ ସେହିଠାରେ,
ସ୍ନାନ ଶେଷେ ବିତାଇଲେ ଫଳ ମୂଳାହାରେ । ୭୫୩

କୈବର୍ତ୍ତ ନିଷାଦରାଜ ବହୁ ସେବା କଲା,
ଶୃଙ୍ଗବେର ପୁରେ ତାଙ୍କ ସେ ରଜନୀ ଗଲା ।
ପ୍ରଭାତେ ମଗାଇ ବନୁ ବଟ ବୃକ୍ଷ କ୍ଷୀର,
ବିରଚିଲେ ଜଟା ବେନି ଭାଇ ନିଜ ଶିର । ୭୫୪

ତହୁଁ ରାମ-ସଖା ଏକ ନାବ ମଗାଇଲେ,
ସୀତାଙ୍କୁ ଚଢ଼ାଇ ରାମ ତା'ପରେ ଚଢ଼ିଲେ ।
ଧନୁରେ ବାଣକୁ ଯୋଖି ଲକ୍ଷ୍ମଣ ସଧୀରେ,
ପ୍ରଭୁଙ୍କ ଆଦେଶେ ଯାଇ ନାବରେ ବସିଲେ । ୭୫୫

ମୋର ବ୍ୟାକୁଳତା ଦେଖି ଶ୍ରୀ ରଘୁନନ୍ଦନ,
କହିଲେ ଧଇର୍ଯ୍ୟ ଧରି ମଧୁର ବଚନ—
ଜଣାଇବ ତାତ ମୋର ପିତାଙ୍କୁ ଜୁହାର,
ମୋ ପାଇଁ ଧରିବ ପାଦ-ପଦ୍ମ ବାରମ୍ବାର । ୭୫୬

କହିବ ବିନୟ କରି ପଡ଼ି ତାଙ୍କ ପଦେ—
ଚିନ୍ତା ନ କରିବେ ତିଳେ କେବେ ମୋ ନିମନ୍ତେ ।
କୃପା ଅନୁଗ୍ରହ ପୁଣ୍ୟ ପ୍ରଭାବେ ତୁମ୍ଭର,
ବନେ ସୁମଙ୍ଗଳ ସବୁ ହୋଇବ ଆମ୍ଭର । ୭୫୭

ବନେ ଯିବାକାଳେ ପିତା ତବ ଅନୁଗ୍ରହେ
ସକଳ ପ୍ରକାର ସୁଖ ପାଇବ ନିଶ୍ଚୟେ ।
ଆଜ୍ଞା ପାଳି ସକୁଶଳେ ବାହୁଡ଼ି ଭୁବନ,
ପୁଣି ମୁଁ କରିବ ତବ ପାଦ ଦରଶନ—୭୫୮

ତାତ, ସବୁ ମାତାଙ୍କର ପାଦ ତଳେ ପଡ଼ି,
ବିନୟ ସହିତ ତାଙ୍କ ପରିତୋଷ କରି
କହିବ ଯେପରି ପିତା କୁଶଳେ ରହିବେ;
ସେ ପାଇଁ ସକଳ ଭାବେ ଯତ୍ନ କରୁଥିବେ । ୭୫୯

ଗୁରୁଙ୍କର ପାଦ ତଳେ ପଡ଼ି ବାରମ୍ବାର,
କହିବ ଚରଣ-ପଦ୍ମ ଧରି ମୋ ଖବର ।
ମୋ ପିତା ମୋ ପାଇଁ ଚିନ୍ତା ଯେମନ୍ତେ ନ କରିବେ,
ସେ ପାଇଁ ତାହାଙ୍କୁ ଉପଦେଶ ଦେଉଥିବେ । ୭୬୦

ପରିଜନେ ପୁରଜନେ କରି ଅନୁନୟ,
ହେ ତାତ ଶୁଣାଇ ତାଙ୍କୁ ମୋହରି ବିନୟ ।
କହିବ, ପ୍ରକୃତ ମୋର ସେହି ହିତକାରୀ,
ଯା' ଉଦ୍ୟମେ ରହୁଥିବେ ସୁଖେ ଦଣ୍ଡଧାରୀ । ୭୬୧

ଆସିଲେ ଭରତ କହିବ ସନ୍ଦେଶ ଏତିକି,
ରାଜ ପଦ ପାଇ ଯେମନ୍ତେ ନ ତେଜିବ ନୀତି ।
ପାଳିବ ପ୍ରଜାଙ୍କୁ ମନ କରମ ବଚନେ,
ସେବିବ ମାତାଙ୍କୁ ସମ ଭାବରେ ଯେସନେ । ୭୬୨

ଲକ୍ଷ୍ମଣ କହିଲେ କିଛି କଠୋର ବଚନ,
ଶ୍ରୀରାମ ବାରଣ କରି କଲେ ନିବେଦନ—
କହିଲେ ସେ ତାଙ୍କ ରାଣ ନିଯ଼ମ ପକାଇ,
ତା'ର ପିଲାଳିଆ କଥା ନ କହିବା ପାଇଁ । ୭୬୩

ପ୍ରଣମି ଜାନକୀ କିଛି କହୁ କହୁ କଥା,
ଶିଥିଳ ହୋଇଲା ସ୍ନେହ ବଶେ ତନୁଲତା ।
ବଚନ ହୋଇଲା ରୁଦ୍ଧ ନେତ୍ରେ ଜଳ ଭରି,
ଦୁଃଖେ ଦେହ ସାରା ହେଲା ରୋମାଞ୍ଚ ତାଙ୍କରି । ୭୬୪

ରାମଙ୍କ ସଙ୍କେତ କିଛି ସେ ସମୟେ ପାଇ,
ପାରି ପାଇଁ ନାବ ଦେଖି କେଉଟ ଚଳାଇ ।

ରଘୁକୁଳ ମଣି ରାମ ଗଲେ ଏହିପରି—
ଠିଆ ହୋଇ ଦେଖୁଥିଲି ବକ୍ଷେ ବଜ୍ର ଧରି । ୭୬୫

ଆପଣାର କ୍ଲେଶ ମୁହିଁ କହିବି କେସନେ,
ରାମ-ବାର୍ତ୍ତା ଧରି ଯାହା ଫେରିଲି ଜୀବନେ ।
ଏହା କହି ରୁଦ୍ଧ ହେଲା ମନ୍ତ୍ରୀଙ୍କ ବଚନ,
ହାନି ଗ୍ଲାନି ଚିନ୍ତାରେ ସେ ହେଲେ ନିମଗନ । ୭୬୬

ସୁମନ୍ତ୍ର ବଚନ ଶୁଣି ଦୁଃଖେ ନରପତି,
ଭୂଇଁରେ ଲେଟିଲେ ହୃଦେ ଦାହ ହେଲା ଅତି ।
ଦାରୁଣ ମୋହରେ ମନ ହେଲା ଛଟପଟ,
ଆଦ୍ୟ ବର୍ଷା ଫେଣରେ କି ମୀନ ପାଏ କଷ୍ଟ । ୭୬୭

ବିକଳେ ବିଳପି ରାଣୀ ରୋଦନ କରନ୍ତି,
ବର୍ଣ୍ଣନା କରିବ କିଏ ସେ ମହା ବିପତ୍ତି ।
ଦୁଃଖକୁ ଲଗିଲା ଦୁଃଖ ଶୁଣି ସେ କ୍ରନ୍ଦନ,
ଧୈର୍ଯ୍ୟର ବି ଧୈର୍ଯ୍ୟଚ୍ୟୁତ ହୋଇଲା ଯେସନ । ୭୬୮

ଶୁଣି ରାଣୀ ଉଆସର ଏ କ୍ରନ୍ଦନ ରୋଳ,
ଅଯୋଧ୍ୟା ନଗରେ ହେଲା ଅତି କୋଳାହଳ ।
ମନେ ହେଉଥିଲା ସତେ ଶୁଣି ଏହି ଧ୍ୱନି,
ନଶିଥେ ବିହଗବନେ ପଡ଼ିଲା ଅଶନି । ୭୬୯

କଣ୍ଠାଗତ ପ୍ରାଣ ଆସି ହେଲେ ମହୀଧର,
ମଣିହରା ଫଣୀ ଯେହ୍ନେ ହୁଅଇ ବିକଳ ।
ବିକଳ ହୋଇଲେ ଅତି ଇନ୍ଦ୍ରିୟ ସକଳେ,
ସରୋବରେ ଜଳ ବିନା ଯେପରି କମଳେ । ୭୭୦

କୌଶଲ୍ୟା ନୃପଙ୍କୁ ଦେଖି ଏପରି ବ୍ୟଥିତ,
ଭାବି ଭାନୁକୁଳ ରବି ହେବେ ଅସ୍ତମିତ ।
ଶ୍ରୀରାମ ଜନନୀ ନିଜ ହୃଦେ ଧୈର୍ଯ୍ୟ ଧରି,
ସମୟୋପଯୋଗୀ କଥା କହିଲେ ଏପରି । ୭୭୧

"ହେ ନାଥ ହୃଦୟେ ଏହା କରନ୍ତୁ ବିଚାର,
ଶ୍ରୀରାମ-ବିରହ-ବ୍ୟଥା ସାଗର ଅପାର ।
ତୁମେ କର୍ଣ୍ଣଧାର ଏହି ଅଯୋଧ୍ୟା ଜାହାଜ,
ଚଢ଼ିଛନ୍ତି ପ୍ରିୟଜନ ବଣିକ ସମାଜ । ୭୭୨

ତୁମ ଧୈର୍ଯ୍ୟ ଫଳେ ସର୍ବେ ପାରି ହୋଇ ଯିବେ,
ନଚେତ ଏ ପରିବାର ସମସ୍ତେ ମରିବେ ।
ମୋର ଏ ପ୍ରାର୍ଥନା ଯେବେ ହୃଦୟେ ଘେନିବେ,
ଶ୍ରୀରାମ ଲକ୍ଷ୍ମଣ ସୀତା ଲେଉଟି ମିଳିବେ ।" ୭୭୩

ପ୍ରିୟତମା କୌଶଲ୍ୟାଙ୍କ କୋମଳ ବଚନ,
ଶୁଣି ରାଜା ଚେତା ପାଇ ଖୋଲିଲେ ନୟନ ।
ଛଟପଟ ହୋଇ ମରୁଥିବା ମୀନ ପରେ,
ସୁଶୀତଳ ପାଣି କିଏ ସିଞ୍ଚିଲା କି ଥରେ । ୭୭୪

ଧୈର୍ଯ୍ୟ ଧରି ଉଠି ବସି କହିଲେ ନୃପତି,
"କୃପାଳୁ ଶ୍ରୀରାମ କହ କେଉଁଠି ଅଛନ୍ତି ?
କାହିଁ ମୋ ଲକ୍ଷ୍ମଣ କାହିଁ ମୋର ରାମ ସ୍ନେହୀ,
କାହିଁ ଗଲେ ପ୍ରିୟ ପୁତ୍ରବଧୂ ବଇଦେହୀ ?" ୭୭୫

ବିକଳେ ବିଳାପ କଲେ କେତେ ନରୋତ୍ତମ,
ଶେଷ ନ ହୁଅଇ ନିଶି ଲାଗେ ଯୁଗ ସମ ।
ଅନ୍ଧ ମୁନିଙ୍କର ଶାପ ସୁମରିଲେ ମନେ,
କୌଶଲ୍ୟାଙ୍କୁ ଶୁଣାଇଲେ ସବୁ ସେହିକ୍ଷଣେ । ୭୭୬

ପୂର୍ବ କଥା ସବୁ କହି ହୋଇଗଲେ ବିକଳ,
ରାମ ବିନା ଧିକ ପ୍ରାଣ ଆଶା ଏ ମୋହର ।
କି ଲାଭ ରଖି ଏ ଦେହ ଗଲେ କେଉଁ କ୍ଷତି,
ମୋର ପ୍ରେମପଣ ଯିଏ ନ କଲା ନିଷ୍ପତ୍ତି । ୭୭୭

ହେ ରଘୁନନ୍ଦନ ରାମ ପ୍ରାଣପ୍ରିୟ ପରା,
କିବା ବିନେ ଜୀବନେ ରହିବି ବହୁଦିନ ଗଲା ।

'ହା ଲକ୍ଷ୍ମଣ ହା ମୋ ସୀତା ହା ରଘୁନନ୍ଦନ,'
ଆହ୍ୱାରେ ତୁ ପିତା-ଚତ୍ର-ଗୃତକର ଘନ । ୭୭୮

ରାମ ରାମ କହି ରାମ ନାମ ଥର ଥର,
ଶ୍ରୀରାମ ବିରହେ ଦଶରଥ ନୃପବର ।
ପରିହରି ମର ତନୁ ଗଲେ ସୁରଲୋକ,
ଲିଭିଗଲା ଅଯୋଧ୍ୟାର ଉଜ୍ଜ୍ୱଳ ଆଲୋକ । ୭୭୯

ଜୀବନ ମରଣ ଫଳ ଲଭିଲେ ନୃପତି,
ବ୍ୟାପିଗଲା ବ୍ରହ୍ମାଣ୍ଡରେ ବିମଳ କୀରତି ।
ଦେଖୁଥିଲେ ରାମ ମୁଖ-ଚନ୍ଦ୍ର ସେ ଜୀବନେ,
ମୃତ୍ୟୁ ଆଦରିଲେ ରାମ-ବିୟୋଗ କାରଣେ । ୭୮୦

ଶୋକାକୁଳେ ବିଳପନ୍ତି ଉଚ୍ଚେ ସବୁ ରାଣୀ,
ରୂପ ଶୀଳ ତେଜ ବଳ ସକଳ ବଖାଣି ।
କରନ୍ତି ବିଳାପ ସେ ତ ଅନେକ ପ୍ରକାରେ,
ବାରମ୍ବାର ମୁଣ୍ଡ ପିଟି ଲୋଟନ୍ତି ଧରାରେ । ୭୮୧

ବିଳପନ୍ତି ବିକଳରେ ଯେତେ ଦାସ ଦାସୀ,
କରନ୍ତି କ୍ରନ୍ଦନ ଘରେ ଘରେ ପୁରବାସୀ ।
କହନ୍ତି ସେ ଧର୍ମ ଧୀମା, ରୂପ ଗୁଣାକର,
ଅସ୍ତ ହେଲେ ଆଜ ରବି-କୁଳ-ଦିବାକର । ୭୮୨

ସମସ୍ତେ କରନ୍ତି ଗାଳି କୈକେୟୀଙ୍କି ତହିଁ,
ଅନ୍ଧ ହୋଇ ଯିଏ କଲା ନେତ୍ରହୀନ ମହୀ ।
ରାତି ଗଲା ପାହି କରୁ ଏ ଭାବେ କ୍ରନ୍ଦନ,
ପ୍ରଭାତେ ଆସିଲେ ମହାମୁନି ଜ୍ଞାନୀଗଣ । ୭୮୩

ମହର୍ଷି ବଶିଷ୍ଠ କରି ସୁଜ୍ଞାନ ପ୍ରକାଶ,
କହି ସମୟାନୁକୂଳ ନାନା ଇତିହାସ,
ସଭିଙ୍କ ଅନ୍ତରୁ ଦୂର କଲେ ମହାଶୋକ,
ଧର୍ମ କୁଳଗୁରୁ ମହାମୁନି ପୁଣ୍ୟଶ୍ଳୋକ । ୭୮୪

ତହୁଁ ତୈଳାଧାରେ ରଖି ନୃପ କଳେବର,
ଦୂତଙ୍କୁ ଡକାଇ ପାଶେ କହିଲେ ସତ୍ୱର—
"ଭରତଙ୍କ ପାଶେ ଶୀଘ୍ର ଯିବ ଧାଇଁ ଧାଇଁ,
କା' ଆଗେ ନୃପଙ୍କ କଥା କହି ଦେବ ନାହିଁ । ୭୮୫

ଏତିକ କହିବ ତୁମେ ଭରତଙ୍କୁ ଯାଇ,
ଉଭୟ ଭାଇଙ୍କୁ ଗୁରୁ ଅଛନ୍ତି ଡକାଇ ।"
ମୁନିଙ୍କ ଆଦେଶେ ଧାଇଁଗଲେ ଚରତରେ,
ଉତ୍ତମ ଅଶ୍ୱଙ୍କ ଗତି ନିନ୍ଦି ଅନୁଚରେ । ୭୮୬

ଅଯୋଧ୍ୟାରେ ଯେଉଁକାଳୁ ହେଲାଣି ଅନର୍ଥ,
ଭରତଙ୍କୁ ହେଉଥାଏ କୁଶକୁନ ଶତ ।
ଭୟଙ୍କର ସ୍ୱପ୍ନମାନ ଦେଖନ୍ତି ନିଶିରେ,
ଜାଗି କୋଟି ମନ୍ଦ ଚିନ୍ତା କରୁଥାନ୍ତି ଚିତ୍ତେ । ୭୮୭

ପ୍ରତ୍ୟହ କରନ୍ତି ଦାନ ବିପ୍ରଙ୍କୁ ଭୁଞ୍ଜାଇ,
ନାନା ରୁଦ୍ର ଅଭିଷେକ ଶିଷ୍ଟ ନାଶ ପାଇଁ ।
ହୃଦୟରେ ମନାସନ୍ତି ପୂଜି ମହେଶ୍ୱର,
ପିତା ମାତା ପରିବାର ଭାଇଙ୍କ କୁଶଳ । ୭୮୮

ମନେ ଭାବୁଥିବା କାଳେ ଭରତ ଏପରି,
ଦୂର ହେଲ ଉପସ୍ଥିତ ଗୁରୁ ଆଜ୍ଞା ଧରି ।
ଗୁରୁଙ୍କ ଆଦେଶ ପାଇ ଗଣେଶଙ୍କୁ ସ୍ମରି,
ଭରତ ଚଳିଲେ ବେଗେ ଅଯୋଧ୍ୟା ନଗରୀ । ୭୮୯

ଚଳାଇ ତୁରଗେ ଗଲେ ପବନ ବେଗରେ,
ସରିତ ଶଇଳ ଘୋର ବନ ଲଂଘି ଖରେ ।
ହୃଦେ ବଡ଼ ଚିନ୍ତା କିଛି ଭଲ ନ ଲାଗଇ,
ଯାଆନ୍ତେ କି ଉଡ଼ି ପୁରେ ମନରେ ଆସଇ । ୭୯୦

ଗୋଟିଏ ମୂହୂର୍ତ୍ତ ଏକ ବର୍ଷ ପରି କଟେ,
ଏପରି ଭରତ ହେଲେ ନଗର ନିକଟେ ।

କୁଶକୁନ ଦେଖିଲେ ସେ ପୁର ମଧ୍ୟେ ପଶି,
କର୍କଶ ରାବଇ କାକ କୁସ୍ଥାନରେ ବସି । ୭୯୧

ଗଧ ଓ ଶୃଗାଳେ କଲେ ପ୍ରତିକୂଳ ରଡ଼ି,
ଭରତ ହୃଦୟେ ବ୍ୟଥା ଯାଉଥାଏ ଭରି ।
ଶୋଭାହୀନ ନଦୀ ବନ ଉପବନ ସର,
ଅତିଶୟ ଭୟାନକ ଲାଗଇ ନଗର । ୭୯୨

କେ ଗୃହୀଁବ ପଶୁପକ୍ଷୀ ଘୋଡ଼ା ହାତୀଗଣେ,
ଶ୍ରୀରାମ-ବିରହ-ବେଗେ ପୀଡ଼ିତ ଯେସନେ ।
ପୁର ନରନାରୀ ସର୍ବେ ଦଶନ୍ତି ବିଷଣ୍ଣ,
ହରାଇ ଅଛନ୍ତି ସବୁ ସମ୍ପତ୍ତି ଯେସନ । ୭୯୩

ପଥରେ ଭେଟନ୍ତି ଆସି ଯେତେ ପୁରଜନ,
ଯାଆନ୍ତି ଜୁହାର କରି ନ କହି ବଚନ ।
ପଚ୍ଚରି ପାରନ୍ତି ନାହିଁ କୁଶଳ ଖବର,
ଆଶଙ୍କା ବିଷାଦେ ଚିତ୍ତ ହୁଏ ଥର ଥର । ୭୯୪

ହାଟ ବାଟ କାହିଁ କିଛି ଆଖିକି ନ ଦିଶେ,
ଦାବାଗ୍ନି ଯାଇଛି ଲାଗି ଅବା ଦଶଦିଶେ ।
ପୁତ୍ର ଆସୁଅଛି ଶୁଣି କେକୟ ନନ୍ଦିନୀ,
ଖୁସି ହେଲେ ରବି-କୁଳ-କମଳ-ଗୃହିଣୀ । ୭୯୫

ସଜାଇ ଆଳତି ଉଠି ହରଷେ ଧାଇଁଲେ,
ଦ୍ୱାରେ ଭେଟି ତାଙ୍କୁ ନିଜ ଭବନେ ଆଣିଲେ ।
ସାରା ପରିବାର ଦୁଃଖୀ ଦେଖିଲେ ଭରତ,
ଶିଶିର ଜାଳିଛି ଅବା କମଳ-ବନସ୍ତ । ୭୯୬

ଏକା କୈକେୟୀଙ୍କ ଖୁସି ଦେଖି ଲାଗେ ମନେ,
ବନେ ଅଗ୍ନି ଜାଳି ଖୁସି ଶବରୀ ଯେସନେ ।
ପୁତ୍ରକୁ ବିରସ ଚିନ୍ତାକୁଳ ଦେଖି ମାତା,
ପଚ୍ଚରନ୍ତି ବାପଘର କୁଶଳ ବାରତା । ୭୯୭

ଭରତ ଶୁଣାଇ ତହୁଁ ସକଳ କୁଶଳ,
ପଚାରିଲେ ଆଉ ନିଜ କୁଳର ମଙ୍ଗଳ ।
କାହିଁଛନ୍ତି ପିତା କାହିଁ ଅନ୍ୟ ସବୁ ମାତା,
ଲକ୍ଷ୍ମଣ ଜାନକୀ ରାମ ପ୍ରାଣ ପ୍ରିୟ ଭ୍ରାତା । ୭୯୮

ତନୟର ସ୍ନେହମୟ ବଚନ ଶ୍ରବଣେ,
କପଟାଶ୍ରୁ ପୂର୍ଣ୍ଣ କରି ପାପିନୀ ନୟନେ,
ଭରତ କାନରେ ମର୍ମଭେଦୀ ଶୂଳ ପରି,
ବଚନ କହିଲେ ମନେ କୁବାସନା ଭରି । ୭୯୯

"ପୁଅରେ ସମସ୍ତ କାର୍ଯ୍ୟ ଥିଲି ମୁଁ ସମ୍ଭାଳି,
ବହୁତ ସାହାଯ୍ୟ କଲା ମନ୍ଥରା ବିଚାରୀ ।
ମଝିରେ ବିଧାତା କିଛି ବିଗାଡ଼ିଲା କାମ,
ନୃପତି ପ୍ରୟାଣ କରି ଗଲେ ସ୍ୱର୍ଗଧାମ ।" ୮୦୦

ଶୁଣି ତା' ଭରତ ହେଲେ ବିଷାଦେ ବିଷଣ୍ଣ,
ହାତୀ ଶଙ୍କେ ଯେମନ୍ତେ ଶୁଣି ସିଂହର ଗର୍ଜନ ।
ହା' ପିତା ହା' ପିତା ବୋଲି ଉଚାରି ଉଚରେ,
ପଡ଼ିଲେ କରୁଣ ହୋଇ ବ୍ୟାକୁଳେ ଭୂତଳେ । ୮୦୧

ଦେଖି ନ ପାରିଲି ଯିବା ସମୟେ ତୁମରି,
ରାମଙ୍କୁ ନ ଅର୍ପି ମୋତେ ଗଲ କେଉଁପରି ।
ବହୁ ଧୈର୍ଯ୍ୟ ଧରି ପୁଣି କହିଲେ ବଚନ,
"କହ ମାତ ପିତାଙ୍କର ମୃତ୍ୟୁର କାରଣ ।" ୮୦୨

ପୁତ୍ରର ପ୍ରଶ୍ନରେ ପୁଣି କୈକେୟୀ କହିଲେ,
ମର୍ମସ୍ଥଳ ଚିରି ଅବା ଗରଳ ଭରିଲେ ।
ପ୍ରଥମୁଁ କୁକର୍ମମାନ ଯେତେ କରିଥିଲେ,
କଠୋର କୁଟିଳା ହର୍ଷଭରେ ବଖାଣିଲେ । ୮୦୩

ରାମ ବନେ ଗଲେ ଶୁଣି କୈକେୟୀନନ୍ଦନ,
ଭରତ ଭୁଲିଲେ ନିଜ ପିତାଙ୍କ ମରଣ ।

ସବୁ ଅନର୍ଥର ହେତୁ ନିଜକୁ ଗ୍ରାବିଲେ,
ମୂକ ସ୍ତମ୍ଭୀଭୂତ ହୋଇ ଯେଇଠି ରହିଲେ । ୮୦୪

ପୁରର ବିକଳ ଦେଖି ବୁଝାଇଲେ ରାଣୀ,
ପୋଡ଼ା ଘାଆରେ ସେ ଅବା ଲୁଣ ଦେଲେ ଆଣି ।
କହିଲେ, "ରାଜାଙ୍କ ପାଇଁ ଶୋକ ଅନୁଚିତ,
ବହୁ ପୁଣ୍ୟ ଯଶ ଅର୍ଜି ଭୋଗିଲେ ସେହି ତ । ୮୦୫

ଲଭିଲେ ଜନ୍ମର ଫଳ ସବୁ ସେ ଜୀବନେ,
ପ୍ରାପ୍ତ ହେଲେ ଇନ୍ଦ୍ର ଲୋକ ଶେଷରେ ମରଣେ ।
ଏମନ୍ତ ବିଗ୍ୟରି ମନେ ଶୋକ ପରିହରି,
ପାଳ ମନ୍ତ୍ରୀ ସହ ପୁରେ ରାଜପଣ କରି ।" ୮୦୬

ଶୁଣି ଶଙ୍କି ଗଲେ ଅତି ସେ ରାଜକୁମର,
ପାଚିଲା ବଥେ କି ବାଜିଗଲା ନିଆଁ ରଢ଼ ।
ଧୈର୍ଯ୍ୟ ଧରି ହୃଦୟରେ ନେଇ ଦୀର୍ଘଶ୍ୱାସ,
କହିଲେ, "ପାପିନୀ କଲୁ ଏ କୁଳ ବିନାଶ !! ୮୦୭

ଏ ଭଳି କୁତ୍ସିତ ଯଦି ଥିଲା ତୋ' ହୃଦୟେ,
କିମ୍ପା ନ ମାରିଲୁ ମୋତେ ଜନ୍ମିଲା ସମୟେ ।
ଗଛ ମୂଳ କାଟି ପାଣି ପଲ୍ଲବେ ସିଞ୍ଚିଲୁ,
ମୀନ ବଞ୍ଚାଇବା ପାଇଁ ପାଣି ଶୁଖାଇଲୁ ? ୮୦୮

ସୂର୍ଯ୍ୟବଂଶ ସମ ବଂଶେ ହୋଇଥିଲି ଜାତ,
ମହାରାଜା ଦଶରଥ ହୋଇଥିଲେ ତାତ ।
ଶ୍ରୀରାମ ଲକ୍ଷ୍ମଣ ସମ ପାଇଥିଲି ଭାଇ,
ମାତା ଗୋ ତୁ ଜନ୍ମଦାତ୍ରୀ ହେଲୁ କାହିଁ ପାଇଁ ?
ବିଧାତାର ବିଧାନରେ ମଣିଷର ବଶ,
କିଛି ନାହିଁ ଏ କଥା ମୁଁ ଜାଣୁଚି ଅବଶ୍ୟ । ୮୦୯

କୁମତି ଯେ ହିନ କଲୁ କୁବୁଦ୍ଧି ଏପରି,
ଖଣ୍ଡ ଖଣ୍ଡ ନ ଫାଟିଲା ତୋ' ଛାତି ଉପରି ?

ଏ ବର ତୁ ମାଗି ହୃଦେ ପୀଡ଼ା ନ ହୋଇଲା,
ଜିଭ ନ ଛିଣ୍ଡିଲା ମୁହେଁ ପୋକ ନ ପଡ଼ିଲା ? ୮୧୦

ବିଶ୍ୱାସ କରିଲେ ତୋତେ କେମିତି ନୃପତି,
ମୃତ୍ୟୁ କାଳେ ବିଧି ହରି ନେଲା ତାଙ୍କ ମତି ।
ନାରୀଗତି ବିଧାତା ବି ନ ଜାଣଇ ପରା,
ସକଳ କପଟ ପାପ ଅବଗୁଣେ ଭରା । ୮୧୧

ରାଜା ତ ସୁଶୀଳ ସିଧା ଧର୍ମପରାୟଣ,
ସେ ଜାଣିବେ କାହୁଁ ନାରୀ ସ୍ୱଭାବ କଅଣ ?
ଏପରି କେ ଜୀବଜନ୍ତୁ ଅଛନ୍ତି ବିଶ୍ୱରେ,
ରଘୁନାଥ ଯା'ର ପ୍ରିୟ ନୁହନ୍ତି ଅନ୍ତରେ । ୮୧୨

ସେହି ରାମ ହେଲେ ତୋତେ ଅହିତ କପରି,
କଏ ତୁହି ମତେ ଏବେ କହ ସତ କରି ।
ଯିଏ ଯିଏ ହୁଅ ପଛେ ମୁହେଁ ବୋଳି କଳା,
ମୋ' ଆଖି ଆଗରୁ ଏବେ ବେଗି ଉଠି ପଳା । ୮୧୩

ନିଠୁର ବିଧାତା କିଆଁ ମୋତେ ଅବା ହେଲେ,
ତୋ' ରାମ-ବିରୋଧୀ ହୃଦୟରୁ ଜନ୍ମ ଦେଲେ ।
ତେଣୁ ମୋହ ସମ ପାପୀ ଜଗତେ କେ ଅଛି ?
ବୃଥାରେ ମୁଁ ସିନା ତୋତେ ଯାହା କହୁଅଛି ? ୮୧୪

ମାତାଙ୍କର କୁଟିଳତା ଶୁଣି ଶତ୍ରୁଘନ,
କ୍ରୋଧେ ଜଳେ ତନୁ ମୁଖେ ନ ସ୍ଫୁରେ ବଚନ ।
କୁବୁଜା ସେ କାଳେ ତହିଁ କଲା ଆଗମନ,
ସଜାଇ ଦେହରେ ନାନା ବସନ ଭୂଷଣ ।" ୮୧୫

ବେଶ ଦେଖି କ୍ରୋଧେ ଲକ୍ଷ୍ମଣଙ୍କ ସାନଭାଇ,
ଜଳନ୍ତା ଅନଳ ଯେହ୍ନେ ଘୃତାହୁତି ପାଇ—
ମାରିଲେ ଗୋଇଠା ଏକ ଦେଖି ତା କୁଜରେ,
ପାଟି କରି ମୁହିଁ ମାଡ଼ି ପଡ଼ିଲା ସେ ତଳେ । ୮୧୬

ଭାଙ୍ଗିଗଲା କୁଜ ଗୋଟି ଫାଟିଲା କପାଳ,
ଦାନ୍ତ ଭାଙ୍ଗିଗଲା ମୁଖୁଁ ବହେ ରକ୍ତଧାର ।
କହିଲା ସେ, 'ଦଇବ ମୁଁ କି କ୍ଷତି କରିଲି,
ଭଲ କରି ତା'ର ଫଳ ଓଲଟା ପାଇଲି ।' ୮୧୭

ତା'ଶୁଣି ଶତ୍ରୁଘ୍ନ ଜାଣି ନଖ-ଶିର ଖଳ,
ଚୁଟି ଧରି ତା'ର ଘୋଷାରିଲେ ଭୂଇଁତଳ ।
କୃପାଳୁ ଭରତ ନଦେଲେ ତାହାକୁ ଛଡ଼ାଇ,
ପରେ କୌଶଲ୍ୟାଙ୍କ ପାଶେ ଗଲେ ବେନି ଭାଇ । ୮୧୮

ଦେଖିଲେ କୌଶଲ୍ୟା ମାତା ମଳିନ ବସନା,
ଦୁଃଖ ଭରେ କୃଶ ତନୁ ବିକଳ ବିବର୍ଣ୍ଣା ।
ସୁନ୍ଦର ସୁବର୍ଣ୍ଣ କଳ୍ପଲତାକୁ କାନନେ,
ନାଶ କରି ପକାଇଛି ତୁଷାର ଯେସନେ । ୮୧୯

ଭରତକୁ ଦେଖି ଉଠି ଜନନୀ ଧାଇଁଲେ,
ଝାଇଁ ମାରି ମୂର୍ଚ୍ଛା ହୋଇ ମହୀରେ ପଡ଼ିଲେ ।
ତା'ଦେଖି ଭରତ ଅତି ବ୍ୟସ୍ତାକୁଳ ମନେ,
ତାଙ୍କ ଦେହ ଦଶା ଭୁଲି ପଡ଼ିଲେ ଚରଣେ । ୮୨୦

"ମାତା ଗୋ କାହାନ୍ତି ପିତା ଦିଅ ମା' ଦେଖାଇ,
କାହାନ୍ତି ଜାନକୀ ରାମ ଲକ୍ଷ୍ମଣ ମୋ ଭାଇ ।
ଜଗତେ କୈକେୟୀ କିଆଁ ଜନମ ହୋଇଲା ?
ଯଦି ଜନ୍ମ ହେଲା କିଆଁ ବାଂଝ ନ ହୋଇଲା ? ୮୨୧

କୁଳର କଳଙ୍କ ମୋହ ପରି ଜନ୍ମ ଦେଇ,
ଅପଣ ଭାଜନ କଲା ପ୍ରିୟଜନ ଦ୍ରୋହୀ ।
ମୋ ସମ ଅଭାଗା କିଏ ଏ ତିନି ଭୁବନେ,
ଯା'ପାଇଁ ଜନନୀ ହେଲା ତୋ' ଦଶା ଏସନେ । ୮୨୨

ପିତା ସ୍ୱର୍ଗପୁରେ, ରଘୁପତି ଗଲେ ବନ,
କେତୁ ପରି ମୁଁ କେବଳ ଅନର୍ଥ କାରଣ ।

ଧିକ ମୋତେ, ମୁଁ ବାଉଁଶ ବନକୁ ଅନଳ,
ଦୁଃଖ ଦାହ ଦୋଷାଦିର ମୁଁ ଭାଗୀ କେବଳ ।” ୮୨୩

ଭରତ କୋମଳ କଥା ରାମମାତା ଶୁଣି,
ନିଜକୁ ସମ୍ଭାଳି ତତ୍ତ୍ୱ ଉଠିଗଲେ ପୁଣି ।
କକ୍ଷେ ନେଇ ଭରତଙ୍କୁ କଲେ ଆଲିଙ୍ଗନ,
ନୟନରୁ ହେଲା ଖାଲି ଲୋତକ ପ୍ଲାବନ । ୮୨୪

ସରଳ ସ୍ୱଭାବେ ମାତା ଆଉଜାଇ ବକ୍ଷେ,
ଭାବିଲେ ଶ୍ରୀରାମ ଫେରି ଆସିଛନ୍ତି ସତେ ।
ଲକ୍ଷ୍ମଣ ଭାଇଙ୍କୁ କଲେ ଆଲିଙ୍ଗନ ପରେ,
ଅତି ଶୋକ ସ୍ନେହାବେଗ ହୃଦୟେ କି ଧରେ ? ୮୨୫

ଏପରି ସ୍ୱଭାବ ଦେଖି କହିଲେ ସମସ୍ତେ,
ରାମ-ମାତା ନ ହୋଇବେ ଏପରି କେମନ୍ତେ ?
ଭରତଙ୍କୁ କୋଳେ ନେଇ କଉଶଲ୍ୟା ରାଣୀ,
କହିଲେ କୋମଳ ବାଣୀ ନେତ୍ର ପୋଛୁ ପାଣି । ୮୨୬

“ମରିଯାଏ ଧନ ଏବେ ହୃଦେ ଦମ୍ଭ ଧର,
ଦୁର୍ଦ୍ଦିନ ବିଚାରି ମନୁ ଶୋକ ପରିହର ।
ନ ଆଣ ହୃଦୟେ କିଛି ହାନି ଅବା ଗ୍ଲାନି,
କାଳ ଓ କର୍ମର ଗତି ଅନିବାର୍ଯ୍ୟ ଜାଣି । ୮୨୭

କାହାକୁ ବୃଥାରେ ଦୋଷ ନ ଦିଅ ଭରତ,
ମୋ ପାଇଁ ବିଧାତା ବାମ ହୋଇଅଛି ସତ ।
ଏତେ ଦୁଃଖେ ଯିଏ ମତେ ରଖିଛି ଜୀଆଇ,
କିଏ ଜାଣେ ଆଉ କିବା ରଖିଛି ମୋ ପାଇଁ । ୮୨୮

ତେଜିଲା ଭୂଷଣ ବାସ ପିତାଦେଶ ପାଇ,
ନ ଥିଲା ତା ମନେ ହର୍ଷ ବିଷାଦର ଛାଇ ।
ପିନ୍ଧିଲା ବକ୍‌କଳ ବାସ, ଗଲା ଘୋର ବନ,
ଅଭାଗିନୀ ହୃଦ-ହାର ମୋ ରଘୁନନ୍ଦନ । ୮୨୯

ପ୍ରସନ୍ନ ବଦନ, ନାହିଁ ମନେ ରାଗ ରୋଷ,
ସବୁ ମନ୍ତ୍ରେ ସମସ୍ତଙ୍କୁ କଲେ ପରିତୋଷ ।
ବନ ଯିବା ଜାଣି ସୀତା ହୋଇଲେ ସଙ୍ଗିନୀ,
ନୁହନ୍ତି କପରି ରାମ ପଦାନୁଗାମିନୀ ? ୮୩୦

ଲକ୍ଷ୍ମଣ ଶୁଣିବା ମାତ୍ରେ ଉଠି ସଙ୍ଗେ ଗଲେ,
ଘରେ ନ ରହିଲେ, ରାମ ଯେତେ ଯତ୍ନ କଲେ ।
ସଭିଙ୍କୁ ପ୍ରଣାମ କରି ମୋ ରଘୁନନ୍ଦନ,
ଜାନକୀ ଲକ୍ଷ୍ମଣ ସାଥେ ଚାଲିଗଲେ ବନ । ୮୩୧

ମୋ ରାମ ସୌମିତ୍ରୀ ସୀତା ଗଲେ ଘୋର ବନ,
ମୁଁ ସଙ୍ଗେ ଯାଇନି ଅବା ପଠାଇନି ପ୍ରାଣ ।
ପୋଡ଼ା ଆଖି ଆଗେ ମୋର ଏ ସବୁ ଘଟିଲା,
ତେବେ ହେଁ ଅଭାଗୀ ପ୍ରାଣ ଦେହ ନ ଛାଡ଼ିଲା । ୮୩୨

ନିଜ ସ୍ନେହ ଦେଖି ମତେ ଲାଜ ନ ଲାଗଇ,
ରାମ ପରି ପୁଅର ମୁଁ ଜନନୀ ଅଟଇ ।
ଜୀଇବା ମରିବା ଭଲ ଜାଣିଥିଲେ ନୃପ,
ଶତ ବଜ୍ର ସମ କଠୁ ମୋ ହୃଦୟ ବାପ ।” ୮୩୩

କୌଶଲ୍ୟାଙ୍କ କଥା ଶୁଣି ରାଣୀ ଅନ୍ତଃପୁରେ,
ଭରତ ସହିତେ ବିଳପିଲେ ଉଚ୍ଚ ସ୍ୱରେ ।
ମନେ ହେଲା ଯତେ ଅବା ସେ ରାଜ-ଉଆସ,
ପାଲଟି ଯାଇଛି ଶୋକ-ସନ୍ତାପ ନିବାସ । ୮୩୪

ଭରତ ଶତ୍ରୁଘ୍ନ ଦୁହେଁ କାନ୍ଦନ୍ତି ବିକଳେ,
ମାତା କଉଶଲ୍ୟା ତାଙ୍କୁ ଜାବୁଡ଼ିଲେ କୋଳେ ।
ନୀତି ବିଚୁରତା-ପୂର୍ଣ୍ଣ କଥା କହି କେତେ,
ଦୁଃଖିନୀ କୌଶଲ୍ୟା-ମାତା କହିଲେ ଭରତେ । ୮୩୫

ନାନାବିଧ ପୁରାଣ ଶ୍ରୁତି କଥା ମନୋହର,
ଭରତ କହିଲେ ତହୁଁ ଯୋଡ଼ି ବେନି କର —

ସୁନ୍ଦର ପବିତ୍ର ଛଳ ରହିତ ସରଳ,
ସେ ବଚନ ରାଜ ମୃଦୁ ମଧୁର ବିମଳ । ୮୩୬

"ଯେଉଁ ପାପ, ପିତା ମାତା ପୁତ୍ରକୁ ମାରିଲେ,
ଗାଈ ଗୋଠ ବିପ୍ର ପୁରେ ନିଆଁ ଲଗାଇଲେ ।
ଯେଉଁ ପାପ ହୁଏ ବଧ କଲେ ଶିଶୁ ନାରୀ,
ବିଷ ଖୁଆଇଲେ ମିତ୍ର ଜନେ, ଦଣ୍ଡଧାରୀ ।
ଗୁରୁ ଲଘୁ ପାପ ଯେତେ ଅଛି ଏ ଭୁବନେ,
କବି ଯାହା କହେ ମନ କର୍ମ ଓ ବଚନେ ।
ସବୁ ପାପ ମୋତେ ମାତା ନିଶ୍ଚୟ ଲଗିବ,
ହେ ବିଧାତା ଏ କର୍ମେ ମୋ' ଯଦି ମତ ଥିବ । ୮୩୭

ପରିହରି ହରିହର ଚରଣ ବନ୍ଦନ,
ଭୂତ ପ୍ରେତ ଗଣକୁ ଯେ କରଇ ଭଜନ ।
ବିଧାତା ଦିଅନ୍ତୁ ମୋତେ ତାହାର ଦୁର୍ଗତି,
ମାତା ଗୋ, ଏଥିରେ ଯଦି ଥିବ ମୋ ସମ୍ମତି । ୮୩୮

ବେଦ ଧର୍ମ ବିକି କରେ ଯେ ଅର୍ଥ ଅର୍ଜନ,
ଚୁଗୁଲିଆ, ପର ପାପ କରେ ପ୍ରକଟନ ।
କପଟୀ କଳହ ପ୍ରିୟ ଯେ କୁଟିଳ କ୍ରୋଧୀ,
ଯେ ବେଦ ନିନ୍ଦୁକ ପୁଣି ଜଗତ ବିରୋଧୀ । ୮୩୯

ଯେ ଲୋଭୀ ଲମ୍ପଟ ଆଉ ଯେ ଲୋଲୁପାଚାରୀ,
ପରଧନେ ଯା'ର ମତି, ରତି ପରନାରୀ ।
ଲଭିବି ମୁଁ ଏମାନଙ୍କ ଚରମ ଦୁର୍ଗତି,
ମାତା ଗୋ, ଏଥିରେ ଯଦି ଥାଏ ମୋ ସମ୍ମତି । ୮୪୦

ସତ୍ସଙ୍ଗେ ଯାହାର ନାହିଁ ତିଳେ ଅନୁରାଗ,
ପରମାର୍ଥ ପଥେ ସଦା ଯାହାଙ୍କ ବିରାଗ ।
ନର ଦେହ ପାଇ ଯେହୁ ହରି ନ ଭଜଇ,
ହରିହର ଯଶକୁ ଯେ ଅଭଲ ମଣଇ । ୮୪୧

ତିଆଗି ଧରମ ପଥ ଚଳେ ସ୍ୱଇଚ୍ଛାରେ,
ଭଣ୍ଡ ସାଧୁ ବେଶେ ଯିଏ ଭଣ୍ଡଇ ସଂସାରେ ।
ତାଙ୍କର ଦୁର୍ଗତି ମୋତେ ଦିଅନ୍ତୁ ଈଶ୍ୱର,
ଏ ଭେଦକୁ ଜାଣିଥିବ ଯଦି ମୋ ଅନ୍ତର ।" ୮୪୨

ସ୍ୱଭାବ ସରଳ ସତ୍ୟ ଭରତ ବଚନ,
ଶୁଣି କଉଶଲ୍ୟା ମାତା କହିଲେ ଏସନ—
"ବାପରେ ତୁ ତୋର ମନ ବଚନ ଶରୀରେ,
ସଦା ରାମ ପ୍ରିୟ ନାହିଁ ସନ୍ଦେହ ଏଥିରେ । ୮୪୩

ରାମ ତୋର ଜୀବନର ଜୀବନ ଭରତ,
ରାମକୁ ତୁ ପ୍ରାଣୁ ବଳି ପ୍ରିୟ ଅବିରତ ।
ଚନ୍ଦ୍ରମାରୁ ବିଷ ଅବା ତୁଷାରୁ ଅନଳ,
ଝରୁ, ବାରି-ଅନାସକ୍ତ ହେଉ ଜଳଚର । ୮୪୪

ଜ୍ଞାନୋଦୟ ସତ୍ତ୍ୱେ ମୋହ କାହିଁ ବା ରହିବ,
କିନ୍ତୁ ରାମ ପ୍ରତିକୂଳ ତୁମେ ନ ହୋଇବ ।
ଯଦି କେ କହିବ ତୋର ଏଥିରେ ସମ୍ମତି,
ସ୍ୱପ୍ନେ ସେ ଲଭିବ ନାହିଁ ସୁଖ ଓ ସୁଗତି ।" ୮୪୫

କହି ବକ୍ଷେ ନେଇ ମାତା କଲେ ଆଲିଙ୍ଗନ,
ସ୍ତନୁ କ୍ଷୀର ଝରେ, ନୀରେ ଉଚ୍ଛୁଳେ ନୟନ ।
ବହୁତ ବିଳାପ କରୁ କରୁ ଏହିପରି,
ବସି ବସି ଗତ ହେଲା ସାରା ବିଭାବରୀ । ୮୪୬

ତହୁଁ ମୁନି ବାମଦେବ ବଶିଷ୍ଠ ଆସିଲେ,
ସଚିବ ସକଳ ମହାଜନେ ଡକାଇଲେ ।
ଭରତଙ୍କୁ ଦେଲେ ମୁନି ବହୁ ଉପଦେଶ,
କହି ପରମାର୍ଥ ପୂର୍ଣ୍ଣ ବଚନ ବିଶେଷ । ୮୪୭

"ବତ୍ସ, ଯା କରିବା କଥା ଆଜ ଏ ବାସରେ,
ତାହା ସବୁ କର ଧୈର୍ଯ୍ୟ ଧରି ହୃଦୟରେ ।"

ଭରତ ଉଠିଲେ ଶୁଣି ଗୁରୁଙ୍କ ବଚନ,
ଆଜ୍ଞା ଦେଲେ କରିବାକୁ ସବୁ ଆୟୋଜନ । ୮୪୮

ବେଦ ମତେ ନୃପ ତନୁ କରାଇଲେ ସ୍ନାନ,
ତହୁଁ ବିରଚିଲେ ଏକ ବିଚିତ୍ର ବିମାନ ।
ମାତାଙ୍କ ପୟର ଧରି ରଖିଲେ ଭରତ,
ରହିଲେ ସେମାନେ ଛେଡ଼ି ସତୀ ମନୋରଥ ।
ରାମ-ଦରଶନ ଆଶା ହୃଦୟେ ସାଇତି,
ପ୍ରାଣ ଧରି ରହିଗଲେ ରାଣୀଏ ସେମିତି । ୮୪୯

ଅଣାଇ ବହୁତ ଘିଅ ଅଗୁରୁ ଚନ୍ଦନ,
ବହୁ ସୁବାସିତ ଦ୍ରବ୍ୟ କରି ଆୟୋଜନ ।
ସରଯୂ ତଟରେ ଚିତା କଲେ ବିରଚନ,
ସ୍ୱର୍ଗକୁ ତା' ସିଢ଼ି ରୂପେ ହୁଏ କି ଶୋଭନ । ୮୫୦

ଏହିପରି ସବେ ଦାହ କ୍ରିୟା ଶେଷ କରି,
ସ୍ନାନ ଶେଷେ ବିଧିମତେ ଦେଲେ ତିଳାଞ୍ଜଳି ।
ସକଳେ ନିଗମ ସ୍ମୃତି ପୁରାଣ ସମ୍ମତ,
ଦଶକର୍ମମାନ କଲେ ବିଧିରେ ଭରତ । ୮୫୧

ମୁନିବର ବଶିଷ୍ଠଙ୍କ ଆଜ୍ଞା ଅନୁସାରେ,
ସେହି ସେହି କାର୍ଯ୍ୟ କଲେ ସହସ୍ର ପ୍ରକାରେ ।
ଶୁଦ୍ଧ ହୋଇ ସାରି ଦେଲେ ଅସୁମାରି ଦାନ,
ଗଜ ବାଜି ଧେନୁ ଆଦି ଅମିତ ବାହନ । ୮୫୨

ବସନ ଭୂଷଣ ଭୂମି ଅନ୍ନ ସିଂହାସନ,
ଗୃହ ଆଦି ବହୁ ଦ୍ରବ୍ୟ ବହୁବିଧ ଧନ ।
ଭରତ ଅର୍ପିଲେ, ବିପ୍ରେ ପାଇ ସେହି ଦାନ,
ଅତୁଳ ହରଷେ ହୋଇଗଲେ ପୂର୍ଣ୍ଣକାମ । ୮୫୩

ପିତାଙ୍କ ନିମନ୍ତେ କଲେ ଯେ କୃତ୍ୟ ଭରତ,
ଲକ୍ଷ ମୁଖେ ତାହା ହୋଇ ନ ପାରେ ବ୍ୟକତ ।

ପରେ ଶୁଭଦିନ ସ୍ଥିର କରି ମୁନିବର,
ଡକାଇଲେ ମନ୍ତ୍ରୀ ମହାଜନଙ୍କୁ ସକଳ । ୮୫୪

ବସିଲେ ସମସ୍ତେ ରାଜ ସଭା ସ୍ଥଳେ ଯାଇ,
ଭରତ ଓ ଶତ୍ରୁଘ୍ନଙ୍କୁ ଆଣିଲେ ଡକାଇ ।
ବସାଇଲେ ନିଜ ପାଶେ ଭରତଙ୍କୁ ମୁନି,
ନୀତି ଧର୍ମଯୁକ୍ତ କଥା କହିଲେ ସେ ପୁଣି । ୮୫୫

କହିଲେ ବଶିଷ୍ଠ ପୂର୍ବ ଚରିତ ସକଳ,
କୁଟିଳା କୈକେୟୀଙ୍କର କୁକର୍ମ ନିକର ।
ନୃପଙ୍କର ଧର୍ମ ବ୍ରତ ସତ୍ୟ ପ୍ରଶଂସିଲେ,
ଯେ ତନୁ ତିଆଗି ପ୍ରେମ ପ୍ରତିଜ୍ଞା ପାଳିଲେ । ୮୫୬

ରାମଙ୍କ ସ୍ୱଭାବଶୀଳ ଗୁଣ କହି କହି,
ନେତ୍ର ଜଳ ଭରେ ଗାତ୍ରେ ପୁଲକ ଜାଗଇ ।
ସୀତା ଲକ୍ଷ୍ମଣଙ୍କ ପ୍ରେମ ବଖାଣି ସକଳ,
ଶୋକେ ସ୍ନେହେ ମଗ୍ନ ହେଲେ ଜ୍ଞାନୀ ମୁନିବର । ୮୫୭

ଦୁଃଖରେ କହିଲେ ମୁନି, "ଶୁଣ ହେ ଭରତ,
ଭବିତବ୍ୟତା ଯେ ଜାଣ ଅଟି ବଳବନ୍ତ ।
ଜୀବନ ମରଣ ନିନ୍ଦା ଯଶ ହାନି ଲାଭ,
ସବୁ ବିଧାତାର ହାତେ ଅନ୍ୟଥା ନ ଭାବ । ୮୫୮

ଏପରି ବିଚାରି ଦେବା କାହାକୁ ବା ଦୋଷ,
କାହା ପରେ କରିବା ତ ଅକାରଣେ ରୋଷ ।
ହେ ବତ୍ସ, ମନରେ ତୁମେ ବିଚାର ନିଶ୍ଚୟ,
ନୃପ ପରି ନାହିଁ କେହୁ ଚିନ୍ତାର ବିଷୟ । ୮୫୯

ଚିନ୍ତାର ବିଷୟ ବେଦ ବିହୀନ ବ୍ରାହ୍ମଣ,
ଧର୍ମ ତେଜି ଯେ ବିଅନ୍ତି ବିଷୟରେ ମନ ।
ଚିନ୍ତାର ବିଷୟ ରାଜା, ଯେ ନୀତି ନ ଜାଣେ,
ପ୍ରଜା ପ୍ରାଣ ସମ ପ୍ରିୟ ନୁହଁ ଯା' ଧିଆନେ । ୮୬୦

ଚାଣ୍ଡାଳଙ୍କ ପରି ମତି ଧନାଢ଼ୀ କୃପଣ,
ଯେ ନୁହେଁ ଅତିଥି ଶିବ ଭକ୍ତ ପରାୟଣ ।
ଚାଣ୍ଡାଳଙ୍କୁ ଶୁଦ୍ର, ଯିଏ ଦ୍ୱିଜ ଅପମାନୀ,
ବାବଦୁକ ମାନପ୍ରିୟ ଜ୍ଞାନ ଅଭିମାନୀ । ୮୭୧

ଚାଣ୍ଡାଳ ବିଷୟ ପତି-ବଞ୍ଚକମା ନାରୀ,
କୁଟିଳା କପଟ ପ୍ରିୟା ପୁଣି ସ୍ୱେଚ୍ଛାଚାରୀ ।
ଚାଣ୍ଡାଳଙ୍କୁ ବଟ, ଯେହୁ ବ୍ରତ ପରିହରେ,
ଯେ ଗୁରୁ ଆଦେଶ ଅନୁସରଣ ନ କରେ । ୮୭୨

ଚାଣ୍ଡାଳଙ୍କୁ ସେହି ଗୃହୀ, ଯିଏ ମୋହ ବଶେ,
କର୍ମ ପଥ ପରିତ୍ୟାଗ କରଇ ରଭସେ ।
ଚାଣ୍ଡାଳଙ୍କୁ ସେହି, ଭୋଗ ବାସନାରେ ଭାସି,
ଜ୍ଞାନ ବୈରାଗ୍ୟ ହୀନ ହୁଏ ଯେ ସନ୍ନ୍ୟାସୀ । ୮୭୩

ସେହି ବାନପ୍ରସ୍ଥ କଥା ଭାବିବା ଉଚିତ,
ତପ ତେଜ ଯାହାଙ୍କର ଭୋଗେ ବଳେ ଚିତ୍ତ ।
ଚାଣ୍ଡାଳଙ୍କୁ ଚୁଗୁଲିଆ ଅକାରଣ କ୍ରୋଧୀ,
ଜନକ ଜନନୀ ଗୁରୁ ବାନ୍ଧବ ବିରୋଧୀ । ୮୭୪

ସବୁମତେ ଚାଣ୍ଡାଳଙ୍କୁ ପର ଅପକାରୀ,
ପୋଷଇ ଆପଣା ତନୁ ଯେ ନିର୍ଦ୍ଦୟ ଭାରି ।
ସକଳ ପ୍ରକାରେ ସେ ତ ଚାଣ୍ଡାଳଙ୍କୁ ଜନ,
ନ ଛାଡ଼ି କପଟ ଛଳ ଯିଏ ହରି ଜନ । ୮୭୫

ଚାଣ୍ଡାଳଙ୍କୁ ନୁହନ୍ତି ତ କୋଶଳ ରାଜନ,
ଯା' ପ୍ରଭାବ ସୁବିଖ୍ୟାତ ଚଉଦ ଭୁବନ ।
ତୁମ ପିତା ସମ ନୃପ ହେ ପୂର୍ବେ ଜଗତେ,
ନ ଥିଲେ ନାହାନ୍ତି ହେବେ ନାହିଁ ଭବିଷ୍ୟତେ । ୮୭୬

ବିଧି ହରିହର ଦିଗପାଳ ସୁରପତି,
ଦଶରଥ ଗୁଣଗାଥା ସମସ୍ତେ କହନ୍ତି । ୮୭୭

ଶ୍ରୀରାମ ଲକ୍ଷ୍ମଣ ଶତ୍ରୁଘନ ତୁମ ସମ,
ଯାହାଙ୍କର ଶୁଚିବନ୍ତ ପୁତ୍ର ଅନୁପମ ।
ତାଙ୍କର ପ୍ରଶଂସା କଏ କପରି ଭାବରେ,
କରିପାରେ ବହୁ ଏହା ବିଶ୍ବର ମନରେ । ୮୬୮

ସକଳ ଜଗତୁ ଭାଗ୍ୟବାନ ନରସାଇଁ,
ଦୁଃଖିତ ହୋଇବା ବୃଥା ସିନା ତାଙ୍କ ପାଇଁ ।
ଏହା ଶୁଣି ମନୁ ଚିନ୍ତା ଦୂର କରିଦିଅ,
ରାଜାଦେଶ ପାଳ ଏବେ ରାଜ୍ୟଭାର ନିଅ । ୮୬୯

ରାଜପଦ ଦେଇଛନ୍ତି ତୁମକୁ ରାଜନ,
ତୁମର ଉଚିତ ତାକୁ କରିବା ପାଳନ ।
ଯେ ପିତା ବଚନ ପାଇଁ ରାମଙ୍କୁ ତେଜିଲେ,
ଶ୍ରୀରାମ ବିରହାନଳେ ଶରୀର ଛାଡ଼ିଲେ । ୮୭୦

ରାଜାଙ୍କୁ ବଚନ ପ୍ରିୟ, ପ୍ରିୟ ନୁହେଁ ପ୍ରାଣ,
ପିତାଙ୍କ ବଚନ ଏବେ କରିବ ପ୍ରମାଣ ।
ଶିରୋଧାର୍ଯ୍ୟ କରି ନୃପ ଆଦେଶ ତୁମର,
ଏଥିରେ ହୋଇବ ସବୁ ତୁମ୍ଭର ମଙ୍ଗଳ । ୮୭୧

ପାଳିଲେ ପରଶୁରାମ ପିତାଙ୍କ ବଚନ,
ବଧିଲେ ମାତାଙ୍କୁ ଏଥି ସାକ୍ଷୀ ତ୍ରିଭୁବନ ।
ଯଯାତିଙ୍କୁ ଦେଲେ ପୁତ୍ର ନିଜ ଯଉବନ,
ହେଲାନି ଅଯଶ ପାପ-ପିତାଙ୍କ ପାଳନ । ୮୭୨

ପିତା ବାକ୍ୟ ଉଚିତ କି ଅବା ଅନୁଚିତ,
ବିଚାର ନ କରି ଯିଏ ପାଳଇ ନିଶ୍ଚିତ ।
ଏ ଲୋକେ ହୁଅନ୍ତି ସୁଖ ସୁଯଶ ଭାଜନ,
ପର ଲୋକେ ନିବସନ୍ତି ଇନ୍ଦ୍ରଙ୍କ ଭୁବନ । ୮୭୩

ଅବଶ୍ୟ ପୂରଣ କର ରାଜାଙ୍କ ବଚନ,
ଶୋକ ପରିହାର କରି ପାଳ ପ୍ରଜାଗଣ ।

ସ୍ୱର୍ଗରେ ତୁମ୍ଭର ପିତା ଲଭିବେ ସନ୍ତୋଷ,
ଅରଜିବ ପୁଣ୍ୟ ଯଶ, ନ ହୋଇବ ଦୋଷ । ୮୭୪

ଏହା ବେଦ ଶାସ୍ତ୍ର ମତ ସମର୍ଥିତ ସାର,
ଯାହାଙ୍କୁ ଦିଅନ୍ତି ପିତା ରାଜ୍ୟ ଯେ ତାହାର ।
ତେଜ ଗ୍ଲାନି କରି ଏବେ ରାଇଜ ପାଳନ,
ହିତକର ଜାଣି ମାନ ମୋହର ବଚନ । ୮୭୫

ଶ୍ରୀରାମ ବୈଦେହୀ ଶୁଣି ହେବେ ହର୍ଷଚିତ୍ତ,
ଜ୍ଞାନୀ ଜନେ ନ କହିବେ କେବେ ଅନୁଚିତ ।
କଉଶଲ୍ୟା ଆଦି ଯେତେ ତୁମ ମାତାଗଣ,
ପ୍ରଜାଙ୍କ ସୁଖରେ ହେବେ ହରଷିତ ମନ । ୮୭୬

ତୁମ୍ଭ-ରଘୁପତିଙ୍କର ପ୍ରୀତି ଯେ ଜାଣିବେ,
ସକଳ ପ୍ରକାରେ ଭଲ ବୋଲି ବିଚାରିବେ ।
ଶ୍ରୀରାମ ଫେରିଲେ ତାଙ୍କୁ ରାଜ୍ୟ ସମର୍ପି,
କରିବ ତାଙ୍କର ସେବା ତାଙ୍କ ସ୍ନେହ ଜପି ।” ୮୭୭
କହିଲେ ସୁମନ୍ତ କର ଯୋଡ଼ି, “ହେ କୁମର,
ଗୁରୁ ଆଜ୍ଞା ପାଳନୀୟ ଅବଶ୍ୟ ତୁମର ।
ଶ୍ରୀରାମ ଫେରିଲେ ତୁମେ ବିଚାରିବ ଯାହା,
ସେ କାଳେ କର୍ତ୍ତବ୍ୟ ବୋଲି କରିପାର ତାହା ।” ୮୭୮

ଧୈର୍ଯ୍ୟଧରି କଉଶଲ୍ୟା କହିଲେ ବୁଝାଇ,
“ଗୁରୁ ଆଜ୍ଞା ପଥ୍ୟ ସମ ଜାଣ ତୁମ ପାଇଁ ।
ହିତକର ଜାଣି ତାହା କରି ତୁ ଆଦରେ,
କାଳ ଗତି ବୁଝି ଦୁଃଖ ନ କର ମନରେ । ୮୭୯

ବନେ ରଘୁପତି ସୁରପୁରେ ନରପତି,
ଏତେବେଳେ କରେ ପୁଅ କାତର ହୁଅନ୍ତି ?
ପ୍ରଜା ପରିଜନ ମନ୍ତ୍ରୀ ଆଉ ମାତାଗଣ,
ସଭିଙ୍କର ଏକମାତ୍ର ତୁ ଅବଲମ୍ବନ । ୮୮୦

ବିଧାତା ତ ପ୍ରତିକୂଳ କାଳ ସୁକଠୋର,
କାଟ ଧୈର୍ଯ୍ୟଧରି, ମାତା ନୁହିଁଯାଏ ତୋର ।
ଗୁରୁ ଆଜ୍ଞା ଶିରୋଧାର୍ଯ୍ୟ କରି କାର୍ଯ୍ୟ କର,
ପ୍ରଜାଗଣେ ପାଳ ପୁରଜନ ଦୁଃଖ ହର । ୮୮୧

ଭରତ ଶୁଣିଲେ ସବୁ ଗୁରୁଙ୍କ ଆଦେଶ,
ଚନ୍ଦନ ସମାନ ମନ୍ତ୍ରୀଙ୍କର ଉପଦେଶ,
ପୁଣି ସେ ଶୁଣିଲେ ମାତା କୋମଳ ବଚନ,
ସ୍ନେହ ସୁଶୀତଳ ରସେ ସେଚିତ ଯେସନ । ୮୮୨

ଶୁଣି ସ୍ୱଚ୍ଛ ସ୍ନେହସିକ୍ତ ମାତାଙ୍କ ବଚନ,
ଭରତ ବ୍ୟାକୁଳ ହେଲେ ତହିଁ ଘନ ଘନ ।
ତାଙ୍କ ନେତ୍ର-କମଳରୁ ଜଳଧାର ବହି,
ହୃଦୟ-ବିରହ-ନବାଙ୍କୁରେ କି ସିଞ୍ଚଇ !! ୮୮୩

ସେ ବେଳ ଅବସ୍ଥା ଦେଖି ନିଜ ଦେହ କଥା,
ଭୁଲି ସର୍ବେ ଲଭୁଥିଲେ ହୃଦୟରେ ବ୍ୟଥା ।
ଭରତର ଭ୍ରାତୃ-ପ୍ରେମ, ସୀମା ତାର ନାହିଁ—
କହି ପ୍ରଶଂସିଲେ ପ୍ରେମେ ତୁଳସୀ ଗୋସାଇଁ । ୮୮୪

ଧୈର୍ଯ୍ୟଧରି ଯୋଡ଼ି କର-କମଳ ଭରତ,
ସଭିଙ୍କ କଥାର ଦେଲେ ଉତ୍ତର ତୁରନ୍ତ ।
କହିଲେ ଅମୃତ ରସେ ବୁଡ଼ାଇ ବଚନ,
ଧୈର୍ଯ୍ୟ ଧୁରନ୍ଧର ସେହି ଧାର୍ମିକ-ନନ୍ଦନ । ୮୮୫

ମାସ ପାରାୟଣ, ଅଷ୍ଟାଦଶ ବିଶ୍ରାମ ।

"ଭଲ ଉପଦେଶ ମୋତେ ଗୁରୁ ଦେଇଛନ୍ତି,
ତହିଁରେ ସଚିବ ସହ ପ୍ରଜାଙ୍କ ସମ୍ମତି ।
ଆଦେଶ କରନ୍ତି ମାତା ବିଚାର ଉଚିତ,
ଶିରେ ଘେନି ପାଳିବାକୁ ଚାହେଁ ମୁଁ ତୁରିତ । ୮୮୬

ପିତା ମାତା ଗୁରୁ ସ୍ୱାମୀ ସୁହୃଦ ବଚନ,
ହିତ ଜାଣି ହରଷରେ କରିବ ପାଳନ ।
ଉଚିତ କି ଅନୁଚିତ କରିଲେ ବିଚାର,
ହୁଏ ଧର୍ମ ହାନି, ଲାଗେ ଶିରେ ପାପ ଭାର । ୮୮୭

ଯାହା କଲେ ହେବ ମୋର ମଙ୍ଗଳ ଅଶେଷ,
ସମସ୍ତେ ଦେଉଛ ମୋତେ ସେହି ଉପଦେଶ ।
ଭଲ ଭାବେ ଏ କଥା ମୁଁ ଯଦି ବା ବୁଝୁଛି,
ତଥାପି ମନରେ କାହିଁ ସନ୍ତୋଷ ନୋହୁଛି । ୮୮୮

ଏବେ ତୁମ୍ଭେମାନେ ଶୁଣି ବିନତି ମୋହର,
ଆଉ ଥରେ ଶିକ୍ଷା ଦେବା ପାଇଁ ଦୟା କର ।
କ୍ଷମ ଅପରାଧ ମୋର ଦେଉଛି ଉତ୍ତର,
ଧରନ୍ତି ନ ଦୁଃଖୀ ଦୋଷ ଗୁଣ ସାଧୁ ନର । ୮୮୯

ପିତା ସୁର ପୁରେ, ରାମ ସୀତା ଘୋର ବନେ,
ତୁମେ କହ ବସିବାକୁ ରାଜ ସିଂହାସନେ ।
ଏଥିରେ ଭାବୁଛ ହେବ ମୋହର କଲ୍ୟାଣ,
ଅବା ହେବ କିଛି ବଡ଼ କାର୍ଯ୍ୟ ସମାଧାନ । ୮୯୦

ସୀତାପତି ହେବାରେ ମୋ କଲ୍ୟାଣ ନହିତ,
ତାହା ହରି ନେଲା ମାତା କୁଟିଳ ଚରିତ ।

ମନେ ଭାବ ଦେଖୁଚ ମୁଁ ଜଗତ ଭିତରେ,
ମୋ କଲ୍ୟାଣ ନାହିଁ ଅନ୍ୟ କେଉଁ ଉପାୟରେ । ୮୯୧

କେଉଁଥିକି ଗଣା ଶୋକାସ୍ପଦ ସିଂହାସନ,
ଯହିଁ ନାହିଁ ରାମ-ସୀତା ପଦ ଦରଶନ ।
ବସନ ବିହୁନେ ବୃଥା ବିବିଧ ଭୂଷଣ,
ବୈରାଗ୍ୟ ବିହୁନେ ବ୍ରହ୍ମ ତର୍କ ଅକାରଣ । ୮୯୨

ରୋଗ ପ୍ରପୀଡ଼ିତ ଅଙ୍ଗେ ବୃଥା ସବୁ ଭୋଗ,
ହରି ଭକ୍ତି ବିନା ବ୍ୟର୍ଥ ଯେତେ ତପ ଯୋଗ ।
ମନୋହର ବପୁ ବ୍ୟର୍ଥ ନ ଥିଲେ ଜୀବନ,
ରାମ ବିନା ତେସନେ ମୋ ସବୁ ଅକାରଣ । ୮୯୩

ରାମ ପାଶେ ଯିବ ଦିଅ ଆଦେଶ ତୁରିତ,
କେବଳ ଏଥିରେ ମୋର କଲ୍ୟାଣ ନିହିତ ।
ମୋତେ ରାଜା କରି ହେବ ତୁମର କୁଶଳ,
ତାହା ଯେ ମମତାଧୀନ ଜଡ଼ତା କେବଳ । ୮୯୪

କୁଟିଳ-ହୃଦୟା, ରାମ-ବିରୋଧୀ, ନିର୍ଲ୍ଲଜ୍ଜା,
କୈକେୟୀ କୁମର କରି ବିହି ଅଛି ସର୍ଜି ।
ମୋ ପରି ପାମରେ ଦେଇ ଅଯୋଧ୍ୟାର ଭାର,
ସୁଖର କାମନା ତବ କେବଳ ଅସାର । ୮୯୫

ସତ କହୁଅଛି କର ସତ ମୋ ବଚନ,
ନରପତି ଧର୍ମଶୀଳ ହେବା ପ୍ରୟୋଜନ ।
ହଠ କରି ମୋତେ ଯେବେ ରାଜ୍ୟ ଭାର ଦେବ,
ପାପରେ ପୃଥିବୀ ରସାତଳଗାମୀ ହେବ । ୮୯୬

ମୋ ପରି କାହାର ଅଛି ଏତେ ପାପ ରାଶି,
ଯାହା ପାଇଁ ରାମ-ସୀତା ହେଲେ ବନବାସୀ ।
ରାମଙ୍କୁ ପଠାଇ ବନେ ଅଯୋଧ୍ୟା ନୃପତି,
ବିରହେ ଅମରପୁରେ ଚାଲି ଯାଇଛନ୍ତି । ୮୯୭

ଏହି ସବୁ ଅନର୍ଥର ମୁଁ ଖଳ କାରଣ,
ଚେତା ରହି ବସି ସବୁ କରୁଛି ଶ୍ରବଣ ।
ଦେଖି ସୀତା-ରାମହୀନ ଏ ରାଜନିବାସ,
ଅଛି ପ୍ରାଣ ସହିବାକୁ ଝୁରି ଉପହାସ । ୮୯୮

ପବିତ୍ର ଶ୍ରୀରାମ, ନାହିଁ ହୃଦୟେ ଆସକ୍ତି,
ମୁହିଁ ଭୂମି-ଭୋଗ-ଲୋଭୀ କ୍ଷୁଧାତୁର ଅତି ।
କେତେ ହୃଦ-କଠିନତା ସହିବି କପରି,
ବଜ୍ର-ନନ୍ଦ ବଡ଼-ପଣ ପାଇଛି ଯେପରି । ୮୯୯

କାରଣୁ କଠିନତର କାର୍ଯ୍ୟ ହୁଏ ଯହିଁ,
ତେଣୁ ମୋର କଛି ଦୋଷ ନ ହୋଇବ ତହିଁ ।
ଅସ୍ଥି-ଜାତ ବଜ୍ର, ଭୟାନକ ସୁକଠୋର,
ପଥରରୁ ଜାତ ଲୁହା ପିଣ୍ଡ ଶକ୍ତ ଘୋର । ୯୦୦

କୈକେୟୀଜ-କଳେବରେ କରି ଅନୁରାଗ,
ଏ ପାମର ପ୍ରାଣ ଜାଣ ବଡ଼ ହତଭାଗ୍ୟ ।
ପ୍ରିୟ ବିରହରେ ଯଦି ପ୍ରାଣ ପ୍ରିୟ ଲାଗେ,
ଦେଖିବି ଶୁଣିବି ତେବେ ବହୁତ ମୁଁ ଆଗେ । ୯୦୧

ରାମ ସୀତା ଲକ୍ଷ୍ମଣେ ଯେ କଲା ବନବାସୀ,
ସ୍ୱର୍ଗେ ପଠାଇଲା ପତି ମଙ୍ଗଳ ମନାସି,
ବଇଧବ୍ୟ ଅପଯଶ ନିଜେ ଆଦରିଲା,
ପ୍ରଜାକୁଳେ ଦୁଃଖ ଶୋକ ସନ୍ତାପେ ଘାରିଲା । ୯୦୨

ସେ ଦେଇଛି ମୋତେ ସୁଖ ସୁଯଶ ସୁରାଜ୍ୟ,
ମୋ ପାଇଁ ସେ କଇକେୟୀ କଲା ସବୁ କାର୍ଯ୍ୟ ।
ଏହାଠାରୁ ବଳ ମୋର ଭଲ ବା କଅଣ,
ରାଜଶ୍ରୀ ଦେବାକୁ ପୁଣି କୁହନ୍ତି ଆପଣ । ୯୦୩

କୈକେୟୀ ଜଠରୁ ଯେଣୁ ଜନ୍ମ ଏ ଭୂତଳେ,
ତେଣୁ କଛି ଅନୁଚିତ ନୁହେଁ ମୋ' ପକ୍ଷରେ ।

ବନ୍ଧୁ ତ କରୁଛୁ ସବୁ କାର୍ଯ୍ୟ ମୋହ ପାଇଁ,
ପ୍ରଜା ପଞ୍ଚ ସହାୟତା କରୁଛନ୍ତ କମ୍ପାଇ ? ୯୦୪

ଗ୍ରହ ଉତ୍ପୀଡ଼ିତ, ବାତ ବେଗରେ ପୀଡ଼ିତ,
ପୁଣି ଯହ ହୋଇଥାଏ ବୃଶ୍ଚିକ ଦଂଶିତ,
ଏପରି ରୋଗୀକୁ ଦେଲେ ବାରୁଣୀ ପିଆଇ,
କପରି ଚକିତ୍ସା ଇଏ୍ୟ କହନ୍ତୁ ତ ଭାଇ ? ୯୦୫

କୈକେୟୀ-ପୁତ୍ରର ଯୋଗ୍ୟ ଜଗତେ ଯା' କଛୁ
ଚତୁର ବିରଞ୍ଚି ମୋତେ ସକଳ ଦେଇଛୁ ।
କନ୍ତୁ ଦଶରଥ-ସୁତ ରାମ-ସାନ-ଭାଇ,
ବୃଥାରେ ବିଧାତା ଦେଲା ମୋତେ ଏ ବଡ଼ାଇ । ୯୦୬

ମୁଁ ରାଜତିଳକ ନେବ କହୁଚ ସମସ୍ତେ,
ରାଜାଜ୍ଞା ତ ହିତକର ସଭିଙ୍କ ନମନ୍ତେ ।
ମୁଁ କାହାକୁ ଦେବ କହ କପରି ଉତ୍ତର,
କହନ୍ତୁ ଯାହାକୁ ଯେଉଁମ୍ଭ ହୁଏ ରୁଚିକର । ୯୦୭

କୁମାତା କୈକେୟୀ ସହ ମୋତେ ଗୁଡ଼ କହ,
ଆଉ କେ କହିବ ଏହା ଉତ୍ତମ ନଶ୍ଚୟ ।
ମୋ ବିନା ସଚରାଚରେ ଆଉ କେ ଅଛନ୍ତି,
ରାମ-ସୀତା ପ୍ରାଣପ୍ରିୟ ଯାହାଙ୍କୁ ଲୁହନ୍ତି ? ୯୦୮

ପରମ ହାନରେ ଦିଶେ ସଭିଙ୍କର ଲାଭ,
ଏ ନୁହେଁ କାହାର ଦୋଷ, ମୋ ଦୁର୍ଦ୍ଦିନ ଭାବ ।
ହୋଇ ଦ୍ୱିଧାଗ୍ରସ୍ତ ଶୀଳ ସ୍ନେହେ ବାନ୍ଧ ହୋଇ,
ଯା' କଛୁ କୁହନ୍ତି ସବୁ ଉଚିତ ଲାଗଇ । ୯୦୯

ରାମ-ମାତା ସୁକୋମଳ ସରଳ ହୃଦୟା,
ମୋ' ପ୍ରତି ତାଙ୍କର ଅତି ପ୍ରେମ ଅତି ଦୟା ।
ମୋ ଦୀନତା ଦେଖି ତାଙ୍କ ସ୍ୱାଭାବିକ ସ୍ନେହେ,
କହନ୍ତି ଏପରି କଥାମାନ ନଃସନ୍ଦେହେ । ୯୧୦

ବିବେକ-ସାଗର ଗୁରୁ ବିଦିତ ଜଗତେ,
ବିଶ୍ୱ ବରକୋଳ ସମ ଯାହାଙ୍କର ହସ୍ତେ ।
ମୋ ପାଇଁ ସେ ରାଜଟୀକା ଅଛନ୍ତି ସଜାଇ,
ବିଧି ବାମ ହେଲେ ସବେ ନ ହେବେ କମାଇ ? ୯୧୧

ଶ୍ରୀରାମ ସୀତାଙ୍କୁ ଛାଡ଼ି ବାକି ପୃଥିବୀରେ,
କେହି ନ କହିବେ ମତ ନାହିଁ ମୋ ଏଥିରେ ।
ଶୁଣିବି ସହିବି ସିନା ସବୁ ସୁଖ ମାନି,
ଚଳେ ତ ମଇଳା ଜମେ ଯହିଁ ଥାଏ ପାଣି । ୯୧୨

ସଂସାର କହିବ ମନ୍ଦ, କିଛୁ ଡର ନାହିଁ,
ଚିନ୍ତା ମୋ ହୃଦୟେ ନାହିଁ ପରଲୋକ ପାଇଁ ।
କେବଳ ହୃଦୟ ଦହେ ଯେହ୍ନେ ଦାବାନଳ,
ସୀତା-ରାମ ଦୁଃଖୀ ହେଲେ ମୋ’ ପାଇଁ କେବଳ । ୯୧୩

ଜୀବନେ ଉତ୍ତମ ଲାଭ ଲଭିଲେ ଲକ୍ଷ୍ମଣ,
ସବୁ ତେଜି ରାମ-ପଦେ ଲଗାଇଲେ ମନ ।
ରାମ-ବନବାସ ପାଇଁ ମୋହର ଜନମ,
ମିଛେ ଅନୁତାପ ସିନା କରୁଛି ଅଧମ । ୯୧୪

ସଭିଙ୍କୁ ନୁଆଁଇ ମଥା କହେ ମୋ ଯାନତା,
ଏ କରୁଣ ହୃଦୟର ନିଦାରୁଣ ବ୍ୟଥା ।
ଯେ ଯାଏଁ କରିନି ରାମ ପଦ ଦରଶନ,
ସେ ଯାଏଁ ଯିବନି ମୋର ପ୍ରାଣରୁ ଦହନ । ୯୧୫

ଇତର ଉପାୟ ମୋତେ କିଛି ନ ଦିଶଇ,
ରଘୁବର ବିନା କିଏ ହୃଦୟ ବୁଝଇ ?
ଏକମାତ୍ର ପଣ ଜାଣ ଏହି ମୋର ମନେ,
କାଲି ପ୍ରଭାତରୁ ଯିବି ପ୍ରଭୁଙ୍କ ଦର୍ଶନେ । ୯୧୬

ଯଦି ବା ମୁଁ ଅପରାଧୀ, ମୁଁ ମନ୍ଦ ଅଭଲ,
ମୋ’ ସକାଶେ ହେଲା ଏଇ ଅନର୍ଥ ସକଳ ।

ତଥାପି ଶରଣାପନ୍ନ ମୋତେ ଦେଖି ଆଗେ,
ସବୁ କ୍ଷମି ସେ କରିବେ କୃପା ଅନୁରାଗେ । ୯୧୭

ସରଳ ସ୍ୱଭାବ ଶୀଳ ସଙ୍କୋଚ ସଦନ,
କୃପାମୟ ସ୍ନେହଶୀଳ ଶ୍ରୀ ରଘୁନନ୍ଦନ ।
ଶତ୍ରୁର ବି କେବେ କ୍ଷତି ନ କରନ୍ତି ରାମ,
ମୁଁ ଶିଶୁ ସେବକ ମାତ୍ର ହେଲେ ସୁଦ୍ଧା ବାମ । ୯୧୮

ତୁମେ ପଞ୍ଚ ଏଥିରେ ମୋ' ହିତ ଜାଣି ମନେ,
ଦିଅ ଆଜ୍ଞା ଆଶୀର୍ବାଦ କୋମଳ ବଚନେ ।
ଯେପରି ବିନତି ଶୁଣି ମୋତେ ଦାସ ମଣି,
ଫେରିବେ ଅଯୋଧ୍ୟାପୁରେ ରାମ ରଘୁମଣି । ୯୧୯

କୁମାତା ଗରଭୁ ମୋର ଯଦ୍ଧ ବା ଜନମ,
ମୁହିଁ ସଦା ଦୋଷଯୁକ୍ତ ମୁଁ ଶଠ ଅଧମ ।
ଶ୍ରୀରାମଙ୍କ ପାଖେ ଅଛି ଭରସା ତଥାପି,
ଆପଣାର ଜାଣି ତ୍ୟାଗ ନ ଦେବେ କଦାପି ।" ୯୨୦

ଭରତଙ୍କ କଥା ପ୍ରିୟ ସଭଙ୍କୁ ଲଗିଲା,
ରାମ-ପ୍ରେମାମୃତେ ସେ କି ଜୁଡ଼ୁ ବୁଡ଼ୁ ଥିଲା ।
ବିଷମ-ବିରହ-ବିଷେ ଯାଉଥିଲେ ଜଳି,
ଶୁଣି କି ଉଠିଲେ ସର୍ବେ ବୀଜ-ମନ୍ତ୍ର ଭଳି । ୯୨୧

ଜନନୀ ସୁମନ୍ତ୍ର ଗୁରୁ ପୁର ନାରୀନର,
ସ୍ନେହ ବଶେ ସର୍ବେ ହେଲେ ବ୍ୟାକୁଳ ଅନ୍ତର ।
ଭରତଙ୍କୁ ମନେ ଭୂରି ପ୍ରଶଂସା କରନ୍ତି,
କହନ୍ତି, "ତୁମେ ତ ରାମ-ପ୍ରେମର ମୂରତି । ୯୨୨

କାହିଁ ନ କହିବ ବତ୍ସ ଭରତ ଏସନ,
ତମେ ରଘୁନାଥ ପ୍ରିୟ ଅଟ ପ୍ରାଣ ସମ ।
ସେହି ତ ପାମର, ହେବ ତାହାର ମୂର୍ଖତା,
ତୁମ ପରେ ଯେ ଲଦିବ ମାତା-କୁଟିଳତା । ୯୨୩

ସେ ପାପିଷ୍ଠ କୋଟି ପୂର୍ବ ପୁରୁଷଙ୍କ ସହ,
ଶତ କଳ୍ପ ନର୍କେ ଯାଣ୍ଡି ହେବ ଅହରହ ।
ଖଳ ମତ୍ତ ସାପ ହୋଷ ମଣି ନ ଘେନଇ,
ବରଂ ହରେ ବିଷ, ଦୁଃଖ ଦାରିଦ୍ର୍ୟ ଦହଇ । ୯୨୪

ହେ ଭରତ ଭଲ ବୁଦ୍ଧି କଲ ଭଲ କାମ,
ଗ୍ଭଲ ସେହି ବନେ ଯହିଁ ଅଛନ୍ତି ଶ୍ରୀରାମ ।
ଶୋକ-ପାରାବାରେ ସର୍ବେ ଯାଉଥିଲୁ ଭାସି,
ପରମ ଆଶ୍ରୟ ତୁମେ ହେଲ ଏବେ ଆସି ।" ୯୨୫

ସଭିଙ୍କ ମନରେ ହେଲା ଅପାର ପୁଲକ,
ଶୁଣି ମେଘନାଦ ଯେହ୍ନେ ମୟୂର ଗ୍ଭତକ ।
"ପ୍ରଭାତେ-ଗମନ"-ଶୁଣି ଉତ୍ତମ ନିଷ୍ପତ୍ତି,
ସଭିଙ୍କୁ ଭରତ ହେଲେ ପ୍ରାଣ ପ୍ରିୟ ଅତି । ୯୨୬

ବନ୍ଦିଲେ ଗୁରୁଙ୍କୁ ପ୍ରଣମିଲେ ଭରତଙ୍କୁ,
ବିଦା ହୋଇ ବାହୁଡ଼ିଲେ ସମସ୍ତେ ଘରକୁ ।
ପରଶଂସି ଭ୍ରାତୃ-ପ୍ରୀତି ପୁରଜନେ ପଥେ,
କହିଲେ ଭରତ ଧନ୍ୟ ଧନ୍ୟ ଏ ଜଗତେ । ୯୨୭

କଥା ହେଲେ ପରସ୍ପରେ ହେଲା ବଡ଼ କାର୍ଯ୍ୟ,
ଯିବା ପାଇଁ ସର୍ବ ହୋଇ ଗଲେ ସଜବାଜ ।
ଯାହାଙ୍କୁ ରଖନ୍ତି ଘର ଜଗିବା ନିମନ୍ତେ,
ଲାଗେ ତାଙ୍କୁ ଅବା ବେକ କଟିଗଲା ସତେ । ୯୨୮

କେ କହେ, ନ କହ କା'ରେ ରହିଯିବା ପାଇଁ,
ଜଗତେ ଲାଭକୁ ଅବା କିଏ ଗ୍ଭହେଁ ନାହିଁ ? । ୯୨୯

ଜଳି ଯାଉ ସେ ସମ୍ପତ୍ତି ସୁଖ ଓ ସଦନ,
ପିତା ମାତା ଭାଇ ବନ୍ଧୁ କିବା ପ୍ରୟୋଜନ-
ଯହିଁ ହର୍ଷ ଭରେ ରାମ-ଚରଣ-ସମ୍ମୁଖ-
ହେବାକୁ ସାହାଯ୍ୟ ଦାନେ ନୁହନ୍ତି ଉତ୍ସୁକ । ୯୩୦

ଘରେ ଘରେ ସଜା ହେଲା ନାନାବିଧ ବାହନ,
ପ୍ରଭାତେ ଚଳିବେ ବୋଲି ସର୍ବେ ହର୍ଷ ମନ ।
ଭରତ ଘରକୁ ଯାଇ କରିଲେ ବିଚାର—
ଏ ନଗର ଅଶ୍ୱ, ହସ୍ତୀ ପ୍ରସାଦ ଭଣ୍ଡାର । ୯୩୧

ସବୁ ସମ୍ପତ୍ତିର ସ୍ୱାମୀ ରାମ ରଘୁପତି,
ମୁଁ ଯଦି ଯାଉଛି ବନେ ତାଙ୍କୁ ନ ସାଇତି,
ତେବେ ପରିଣାମେ ଭଲ ନ ହେବ ମୋହର,
ଯେଣୁ ସ୍ୱାମୀଦ୍ରୋହ ପାପ-ଶିରୋମଣି ଭଳ । ୯୩୨

କୋଟି ଦୋଷ ଅପବାଦ ଦେଉ ପଛେ ଯିଏ,
ସ୍ୱାମୀ ହିତ ସାଧଇ ଯେ ସୁସେବକ ସିଏ ।
ଏହା ଭାବି ଡାକି କେତେ ବିଶ୍ୱସ୍ତ ସେବକ,
ଧର୍ମ ପଥୁଁ ବିଚଳିତ ନୁହନ୍ତି ଯେ ଲୋକ । ୯୩୩

ବୁଝାଇ ମରମ କଥା କହି ଧର୍ମ ନୀତି,
ରଖାଇଲେ ତହିଁ ଯୋଗ୍ୟ ଯିଏ ଯେଉଁଥିକି ।
ରକ୍ଷକ ରଖାଇ ସବୁ କରି ସୁଯତନ,
ରାମ ମାତା ପାଶେ ତହୁଁ କରିଲେ ଗମନ । ୯୩୪

ଜାଣି ସବୁ ମାତାମାନେ ଅଶେଷ ଆରତ,
ସେମାନଙ୍କ ପାଇଁ ସ୍ନେହ-ପ୍ରବଣ-ଭରତ,
ପାଲିଙ୍କି ପ୍ରସ୍ତୁତ କରି ସୁଖାସନ ପାଇଁ,
ତୁରନ୍ତ ସେବକଗଣେ କହିଲେ ଡକାଇ । ୯୩୫

ଚକୁଆ ଚକୋଇ ପରି ପୁର ନାରୀ ନରେ,
ପ୍ରଭାତକୁ ଗୁହିଁଥାନ୍ତି ଅତି ଆବେଗରେ ।
ସାରା ନିଶି ଉଜାଗରେ ହୋଇଲା ପ୍ରଭାତ,
ଭରତ ଡକାଇ ଆଣି ପ୍ରବୀଣ ଅମାତ୍ୟ । ୮୩୬

କହିଲେ, "ନିଅ ହେ ସବୁ ଅଭିଷେକ ସାଜ ।"
ପ୍ରଥମ ରଥରେ ଚଢ଼ି ଗଲେ ମୁନିରାଜ ।

ତାଙ୍କ ପଛେ ବିପ୍ରଗଣେ ଗଲେ ନାନା ଯାନେ,
ତେଜ ଆଉ ତପସ୍ୟାର ଭଣ୍ଡାର ପ୍ରମାଣେ ।। ୯୩୭

ସକଳ ନଗର ଲୋକେ ସାଜ ଯେଝା ଯାନ,
ଚିତ୍ରକୁଟ ଅଭିମୁଖେ କରିଲେ ପ୍ରସ୍ଥାନ ।
ସୁନ୍ଦର ପାଲିଙ୍କି ଶୋଭା ନ ହେବ ବଖାଣି,
ତା' ଉପରେ ଚଢ଼ି ବିଜେ ହେଲେ ସବୁ ରାଣୀ । ୯୩୮

ବିଶ୍ୱାସୀ ସେବକେ ଅର୍ପି ପୁର ରକ୍ଷା ଭାର,
ସକଳ ଲୋକଙ୍କୁ ସ୍ନେହେ କରି ଆଗୁସାର ।
ରାମ-ସୀତା ଶ୍ରୀଚରଣ ହୃଦୟେ ସୁମରି,
ଭରତ ଶତ୍ରୁଘ୍ନ ପଛେ ଗଲେ ଚାଲିକରି । ୯୩୯

ଶ୍ରୀରାମ ଦର୍ଶନେ ଗଲେ ସବୁ ନର ନାରୀ,
ତୃଷାର୍ତ୍ତ ହସ୍ତିନୀ ହସ୍ତୀ ଯେହ୍ନେ ଗୃହିଁ ବାରି ।
'ବନସ୍ଥେ ଶ୍ରୀରାମ ସୀତା' ବିଚାରି ମନରେ,
ଭରତ ଅନୁଜ ସହ ଚାଲିଲେ ପାଦରେ । ୯୪୦

ତାଙ୍କୁ ଦେଖି ଲୋକେ ହୋଇ ପ୍ରୀତି ଅନୁଗତ,
ଓହ୍ଲାଇ ଚାଲିଲେ ଛାଡ଼ି ଘୋଡ଼ା ହାତୀ ରଥ ।
ତହୁଁ ପାଶେ ଯାଇ ରଖି ପାଲିଙ୍କି ବହନ,
କହିଲେ ଶ୍ରୀରାମ-ମାତା କୋମଳ ବଚନ— । ୯୪୧

"ମରିଯାଏଁ, ପୁତ୍ର ମୋର ରଥରେ ତୁ ବସ,
ନୋହିଲେ ସ୍ୱଜନେ ଦୁଃଖୀ ହୋଇବେ ଅବଶ୍ୟ ।
ତୁମେ ଚାଲିବାରୁ ଲୋକେ ଓହ୍ଲାଇ ଚାଲନ୍ତି,
ଶୋକେ କୃଶ, ଚାଲିବାକୁ ସମର୍ଥ ନୁହନ୍ତି ।" ୯୪୨

ଶିରେ ଧରି ଆଜ୍ଞା କରି ପ୍ରଣାମ ପଦରେ,
ଚଳିଲେ ଉଭୟ ଭାଇ ଚଢ଼ି ରଥ ପରେ ।
ପ୍ରଥମ ଦିବସ ରହି ତମସାର ତୀରେ,
ଦ୍ୱିତୀୟେ ଗୋମତୀ ତୀରେ ଯାଇ ବିଶ୍ରମିଲେ । ୯୪୩

ତିଆଗି ଭୂଷଣ ଭୋଗ ବିଳାସ ବ୍ୟସନ,
ରାମ ବ୍ରତେ କରି ବ୍ରତ ନିୟମ ପାଳନ;
ରାତିରେ କେବଳ ଥରେ କରନ୍ତି ଆହାର,
କେ ପିଅଇ ଦୁଧ ଅବା କାର ଫଳାହାର । ୯୪୪

ସଈ ନଦୀ ତୀରେ ରହି ପ୍ରଭାତେ ଚଳିଲେ,
ସର୍ବେ ଶୃଙ୍ଗବେର ପୁର ନିକଟ ହୋଇଲେ ।
ନିଷାଦ୍ ରାଜନ ଶୁଣି ସବୁ ସମାଚାର,
ବିଷାଦେ ହୃଦୟେ ତାର କରଇ ବିଚାର । ୯୪୫

ଭରତ ଯାଆନ୍ତି ବନେ ଅବା କ କାରଣେ,
ଅବଶ୍ୟ କପଟ ଭାବ କିଛି ଥିବ ମନେ ।
କୁଟିଳତା ଯଦି କିଛି ନ ଥାନ୍ତା ମନରେ,
କମ୍ପାଇ ନିଅନ୍ତେ ସୈନ୍ୟ ସାମନ୍ତ ସଙ୍ଗରେ । ୯୪୬

ରାମଙ୍କୁ ଲକ୍ଷ୍ମଣ ସହ ମାରି ଏ ବନରେ,
ନିଷ୍କଣ୍ଟକ ରାଜ୍ୟ ଭୋଗ କରିବେ ସୁଖରେ ।
ଭରତ ହୃଦୟେ ରାଜନୀତି ନ ଭାବନ୍ତି,
ନଗରେ କଳଙ୍କ, ଏଥି ହେବ ପ୍ରାଣ କ୍ଷତି । ୯୪୭

ସୁରାସୁର ଯୋଦ୍ଧା ଯେବେ ଏକାଠି ହୋଇବେ,
ସମରେ ରାମଙ୍କୁ କେହି ଜିତି ନ ପାରିବେ ।
ନାହିଁ ତ ଆଶ୍ଚର୍ଯ୍ୟ ଏଥି ଭରତ ଯା' କରେ,
ବିଷ-ଲତିକାରୁ କାହିଁ ସୁଧାଫଳ ଫଳେ । ୯୪୮

ଏପରି ବିଚାରି ଗୁହ କହିଲା ସ୍ୱଜନେ,
"ସାବଧାନ ହୋଇ ରହ ମୋର ସୈନ୍ୟଗଣେ ।
କାତ ଡଙ୍ଗା ସବୁ ରଖ ପାଣିରେ ବୁଡ଼ାଇ,
ଘାଟ ଅବରୋଧ କର ଛାଡ଼ିବ ନାହିଁ । ୯୪୯

ଅବରୋଧି ସାବଧାନ ରହ ଘାଟ ପଥେ,
ସଜ ହୋଇଯାଅ ଏବେ ମରଣ ନିମନ୍ତେ ।

ଭରତ ସହିତେ ଯୁଦ୍ଧେ ସମ୍ମୁଖ ମୁଁ ହେବି,
ଜୀଇଁ ଥାଉଁ ଗଙ୍ଗା ପାର କରାଇ ନ ଦେବି । ୯୫୦

ରଣେ ମୃତ୍ୟୁ, ପୁଣି ଏଇ ଗଙ୍ଗା ନଦୀ ତୀରେ,
ଶ୍ରୀରାମଙ୍କ କାର୍ଯ୍ୟ କ୍ଷଣଭଙ୍ଗୁର ଶରୀରେ ।
ରାମ ଭାଇ ରାଜା ସେହି ମୁହିଁ ନୀଚ ଜନ,
ଭାଗ୍ୟରେ ମିଳଇ ସିନା ଏପରି ମରଣ । ୯୫୧

ସ୍ୱାମୀଙ୍କ ସକାଶେ ଲଢ଼ି ଏ ପୁଣ୍ୟ ସମର,
ଚଉଦ ଭୁବନ ଯଶେ କରିବି ଉଜ୍ଜ୍ୱଳ ।
ପ୍ରାଣ ବିସର୍ଜିବି ରଘୁନାଥଙ୍କ ସକାଶେ,
ଆନନ୍ଦ-ମିଠେଇ ପରି ମୋର ବେନି ହାତେ । ୯୫୨

ସାଧୁ ସମାଜରେ ଯିଏ ନ ହୋଇଛି ଲେଖା,
ଯା' ହୃଦୟେ ନାହିଁ ରାମ-ଭକ୍ତି-ରୂପ ରେଖା ।
ତବେ ତା ଜୀବନ ବ୍ୟର୍ଥ, ସେ ପୃଥିବୀ ଭାର,
ସେ ଜନନୀ-ଯଉବନ-ବୃକ୍ଷକୁ କୁଠାର । ୯୫୩

ନିଷାଦ ରହିତ ହେଲେ ଗୁହ ଏ ଭାବରେ,
ବଢ଼ାଇ ଉତ୍ସାହ ସ୍ନେହ ସଭିଙ୍କ ହୃଦରେ ।
ନିଜର ମାନସ-ପଟେ ଚିନ୍ତି ରଘୁବୀର,
ସେବକେ ମାଗିଲା ଧନୁ କବଚ ତୂଣୀର । ୯୫୪

ଯୁଦ୍ଧ ସରଞ୍ଜାମ ଯେତେ ସଜାଅରେ ଭାଇ,
ହୁଅନା କାତର କେହି ମୋ ଆଦେଶ ପାଇ ।
ହର୍ଷ ଭରେ କହି ସର୍ବେ—"ଏ ଉତ୍ତମ ଅତି",
ଏକ ଆରେକର ହୃଦେ ସାହସ ଭରନ୍ତି । ୯୫୫

ନମସ୍କାର କରି ଗଲେ ନିଷାଦ ସକଳ,
ସର୍ବେ ଶୂର ବୀର, ରୁଚି ସଂଗ୍ରାମେ କେବଳ ।
ରାମ ପାଦ-ପାଦୁକାକୁ ହୃଦୟେ ଚିନ୍ତିଲେ,
ବାନ୍ଧି ଶରମୁଣି ଧନୁ-ଗୁଣ ଚଢ଼ାଇଲେ । ୯୫୬

କେ ପିନ୍ଧଇ ସାଞ୍ଜୁ ଲୁହା ଟୋପି କେ ପିନ୍ଧଇ,
କେ ଫାଂରସା ଭାଲ ବର୍ଚ୍ଛା ସଜାଡ଼ ନଅଇ ।
ଢାଲ ତରବାରି ଯୁଦ୍ଧେ କେ କୁଶଳୀ ଅତି,
ସତେ କି ସେ ଭୂଇଁ ଛାଡ଼ ଆକାଶେ ଉଡ଼ନ୍ତି । ୯୫୭

ଆପଣା ଆପଣା ସାଜ ସମାଜ ସଜାଇ,
ଜୁହାର କରିଲେ ଗୁହ-ରାଜନକୁ ଯାଇ ।
ଦେଖି ବୀରେ, ଗୁହ ଜାଣି ସର୍ବେ ଉପଯୁକ୍ତ,
ନାମ ଧରି ଡାକି କଲା ସମ୍ମାନ ବହୁତ । ୯୫୮

କହିଲା, "କର୍ତ୍ତବ୍ୟେ ତ୍ରୁଟି ନ କରିବ ଭାଇ,
ଆଜ ମୋର ବଡ଼ କାର୍ଯ୍ୟ ରଘୁବୀର ପାଇଁ ।"
ଶୁଣି ବୀରେ ଉତ୍ସାହରେ କହିଲେ ବଚନ,
"ଅଧୀର ହୁଅନା ତିଳେ ନିଷାଦ ରାଜନ । ୯୫୯

ରାମଙ୍କ ପ୍ରତାପେ ପୁଣି ପାଇ ତୋର ବଳ,
ବୀର ବାଜି ଶୂନ୍ୟ ଆଜ କରିବୁ ସକଳ ।
ଜୀଇଁ ଥାଉଁ ଥାଉଁ ପଛେ ପାଦ ନ ରଖିବୁ,
ରଣ୍ଡ ମୁଣ୍ଡ ମୟ ଏହି ମେଦିନୀ କରିବୁ ।" ୯୬୦

ସୁସଜ୍ଜିତ ବୀରେ ଦେଖି କହିଲା ନିଷାଦ,
"ଅବିଳମ୍ବେ କର ଏବେ ଯୁଦ୍ଧ-ଢୋଲ ବାଦ୍ୟ ।"
ଏତିକି କହିବା ବେଳେ ବାମେ ହେଲା ଛିଙ୍କ;
ରଣକ୍ଷେତ୍ରେ ହେବ ଶୁଭ ବୋଲେ ଲକ୍ଷଣିକ । ୯୬୧

ଲକ୍ଷଣ ବିଚାର କରି କହେ ଜଣେ ବୃଦ୍ଧ,
ମିଶ ଯା' ଭରତ ସାଥେ ହେବ ନାହିଁ ଯୁଦ୍ଧ ।
ରାମଙ୍କୁ ଆଣିବା ପାଇଁ ଯାଆନ୍ତି ଭରତ,
ଯୁଦ୍ଧ କି କଳହ ନାହିଁ—ଲକ୍ଷଣ ଏମନ୍ତ । ୯୬୨

ଶୁଣି ଗୁହ କହେ, "ବୃଦ୍ଧ କହନ୍ତି ଉଚିତ,
ନ ବୁଝି ଧଇଁସଇଁ କଲେ ସନ୍ତାପ ନିଶ୍ଚିତ ।

ଭରତଙ୍କ ଗୁଣ ଶୀଳ ସ୍ୱଭାବ ନ ଜାଣି,
ଅବସରରେ ଯୁଦ୍ଧ କଲେ ହେବ ସ୍ୱାର୍ଥ ହାନି । ୯୭୩

ମିଳି ସର୍ବେ ଘାଟ ଜଗ ମୁଁ ଭେଟି ଭରତ,
ବୁଝିବି ସେ ଶତ୍ରୁ ମିତ୍ର ଅବା ମଧ୍ୟ ମତ ।
ତା' ପରେ ଉଚିତ ଯାହା କରିବା ତେସନେ,
ରଣେ ବୃଥା ନ ପଶିବା ଆହେ ବୀରଗଣେ । ୯୭୪

ଦେଖିବି ମୁଁ ତାଙ୍କ ସ୍ନେହ ସରଳ ସ୍ୱଭାବ,
ଲୁଚାଇଲେ ନ ଲୁଚିବ ପ୍ରୀତି ବୈରି ଭାବ ।"
ଏହା କହି ଭେଟି ଦ୍ରବ୍ୟ ସବୁ ସଜାଡ଼ିଲା,
କନ୍ଦମୂଳ ଫଳ ମୃଗ ଖଗ ମଗାଇଲା । ୯୭୫

ବୃହତ୍ ଭାରୁର ମାଛ ଭାର ପୂର୍ଣ୍ଣ କରି,
ବହୁତ ଭାରୁଆ ତହିଁ ଆସିଥିଲେ ଧରି ।
ସଜାଇ ମିଳନ ସାଜ ମିଳନେ ଚଳିଲେ,
ସୁମଙ୍ଗଳ ମୂଳ ଶୁଭ ଶକୁନ ଦେଖିଲେ । ୯୭୬

ଦୂରୁଁ ଦରଶନ କରି କହି ନିଜ ନାମ,
ଗୁହ ବଶିଷ୍ଠଙ୍କୁ କଲା ସାଷ୍ଟାଙ୍ଗ ପ୍ରଣାମ ।
ଶ୍ରୀରାମଙ୍କ ପ୍ରିୟ ଜାଣି ଦେଇ ସୁଆଶିଷ,
ବୁଝାଇଲେ ଭରତଙ୍କୁ ସକଳ ମୁନୀଶ । ୯୭୭

ରାମ ସଖା ବୋଲି ଜାଣି ଭରତ ସତ୍ୱର,
ରଥରୁ ଓହ୍ଲାଇ ପ୍ରେମେ ହେଲେ ଅଗ୍ରସର ।
ନିଜ ଗ୍ରାମ ଜାତି ନାମ ଗୁହକ ଶୁଣାଇ,
ପ୍ରଣିପାତ କଲା ଶିର ଭୂଇଁରେ ଲଗାଇ । ୯୭୮

ଭୂଇଁ ପରେ ଦଣ୍ଡବତ କରୁଥିବା ଦେଖି,
ଭରତ ଚାପିଲେ ବକ୍ଷେ ତାକୁ ଟଙ୍କ ଟେକି ।
ଲକ୍ଷ୍ମଣ ସହିତେ ଭେଟ ହୋଇଗଲା ସତେ,
ନ ସମ୍ଭାଳି ଥାଏ ପ୍ରେମ ତାଙ୍କ ହୃଦଗତେ । ୯୭୯

ଭେଟିଲେ ଭରତ କରି ପ୍ରୀତି ଆଲିଙ୍ଗନ,
ଏ ପ୍ରୀତି ନିରେଖି ସର୍ବେ ଈର୍ଷାପରାୟଣ ।
କହି ସୁମଙ୍ଗଳ ମୂଳ ଧ୍ୱନି; ଧନ୍ୟ ଧନ୍ୟ,
ପ୍ରଶଂସି ଦେବତା କଲେ କୁସୁମ ବର୍ଷଣ । ୯୭୦

ଯେ ସବୁ ପ୍ରକାରେ ନୀଚ ଲୋକ ବେଦମତେ,
ପାଣି ଛୁଇଁଆ ନିଆଯାଏ ଯା' ଛାଇ ଛୁଇଁଲେ ।
ତାହାକୁ କୋଳରେ ଭରି ରାମ ସାନ ଭାଇ,
ମିଳି ଯାଇଛନ୍ତି ଦେହେ ପୁଲକ ଜଗାଇ । ୯୭୧

ରାମ ରାମ ଉଚ୍ଚାରଣ ଯେ ମାରନ୍ତି ହାଇ,
ତାହାଙ୍କୁ ପାତକ ସ୍ପର୍ଶ କରି ପାରେ ନାହିଁ ।
ଗୁହକେ ତ ନିଜେ ରାମ କରି ଆଲିଙ୍ଗନ,
ବଂଶ ସହ କରିଛନ୍ତି ଜଗତ ପାବନ । ୯୭୨

ମିଶିଲେ ବି କର୍ମନାଶା ଜଳ ଗଙ୍ଗାଜଳେ,
ସେ ଜଳକୁ ନ ସିଞ୍ଚେ କେ ମସ୍ତକ ଉପରେ ।
ନାମକୁ ଓଲଟା ଜପି ଜାଣଇ ଜଗତ,
ହୋଇଲେ ବାଲ୍ମିକି ମୁନି ସ୍ୱୟଂ ବ୍ରହ୍ମବତ । ୯୭୩

ମୂର୍ଖ ଓ ପାମର ଯେତେ ନୀଚ ଜାତି ଜନ,
ଚଣ୍ଡାଳ ଶବର କୋଲ୍ହ କିରାତ ଯବନ ।
ଉଚ୍ଚାରି ଶ୍ରୀରାମ ନାମ ହୁଅନ୍ତି ପାବନ,
ତାଙ୍କ ଯଶ ଗାଣି ହୁଏ ଖ୍ୟାତ ତ୍ରିଭୁବନ । ୯୭୪

ଏ ନୁହେଁ ବିଚିତ୍ର ଯୁଗ ଯୁଗ ଚଳି ଥାଇ,
କାହାକୁ ଶ୍ରୀରାମ ଦେଇ ନାହାନ୍ତି ବଡ଼ାଇ ?
ନାମର ମହିମା କଥା ଦେବତା କହନ୍ତି,
ଅଯୋଧ୍ୟା ନିବାସୀ ଶୁଣି ହରଷ ହୁଅନ୍ତି । ୯୭୫

ସପ୍ରେମେ ଭରତ ମିଳି ରାମ ସଖା ସହ,
ପଚାରିଲେ ତାଙ୍କ ଶୁଭ ଖବର ନିରାମୟ ।

ଦେଖି ଭରତଙ୍କ ଏହି ଗୁଣ ଶୀଳ ସ୍ନେହ,
ନିଷାଦ ହୋଇଲେ ସେହି ସମୟେ ବିଦେହ । ୯୭୬

ହୃଦେ ହେଲା ଏତେ ସ୍ନେହ ସଙ୍କୋଚ ପୁଲକ,
ରହିଗଲେ ଭରତଙ୍କୁ ଚାହିଁ ଅପଲକ ।
ଧୈର୍ଯ୍ୟ ଧରି ତହୁଁ କରି ଚରଣ ବନ୍ଦନା,
ପ୍ରେମେ ଯୋଡ଼ି କର କଲେ ବିନୟ ପ୍ରାର୍ଥନା । ୯୭୭

"ନିରେଖି ମଙ୍ଗଳ-ମୂଳ ଚରଣ-କମଳ,
ତିନି କାଳେ ମୁଁ ମଣୁଛି ଆପଣା କୁଶଳ ।
ଏବେ ପ୍ରଭୁ ଲଭି ତବ ସ୍ନେହ ଅନୁଗ୍ରହ,
ହୋଇଅଛି ମୋ ମଙ୍ଗଳ କୋଟି କୁଳ ସହ । ୯୭୮

ମୋର ନୀଚ କୁଳ କର୍ମ, ପ୍ରଭୁଙ୍କ ମହିମା,
ହୃଦୟେ ବିଚାରି ବୁଝି ତାଙ୍କ କୃପା ସୀମା,
ରଘୁବର ପଦେ ଯିଏ ନ କରେ ଭଜନ,
ବିଧି ପ୍ରତାରିତ ସେହି ଜନ ଅକିଞ୍ଚନ । ୯୭୯

କପଟି କୁମତି ଖଳ କୁଜାତି ପାମର,
ସକଳ ପ୍ରକାରେ ଲୋକ ବେଦରୁ ବାହାର ।
ରାମ ମୋତେ ଆପଣାର କଲେ ଯେଉଁଦିନୁ,
ଭୁବନ-ଭୂଷଣ ମୁହିଁ ହୋଇଛି ସେଦିନୁ ।" ୯୮୦

ଲକ୍ଷ୍ମଣ ସମ ସେ ଭାବ କଲେ ଆଶୀର୍ବାଦ,
'ଶତ ଲକ୍ଷ ବର୍ଷ ବଞ୍ଚି ରହ ତୁ ନିଷାଦ ।'
ଗୁହକଙ୍କୁ ଦେଖି ପୁର ନରନାରୀଗଣେ,
ହେଲେ ସୁଖୀ ଯେହ୍ନେ ଦେଖୁ ଅଛନ୍ତି ଲକ୍ଷ୍ମଣେ । ୯୮୧

କହନ୍ତି ଲଭିଲା ଏହି ଜୀବନର ଫଳ,
ଭୁଜେ ଭିଡ଼ି ଆଲିଙ୍ଗନ କଲେ ରଘୁବର ।
ଶୁଣି ଗୁହ ଆପଣାର ସୌଭାଗ୍ୟ ବଡ଼ାଇ,
ଆନନ୍ଦେ ସଭିଙ୍କୁ ନେଲା ସଙ୍ଗରେ ବୁଝାଇ । ୯୮୨

ସଙ୍କେତ ଚଳିଲେ ନିଜ ସମସ୍ତ ସେବକେ,
ସ୍ୱାମୀ ଅନୁମତି ଲଭି ପରାଣ ପୁଲକେ ।
ବନେ ଉପବନେ ସର ତୀରେ ତରୁ ତଳେ,
ରହିବାକୁ ସ୍ଥାନ ବରଶିଲେ କଉଶଲେ । ୪୮୩

ଶୃଙ୍ଗବେର ପୁର ଯେବେ ଦେଖିଲେ ଭରତ,
ଶିଥିଳିତ ହେଲା ତନୁ ମମତା ବଶତଃ ।
ଝୁଲୁଥାନ୍ତି ଯେବେ ଗୁହ-କାନ୍ଧେ ରଖି ହାତ,
ଶୋଭନ୍ତି ଯେସନେ 'ପ୍ରେମ-ବିନୟ' ସାକ୍ଷାତ । ୪୮୪

ଏ ରୂପେ ଭରତ ଘେନି ସଙ୍ଗେ ସେନାଗଣ,
ଜଗତ ପାବନୀ ଗଙ୍ଗା କଲେ ଦରଶନ ।
ରାମ-ଘାଟେ ଯାଇ କଲେ ସପ୍ରେମେ ପ୍ରଣାମ,
ସୁଖ-ମଗ୍ନ-ମନ ସତେ ମିଳିଲେ କି ରାମ । ୪୮୫

ପ୍ରଣାମ କରନ୍ତି ପ୍ରେମେ ପୁର ନର ନାରୀ,
ବ୍ରହ୍ମମୟ ଜଳ ଦେଖି ହୃଦେ ହର୍ଷ ଭାରି ।
ସ୍ନାନ ଶେଷେ କର ଯୋଡ଼ି କରନ୍ତି କାମନା,
'ରାମ ପଦେ ଅଳ୍ପ ପ୍ରୀତି କଦାପି ଦଅନା' । ୪୮୬

ଭରତ କହିଲେ, "ଗଙ୍ଗା ମାତା ତବ ରେଣୁ,
ଯେପରି ସକଳ ସୁଖ-ପ୍ରଦ କାମଧେନୁ ।
ଯୋଡ଼ି ବେନି କର ମାଗୁଅଛୁ ଏହି ବର,
ସ୍ୱତଃ ପ୍ରୀତି ଦଅ ରାମ-ସୀତାଙ୍କ ପୟର ।" ୪୮୭

ଏ ରୂପେ ଭରତ କଲେ ସ୍ନାନ ସମାପନ,
ଜାଣି ସ୍ନାନ ଶେଷ କରିଛନ୍ତି ମାତାଗଣ ।
ତହୁଁ ଗୁରୁ ବଶିଷ୍ଠଙ୍କ ଅନୁମତି ପାଇ,
ଚଳିଲେ ସେଠାରୁ ଡେରା ସତ୍ୱର ଉଠାଇ । ୪୮୮

ଲୋକମାନେ ଯହିଁ ତହିଁ ଡେରା ପକାଇଲେ,
ସଭିଙ୍କ ଖବର କାଳୁ ଭରତ ରଖିଲେ ।

ଦେବ ପୂଜା ଶେଷେ ଗୁରୁ ଅନୁମତି ପାଇ,
ଶ୍ରୀରାମ-ଜନନୀ ପାଶେ ଗଲେ ବେନି ଭାଇ । ୯୮୯

ପାଦ ଛୁପି କହି କହି କୋମଳ ବଚନ,
ଭରତ ମାତାଙ୍କୁ କଲେ ଭକ୍ତି ପ୍ରଦର୍ଶନ ।
ଅରପି ମାତାଙ୍କ ସେବା ଶତ୍ରୁଘ୍ନଙ୍କ କରେ,
ନିଷାଦ ନାଥଙ୍କୁ ନିଜେ ଡାକଲେ ସତ୍ୱରେ । ୯୯୦

ସଖା ହାତେ ତାଙ୍କ ହାତ ମିଳାଇ ଚାଲିଲେ,
ଶରୀର ଶିଥିଳ ହେଲା ଅଶେଷ ପ୍ରୀତିରେ ।
କହନ୍ତି ସଖାଙ୍କୁ ମୋତେ ଦେଖାଅ ସେ ସ୍ଥଳ,
ନେତ୍ର ମନ ଜ୍ୱାଳା କିଛି କରିବ ଶୀତଳ । ୯୯୧

ରାତି ଶୋଇଥିଲେ ଯହିଁ ଶ୍ରୀରାମ-ଜାନକୀ ।
କହୁଁ ନେତ୍ର କୋଣେ ହୁଏ ଲୋତକ ଭରତି ।
ଭରତ ବଚନ ଶୁଣି ବିଷାଦ ପରାଣେ,
ନିଷାଦ ଚଳିଲା ନେଇ ତାଙ୍କୁ ସେହି ସ୍ଥାନେ । ୯୯୨

ପବିତ୍ର ଅଶୋକ ବୃକ୍ଷ ତଳେ ଯହିଁ ରାମ,
କରିଥିଲେ ଭାଇ ପତ୍ନୀ ସହିତେ ବିଶ୍ରାମ ।
ସେହି ବୃକ୍ଷ ତଳେ ଯାଇ ସାଦରେ ଭରତ,
ତଳେ ପଡ଼ି ବାରମ୍ବାର କଲେ ଦଣ୍ଡବତ । ୯୯୩

ମନୋହର କୁଶ ଶେଯ ନିରେଖି ସେ ସ୍ଥଳେ,
କରି ପ୍ରଦକ୍ଷିଣ କଲେ ପ୍ରଣାମ ପ୍ରେମରେ ।
ପାଦ-ପଦ୍ମ-ରଜ ନେତ୍ରେ ଲଗାଇଲେ ଆଣି,
ଅତିଶୟ ପ୍ରୀତି କିଏ ପାରିବ ବଖାଣି । ୯୯୪

ସୀତା-ଭୂଷା-ସୁନା-ଝରି ଦୁଇ ଚାରି ତଳେ,
ଦେଖି ସୀତା ସମ ଭାବ ନେଲେ ଶିର ପରେ ।
ହୃଦୟେ ବିଷାଦ ଭରି ସଜଳ ନୟନେ,
କହିଲେ ସଖାଙ୍କ ଆଗେ କରୁଣ ବଚନେ । ୯୯୫

"ଜାନକୀ ବିରହେ ଏଇ ଝିଙ୍ଗ ଦୁ୍ୟତିହୀନ,
ଯେସନେ ଅଯୋଧ୍ୟା ନାରୀ ପୁରୁଷେ ମଳିନ ।
ଜନକ ତାଙ୍କର ପିତା, କାହିଁ ପଟାନ୍ତର,
ଭୋଗ ଯୋଗ କରଗତ ଜଗତେ ତାଙ୍କର । ୯୯୬

ସୂର୍ଯ୍ୟବଂଶ ସୂର୍ଯ୍ୟ ତାଙ୍କ ଶ୍ୱଶୁର ନୃପତି,
ତାଙ୍କର ଐଶ୍ୱର୍ଯ୍ୟ ସ୍ୱର୍ଗେ ଇନ୍ଦ୍ର ପ୍ରଶଂସନ୍ତି ।
ପ୍ରାଣନାଥ ରଘୁବୀର ଶ୍ରୀରାମ ଗୋସାଇଁ,
ସେ ବଡ଼, ଯାହାକୁ ରାମ ବଅନ୍ତି ବଡ଼ାଇ । ୯୯୭

ପତିବ୍ରତା ନାରୀ ଶିରୋମଣି ସୀତାଙ୍କର,
କୁଶ-ଶଯ୍ୟା ଦେଖି ଆହା କେହ୍ନେ ଏ ପାମର,
ବକ୍ଷ ଫାଟି ନ ହୁଅଇ ଶତଧା ବିଦୀର୍ଣ୍ଣ ?
ମନେ ହୁଏ ଏ ହୃଦ କି ବଜ୍ରରୁ କଠିନ । ୯୯୮

ଲାଳନ ପାଳନ ଯୋଗ୍ୟ ଅନୁଜ ଲକ୍ଷ୍ମଣ,
ନ ଥିଲା, ନ ଅଛି ଭାଇ, ନ ହେବେ ଏସନ ।
ପୁରଜନ ପ୍ରିୟ ପିତା ମାତା ଅଲିଅଳ,
ସୀତା-ରାମଙ୍କର ପ୍ରିୟ ପ୍ରାଣର ଦୋସର । ୯୯୯

ଅତି ଶୀଳ ସୁକୁମାର ମୂରତି କୋମଳ,
ବାଜ ନାହିଁ ଦେହେ ତାତି ପବନ ପ୍ରଖର ।
ସେ ବନେ ସହୁଛି ସବୁ ଦୁଃଖ ମଥାପାତି,
ଶୁଣି କୋଟି କୁଳିଶକୁ ଜିଣଇ ମୋ ଛାତି । ୧୦୦୦

ଶ୍ରୀରାମ ଜନମି କଲେ ଜଗତ ଉଜ୍ଜ୍ୱଳ,
ରୂପ ଶୀଳ ସୁଖ ସର୍ବ ଗୁଣର ସାଗର ।
ପୁରଜନ ପରିଜନ ଗୁରୁ ପିତା ମାତା,
ସ୍ୱଭାବେ ସମସ୍ତଙ୍କର ରାମ ସୁଖ-ଦାତା । ୧୦୦୧

ବଇରି କରଇ ମଧ୍ୟ ରାମଙ୍କ ବଡ଼ାଇ,
ଦେଖା କଥା ବିନୟରେ ମନ ହରୁଥାଇ ।

କୋଟି ସରସ୍ୱତୀ ପୁଣି କୋଟିଏ ଅନନ୍ତ,
ରାମ ଗୁଣ ଲେଖିବାକୁ ନୋହିବେ ସମର୍ଥ ; ୧୦୦୨

ସୁଖ-ରୂପ ରଘୁବଂଶ-ମଣି ରଘୁପତି,
ସୁମଙ୍ଗଳ ଆନନ୍ଦର ଭଣ୍ଡାର ଅଟନ୍ତି ।
ସେ ପୁଣି ଶୋଇଲେ ତଳେ କୁଶ ଶେଯ ପାରି,
ଜାଣୁଛି ବିଧାତା ଗତି ବଳବାନ ଭାରି । ୧୦୦୩

ଦୁଃଖ ବୋଲି ରାମ ଶୁଣି ନ ଥିଲେ ତ କାନେ
ଜଗିଥିଲେ ନୃପ ପ୍ରାଣ-ଲତିକା ସମାନେ ।
ପଲକ ନୟନେ, ଫଣୀ ମଣିକୁ ଯେସନେ,
ଦିବା ନିଶି ଥିଲେ ଜଗି ମାତାଏ ତେସନେ । ୧୦୦୪

ସେ ଏବେ ବୁଲନ୍ତି ବନେ ଗୃଲି ଗୃଲି ପାଦେ,
ଫଳ ଫୁଲ ମୂଳ କରି ଆହାର ଆହ୍ଲାଦେ ।
ଧିକ ମାତା କୈକେୟୀଙ୍କୁ ଅମଙ୍ଗଳ-ମୂଳ,
ନିଜ ପ୍ରାଣ-ପ୍ରିୟତମେ ହେଲି ପ୍ରତିକୂଳ । ୧୦୦୫

ମୋତେ ଧିକ୍ ହତଭାଗ୍ୟ ମୁଁ ପାପ-ସାଗର,
ଯାହା ପାଇଁ ହେଲା ଏତେ ଉତ୍ପାତ ପ୍ରବଳ ।
କୁଳର କଳଙ୍କ କରି ଜନ୍ମ ଦେଲି ବିଧି,
ମୋ କୁମାତା କରାଇଲା ମୋତେ ସ୍ୱାମୀ ଦ୍ରୋହୀ ।" ୧୦୦୬

ଶୁଣି ବୁଝାଇଲେ କେତେ ସପ୍ରେମେ ନିଷାଦ,
"ଅକାରଣେ କିଆଁ ନାଥ କରୁଛ ବିଷାଦ ।
ତୁମେ ତ ରାମଙ୍କ ପ୍ରିୟ, ତୁମ ପ୍ରିୟ ସେହି,
ପ୍ରତିକୂଳ ବିଧାତାର ଯିନା ଦୋଷ ଏହି । ୧୦୦୭

ପ୍ରତିକୂଳ ବିଧାତାର ଅତି କ୍ରୂର କର୍ମ,
ଯେ କୈକେୟୀ ଜନନୀଙ୍କ ବୁଦ୍ଧି କଲା ଭ୍ରମ ।
ସେ ଦିନ ରାତିରେ ପ୍ରଭୁ ଥରକୁ ଯେ ଥରି,
କେତେ ଯେ ପ୍ରଶଂସା କରି କହିଲେ ତୁମରି ।

ସତ କହେ, ରାମ-ପ୍ରିୟ କଏ ତୁମ ସମ,
ହୃଦେ ଦମ୍ଭ ଧରି ହେବ କଲ୍ୟାଣ ପରମ । ୧୦୦୮

ସର୍ବ ଅନ୍ତର୍ଯାମୀ ରାମ ଶ୍ରୀ ରଘୁନନ୍ଦନ,
ସେ ପୁଣି ସଙ୍କୋଚ ପ୍ରେମ କରୁଣା ସଦନ ।
ଏସନ ବିଚାରି ହୃଦ ଦୃଢ କରି ମନ,
ଚାଲ ସଖା କରିବାକୁ ବିଶ୍ରାମ ଗ୍ରହଣ ।" ୧୦୦୯

ସଖାଙ୍କ ବଚନ ଶୁଣି ହୃଦେ ଧୈର୍ଯ୍ୟ ଧରି,
ଡେରାକୁ ଆସିଲେ ରଘୁନନ୍ଦନ ସୁମରି ।
ପୁର ନରନାରୀ ଗଣେ ଏ ସମ୍ବାଦ ପାଇ,
ଦେଖିବା ପାଇଁ ସେ ସ୍ଥାନ ବେଗେ ଗଲେ ଧାଇଁ । ୧୦୧୦

ପ୍ରଣାମ କରନ୍ତି ସର୍ବେ କରି ପରକ୍ରମା,
କୈକେୟୀ ଦୋଷକୁ କେହି ନ କରନ୍ତି କ୍ଷମା ।
ନୟନେ ପୂରାଇ ଅଶ୍ରୁ କରନ୍ତି ମୋଚନ,
ପ୍ରତିକୂଳ ବିଧାତାକୁ ଦିଅନ୍ତି ଦୂଷଣ । ୧୦୧୧

ଭରତ ସ୍ନେହକୁ କେହି ପ୍ରଶଂସା କରଇ,
ନୃପତି ପାଳିଲେ ପ୍ରେମ, ଅନ୍ୟ କେ କହଇ ।
ଆପଣାକୁ ନିନ୍ଦି କଏ ପ୍ରଶଂସେ ନିଷାଦେ,
ସମର୍ଥ କେ କହିବାକୁ ସେ ମୋହ-ବିଷାଦେ । ୧୦୧୨

ସାରା ରାତି ଜାଗି ଲୋକେ ଏପରି ରହିଲେ,
ପ୍ରଭାତରେ ନଦୀ ପାର ହେବାକୁ ଲାଗିଲେ ।
ପ୍ରଥମେ ସୁନ୍ଦର ନାବେ ଗୁରୁଙ୍କୁ ଚଢ଼ାଇ,
ନୂଆ ନାବ ପରେ ଦେଲେ ମାତାଙ୍କୁ ବସାଇ । ୧୦୧୩

ଚାରି ଘଡ଼ି ମଧ୍ୟେ ସର୍ବେ ହୋଇଗଲେ ପାରି,
ଭରତ ଓହ୍ଲାଇ ନେଲେ ସଭିଙ୍କୁ ସମ୍ଭାଳି । ୧୦୧୪

ସେତେ ପ୍ରାତଃ କର୍ମ ସବୁ କରି ସମାପନ,
କଲେ ଗୁରୁ ଜନମାଙ୍କ ଚରଣେ ବନ୍ଦନ ।
ନିଷାଦଙ୍କୁ ଆଗେ ରଖି ତା' ପରେ ଭରତ,
ଆବେଗ ହୃଦୟେ ଦେଲେ ଚଳାଇ କଟକ । ୧୦୧୫

ଅଗ୍ରତେ ନିଷାଦରାଜ ଗୁହକୁ ରଖାଇ,
ଦେଲେ ମାତାମାନଙ୍କର ପାଲିଙ୍କି ଚଳାଇ ।
ଭାଇ ଶତ୍ରୁଘ୍ନଙ୍କୁ ଡାକି ତାଙ୍କ ସଙ୍ଗ କଲେ,
ଗୁରୁଜୀ ବଶିଷ୍ଠ ଗଲେ ବିପ୍ରଙ୍କ ସଙ୍ଗରେ । ୧୦୧୬

ନିଜେ ସୁର-ସରିତକୁ ଜଣାଇ ପ୍ରଣତି,
ସୁମରି ଲକ୍ଷ୍ମଣ ସହ ସୀତା ସୀତାପତି ।
ଚଳିଲେ ଭରତ ଖାଲି ପାଦେ ଚାଲି ଚାଲି,
ସଙ୍ଗରେ ଲଗାମ ବନ୍ଧା ଅଶ୍ୱ ଥିଲା ଖାଲି । ୧୦୧୭

କହନ୍ତି ଥରକୁ ଥର ସୁସେବକ ଗଣ,
'ଚାଲନ୍ତୁ ଗୋସାଇଁ ଅଶ୍ୱ କରି ଆରୋହଣ ।'
କହନ୍ତି ଭରତ ତାଙ୍କୁ ଆବେଗ ସମ୍ଭାଳି,
"ଶ୍ରୀରାମ ଗଲେ ତ ଖାଲି ପାଦେ ଚାଲି ଚାଲି ।
ଆଉ ଖାଲି ଆମ ପାଇଁ ଘୋଡ଼ା ହାତୀ ରଥ,
ଗଢ଼ା ହୋଇ ଅଛନ୍ତି କି ହେ ଭାଇ କହ ତ ? ୧୦୧୮

ମୁଣ୍ଡରେ ତ ଚାଲି ଚାଲି ଯିବା କଥା ମୋର,
ସେବକର ଧର୍ମ ସବୁ ଧର୍ମରୁ କଠୋର ।"
ଶୁଣି ମୃଦୁ କଥା ଦେଖି ଭରତଙ୍କ ଦଶା,
ତରଳନ୍ତି ଗ୍ଲାନି ଭରେ ସେବକେ ସହସା । ୧୦୧୯

ଭରତ ସେ ଦିନ ଯାଇ ତୃତୀୟ ପ୍ରହରେ,
ସଥାଟ ପ୍ରବେଶ କଲେ ପ୍ରୟାଗ ତୀର୍ଥରେ ।
ସୀତା-ରାମ, ସୀତା-ରାମ, କହି ଅନୁରାଗେ,
ପ୍ରେମେ ଉଲ୍ଲସିତ ହେଉଥିଲେ ହୃଦ ଭାଗେ । ୧୦୨୦

ଚରଣେ ଫୋଟକାବଳି ଦିଶଇ ଶୋଭନ,
କମଳ-କୋଷେ କି ଶୋଭା ପାଏ ହିମ କଣ ।
ଭରତ ଆସନ୍ତି ପାଦେ ଚାଲି ଚାଲି ଆଜ,
ଦୁଃଖିତ ହୋଇଲେ ଶୁଣି ସକଳ ସମାଜ । ୧୦୨୧

ଭରତ ଖବର ନେଲେ, ସର୍ବେ କଲେ ସ୍ନାନ ।
ତହୁଁ ଆସି ତ୍ରିବେଣୀକୁ କରିଲେ ପ୍ରଣାମ ।
ବିଧିରେ ସେ ସିତାସିତ ନୀରେ କରି ସ୍ନାନ,
ସମ୍ମାନିତ କଲେ ବିପ୍ରେ ଦେଇ ବହୁ ଦାନ । ୧୦୨୨

ଶ୍ୟାମଳ ଧବଳ ବୀଚି ନିରେଖି ଭରତ,
କମ୍ପିଲେ ପୁଲକ ଗାତ୍ରେ ଯୋଡ଼ି ବେନି ହସ୍ତ-
"ତୀର୍ଥରାଜ ତୁମେ ସର୍ବ କାମନା ପୂରକ,
ବେଦେ ଖ୍ୟାତ, ବିଶ୍ୱେ ତୁମ ପ୍ରଭାବ ଦ୍ୟୋତକ । ୧୦୨୩

ଭିକ୍ଷା ମାଗୁଅଛି ଆଜ ବର୍ଜି ସ୍ୱଧର୍ମ,
ଆର୍ତ୍ତ ନ କରଇ ଅବା କେଉଁ କୁକରମ ।
ଏହା ମନେ ବିଚାରି ସୁଜ୍ଞ ଦାନୀ ମହାମନା,
ସୁଫଳ କରନ୍ତି ଭବେ ଯାଚକ ପ୍ରାର୍ଥନା । ୧୦୨୪

ଧର୍ମ ଅର୍ଥ କାମ ପ୍ରତି ନାହିଁ ମୋର ରୁଚି,
ଅଥବା ଜୀବନେ ମୋକ୍ଷ ଗତି ନ ବାଞ୍ଛୁଁଚି ।
ଦିଅ ଏହି ବର ମୋତେ—ଜନ୍ମ ଜନ୍ମାନ୍ତରେ,
ଅବିଚଳ ପ୍ରୀତି ରହୁ ଶ୍ରୀରାମ ପୟରେ । ୧୦୨୫

ମୁଁ କୁଟିଳ ବୋଲି ପଛେ ଶ୍ରୀରାମ ଜାଣନ୍ତୁ,
ଗୁରୁ-ସ୍ୱାମୀ-ଦ୍ରୋହୀ ବୋଲି ସଂସାରେ କହନ୍ତୁ,
କିନ୍ତୁ ସୀତା-ରାମ ପାଦ-ପଦ୍ମେ ରତି ମୋର,
ଦିନୁଁ ଦିନ ବୃଦ୍ଧି ପାଉ ଅନୁଗ୍ରହେ ତୋର । ୧୦୨୬

ଚାତକ ଆଜନ୍ମ ପ୍ରୀତି ଭୁଲି ଜଳଧର,
ମାଗିଲେ ସଲିଳ, ଦେଉ ଅଶନି ପଥର ।

ରତନ କମିଲେ କନ୍ତୁ ମର୍ଯ୍ୟାଦା କମଇ,
ବଢ଼ିତ ପ୍ରୀତିରେ ସବୁ ମଙ୍ଗଳ ହୁଅଇ । ୧୦୨୭

ପୋଡ଼ିଲେ ଉଜ୍ଜ୍ୱଳ ହୁଏ ସୁନା ଯେଉଁପରି,
ପ୍ରିୟତମ ପଦେ ପ୍ରୀତି ବଢ଼ୁ ମୋ ସେପରି ।"
ଭରତ ବଚନ ଶୁଣି ତ୍ରିବେଣୀ କଲ୍ଲୋଳେ,
ସୁମଙ୍ଗଳ ଧ୍ୱନି ଉଠେ ମୃଦୁ କଳ ରୋଳେ । ୧୦୨୮

"ହେ ଭରତ ସାଧୁ ତୁମେ ସାଧୁ ସବୁ ମତେ,
ଅଗାଧ ପୀରତି ତବ ଶ୍ରୀରାମଙ୍କ ପଦେ ।
ବୃଥାରେ କମ୍ପାଇ ଦୁଃଖ କରୁଅଛ ମନେ,
ତୁମ ସମ ରାମ-ପ୍ରିୟ କେ ଅଛି ଭୁବନେ ?" ୧୦୨୯

ତନୁ ପୁଲକିତ ହେଲା ହୃଦୟ ଉତ୍‌ଫୁଲ୍ଲ,
ଶୁଣି ତ୍ରିବେଣୀର ବାଣୀ ଅତି ଅନୁକୂଳ ।
କହି—'ହେ ଭରତ ଧନ୍ୟ, ଧନ୍ୟ ତୁମେ ଧନ୍ୟ ।'
ଆନନ୍ଦେ ଦେବତା କଲେ କୁସୁମ ବର୍ଷଣ । ୧୦୩୦

ଅତି ପ୍ରମୋଦିତ ହେଲେ ପ୍ରୟାଗ ନିବାସୀ,
ବ୍ରହ୍ମଚାରୀ ବାନପ୍ରସ୍ଥୀ ଗୃହସ୍ଥ ଉଦାସୀ ।
ମିଳି ପାଞ୍ଚ ଦଶ ଏକୁ ଆରେକ କହନ୍ତି—
'ଭରତ ଚରିତ ପ୍ରେମ ସତ୍ୟ ଶୁଚି ଅତି' । ୧୦୩୧

ଶୁଣି ଶୁଣି ରାମ ମନୋହର ଗୁଣ ରାଶି,
ହେଲେ ଭରଦ୍ୱାଜ ମୁନିବର ପାଶେ ଆସି ।
ମୁନି ଭରତଙ୍କ ଦଣ୍ଡ ପ୍ରଣାମ କରେଖି,
ଭାବିଲେ ତାହାଙ୍କୁ ନିଜ 'ଭାଗ୍ୟମୂର୍ତ୍ତି' ଏ କି ? ୧୦୩୨

ଧାଇଁ ଭରତଙ୍କୁ ତୋଳି କଲେ ଆଲିଙ୍ଗନ,
କରି ଆଶୀର୍ବାଦ ହେଲେ କୃତାର୍ଥ ଭାଜନ ।
ଆସନ ଦିଅନ୍ତେ ନତ ଶିରେ ସେ ବସିଲେ,
ପଳାଇ ପଶିବେ ଅବା ସଙ୍କୋଚ-ମନ୍ଦିରେ । ୧୦୩୩

କାଳେ କି ପରିହରି ଦେବେ ମୁନି—ଚିନ୍ତା ବଡ଼,
କହିଲେ ଭରତ ଲଜ୍ଜା ଦେଖି ମୁନିବର-
"ହେ ଭରତ ପାଇଛୁ ମୁଁ ସବୁ ସମାଚାର,
ବିଧାତାର କର୍ମ ପରେ ବଳ ନାହିଁ କାର । ୧୦୩୪

ଜନନୀ କୁକର୍ମ ସ୍ମରି କର ନାହିଁ ଗ୍ଲାନି,
ଏଥିରେ କୈକେୟୀ ମାତା ଦୋଷହୀନା ଜାଣି ।
ହେ ପୁତ୍ର ଭରତ ! ମାତା ବୁଦ୍ଧିକୁ ଅବଶ୍ୟ,
ଦେବୀ ସରସ୍ୱତୀ ପରି କରିଥିଲେ ଭ୍ରଂଶ । ୧୦୩୫

ତୁମ ମତ କହି କେହି ନ କହିବେ ସତ,
ବିଦ୍ୱାନ ସମ୍ମତ ଯେଣୁ ଲୋକ ବେଦମତ ।
ବରଂ ତୁମ ସୁବିମଳ ଯଶ ବାଣି ଗାଇ,
ଲୋକ ବେଦମତ ସିନା ଲଭିବେ ବଡ଼ାଇ । ୧୦୩୬

ଲୋକ ବେଦମତେ ଏହା ସମସ୍ତେ କହନ୍ତି,
ଯେ ଲଭଇ ରାଜ୍ୟ ପିତା ଯାହାକୁ ଦିଅନ୍ତି ।
ତୁମ୍ଭଙ୍କୁ ଡକାଇ ନୃପ ଦେଇଥିଲେ ଭାର,
ମିଳିଥାନ୍ତା ସୁଖ ଯଶ ଧରମ ଅପାର । ୧୦୩୭

ରାମ ବନବାସ ହେଲା ଅନର୍ଥ କାରଣ,
ଯାହା ଶୁଣି ପୀଡ଼ାଗ୍ରସ୍ତ ସମସ୍ତ ଭୁବନ ।
ତାହା ଭାବୀ-ବଶ; ରାଣୀ ହୋଇବୁଦ୍ଧିହୀନା,
ପଶ୍ଚାତ୍ତ ଭିଆଇ ଏବେ ଅନୁତପ୍ତ ସିନା । ୧୦୩୮

ଅଳ୍ପ ଦୋଷ ଅଛୁ ବୋଲି ଚହିଁରେ ତୁମର,
ଯେ କହିବ ସେ ଅଜ୍ଞାନୀ ଅସାଧୁ ପାମର ।
ରାଜ୍ୟ କରିଥିଲେ ହୋଇ ନ ଥାଆନ୍ତା ଦୋଷ,
ରାମ ଶୁଣି ଲଭିଥାନ୍ତେ ନିଶ୍ଚୟ ସନ୍ତୋଷ । ୧୦୩୯

ଏବେ ତୁମେ ଯାହା କଲ, ଭଲ ହେ ଭରତ,
ତୁମ ପକ୍ଷେ ଏହି ସିନା ଉପଯୁକ୍ତ ପଥ ।

ଶ୍ରୀରାମ ଚରଣେ ରତି, ମତି ଅନୁକୂଳ,
ଜାଣ ଜଗତରେ ସର୍ବ ସୁମଙ୍ଗଳ ମୂଳ । ୧୦୪୦

ସେ ତୁମର ପ୍ରାଣଧନ ତୁମର ଜୀବନ,
ଏତେ ବଡ଼ ଭାଗ୍ୟବାନ କିଏ ତୁମ ସମ ।
ତୁମ ପକ୍ଷେ ଏ ଅଦ୍ଭୁତ ହେବ କାହିଁ ପାଇଁ,
ତୁମେ ଦଶରଥ ସୁତ; ରାମ ପ୍ରିୟ ଭାଇ । ୧୦୪୧

ଶୁଣ ପୁତ୍ର ହେ ଭରତ ରଘୁବର ମନେ,
ତୁମ ସମ ପ୍ରେମ ପାତ୍ର କେ ନାହିଁ ଭୁବନେ ।
ଶ୍ରୀରାମ ଲକ୍ଷ୍ମଣ ସୀତା ଅଶେଷ ପ୍ରୀତିରେ,
ତୁମକୁ ପ୍ରଶଂସି ସାରା ରାତି ବିତାଇଲେ । ୧୦୪୨

ପ୍ରୟାଗରେ ସ୍ନାନ କାଳେ ମୁଁ ଜାଣେ ମରମ,
ତୁମ ପ୍ରେମେ ହେଉଥିଲେ ସେମାନେ ମଗନ ।
ତୁମ ପ୍ରତି ରାମଙ୍କର ସ୍ନେହ ଏହିପରି;
ମୂର୍ଖର ବିଷୟ-ସୁଖେ ମମତା ଯେପରି । ୧୦୪୩

ରାମଙ୍କର ଏ ନୁହଁଇ ବଡ଼ାଇ ଅଧିକ,
ପାଳନ୍ତି ଶରଣାଗତେ କୁଟୁମ୍ବ ସହିତ ।
ହେ ଭରତ ତୁମ ପ୍ରତି ମୋର ଏହି ମତ,
ତୁମେ ଯେହେତୁ ସ୍ୱୟଂ 'ରାମ-ସ୍ନେହ' ମୂର୍ତ୍ତିମନ୍ତ । ୧୦୪୪

ଏ ସବୁ ବିଚାର ତୁମେ, କଳଙ୍କ ତୁମର,
ଆମ ପାଇଁ କିନ୍ତୁ ଶିକ୍ଷା ଆଦର୍ଶ କେବଳ ।
ସିଦ୍ଧ ହେବା ପାଇଁ ସିନା 'ରାମ-ଭକ୍ତି-ରସ',
ଏ ସମସ୍ତ ଶୁଭମସ୍ତ ମଙ୍ଗଳ ସରସ । ୧୦୪୫

ସୁବିମଳ-ନବ-ବିଧୁ ପୁତ୍ର ଯଶ ତୋର,
ଶ୍ରୀରାମ-କିଙ୍କର-ଜନେ କୁମୁଦ, ଚକୋର ।
ଉଦିତ ରହିବ ସଦା ହେବନି ମଳିନ,
ଭବ-ନଭେ କିରଂ ବୃଦ୍ଧି ହେବ ଦିନୁଁ ଦିନ । ୧୦୪୬

ବିଲୋକ ଚକୋରେ ତାଙ୍କୁ କରିବେ ଆଦର,
ନ ହରିବେ ଛବି ପ୍ରଭୁ-ଦୀପ୍ତି-ଦିବାକର ।
ସଭିଙ୍କୁ ସେ ନିଶି ଦିନ ସୁଖଦ ହୋଇବ,
କୈକେୟୀ-କୁକର୍ମ-ରାହୁ ଗ୍ରାସି ନ ପାରିବ । ୧୦୪୭

ରାମ ପ୍ରେମାମୃତେ ଏହି ଚନ୍ଦ୍ରମା ପୂରିତ,
ଗୁରୁ ଅପମାନ ଦୋଷେ ନୁହଇ ଦୂଷିତ ।
ସଂସାରେ ସୁଲଭ କଲ ସେ ରସକୁ ସୁତ,
ଏବେ ରାମଭକ୍ତେ ତୃପ୍ତ ଲଭି ସେ ଅମୃତ । ୧୦୪୮

ଭଗୀରଥ ଧରା ତଳେ ଗଙ୍ଗାଙ୍କୁ ଆଣିଲେ,
ସମସ୍ତ ମଙ୍ଗଳ ହୁଏ ଯାହାଙ୍କୁ ସ୍ମରିଲେ,
କେ ବର୍ଣ୍ଣି ପାରିବ ଦଶରଥ ଗୁଣାବଳି,
କି ଅଧିକ, ଜଗତେ କେ ନାହିଁ ତାଙ୍କ ଭଳି । ୧୦୪୯

ଯାହାଙ୍କ ସଙ୍କୋଚ ଶୀଳ ପ୍ରେମେ ବଶୀଭୂତ,
ହୋଇ ଏ ଧରାରେ ରାମ ହେଲେ ଆବିର୍ଭୂତ ।
ଯାହାଙ୍କୁ ହୃଦୟ-ନେତ୍ରେ ଗୃହିଁ ଅବିରତ,
ସ୍ୱୟଂ ମହାଦେବ ସୁଦ୍ଧା ନୁହନ୍ତି ତୃପତ । ୧୦୫୦

ତୁମେ କଳ କୀର୍ତ୍ତି-ବିଧୁ ଅତି ଅନୁପମ,
'ରାମ-ପ୍ରେମ' ଯହିଁ ବାସ କରେ ମୃଗ ସମ ।
ବୃଥାରେ ହୃଦୟେ ଗ୍ଲାନି କରୁଛ କୁମର,
ସ୍ପର୍ଶମଣି ପାଇ କିଆଁ ଦାରିଦ୍ର୍ୟକୁ ଡର । ୧୦୫୧

ହେ ଭରତ, ଆମେ କେବେ ମିଥ୍ୟା ନ କହଉ,
ଉଦାସୀନ ତପୀବର ବନ ମଧ୍ୟେ ରହୁ ।
ସବୁ ସାଧନାର ଏହି ସୁଫଳ ପାଇଲୁ,
ଶ୍ରୀରାମ ଲକ୍ଷ୍ମଣ ସୀତା ଦର୍ଶନ ଲଭିଲୁ । ୧୦୫୨

ସେ ଫଳର ଫଳ ରୂପେ ଦର୍ଶନ ତୁମର,
ପ୍ରୟାଗ ସମେତ ବଡ଼ ସୌଭାଗ୍ୟ ଆମ୍ଭର ।

ଧନ୍ୟ ତୁମେ ଜଗତକୁ ଯଶେ ଜିତିଗଲ ।”
ଏହା କହି ପ୍ରେମ-ମଗ୍ନ ହେଲେ ଋଷିବର । ୧୦୫୩

ଶୁଣି ମୁନିବାଣୀ ହରଷିତ ସଭାସଦେ,
ସାଧୁ କହି ସ୍ୱରେ ପୁଷ୍ପ ବର୍ଷିଲେ ଆନନ୍ଦେ ।
ଧନ୍ୟ ଧନ୍ୟ ଧ୍ୱନି ହେଲା ପ୍ରୟାଗ ଗଗନେ,
ଭରତ ପ୍ରେମରେ ମଗ୍ନ ହେଲେ ମନେ ମନେ । ୧୦୫୪

ଶରୀରେ ପୁଲକ କଞ୍ଜ-ନେତ୍ରେ ପ୍ରେମ ନୀର,
ହୃଦେ ସୀତା-ରାମ, ସୀତା ଜପି ଜପି ଧୀର,
କରି ମୁନି-ମଣ୍ଡଳୀଙ୍କ ଚରଣ ବନ୍ଦନ,
ଆନନ୍ଦ ଗଦ୍ ଗଦ୍ ସ୍ୱରେ କହିଲେ ବଚନ । ୧୦୫୫

“ଏ ମୁନି ସମାଜ ପୁଣି କ୍ଷେତ୍ର ତୀର୍ଥପତି,
ସତରେ ଖାଇଲେ ରାଣ ଏଥି ବଡ଼ କ୍ଷତି ।
କହିଲେ ଏଠାରେ ମନୁଁ ଗଢ଼ି କିଛି କଥା,
ତା’ ସମ ପାତକ ନାହିଁ, ନ ଥିବ ମାଉତା । ୧୦୫୬

ତୁମେ ତ ସର୍ବଜ୍ଞ, କହେ ଏ ସତ୍ୟ ବଚନ,
ହୃଦ ଅନ୍ତର୍ଯାମୀ ପୁଣି ଶ୍ରୀରଘୁନନ୍ଦନ ।
ଜନନୀ କୁକର୍ମେ ନୁହେଁ ଚିନ୍ତିତ ମୋ ମନ,
ଦୁଃଖ ନାହିଁ ମୋର ନିନ୍ଦା ରଟିଲେ ଭୁବନ । ୧୦୫୭

ଡର ନାହିଁ ନାଶ ହେଲେ ମୋର ପରଲୋକ,
ପିତାଙ୍କ ମରଣେ ଅବା ନାହିଁ ମୋର ଶୋକ ।
ଜଗତରେ ବ୍ୟାପ୍ତ ତାଙ୍କ ସୁଯଶ ସୁକୃତ,
ଶ୍ରୀରାମ ଲକ୍ଷ୍ମଣ ସମ ପାଇଥିଲେ ସୁତ । ୧୦୫୮

ତେଜିଲେ ଭଙ୍ଗୁର ଦେହ ଶ୍ରୀରାମ ବିରହେ,
କି କାରଣେ ତାଙ୍କ ପାଇଁ ଚିନ୍ତା ବା ହୃଦୟେ ?
କେବଳ ଲକ୍ଷ୍ମଣ ରାମ ସୀତା ମୁନିବେଶେ,
ବୁଲନ୍ତି ପାଦୁକା ବିନା ଯାହା ବନ ଦେଶେ । ୧୦୫୯

ବଲ୍କଲ ବସନ, ଫଳ ଫୁଲମୂଳ ଅଶନ,
କୁଶ ତୃଣ ପତ୍ର ପାରି ଭୂଇଁରେ ଶୟନ ।
ସବୁ ଦିନ ଖର ଶୀତ ବରଷା ପବନ,
ତରୁ ତଳେ ବସି ସହୁ ଅଛନ୍ତି କେସନ ? ୧୦୬୦

ଏ ଦୁଃଖ-ଅନଳେ ଜଳେ ନିରନ୍ତର ଛାତି,
ଦିନରେ ନ ହୁଏ ଭୋକ ନିଦ ନାହିଁ ରାତି ।
ମନେ ମନେ ଖୋଜୁଅଛି ସମସ୍ତ ଭୁବନ,
ନାହିଁକି ଏ କୁରୋଗର ଔଷଧ କଅଣ ? ୧୦୬୧

ମାତା ଅବଗୁଣ ପାପ-ମୂଳ ଯେ ବଢ଼େଇ,
ବାଉସୀ ପ୍ରକାରି କଲା ମୋ ହିତକୁ ନେଇ ।
କଳି-କୁକାଠରେ ଏକ ତିଆରି କୁଯନ୍ତ୍ର,
ପୋତିଛି ଅଯୋଧ୍ୟା ପୁରେ ପଢ଼ି ସେ କୁମନ୍ତ୍ର । ୧୦୬୨

ମୋ ନିମନ୍ତେ କଲା ସିଏ ସକଳ ଚକ୍ରାନ୍ତ,
ନଷ୍ଟ କଲା ଜଗତକୁ ରଚି ବାର ବାଟ ।
କଟିବ କୁଯୋଗ ସିନା ରାମ ବାହୁଡ଼ିଲେ,
ଅଯୋଧ୍ୟାର ଶାନ୍ତି ନାହିଁ ଆଉ କେଉଁଥିରେ ।” ୧୦୬୩

ଭରତ ବଚନ ଶୁଣି ସୁଖୀ ହେଲେ ମୁନି,
ଅନ୍ୟମାନେ ବହୁମୁଖେ ପ୍ରଶଂସିଲେ ପୁଣି ।
ମୁନୀଶ କହିଲେ, “ଦୁଃଖ କର ନାହିଁ ମନେ,
ଦୁଃଖ ମେଣ୍ଟିଯିବ ରାମ-ପଦ ଦରଶନେ । ୧୦୬୪

କହିଲେ ସାନ୍ତ୍ୱନା ଦେଇ ମୁନୀଶ ଉତ୍ତମ,
ତୁମେମାନେ ଆଜ ଆମ ଅତିଥି ପରମ ।
ଦେଉଛୁ ଯା’ କିଛି କନ୍ଦମୂଳ ଫୁଲ ଫଳ,
ସାଦରେ ସେ ସବୁ ବହି ସେବିବ ଆମ୍ଭର ।” ୧୦୬୫

ମୁନିଙ୍କ ବଚନ ଶୁଣି ଭାବନ୍ତି ଭରତ,
ଏ ସମୟେ ଏ ସଙ୍କୋଚ ହୋଇଛି ଆଗତ ।

ଗୁ ରୁ ଆଜ୍ଞା ଗରୀୟସୀ ବିଚାରି ମନରେ,
କହିଲେ ଚରଣ ବନ୍ଦି ଯୋଡ଼ି ବେନି କରେ । ୧୦୬୬

ଶିରେ ଧରି ତବ ଆଜ୍ଞା କରିବା ପାଳନ,
ପ୍ରଭୁ ଏ ଅଟଇ ମୋର ପରମ ଧରମ ।"
ଭରତ କଥାରେ ଖୁସି ହେଲେ ମୁନିବର,
ପାଖେ ଡାକି ଶୁଚି ଶିଷ୍ୟ ସେବକ ନିକର । ୧୦୬୭

କହିଲେ, "ଭରତଙ୍କର ଆତିଥ୍ୟ ଉଚିତ,
କନ୍ଦମୂଳ ଫଳ ମୂଳ ଆଣ ଯଥୋଚିତ ।"
'ବହୁତ ଉତ୍ତମ' କହି ସେ ଶିର ନୁଆଁଇ,
ହରଷେ ଚଳିଲେ ନିଜ ନିଜ କାର୍ଯ୍ୟ ପାଇଁ । ୧୦୬୮

ଭାବନ୍ତି ମୁନୀଶ ହେଲି 'ବଡ ନିମନ୍ତ୍ରଣ',
ଯିଅଁ ଦେଖି ପୂଜା ବିଧି ହେବା ପ୍ରୟୋଜନ ।
ଶୁଣି ତହିଁ ଆସି ଋଦ୍ଧି ସିଦ୍ଧି ଅଣିମାଦି,
କହିଲେ, "ଆଦେଶେ ନେବୁ ସକଳ ସମ୍ପାଦି ।" ୧୦୬୯

ଅନୁଜ ସମାଜ ସହ ଶ୍ରୀରାମ ବିରହେ,
ବ୍ୟାକୁଳ ହୁଅନ୍ତି କେହ୍ନେ ଭରତ ହୃଦୟେ ।
ଅତିଥି ସତ୍କାର କରି ତାଙ୍କ ଶ୍ରମ ହର ।"
କହିଲେ ଆନନ୍ଦ ମନେ ସୁଜ୍ଞ ମୁନିବର । ୧୦୭୦

ଋଦ୍ଧି ସିଦ୍ଧି ଶିରେ ଘେନି ମୁନିବର ବାଣୀ,
ଆପଣାକୁ ଅତିଶୟ ଶୁଭାଗିନୀ ଜାଣି ।
ପରସ୍ପରେ କଥାବାର୍ତ୍ତା ହୁଅନ୍ତି ଏମିତି,
ଶ୍ରୀରାମଙ୍କ ଭାଇ ଆମ ପରମ ଅତିଥି । ୧୦୭୧

ମୁନି ପଦ ବନ୍ଦି ଆମେ କରିବା ସେପରି,
ସୁଖୀ ହେବେ ସାରା ରାଜ ସମାଜ ଯେପରି ।
କହି ନାନା ରମ୍ୟ ଗୃହ କଲେ ବିରଚନ,
ଯା' ଦେଖି ଅଧୀର ହେଲେ ସୁର-ସୌଧଗଣ । ୧୦୭୨

ନାନା ଭୋଗ ଅଇଶ୍ୱର୍ଯ୍ୟ ଖଞ୍ଜି ଦେଲେ ତହିଁ,
ଯାହାକୁ ନିରେଖି ସୁର-ଅନ୍ତର ଝୁରଇ ।
ସକଳ ସାମଗ୍ରୀ ନେଇ ଦାସ ଦାସୀ ଗଣେ,
ମନ ଦେଇ ମନ ଜଗିଥାନ୍ତି ଅନୁକ୍ଷଣେ । ୧୦୭୩

ସପନେ ଯେ ସୁଖ ମିଳେ ନାହିଁ ସରଗରେ,
ସିଦ୍ଧି ଗଣେ ସଜାଇଲେ ସବୁ ପଲକରେ ।
ପ୍ରଥମେ ସର୍ଵଙ୍କୁ ଦେଲେ ଆଦରେ ସଦନ,
ସୁନ୍ଦର ସୁଖଦ ରୁଚି ଯାହାର ଯେସନ । ୧୦୭୪

ଋଷିଙ୍କ ଆଦେଶେ ଦେଲେ ସୁରମ୍ୟ ଭବନ,
ସବାନ୍ଧବେ ଭରତଙ୍କୁ ଋଦ୍ଧି ସିଦ୍ଧି ଗଣ ।
ତପୋବଳେ ମୁନି କଲେ ଏପରି ବୈଭବ,
ଚକିତ ବିରଞ୍ଚି—ହେଲା କେସନେ ସମ୍ଭବ । ୧୦୭୫

ମୁନିଙ୍କ ପ୍ରଭାବ ଯେବେ ଭରତ ଦେଖିଲେ,
ଦେବତା-ଲୋକକୁ ତୁଚ୍ଛ ନିରସ ମଣିଲେ ।
ସେ ସୁଖ ସାମଗ୍ରୀ କିଏ ଅବା ବର୍ଣ୍ଣିପାରେ,
ଜ୍ଞାନୀଏ ବୈରାଗ୍ୟ ଭୁଲି ମଜ୍ଜିବେ ସଂସାରେ । ୧୦୭୬

ସୁରମ୍ୟ ବିତାନ ଶଯ୍ୟା ଆସନ ବସନ,
ନାନା ବିହଙ୍ଗମ ମୃଗ ବନ ଉପବନ ।
ସୁଗନ୍ଧିତ ପୁଷ୍ପରାଜି ସୁଧା ସମ ଫଳ,
ସୁବିମଳ ଜଳାଶୟ ସରସୀ ନିର୍ମଳ । ୧୦୭୭

ଅଶନ ଅମୃତ ପରି ପାନୀୟ ପବିତ୍ର,
ନିରେଖି ସଂଯମୀ ସମ ହେଲେ ସଙ୍କୁଚିତ ।
ଗୃହେ ଗୃହେ କାମଧେନୁ କଳ୍ପବୃକ୍ଷ ରାଜେ,
ଶଚୀ ଇନ୍ଦ୍ର ଲଳାୟିତ ଦେଖି ସେ ସମାଜେ । ୧୦୭୮

ତ୍ରିବିଧ ପବନ ବହେ ଋତୁ ଯେ ବସନ୍ତ,
ଧର୍ମ ଅର୍ଥ କାମ ମୋକ୍ଷ ସହଜେ ପ୍ରାପତ ।

ଭରି ଭୋଗ୍ୟ ବସ୍ତୁ ବାଳା ମାଳା ଯେ ଚନ୍ଦନ,
ଦେଖି ଲୋକେ ହେଲେ ହର୍ଷ ବିସ୍ମୟେ ମଗନ । ୧୦୭୯

ସମ୍ପତ୍ତି ଚକୋର ସମ ଚକୁଆ ଭରତ,
ମୁନିଙ୍କ ଆଦେଶ ତହିଁ ହେଲା ବ୍ୟାଧବତ ।
ଆଶ୍ରମର ପଞ୍ଜୁରୀରେ ରଖିଲା ସେ ଜାଣି;
ସମ୍ଭୋଗ ବିହୁନେ ମାସ ରାତି ଗଲା ବିତି । ୧୦୮୦

**ମାସ ପାରାୟଣ, ଊନବିଂଶ ବିଶ୍ରାମ ।**

ପ୍ରଭାତେ ଭରତ କଲେ ତୀର୍ଥରାଜେ ସ୍ନାନ,
ମୁନିଙ୍କୁ ସମାଜ ସହ କରିଲେ ସମ୍ମାନ ।
ଶିରେ ଘେନି ମୁନିଙ୍କର ଆଶିଷ ଆଦେଶ,
ସପ୍ରେମ ହୃଦୟେ କଲେ ବିନତି ଅଶେଷ । ୧୦୮୧

ମଥଗତ-କୁଶଳୀଙ୍କୁ ଥାଟ ସଙ୍ଗେ ନେଇ,
ଚିତ୍ରକୂଟ ଅଭିମୁଖେ ଗଲେ ଧ୍ୟାନ ଦେଇ ।
ରାମ-ସଖା-ଗୁହ କାନ୍ଧେ ରଖିଥାନ୍ତି କର,
ସତେ କି 'ସାକ୍ଷାତ-ପ୍ରେମ' ଧରେ କଳେବର । ୧୦୮୨

ପୟରେ ପାଦୁକା ନାହିଁ ଶିରେ ନାହିଁ ଛତ୍ର—
ତାଙ୍କ ପ୍ରେମ ବ୍ରତ ଧର୍ମ ନିଷ୍ଠା ନିଷ୍କପଟ ।
ରାମ ସୀତା ଲକ୍ଷ୍ମଣଙ୍କ ପଥର କାହାଣୀ,
ପଚାରନ୍ତି ସଖାଙ୍କୁ ସେ କହି ମୃଦୁ ବାଣୀ । ୧୦୮୩

ରାମ ବାସସ୍ଥଳ-ତରୁ ନୟନେ ବିଲୋକି,
ହୃଦୟେ ଉଚ୍ଛୁଳେ ପ୍ରୀତି ନ ହୁଅଇ ରୋକି ।
ଏ ଦଶା ନିରେଖି ସୁରେ ଝରାନ୍ତି କୁସୁମ,
ମୃଦୁ ସୁମଙ୍ଗଳମୟ ହୁଏ ବନ ଭୂମ । ୧୦୮୪

ମେଘ ହୁଏ ଛାଇ ବହେ ସୁଖଦ ପବନ,
ଦୁର୍ଗମ ଅରଣ୍ୟ ପଥ ହୁଅଇ ସୁଗମ ।
ପଥ ପ୍ରୀତିକର ହୁଏ ଭରତଙ୍କୁ ଯେସନେ,
ନୋହିଥିଲା ସେହି ପଥ ରାମଙ୍କୁ ତେସନେ । ୧୦୮୫

ଯେ ଜଡ଼ ଚେତନ, ପଥେ ଜୀବ ଯେତେ ଥିଲେ,
ପ୍ରଭୁଙ୍କୁ ଦେଖିଲେ ପ୍ରଭୁ ଯାହାଙ୍କୁ ଦେଖିଲେ,

ସେ ସମସ୍ତେ ହୋଇଥିଲେ ଶ୍ରେଷ୍ଠ ପଦ ଯୋଗ୍ୟ,
ଭରତ ଦର୍ଶନେ ଏବେ ଗଲା ଭବ-ରୋଗ । ୧୦୮୬

ଭରତଙ୍କ ପକ୍ଷେ ନୁହେଁ ଏହା ବଡ଼ କଥା,
ଯାହାଙ୍କୁ ଶ୍ରୀରାମ ହୃଦେ ସ୍ମରନ୍ତି ସର୍ବଥା ।
ଥରେ ମାତ୍ର ଯେ କରଇ ରାମ ଉଚ୍ଚାରଣ,
ନିଜେ ତରି ଅନ୍ୟଙ୍କୁ ସେ କରଇ ତାରଣ । ୧୦୮୭

ଭରତ ରାମଙ୍କ ପ୍ରିୟ ପୁଣି ସାନଭାଇ,
ପଥ ସୁମଙ୍ଗଳ-ଦାତା ନ ହେବ କିମ୍ପାଇଁ ?
ସିଦ୍ଧ ସାଧୁ ମୁନିଗଣେ ଏପରି କହନ୍ତି;
ଭରତଙ୍କୁ ଦେଖି ହୃଦେ ହରଷ ହୁଅନ୍ତି । ୧୦୮୮

ପ୍ରେମ ବଳ ଦେଖି ଇନ୍ଦ୍ର ହେଲେ ଚିନ୍ତାଗ୍ରସ୍ତ,
ଭଲକୁ ତ ଭଲ, ମନ୍ଦେ ମନ୍ଦ ଏ ଜଗତ ।
ଗୁରୁଙ୍କୁ କହିଲେ, "ପ୍ରଭୁ କର ସେହିପରି,
ଶ୍ରୀରାମ-ଭରତ ଭେଟ ନ ହେବ ଯେପରି । ୧୦୮୯

ରାମ ଲଜ୍ଜାଶୀଳ ପୁଣି ପ୍ରେମର କିଙ୍କର,
ତହିଁକି ଭରତ ସ୍ୱୟଂ ପ୍ରେମର ସାଗର ।
ଭଣ୍ଡୁର ହୁଅଇ ଏବେ ଆମ କଉଶଳ,
ଏଣୁ ଛନ୍ଦ ଛଳ ରଚି ତା' ଉପାୟ କର ।" ୧୦୯୦

ଗୁରୁ ବୃହସ୍ପତି ଶୁଣି ମୁରୁକି ହସିଲେ,
ସହସ୍ର-ନେତ୍ରଙ୍କୁ ନେତ୍ର ବିହୀନ ଜାଣିଲେ ।
କହିଲେ ସେ, "ମାୟା କଲେ ମାୟାପତି-ଦାସେ,
ସେ ମାୟା ଓଲଟି ନିଜ ଉପରକୁ ଆସେ । ୧୦୯୧

ତେବେ କିଛି କରିଥିଲ ରାମ-ଇଚ୍ଛା ଜାଣି,
ତକ୍ଷାନ୍ତ କରିଲେ ଏବେ ହେବ ନିଶ୍ଚେ ହାନି ।
ରାମଙ୍କ ସ୍ୱଭାବ ଏହି ଶୁଣ ସୁରପତି,
ତାଙ୍କ ପ୍ରତି ଅପରାଧ ସିଏ ନ ଧରନ୍ତି । ୧୦୯୨

କିନ୍ତୁ ଯେ କରଇ ଅପରାଧ ଭକ୍ତ ଜନେ,
ରାମ ରୋଷ ଅଗ୍ନିରେ ସେ ଜଳଇ ତକ୍ଷଣେ ।
ଲୋକେ ବେଦେ ଇତିହାସେ ଏ କଥା ବିଦିତ,
ପୁଣି ଦୁର୍ବାସାଙ୍କୁ ଜଣା ମହିମା ନିଶ୍ଚିତ । ୧୦୯୩

ଭରତ ସମାନ ରାମ-ପ୍ରେମୀ କେ ଜଗତେ,
ବିଶ୍ୱ ଜପେ ରାମ, ରାମ ଜପନ୍ତି ଭରତେ । ୧୦୯୪

ହେ ଅମରପତି, ରାମ-ଭକତ କାର୍ଯ୍ୟରେ
ବିଘ୍ନ ଘଟାଇବା ସ୍ୱପ୍ନ ନ ଦେଖ ମନରେ ।
ଇହଲୋକେ ଅପଯଶ, ଦୁଃଖ ପରଲୋକେ,
କେବଳ ତୁମର ଦିନ ଯିବ ବୃଥା ଶୋକେ । ୧୦୯୫

ଶୁଣ ଉପଦେଶ ମୋର ହେ ସୁରନାୟକ,
ଶ୍ରୀ ରଘୁନାଥଙ୍କୁ ପ୍ରିୟ ତାଙ୍କର ସେବକ ।
ସେବକେ ସେବିଲେ ସେହୁ ହୁଅନ୍ତି ଆନନ୍ଦ,
ସେବକେ ଶତ୍ରୁତା କଲେ ସେ ବହନ୍ତି କ୍ରୋଧ । ୧୦୯୬

ସୁଖେ ଦୁଃଖେ ସେ ସମାନ, ନାହିଁ ରାଗ ରୋଷ,
ନ ଘେନନ୍ତି ପାପ ପୁଣ୍ୟ ଗୁଣ ଅବା ଦୋଷ ।
କର୍ମକୁ ପ୍ରଧାନ କରି ଅଛନ୍ତି ସଂସାରେ,
ଫଳ ଭୁଞ୍ଜେ ପ୍ରାଣୀ ତା'ର କର୍ମ ଅନୁସାରେ । ୧୦୯୭

ତଥାପି କରନ୍ତି ସମ ବିଷମ ବେଭାର,
ଭକ୍ତ ଅଭକ୍ତଙ୍କ ହୃଦ ଭାବ ଅନୁସାର ।
ନିର୍ଗୁଣ ନିର୍ଲେପ ମାନ-ହୀନ ଏକ ରସ,
ଶ୍ରୀରାମ ସଗୁଣ ଏବେ ହୋଇ ପ୍ରେମବଶ । ୧୦୯୮

'ଶ୍ରୀରାମ ରଖନ୍ତି ସଦା ଭକ୍ତଜନ ରୁଚି'
ବେଦାଦି ପୁରାଣ ସୁର ସାଧୁଜନେ ସୂଚୀ—
ଏସନ ବିଚାରି ମନେ କୁଟିଳତା ଛାଡ଼,
ଭରତ ଚରଣେ ଏବେ ନିଅ ପ୍ରୀତି ବାଡ଼ି । ୧୦୯୯

ଶ୍ରୀରାମ-ଭକତେ ସଦା ପରହିତେ ରତ,
ଅପର ଦୁଃଖରେ ପୁଣି ଅତି ଦୟାବନ୍ତ ।
ଏ'ତ ଭକ୍ତ ଶିରୋମଣି ଶ୍ରୀରାମଙ୍କ ଭାଇ,
ଜାଣି ଏହା ଦେବରାଜ ଡରୁଛ କିମ୍ପାଇଁ ? ୧୧୦୦

ସତ୍ୟସନ୍ଧ ରାମଚନ୍ଦ୍ର ସୁର ହିତକାରୀ,
ଭରତ ନିଷ୍ଠିତେ ରାମ-ଆଜ୍ଞା ବ୍ରତଧାରୀ ।
ସ୍ୱାର୍ଥପର ହୋଇ ତୁମେ ହେଉଛ କାତର,
ଭରତ ନିର୍ଦ୍ଦୋଷ, ମୋହ ମାତ୍ର ଏ ତୁମର ।" ୧୧୦୧

ସୁରପତି ଶୁଣି ସୁର-ଗୁରୁଙ୍କ ବଚନ,
ଆଶ୍ୱାସ ଲଭିଲେ, ଗଲା ମନର କଷଣ ।
କୁସୁମ ବରଷି ଦେବରାଜ ହରଷିତ,
ପ୍ରଶଂସିଲେ ମନେ ମନେ ଭରତ ଚରିତ । ୧୧୦୨

ଭରତ ଏ ଭାବେ ଚାଲି ଯା'ଆନ୍ତି ପଥରେ,
ପ୍ରେମଦଶା ଦେଖି ପ୍ରଶଂସନ୍ତି ମୁନିବରେ ।
ରାମ ରାମ କହି ଯେବେ ନିଅନ୍ତି ନିଃଶ୍ୱାସ,
ମନେହୁଏ ଉଚ୍ଛୁଳଇ ପ୍ରେମ ଚଉପାଶ । ୧୧୦୩

ତାଙ୍କ କଥା ଶୁଣି ବଜ୍ର ପାଷାଣ ତରିଲେ,
ଅଯୋଧ୍ୟାବାସୀଙ୍କ ପ୍ରୀତି କହିଲେ ନ ସରେ ।
ପଥେ ରହି ରହି ହେଲେ ଯମୁନାର ତୀରେ,
ତା' ଜଳ ନିରେଖି ନେତ୍ର ନୀର ବୁହାଇଲେ । ୧୧୦୪

ଦେଖି ରଘୁବର ବର୍ଣ୍ଣ ସମ ଶ୍ୟାମ ଜଳ,
ଭରତ ସମାଜ ସହ ପ୍ରେମରେ ବିହ୍ୱଳ ।
ରାମ ବିନା ବୁଡ଼ୁ ବୁଡ଼ୁ ବିରହ ସାଗରେ,
ପୁଣି ସେ ଉଠିଲେ ଚଢ଼ି ବିବେକ-ପୋତରେ । ୧୧୦୫

ସେଦିନ ବିଶ୍ରାମ କଲେ ସେ ଯମୁନା କୂଳେ,
ସକଳ ବ୍ୟବସ୍ଥା ହେଲା ସମୟାନୁକୂଳେ ।

ରାତି ମଧ୍ୟେ ସବୁ ଘାଟୁ ଆସିଲା ତରଣୀ,
ଅଗଣିତ, ତାହାକୁ ବା କେ ପାରିବ ଗଣି ? ୧୧୦୬

ପ୍ରଭାତରେ ସର୍ବେ ହେଲେ ପାର ଥରକରେ,
ତୋଷ ରାମ-ସଖା-ସେବା ସୁମତ ମନରେ ।
ସ୍ନାନ ଶେଷେ ଯମୁନାକୁ ନମସ୍କାର କରି,
ନିଷାଦ ସଙ୍ଗତେ ଦୁଇ ଭାଇ ଗଲେ ଚାଲି । ୧୧୦୭

ଉତ୍ତମ ବାହନେ ଆଗେ ଆଗେ ମୁନିଗଣ,
ସେ ରାଜସମାଜ ଆଗେ କରନ୍ତି ଗମନ ।
ତାଙ୍କ ପଛେ ବେନି ଭାଇ ଚାଲନ୍ତି ପାଦରେ,
ଅତି ସାଦା ପରିଚ୍ଛଦ ସରଳ ବେଶରେ । ୧୧୦୮

ସେବକ ସୁହୃଦ ମନ୍ତ୍ରୀ ସୁତ ତାଙ୍କ ସାଥେ,
ଗଲେ ସ୍ମରି ସଜମିତ୍ରୀ-ସୀତା-ରଘୁନାଥେ ।
ପଥେ ପଡ଼େ ଯହିଁ ରାମ-ନିବାସ ବିଶ୍ରାମ,
ସପ୍ରେମେ ତାହାକୁ ସର୍ବେ କରନ୍ତି ପ୍ରଣାମ । ୧୧୦୯

ପଥବାସୀ ନରନାରୀ ପାଇ ଏ ଖବର,
କାମ ଧାମ ଛାଡ଼ି ଧାଇଁ ଆସନ୍ତି ସତ୍ୱର ।
ରୂପ ପ୍ରେମ ଦେଖି ସର୍ବେ ପ୍ରସନ୍ନ ଅନ୍ତରେ,
ଭାବନ୍ତି ଜନମ-ଫଳ ସତେ ପାଇଗଲେ । ୧୧୧୦

ଅତି ଅନୁରାଗେ ଏକୁ ଆରେକ କହନ୍ତି,
ସଖି ଏମାନେ କି ରାମ ଲକ୍ଷ୍ମଣ ନୁହନ୍ତି ।
ସେହି ରୂପ ସେହି ବର୍ଣ୍ଣ ସେହି କଳେବର,
ସମାନ ତ ଶୀଳ ସ୍ନେହ ସ୍ୱଭାବ ଯାଙ୍କର । ୧୧୧୧

କିନ୍ତୁ ନାହାଁନ୍ତି ସେହି ବେଶ ସାଙ୍ଗରେ ଜାନକୀ,
ଯାଙ୍କ ଆଗେ ଚତୁରଙ୍ଗ ସେନା ଚାଲିଛନ୍ତି ।
ପ୍ରସନ୍ନ ବଦନ ନାହିଁ, ମନରେ ତ ଖେଦ,
ଜାଗଇ ସନ୍ଦେହ ସଖି ଭାବି ଏହି ଭେଦ । ୧୧୧୨

ତର୍କକୁ ଯଥାର୍ଥ ମଣି ଅନ୍ୟ ନାରୀଗଣେ,
କହିଲେ, ଚତୁରୀ ନାହିଁ ତୋ ସମ ଭୁବନେ ।
ତାହାକୁ ପ୍ରଶଂସି ତା'ର ଉକ୍ତି ସତ୍ୟ ମଣି,
ମଧୁର ବଚନେ କହେ ଆନେକ ରମଣୀ । ୧୧୧୩

ସପ୍ରେମେ କହଇ ସିଏ ପୁ ରୁଣା ପ୍ରସଙ୍ଗ,
ଯେପରି ହେଲା ରାମ-ଅଭିଷେକ-ରସ ଭଙ୍ଗ ।
ଭରତ ଚରିତ ସ୍ନେହ ସୌଭାଗ୍ୟ ନିକର,
କହି ହେଲା ଅବିରତେ, ପ୍ରଶଂସା-ମୁଖର । ୧୧୧୪

ଫଳାହାର କରି ଖାଲି ପାଦେ ଚାଲି ଚାଲି,
ପିତା ତାଙ୍କୁ ଦେଇଥିବା ରାଜ୍ୟଭାର ଛାଡ଼ି,
ରାମକୁ ମନାଇ ରାଜ୍ୟେ ଫେରାଇବା ପାଇଁ,
ଯାଆନ୍ତି ଭରତ । ଆଜ ତାଙ୍କ ସମ କାହିଁ ? ୧୧୧୫

ଭରତଙ୍କ ଭ୍ରାତୃପ୍ରେମ ଭକ୍ତି ଆଚରଣ,
କହିଲେ ଶୁଣିଲେ ଯାଏ ଦୁରିତ କଷଣ ।
ଯାହା କିଛି କୁହାଯିବ ସେ ହେବ ଅଳପ,
ରାମଙ୍କର ଭାଇ କିଆଁ ନ ହେବେ ଏମନ୍ତ !! ୧୧୧୬

ସାନୁଜ ଶତ୍ରୁଘ୍ନ ସହ ଭରତଙ୍କୁ ଦେଖି,
'ଧନ୍ୟା ଯୁବତୀ'ଙ୍କ ମେଳେ ଆମେ ହେଲେ ଲେଖି ।
ଗୁଣ ଶୁଣି ଦଶା ଦେଖି ଦୁଃଖରେ କହନ୍ତି,
କୈକେୟୀ ଜନନୀ ଯୋଗ୍ୟ ଏ ସୁତ ନୁହନ୍ତି । ୧୧୧୭

କିଏ କହେ ରାଣୀଙ୍କର କିଛି ଦୋଷ ନାହିଁ,
ବିଧାତା କରିଛି ସବୁ ଆମ ହିତ ପାଇଁ ।
କାହିଁ ତୁଚ୍ଛ ନାରୀ ଆମେ ବେଦ-ବିଧି-ହୀନା,
ସମାଜ ବଞ୍ଚିତ କୁଳ-କର୍ତ୍ତବ୍ୟ-ମଳିନା ।
କୁଦେଶ କୁଗ୍ରାମବାସୀ କାହିଁ ମାତ ନାରୀ,
କାହିଁ ପୁଣ୍ୟ ଫଳ ରୂପ ଦର୍ଶନ ଯା'ଙ୍କର,

ହରଷ ବିସ୍ମୟ ପ୍ରତି ଗ୍ରାମେ ଏହିପରି ।
ମରୁଭୂମେ କଳ୍ପତରୁ ଉଠିଛି ଯେପରି । ୧୧୧୮

ପଥ ପାର୍ଶ୍ୱ ଜନ ଭାଗ୍ୟ ଭରତ ଦର୍ଶନେ,
ପୂର୍ତ୍ତି ବିକଶିତ ହୋଇ ଉଠଇ ଯେସନେ ।
ଯଥେ କି ସିଂହଳବାସୀ ନର ନାରୀଗଣ,
କରନ୍ତି ଦଇବ ଯୋଗେ ପ୍ରୟାଗ ଦର୍ଶନ । ୧୧୧୯

ନିଜ ଗୁଣ ସହ ରଘୁନାଥ ଗୁଣ ଶତ,
ଶୁଣି ଶୁଣି ରାମ ସ୍ମରି ଚାଲନ୍ତି ଭରତ ।
ପଥେ ଯାଉଁ ତୀର୍ଥ ଦେଖି କରନ୍ତି ସ୍ନାହାନ,
ଆଶ୍ରମେ ଓ ଦେବାଳୟେ ଜଣାନ୍ତି ପ୍ରଣାମ । ୧୧୨୦

ସଭିଙ୍କୁ ମାଗନ୍ତି ମନେ ମନେ ଏହି ବର,
ପ୍ରୀତି ରହୁ ସଦା ସୀତା-ଶ୍ରୀରାମ ପୟର ।
ଭେଟନ୍ତି କିରାତ କୋଲ୍ହ ଆଦି ବନବାସୀ,
ବାନପ୍ରସ୍ଥି ଯତି ବଟୁ ବିରାଗୀ ସନ୍ନ୍ୟାସୀ ।
ପ୍ରଣମି ଯାହାକୁ ତାକୁ ପୁଣି ପଚାରନ୍ତି,
କେଉଁ ବନେ ରାମ ସୀତା ଲକ୍ଷ୍ମଣ ଅଛନ୍ତି ?
ସେମାନେ ପ୍ରଭୁଙ୍କ ବାର୍ତ୍ତା କହନ୍ତି ସକଳ,
ଲଭନ୍ତି ଭରତେ ଦେଖି ନିଜ ଜନ୍ମ ଫଳ । ୧୧୨୧

'କୁଶଳେ ଦେଖିଛୁ ମୁହିଁ' ବୋଲି ଯେ କହଇ,
ଶ୍ରୀରାମ ଲକ୍ଷ୍ମଣ ପରି ପ୍ରିୟ ସେ ଲାଗଇ ।
ଏ ଭାବେ ସଭିଙ୍କୁ ପୁଛି ମଧୁମୟୀ ବାଣୀ,
ଶୁଣନ୍ତି ଶ୍ରୀରାମ ବନବାସର କାହାଣୀ । ୧୧୨୨

ସେ ଦିନ ସେଠାରେ ରହି ତା' ପର ପ୍ରଭାତେ,
ସମସ୍ତେ ଚାଲିଲେ ହୃଦେ ସ୍ମରି ରଘୁନାଥେ ।
ଶ୍ରୀରାମ ଦର୍ଶନ ଆଶା ଭରତଙ୍କ ପରି,
ସଭିଙ୍କର ମନ ମଧ୍ୟେ ରହିଥାଏ ଭରି । ୧୧୨୩

ସଭଙ୍କୁ ଦିଶଇ ପଥେ ମଙ୍ଗଳ ଲକ୍ଷଣ,
ସୁଖଦାୟୀ ବାହୁ ନେତ୍ର ହୁଅଇ ସ୍ଫୁରଣ ।
ଭରତ ସହିତେ ସାଙ୍ଗ ସମାଜେ ଉତ୍ସାହ,
ଭେଟିବେ ରାମଙ୍କୁ ଯିବ ଯେତେ ଦୁଃଖ ଦାହ । ୧୧୨୪

ଯା' ହୃଦେ ଯେପରି ଭାବ ଇଚ୍ଛେ ସେ ସେପରି,
ପ୍ରେମ-ମଦ-ମତ୍ତେ ସର୍ବେ ଯାଉଥାନ୍ତି ଚଳି ।
ଶିଥିଳ ଶରୀର, ପାଦ ପଡ଼େ ଏଣେ ତେଣେ,
ପ୍ରେମ-ସିକ୍ତ-ବାଣୀ ମୁଖୁଁ ଖସେ କ୍ଷଣେ କ୍ଷଣେ । ୧୧୨୫

ଶ୍ରୀରାମଙ୍କ ସଖା ଦେଖାଇଲେ ସେହି କ୍ଷଣି,
ସ୍ୱାଭାବିକ ରମଣୀୟ ଶୈଳ ଶିରୋମଣି ।
ଯାହାର ସମୀପେ ମନ୍ଦାକିନୀ ନଦୀ ତୀରେ,
ନିବାସ କରନ୍ତି ସୀତା ସହ ବେନି ବୀରେ । ୧୧୨୬

ସବୁ ଲୋକେ ଦେଖି କଲେ ଭୂମିଷ୍ଠ ପ୍ରଣାମ,
କହି ଜୟ ଜୟ ସୀତା-ଜୀବନ ଶ୍ରୀରାମ ।
ସେ ରାଜ ସମାଜ ପ୍ରେମେ ମଗ୍ନ ଏହିପରି,
ଅଯୋଧ୍ୟାକୁ ରାମ ଫେରି ଆସନ୍ତି ଯେପରି । ୧୧୨୭

ଭରତଙ୍କ ପ୍ରେମ ସେହି କାଳେ ଯାହା ହେବ,
ବର୍ଣ୍ଣି ନ ପାରିବେ ତାହା ଶତ ଶେଷ ଦେବ ।
ଗର୍ବ-ମାୟାଛନ୍ନ ଜନେ ବ୍ରହ୍ମସୁଖ ଯେହ୍ନେ,
ଅଗମ୍ୟ, କବିଙ୍କୁ ଏହି ଭ୍ରାତୃ-ପ୍ରେମ ତେହ୍ନେ । ୧୧୨୮

ରାମ ପ୍ରେମେ ସଭଙ୍କର ଶରୀର ଅବଶ,
ସେ ଲାଗି ସୂର୍ଯ୍ୟାସ୍ତ ଯାଏଁ ଗଲେ ଦୁଇ କୋଶ ।
ରାତ୍ର ରହି ଦେଖି ଜଳ ସ୍ଥଳର ସୁବିଧା,
ପ୍ରଭାତେ ଶ୍ରୀରାମ-ପ୍ରିୟ ଆଗେ ଗଲେ ସିଧା । ୧୧୨୯

ନ ପାହୁ ରଜନୀ ଏଣେ ରାମ ଉଠିଛନ୍ତି,
ରାତ୍ରରେ ଜାନକୀ କେତେ ସପନ ଦେଖନ୍ତି—

ସକୁଟୁମ୍ବେ ଯେଉଁଠି ଆସି ଅଛନ୍ତି ଭରତ,
ପ୍ରଭୁଙ୍କ ହୃଦୟ ତାପେ ମନ ଛଟପଟ । ୧୧୩୦

ସକଳେ ମଳିନ ମନ ଦୀନ ଦୁଃଖ ଭରେ,
ଦେଖିଲି ମୁଁ ଶାଶୁଗଣେ ଇତର ପ୍ରକାରେ—
ସୀତା ସ୍ୱପ୍ନ ଶୁଣି ଝରେ ପୂରିଲା ନୟନ,
ହେଲେ ଚିନ୍ତାକୁଳ ରାମ, ଚିନ୍ତା-ବିମୋଚନ । ୧୧୩୧

"ଲକ୍ଷ୍ମଣ ଏ ସ୍ୱପ୍ନ କେବେ ଭଲ ନ ହୋଇବ,
କଠିନ କୁ-ସମାଚାର କେହି ଶୁଣାଇବ ।"
ଏହା କହି ଭାଇ ସହ ଯାଇ କଲେ ସ୍ନାନ,
ପୂଜି ତ୍ରିପୁରାରି କଲେ ସାଧୁଙ୍କୁ ସମ୍ମାନ । ୧୧୩୨

ଦେବତାମାନଙ୍କୁ କରି ପୂଜା ଆରାଧନା,
ମୁନିଙ୍କ ଚରଣ ଯାଇ କରିଲେ ବନ୍ଦନା ।
ତହୁଁ ପୁଣି ଉତ୍ତରକୁ ବସିଗଲେ ରାମ,
ଦେଖିଲେ ଆକାଶେ ଧୂଳି ଛୁଇ ଦିଶେ ଶ୍ୟାମ ।
ବିକଳେ ଆଶ୍ରମ ଦିଗେ ବନ୍ୟ ପଶୁ ପକ୍ଷୀ,
ବିପଦ ସୂଚନା ପାଇ ପଳାଇ ଆସନ୍ତି ।
ତୁଳସୀ କହଇ ରାମ ସଚକିତ ଚିତ୍ତେ,
ଉଠି ଅନାଇଲେ ତାର କାରଣ ନିମନ୍ତେ ।
ସେ କାଳେ କିରାତ କୋଲ୍ହ ହୋଇ ଦଳ ଦଳ,
ଆସି ଶୁଣାଇଲେ ତାଙ୍କୁ ସମସ୍ତ ଖବର । ୧୧୩୩

ସୁମଙ୍ଗଳ ବାଣୀ ଶୁଣି ପ୍ରମୋଦିତ ମନ,
ଶରୀରେ ଜାଗିଲା କେତେ ମଧୁର କମ୍ପନ ।
ଶରଦ-କମଳ-ନେତ୍ର-ପଲ୍ଲବେ ତାଙ୍କର,
ପ୍ରେମ ଜର ଜର ଅଶ୍ରୁକଣା ଗଲା ଭରି । ୧୧୩୪

ପୁଣି ଚିନ୍ତା କଲେ କେତେ ଜାନକୀ-ରମଣ,
ଭରତର ଆଗମନ କାରଣ କଅଣ ।

ଆଜି ଜଣେ ଆସି ଚରହିଁ କହିଲା ଖବର,
ସାଥେ ଆସିଛନ୍ତି ଚତୁରଙ୍ଗ ସେନା ଦଳ । ୧୧୩୫

ଶୁଣି ଶ୍ରୀରାମଙ୍କ ମନେ ଚିନ୍ତା କଲା ଠାବ,
ଏଣେ ପିତା ଆଜ୍ଞା ତେଣେ ଭାଇ କୁଣ୍ଠାଭାବ ।
ଭରତ ସ୍ୱଭାବ ପ୍ରଭୁ ଚିନ୍ତା କରି ମନେ,
ଚିତ୍ତର ସ୍ଥିରତା ରଖି ନ ପାରିଲେ କ୍ଷଣେ । ୧୧୩୬

ମନ-ଶଙ୍କା କଲେ ଦୂର ଏମନ୍ତ ବିଚାରି,
ଭରତ ଯେ ସାଧୁ ବୁଦ୍ଧିମାନ ଆଜ୍ଞାକାରୀ ।
ଲକ୍ଷ୍ମଣ ନିରେଖି ପ୍ରଭୁ ହୃଦୟ କଷଣ,
କହିଲେ ସମୟୋଚିତ ସୁବିଧି ବଚନ । ୧୧୩୭

"ବିନା ପଚାରିରେ କିଛି କହୁଚି ଗୋସାଇଁ,
ଯଥାକାଳ-ଧୃଷ୍ଟତାକୁ ଧରାଯାଏ ନାହିଁ ।
ତୁମେ ତ ସର୍ବଜ୍ଞ ଶିରୋମଣି ମୁଁ ସେବକ,
ଯାହା କିଛି କହେ ନିଜ ବୁଦ୍ଧି ମୁତାବକ । ୧୧୩୮

ସୁହୃଦ ସରଳ ଚିତ୍ତ ସ୍ନେହର ନିଧାନ,
ହେ ନାଥ କୋମଳ ଶୀଳରାଶି ଗୁଣଧାମ ।
ସର୍ବେ ପାଶେ ସମ ପ୍ରୀତି ବିଶ୍ୱାସ ତୁମର,
ସଭିଙ୍କୁ ହୃଦୟେ ନିଜ ସମ ଜ୍ଞାନ କର । ୧୧୩୯

କିନ୍ତୁ ଯେ ବିଷୟୀ-ଜୀବ ପ୍ରଭୁ ପଣ ପାଇ,
ମୋହ ବଶେ ନିଜ ରୂପ ହୁଅନ୍ତି ଦେଖାଇ ।
ଭରତ ସୁଜ୍ଞାନୀ ସାଧୁ ନୀତି ପରାୟଣ,
ପ୍ରଭୁ ପଦ ପ୍ରେମୀ ଏହା ଜାଣଇ ଭୁବନ । ୧୧୪୦

ସିଏ ମଧ୍ୟ ଆଜି ପାଇ ରାଜସିଂହାସନ
ଚାଲିଛନ୍ତି କରି ଧର୍ମ ମର୍ଯ୍ୟାଦା ଲଙ୍ଘନ ।
କୁଟିଳ କୁଭ୍ରାତା ଦେଖି କୁସମୟ ଅତି,
ଜାଣି ବନବାସେ ରାମ ଏକାକୀ ଅଛନ୍ତି ।

କୁମନ୍ତ୍ରଣା କରି ମନେ ସଜାଇ କଣ୍ଟକ,
ଆସିଛନ୍ତି କରିବାକୁ ରାଜ୍ୟ ଅକଣ୍ଟକ ।
କୋଟି କୁଟିଳତା କରି ଦୁଇ ଭାଇ ମନେ,
ଏବେ ଆସିଛନ୍ତି ଦଳ ବଳ ସେନା ବନେ । ୧୧୪୧

ହୃଦୟେ ନ ଥାନ୍ତା ଯଦି କୁଟ କୁବିଚାର,
ଭଲ ଲାଗନ୍ତା କି ରଥ ଗଜ ବାଜିବାର ?
ଏଥିଲାଗି ଭରତଙ୍କୁ ଦୋଷ ଦେବ କିଆଁ
ରାଜପଦ ପାଇ ହୁଏ ବାଉଳ ଦୁନିଆଁ । ୧୧୪୨

ଚନ୍ଦ୍ର ଗୁରୁ-ପତ୍ନୀ-ଗାମୀ, ନହୁଷ ରାଜନ,
ବ୍ରାହ୍ମଣ ପାଲିଙ୍କି ପରେ କରିଲେ ଗମନ ।
ଲୋକ ବେଦ ନିନ୍ଦୁକ କେ ମୂର୍ଖ ନରାଧମ,
ହୋଇବ ଜଗତେ ନାହିଁ ରାଜା ବେଣୁ ସମ ? ୧୧୪୩

ତ୍ରିଶଙ୍କୁ ସହସ୍ରବାହୁ ଅମର ନାୟକ,
ରାଜମଦ ନ ଦେଇଛି କାହାକୁ କଳଙ୍କ ?
ଭରତ କରିଛି ତେଣୁ ଉଚିତ କୌଶଳ,
ରିପୁ ଋଣ ନ ରଖିବ କିଞ୍ଚିତ ମାତ୍ରର । ୧୧୪୪

ଭରତ କଲେନି କିନ୍ତୁ ଏକ କାମ ଭଲ,
ଅସହାୟ ରାମଙ୍କୁ ଯେ କଲେ ହତାଦର ।
ଭଲ ଭାବେ ଆଜି ତାହା ସେ ଜାଣି ପାରିବେ,
ରଣେ ଯେବେ ରାମ ରୋଷ ନୟନ ଦେଖିବେ ।” ୧୧୪୫

କହୁ କହୁ ଏହା ଭୁଲିଗଲେ ନୀତିରସ,
ପୁଲକ ଛଳେ କି ଜାତ ଅଙ୍ଗେ ବୀରରସ ।
ପ୍ରଭୁ ପଦ ବନ୍ଦି ଶିରେ ବୋଳି ପଦରଜ,
କହିଲେ ସୂଚେଇ ନିଜ ପ୍ରଭାବ ସହଜ । ୧୧୪୬

“ମୋ କଥାକୁ ଭାବ ନାହିଁ ପ୍ରଭୁ ଅନୁଚିତ,
ଭରତ କରିନି ଅଳ୍ପ ଆମରି ଅହିତ ।

କେତେ ବା ସହିବ ପୁଣି ଥିବ ମାର ମନ,
ଥାଉଁ ସଙ୍ଗେ ପ୍ରଭୁ ଆଜ ହସ୍ତେ ଶରାସନ । ୧୧୪୭

ଜାତିରେ କ୍ଷତ୍ରିୟ ରଘୁକୁଳେ ମୋ’ ଜନମ,
ଶ୍ରୀରାମ ଅନୁଜ ବୋଲି ବିଖ୍ୟାତ ଭୁବନ ।
ଧୂଳି ପରି ନୀଚ କିଏ ପାଇଲେ ଆଘାତ,
ମୁଣ୍ଡଯାଏଁ ଚଢ଼ିଯାଏ, ଯାଏ ନାହିଁ ହାତ ।” ୧୧୪୮

ଉଠି କରଯୋଡ଼ି ଆଜ୍ଞା ମାଗିଲେ ଲକ୍ଷ୍ମଣ,
ଜାଗିଲା କି ବୀରରସ ତିଆଗି ଶୟନ !!
ଶିରେ ଜଟା ବାନ୍ଧି କସି କଟିରେ ତୂଣୀର,
କକ୍ଷିଲେ ସଜାଇ ଧନୁ ଶର ହସ୍ତେ ବୀର । ୧୧୪୯

“ଶ୍ରୀରାମ ସେବକ ହେବା ଯଶ ଆଜ ନେବି,
ଯୁଦ୍ଧେ ଉପଯୁକ୍ତ ଶିକ୍ଷା ଭରତଙ୍କୁ ଦେବି ।
ଶ୍ରୀରାମ ଶତ୍ରୁତା ଫଳ ଯଥା ରୂପେ ପାଇ,
ଶୁଅନ୍ତୁ ସମର ଶେଯେ ଆଜ ବେନି ଭାଇ । ୧୧୫୦

ଭଲ ହେଲା ଜୁଟିଛନ୍ତି ସକଳ ସମାଜ,
ପ୍ରକାଶ କରିବି ଯେତେ ପୂର୍ବ ରୋଷ ଆଜ ।
ଯେସନେ ପକାଏ ଦଳି ସିଂହ ହାଣ୍ଡି ଦଳେ,
ଗୁଣ୍ଡୁରିକୁ ବାଜ ଯେହ୍ନେ ଝାମ୍ପେ କଉଶଳେ ।
ସେପରି ସେନା ଓ ସାନ ଭାଇ ସହିତରେ,
ଭରତଙ୍କୁ ବଧି ଆଜ ଗଡ଼ାଇବି ତଳେ ।
ଯଦି ବା ତାହାଙ୍କୁ ସାହା ହୋଇବେ ଶଙ୍କର,
ତଥାପି ମାରିବି ରଣେ, ରାଣ ରାମଙ୍କର ।” ୧୧୫୧

ଅତିଶୟ ରୋଷଭରେ କହନ୍ତି ଲକ୍ଷ୍ମଣ,
ଶୁଣି ସେ ସକଳ ସତ୍ୟ ପ୍ରତିଜ୍ଞା ବଚନ ।
ଭୟଭୀତ ହୋଇ ଲୋକ ଲୋକପାଳଗଣ,
ଭାବନ୍ତି ପଳାଇବାକୁ ସେଠାରୁ ବହନ । ୧୧୫୨

ହେଲା ବିଶ୍ୱ ଭୟମଗ୍ନ, ହେଲା ନଭ ବାଣୀ,
ଲକ୍ଷ୍ମଣଙ୍କ ବାହୁବଳ ବିପୁଳ ବଖାଣି—
"ହେ ବୀର ଲକ୍ଷ୍ମଣ ତୁମ ପ୍ରତାପ ସଂସାରେ,
କିଏ ଜାଣିପାରେ ଅବା କିଏ କହିପାରେ ? ୧୧୫୩

ଯା' କିଛି ଉଚିତ ଅବା ଅନୁଚିତ କର୍ମ,
ବିଚାରି କରିଲେ ସର୍ବେ କହନ୍ତି ଉତ୍ତମ ।
ଯେ ସହସା କରି ପଛେ ଅନୁତାପ କରେ,
ଅଜ୍ଞାନୀ କହନ୍ତି ତାଙ୍କୁ ବେଦ ଜ୍ଞାନୀ ନରେ ।" ୧୧୫୪

ସଙ୍କୁଚିତ ସଉମିତ୍ରୀ ଶୁଣି ଦେବ ବାଣୀ,
ଶ୍ରୀରାମ ଜାନକୀ ତାଙ୍କୁ ଆଦରେ ସମ୍ମାନି ।
କହିଲେ, "ସୁନ୍ଦର ନୀତି-କଥା ଗଲୁ ଗାଇ,
ସବୁଠାରୁ ଭୟଙ୍କର ରାଜମଦ ଭାଇ । ୧୧୫୫

ଯେ ସେବି ନାହାନ୍ତି କେବେ ସାଧୁସଭା ସନ୍ତ,
ରାଜମଦେ ସେ ରାଜନ ହୁଅନ୍ତି ଉନ୍ମତ୍ତ ।
ଭରତ ସମାନ ଭଲ ଶୁଣ ଆରେ ଭାଇ,
ବିଧାତା ସୃଷ୍ଟିରେ ଦେଖା ନାହିଁ, ଶୁଣା ନାହିଁ । ୧୧୫୬

ଭରତ ପାଇଲେ ବିଧି ହରିହର ପଦ,
ତଥାପି ତା' ମନେ ହେବ ନାହିଁ ରାଜମଦ ।
କାଞ୍ଜି ଶୀକରେ କି କେତେବେଳେ ଅବା କାହିଁ,
ଶୁଣିଛୁ ଲକ୍ଷ୍ମଣ କ୍ଷୀର ସିନ୍ଧୁ ଛିଡ଼ି ଯାଇ ? ୧୧୫୭

ମଧ୍ୟାହ୍ନ ରବିକୁ ଅନ୍ଧକାର ଗିଳିପାରେ,
ଆକାଶ ମିଳାଇ ଯିବ ହୁଏତ ବାଦଲେ,
ଘଟଜ ଗୋପଦ ଜଳେ ଅବା ବୁଡ଼ିଯିବେ,
ସ୍ୱତଃ କ୍ଷମାଗୁଣ ଅବା ପୃଥୀ ପାଶୋରିବେ,
ମଶା ଫୁଙ୍କି ଦେଲେ ଅବା ମେରୁ ଯିବ ଉଡ଼ି,
ଭରତ ନୃପତି-ମଦେ ଯିବନାହିଁ ବୁଡ଼ି ।

ଲକ୍ଷ୍ମଣ ଶପଥ ତୋତେ ପିତାଙ୍କର ରାଣ,
ଶୁଚି ସ୍ନେହୀ ଭାଇ ନାହିଁ ଭରତ ସମାନ । ୧୧୫୮

ଗୁଣ-କ୍ଷୀର ଅବଗୁଣ-ନୀରକୁ ମିଶାଇ,
ଭାଇରେ ସଂସାର ରଚି ଅଛନ୍ତି ତ ସାଇଁ ।
ଭରତ ଆମର ସୂର୍ଯ୍ୟ ବଂଶ-ସରୋବରେ,
ହଂସ ହୋଇ ଗୁଣ ଦୋଷ ବିଭାଜନ କରେ । ୧୧୫୯

ଘେନ ଗୁଣ-ଦୁଧ ତେଜ ଅବଗୁଣ-ଜଳ,
ଆପଣାର ଯଶେ କଲ ଜଗତ ଉଜ୍ଜ୍ୱଳ ।”
କହି ଭରତଙ୍କ ଗୁଣ ସ୍ୱଭାବ ସୁନ୍ଦର,
ପ୍ରେମ-ପାରାବାରେ ମଗ୍ନ ହେଲେ ରଘୁବର । ୧୧୬୦

ଶୁଣି ରଘୁନାଥଙ୍କର ଏସନ ବଚନ,
ଦେଖି ଭରତଙ୍କ ପ୍ରତି ପ୍ରୀତି ଅକଳନ,
ପ୍ରଶଂସି ଦେବତାଗଣେ କହିଲେ ଏପରି,
‘କୃପାଧାମ ପ୍ରଭୁ କିଏ ଶ୍ରୀରାମଙ୍କ ପରି । ୧୧୬୧

ଜଗତେ ଭରତ ଜନ୍ମ ଯଦି ନୋହିଥାନ୍ତା,
ପୃଥୀ ପରେ କିଏ ଧର୍ମ-ଅଖକୁ ଧରନ୍ତା ?
କବି ଜ୍ଞାନ ଅଗୋଚର ଭରତ ମହିମା,
କେ ଅବା ଜାଣଇ ରଘୁନାଥ ତବ ବିନା ।’ ୧୧୬୨

ଶ୍ରୀରାମ ଲକ୍ଷ୍ମଣ ସୀତା ଶୁଣି ସୁରବାଣୀ,
ହୃଦେ ଯେ ଆନନ୍ଦ ହେଲେ କେ ପାରେ ବଖାଣି ?
ଭରତ ସଅଳ ଏଣେ ସମାଜ ସଙ୍ଗରେ,
ସ୍ନାନ ଶେଷ କଲେ ମନ୍ଦାକିନୀ ପୂତ ଜଳେ । ୧୧୬୩

ସମସ୍ତ ଲୋକଙ୍କୁ ଅଟକାଇ ନଦୀ ତୀରେ,
ଜନନୀ ସଚିବ ଗୁରୁ ଆଜ୍ଞା ଘେନ ଶିରେ,
ଚଳିଲେ ଭରତ ଯହିଁ ସୀତା ରଘୁବର,
ସଙ୍ଗରେ ନିଷାଦ ନାଥ ଅନୁଜ ଆବର । ୧୧୬୪

ଜନନୀ କୁକର୍ମ ସ୍ମରି ସଙ୍କୋଚ କରନ୍ତି,
କୋଟିଏ କୁତର୍କ ନିଜ ହୃଦୟେ ପାଅନ୍ତି ।
ଶ୍ରୀରାମ ଲକ୍ଷ୍ମଣ ସୀତା ଶୁଣି ମୋର ନାମ,
ଉଠି ଚାଲି ଯିବେନି ତ ଛାଡ଼ି ସେହି ସ୍ଥାନ ? ୧୧୬୫

ମାତାଙ୍କ ମତାନୁଗାମୀ ବୋଲି ମୋତେ ଭାବି,
ଯା' କରିବେ ହେବ ସିନା ଅଳ୍ପ ମୋହ ଲାଗି ।
କିନ୍ତୁ ସେହି ବୁଝି ନିଜେ କରିବେ ଆଦର,
କ୍ଷମା କରି ପାପ ଦୋଷ ଦୂରିତ ସକଳ । ୧୧୬୬

ମାଛମନା ଜାଣି ମୋତେ ସେ ପଛେ ତେଜନ୍ତୁ,
କିମ୍ବା ଦାସ ଭାବ ମନେ ମୋ କଥା ରଖନ୍ତୁ,
ରାମ-ପଦତ୍ରାଣ ମୋର ଶରଣ କେବଳ,
ଶ୍ରୀରାମ ସୁସ୍ୱାମୀ ସବୁ ଦୋଷ ଏ ଦାସର । ୧୧୬୭

ଜଗତେ ଚାତକ ମୀନ ସୁଯଶ ଭାଜନ,
ପ୍ରେମ ବ୍ରତ ଯେ ସର୍ବଦା ରଖନ୍ତି ନୂତନ ।
ଗମନ କରନ୍ତି ମନେ ବିଚାରି ଏମନ୍ତ,
ସଙ୍କୋଚେ ସେନେହେ ଅଙ୍ଗ ଶିଥିଳ ସମସ୍ତ । ୧୧୬୮

ଜନନୀ ଦୁଷ୍କର୍ମ ତାଙ୍କୁ ଟାଣଇ ପଛକୁ,
କିନ୍ତୁ ଧୈର୍ଯ୍ୟ ଭକ୍ତି ବଳେ ଚାଲନ୍ତି ଆଗକୁ ।
ରାମଙ୍କ ସ୍ୱଭାବ ଯେବେ କରନ୍ତି ସ୍ମରଣ,
ବେଗେ ବେଗେ ପଡ଼ୁଥାଏ ଆଗକୁ ଚରଣ । ୧୧୬୯

ଜଳ ପ୍ରବାହରେ ଜଳ-ଅଳି ଗତି ପରି,
ଭରତଙ୍କ ଦଶା ହୁଏ ସେ କାଳେ ସେପରି ।
ଦେଖି ଭରତଙ୍କ ଚିନ୍ତା ସ୍ନେହ-ସିକ୍ତ-ମନ,
ନିଜ ତନୁ ପାଶୋରିଲେ ନିଷାଦ ରାଜନ । ୧୧୭୦

ପଥେ ଦେଖାଗଲା କେତେ ମଙ୍ଗଳ ଲକ୍ଷଣ,
ତା' ଶୁଣି ବିଚାରି କହେ ନିଷାଦ ରାଜନ ।

ଚିନ୍ତା ଦୂର ହେବ, ହେବ ହରଷ ମନରେ,
କିନ୍ତୁ ଆହେ ପ୍ରଭୁ ଦୁଃଖ ମିଳିବ ଶେଷରେ । ୧୧୭୧

ସେବକ ବଚନ ସତ୍ୟ ବୋଲି ସେ ଜାଣିଲେ,
ଆଶ୍ରମ ନିକଟେ ଯାଇ ପ୍ରବେଶ ହୋଇଲେ ।
ନିରେଖି ଭରତ ବନ ଶଇଳ କାନନ,
ଆନନ୍ଦିତ ଯେସନେ କ୍ଷୁଧାତୁର ପାଇ ଅନ୍ନ । ୧୧୭୨

ପ୍ରଜାକୁଳ ଯେଉଁ ପରି ଈତି ଭୟ ଯୋଗେ,
ପୀଡ଼ିତ ନିତି ପାପେ ଗ୍ରହ ମହାମାରୀ ରୋଗେ ।
ସୁରାଜ୍ୟ ସୁଦେଶେ ଯାଇ ସୁଖୀ ସେ ହୁଅନ୍ତି,
ଆଜି ସେହିପରି ହେଲା ଭରତଙ୍କ ଗତି । ୧୧୭୩

ଶ୍ରୀରାମ ନିବାସେ ବନ ଏବେ ମନୋହର,
ସୁଖୀ ପ୍ରଜା ପାଇ ଯେସନେ ଶୁଚି ନରବର ।
ପବିତ୍ର ସୁମନୋହର ଏହି ବନ ଦେଶ,
ବୈରାଗ୍ୟ ସଚିବ ତହିଁ ବିବେକ ନରେଶ । ୧୧୭୪

ସଂଯମ ନିୟମ ଯୋଦ୍ଧା ଶୈଳ ରାଜଧାନୀ,
ଶାନ୍ତି ଓ ସୁମତି ଦେନି ପତିବ୍ରତା ରାଣୀ ।
ସେ ରାଜା ରାଜ୍ୟର ସବୁ ଅଙ୍ଗେ ସୁସମ୍ପନ୍ନ,
ଅତି ଉତ୍ସାହିତେ ରାମ-ପଦାଶ୍ରିତ-ମନ । ୧୧୭୫

ଦଳ ସହ ଜୟ କରି ମୋହ-ମହୀପାଳେ,
ବିବେକ-ରାଜନ କରେ ରାଜତ୍ୱ ଏଠାରେ,

---

ଈତି ଭୟ=ରାଜ୍ୟର ଷଡ଼୍ ବିଧ ବିଘ୍ନ ବା ବିପତ୍ତି; ଯଥା—ଅତିବୃଷ୍ଟି, ଅନାବୃଷ୍ଟି, ମୂଷିକ, ପତଙ୍ଗ, ପକ୍ଷୀ, ରାଜ୍ୟ ନିକଟସ୍ଥ ଶତ୍ରୁ ରାଜା ।

ସଂଯମ=ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ ।
ନିୟମ=ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣିଧାନ ।
ଅଙ୍ଗ=ସ୍ୱାମୀ, ଅମାତ୍ୟ, ସୁହୃଦ, କୋଷ, ରାଷ୍ଟ୍ର ଦୁର୍ଗ ଓ ସେନା ।

ଅକଣ୍ଟକ ରାଜ୍ୟେ; ସୁଖ ସମ୍ପଦ ଅପାର,
ସଦା ବିଦ୍ୟମାନ ଏହି ନଗରରେ ସୁକାଳ । ୧୧୭୬

ଏହି ବନ ଦେଶେ ମୁନି ବାସ ଅଗଣିତ,
ଯେଉଁଠି ପୁର ପଲ୍ଲୀ ଗ୍ରାମ ନଗର ଶୋଭିତ ।
ନାନା ଜାତି ଜୀବ ପଶୁ ପକ୍ଷୀ ଅଗଣନ,
ପ୍ରଜାଙ୍କ ସମାନ; କରି ନ ହୁଏ ବର୍ଣ୍ଣନ । ୧୧୭୭

ଗଣ୍ଡା ହାତୀ ସିଂହ ବାଘ ଗୟଲ ଶୂକର,
ବୃଷ ମହିଷାଦି ବନ୍ୟ ଶ୍ୱାପଦ ନିକର,
ଏକାଠି ବୈରତା ତେଜି କରନ୍ତି ବିହାର,
ମନେ ହୁଏ ଚତୁରଙ୍ଗ ସଇନ୍ୟ ତାହାର । ୧୧୭୮

ଗରଜନ୍ତି ମତ୍ତଗଜ, ଝରଣା ଝରଇ,
ମନେ ହୁଏ ନାନା ବିଧ ନିଷାଣ ବାଜଇ ।
ଚକୁଆ ଚକୋର ଶୁକ, ଚକ୍ରବାକ ବନେ,
କୂଜନ୍ତି ମରାଳ ପିକ ମଞ୍ଜୁଳ ନିଃସ୍ୱନେ । ୧୧୭୯

ଅଳିଗଣ ଗୁଞ୍ଜରଣ ମୟୂର ନର୍ତ୍ତନ,
ସୁରାଜ୍ୟେ ଉତ୍ସବ ଲାଗି ରହିଛି ଯେସନ ।
ତରୁ ଲତା ତୃଣ ରାଜି ଶୋଭେ ପୁଷ୍ପ ଫଳେ,
ଆନନ୍ଦ ମଙ୍ଗଳମୟ ସମାଜ ସକଳେ । ୧୧୮୦

ନିରେଖି ଭରତ ରାମଗିରି ସୁଶୋଭିତ,
ହୃଦୟେ ଅଶେଷ ପ୍ରେମ ହେଲା ଜାଗରିତ ।
ନିୟମ ସମାପ୍ତି ପରେ ପାଇ ତପ ଫଳ,
ଯେସନେ ତାପସ ସୁଖୀ, ଆନନ୍ଦ ବିହ୍ୱଳ । ୧୧୮୦

ମାସ ପାରାୟଣ, ବିଂଶ ବିଶ୍ରାମ ।
ନବାହ୍ନ ପାରାୟଣ, ପଞ୍ଚମ ବିଶ୍ରାମ ।

## ୭୬

ତା'ପରେ କେଉଟ ଧାଇଁ ଉଚେ ଚଢ଼ି ଯାଇ,
ଭରତଙ୍କୁ କହେ ଡାକ ସ୍ୱଭୁଜ ଉଠାଇ—
"ଏ ଯେଉଁ ତିମିର ଜାମୁ ରସାଳ ତମାଳ,
ଦେଖା ଯାଉଅଛି ଯେତେ ବିଟପ ବିଶାଳ ।
ସେ ବୃକ୍ଷଙ୍କ ମଧ୍ୟେ ଏକ ବଟ ସୁଶୋଭିତ,
ସୁନ୍ଦର ବିଶାଳ, ଦେଖି ମୁଗ୍‌ଧ ହୁଏ ଚିତ୍ତ ।
ତହିଁରେ ନିବିଡ଼ ନୀଳ ପତ୍ର ଲାଲ ଫଳ,
ସର୍ବଦା ସୁଖଦ ତା'ର ଛାୟା ଅବିରଳ । ୧୧୮୧

ସକଳ ଶୋଭାକୁ କରି ଏକତ୍ର ବିରଞ୍ଚି,
ସତେ ଅନ୍ଧକାର ଅରୁଣିମା ଅଛି ରଚି ।
ହେ ପ୍ରଭୁ ଚଟିମା ଘାଟରେ ସଜେ ତରୁବର,
ତହିଁ ପର୍ଣ୍ଣଶାଳା ରଚିଛନ୍ତି ରଘୁବର । ୧୧୮୨

ବିବିଧ ତୁଳସୀ ବୃକ୍ଷ ଶୋଭା ପାଏ ଅତି,
କାହିଁ ସୀତା କାହିଁ ସଉମିତ୍ରୀ ରୋପିଛନ୍ତି ।
ରଚିଛନ୍ତି ସୀତା ନିଜ ସରସିଜ-କରେ,
ଉତ୍ତମ ସୁନ୍ଦର ବେଦୀ ବଟ ଛାୟା ତଳେ । ୧୧୮୩

ଯହିଁ ବସି ନିତ୍ୟ ମୁନିଗଣଙ୍କ ଗହଣେ,
ଜାନକୀ ସୁଜ୍ଞାନୀ ରଘୁବର ହର୍ଷମନେ,
ଶୁଣନ୍ତି ସକଳ କଥା ପୁରାଣ କାହାଣୀ,
ଆଗମ ନିଗମ ଇତିହାସ ଶାସ୍ତ୍ର ବାଣୀ । ୧୧୮୪

ଶୁଣି ସଖା ବାଣୀ ଦେଖି ସେହି ତରୁବର,
ଉଚ୍ଛୁଳିଲା ଭରତଙ୍କ ନେତ୍ରୁ ନୀର ଝର ।
ପ୍ରଣମି ଥରକୁ ଥର ଗଲେ ବେନି ଭାଇ,
ବାଣୀ ପଚ୍ଛେଇବେ ପ୍ରୀତି ବଖାଣିବା ପାଇଁ । ୧୧୮୫

ରାମ-ପଦ-ଚିହ୍ନ ଦେଖି ହରଷ ଅନ୍ତର,
ରଙ୍କୀ କି ପାଇଲା ସତେ ପରଶ ପଥର ।
ରଜ ଶିରେ ରଖି ହୃଦେ ନୟନେ ବୋଳନ୍ତି,
ଶ୍ରୀରାମ ମିଳନ ସମ ଆନନ୍ଦ ଲଭନ୍ତି । ୧୧୮୬

ଭରତଙ୍କ ଦଶା ଅତି ଅକଥ୍ୟ ନିରେଖି,
ପ୍ରେମେ ମଗ୍ନ ହେଲେ ଜୀବ ଜଡ଼ ପଶୁପକ୍ଷୀ ।
ପଥ ଭୁଲେ ଯେବେ ଗୁହ ଅତି ପ୍ରେମାତୁରେ,
ସୁପଥ ବତାଇ ପୁଷ୍ପ ବରଷନ୍ତି ସୁରେ । ୧୧୮୭

ସିଦ୍ଧ ଓ ସାଧକେ ଦଶା ଦେଖନ୍ତି ସରାଗେ,
ପ୍ରଶଂସନ୍ତି ସ୍ୱାଭାବିକ ସ୍ନେହ ଅନୁରାଗେ ।
କହନ୍ତି ଭରତ ଜନ୍ମ ଯେବେ ନୋହିଥାନ୍ତା,
ଅଚରେ ଚର, କେ ଚରେ ଅଚର କରନ୍ତା ? ୧୧୮୮

ପ୍ରେମ ଯେ ଅମୃତ, ଏହି ବିରହ ମନ୍ଦର,
ଭରତ ଅଟନ୍ତି ପରା ଅତଳ ସାଗର ।
ସୁର ସନ୍ଥ ହିତେ କୃପାମୟ ରଘୁବର,
ମନ୍ଥି ପ୍ରକଟିଲେ ପ୍ରେମ-ଅମୃତ-ସାଗର । ୧୧୮୯

ଲକ୍ଷ୍ମଣ ସସଖା ଏହି ସୁନ୍ଦର ଯୁଗଳେ,
ଲକ୍ଷ୍ୟ କରି ନ ପାରିଲେ ଲଟା ଉହାଡ଼ରେ ।
ଭରତ ଦେଖିଲେ ପ୍ରଭୁ ଆଶ୍ରମ ପାବନ,
ସର୍ବ ସୁମଙ୍ଗଳ ଧାମ ପରମ ଶୋଭନ । ୧୧୯୦

ପ୍ରବେଶିବା ମାତ୍ରେ ଦୁଃଖ ଦାହ ଛୁଟିଗଲା,
ସତେ ଅବା ଯୋଗୀ ପରମାର୍ଥ ଲାଭ କଲା ।

ଦେଖିଲେ ଭରତ ଲକ୍ଷ୍ମଣଙ୍କୁ ପ୍ରଭୁ ଆଗେ,
ପର୍ଣ୍ଣରନ୍ତେ କହୁଛନ୍ତି କଥା ଅନୁରାଗେ । ୧୧୯୧

ଶିରେ ଜଟା କଟି ତଟେ ବନ୍ଧା ମୁନି ଚୀର,
ତର୍କିରେ ତୂଣୀର କାନ୍ଧେ ଧନୁ କରେ ଶର ।
ବେଦୀ ପରେ ଯୋଗୀ ମୁନି ସାଧୁଙ୍କ ସମାଜ,
ସୀତା ସହ ବିରାଜନ୍ତି ପ୍ରଭୁ ରଘୁରାଜ । ୧୧୯୨

ବଳ୍କଳ ବସନ ଜଟାଧାରୀ ତନୁ ଶ୍ୟାମ,
ରଚଛନ୍ତି ମୁନିବେଶ ଯେହ୍ନେ ରତିକାମ ।
ଶ୍ରୀକର କମଳେ ଧନୁ ଶର ଫେରଖନ୍ତି,
ହସି ଗ୍ରୀବା ଦେଇ ହୃଦ ଦହନ ହରନ୍ତି । ୧୧୯୩

ମନୋହର ମୁନି ମେଳେ ସୀତା-ରଘୁପତି,
ଏପରି ଭାବରେ ଆଜ ଶୋଭନ ଦିଶନ୍ତି ।
ସାକ୍ଷାତ ସଚ୍ଚିଦାନନ୍ଦ ଭକ୍ତ ତନୁ ଧରି,
ଜ୍ଞାନ ସଭା ମଧ୍ୟେ ଶୋଭା ପାଆନ୍ତି ଯେପରି । ୧୧୯୪

ସଖା ଓ ଅନୁଜ ସହ ହୋଇ ପ୍ରେମ ମଗ୍ନ,
ପାଶୋରିଲେ ହର୍ଷ ସୁଖ ଦୁଃଖ ଓ କଷଣ ।
କହି, "ନାଥ, ରକ୍ଷାକର ଗୋସାଇଁ ହେ ରଖ ।"
ଦଣ୍ଡ ପରି ପଡ଼ିଗଲେ ଭୂଇଁରେ ଭରତ । ୧୧୯୫

ଶୁଣି ପ୍ରେମ ପରିପୂର୍ଣ୍ଣ ମଧୁର ବଚନ,
ଭରତ ପ୍ରଣମୁଛନ୍ତି ଜାଣିଲେ ଲକ୍ଷ୍ମଣ ।
ପାଖେକ ଟାଣଇ ଭାଇ ସେନେହ ସରସ,
ଅନ୍ୟ ଦିଗେ ନିଜ ସ୍ୱାମୀ-ସେବା ପରବଶ । ୧୧୯୬

ଭେଟି ନ ପାରନ୍ତି ସେବା ଛାଡ଼ି ନ ପାରନ୍ତି,
ସୁକବି ଭଣିବେ ଭରତଙ୍କ ମନ ଗତି ।
ସେବାରେ ରହିଲେ ମନେ ମହତ୍ତ୍ୱ ବିଚାରି,
ଉଡ଼ିବା ଗୁଡ଼ିକୁ ଟାଣେ ଖେଳାଳୀ ଯେପରି । ୧୧୯୭

କହିଲେ ସେ ପ୍ରେମେ ଭୂଇଁ ପରେ ରଖି ଶିର,
ଭରତ ପ୍ରଣାମ କରୁଛନ୍ତି ରଘୁବୀର ।
ଶୁଣିବା ମାତ୍ରକେ ପ୍ରେମେ ଶ୍ରୀରାମ ଅଧୀର,
କାହିଁ ଖସିଗଲା ବାସ ତୂଣ ଧନୁ ତୀର । ୧୧୯୮

ବଳ ସହକାରେ ତନୁ ଉଠାଇ ବକ୍ଷରେ,
କୃପାନିଧି ଆଲିଙ୍ଗନ କରି ପକାଇଲେ ।
ସକଳେ ନିରେଖି ରାମ-ଭରତ ମିଳନ,
ନିଜ ନିଜ ଅସ୍ତିତ୍ୱକୁ ଭୁଲିଲେ ତକ୍ଷଣ । ୧୧୯୯

ସେ ମିଳନ ପ୍ରୀତି କିଏ ପାରିବ ବଖାଣି,
କବିକୁଳ ଅଗୋଚର, ମନ କର୍ମ ବାଣୀ ।
ମନ ବୁଦ୍ଧି ଅହଂକାର ଚିତ୍ତ ଭୁଲି ଯାଇ,
ପରମ ପ୍ରେମରେ ପୂର୍ଣ୍ଣ ହେଲେ ବେନିଭାଇ । ୧୨୦୦

କିଏ କରିପାରେ କହି ସେ ପ୍ରେମ ପ୍ରକଟ,
କି ଆଧାର ଅନୁଗାମୀ ହେବ କବିମତ ।
କବିର ଅକ୍ଷର ଅର୍ଥ ପ୍ରକୃତରେ ବଳ,
ତାଳ ଗତି ଦେଖି ନଟ ନାଚଇ କେବଳ । ୧୨୦୧

ଶ୍ରୀରାମ ଭରତ ସ୍ନେହ ଅଗମ୍ୟ ଅଟଇ,
ବିଧି ହରିହର ଚିତ୍ତ ପଶି ନ ପାରଇ ।
ମୋ ପରି କୁମତି ତାହା କିପରି କହିବ;
ବେଣା ଚେର ସୁରେ କାହିଁ ରାଗିଣୀ ବାଜିବ ? ୧୨୦୨

ଦେଖି ସୁରଗଣେ ରାମ-ଭରତ ମିଳନ,
ଭୟରେ ହୃତ୍‌ପିଣ୍ଡେ ହେଲା ଅଜସ୍ର କମ୍ପନ ।
ବୁଝାଇଲେ ସୁରଗୁରୁ; ଚେତି ମୂର୍ଖଗଣେ,
ପ୍ରଶଂସି ତତ୍ପର ହେଲେ ପୁଷ୍ପ ବରଷଣେ । ୧୨୦୩

ସପ୍ରେମେ ମିଳିଲେ ରାମ ଭରତଙ୍କ ସହ,
ତା'ପରେ ନିଷାଦେ ଭେଟି କଲେ ଅନୁଗ୍ରହ ।

ଅତିଶୟ ସ୍ନେହେ ପୁଣି ଭେଟିଲେ ଭରତ,
ଲକ୍ଷ୍ମଣଙ୍କୁ, କଲ୍ପକାଳେ ତାଙ୍କୁ ଦଣ୍ଡବତ । ୧୨୦୪

ଅତି ପ୍ରେମେ ଅନୁଜକୁ ଭେଟିଲେ ଲକ୍ଷ୍ମଣ,
ପୁଣି ନିଷାଦକୁ କଲେ ହୃଦେ ଆଲିଙ୍ଗନ ।
ବନ୍ଦିଲେ ମୁନୀଶ ବୃନ୍ଦେ ତହୁଁ ଦୁଇ ଭାଇ,
ହେଲେ ଖୁସି ଇଚ୍ଛାମତ ଆଶୀର୍ବାଦ ପାଇ । ୧୨୦୫

ସାନୁଜ ଭରତ ଅତି ଅନୁରାଗ ଭରେ,
ସୀତା-ପାଦ-ପଦ୍ମ ରଜ ଧରି ଶିର ପରେ,
ପୁଣି ପୁଣି ପ୍ରଣିପାତ କରନ୍ତେ ଉଠାଇ,
ଶିରେ କର-କଞ୍ଜ ଛୁଇଁ ଆଦରେ ବସାଇ,
ମନ ମଧ୍ୟେ ଆଶୀର୍ବାଦ କଲେ ବଇଦେହୀ,
ସ୍ନେହେ ମଗ୍ନ ହୋଇ ତନୁ ପାଶୋରିଲେ ସେହି ।
ସକଳ ପ୍ରକାରେ ଦେଖି ଅନୁକୂଳ ସୀତା,
ନଷ୍ଟ ହେଲା ଭୟ ଭ୍ରାନ୍ତି ଦୂର ହେଲା ଚିନ୍ତା । ୧୨୦୬

କେହି କିଛି ନ କହନ୍ତି ଅବା ପଚାରନ୍ତି,
ମନ ପ୍ରେମେ ପୂର୍ଣ୍ଣ, ନାହିଁ କାର ନିଜ ଗତି ।
ନିଷାଦ ସେ କାଳେ ଧୈର୍ଯ୍ୟ ହୃଦୟରେ ଧରି,
କର ଯୋଡ଼ି ଜଣାଇଲେ ନମସ୍କାର କରି । ୧୨୦୭

"ନାଥ, ବଶିଷ୍ଠଙ୍କ ସଙ୍ଗେ ସବୁ ମାତା ଗଣେ,
ମନ୍ତ୍ରୀ ସେନାପତି ଭୃତ୍ୟ ପୁଣି ପୁରଜନେ,
ତୁମର ବିରହ ଶୋକ ବିକଳ ପରାଣେ,
ସର୍ବେ ଆସିଛନ୍ତି ବନେ ତବ ସନ୍ନିଧାନେ" । ୧୨୦୮

ଶୀଳ-ସିନ୍ଧୁ ଶୁଣି ଗୁରୁଙ୍କର ଆଗମନ,
ଜାନକୀଙ୍କ ପାଖେ ରଖି ଅନୁଜ ଶତ୍ରୁଘ୍ନ ।
ତୁରନ୍ତ ଗମନ କଲେ ରାମ ରଘୁବର,
ଦୀନ ଦୟାମୟ ଧୀର ଧର୍ମ ଧୁରନ୍ଧର । ୧୨୦୯

ଲକ୍ଷ୍ମଣ ସହିତେ ପ୍ରଭୁ ଗୁରୁଙ୍କ ଦର୍ଶନେ,
ଦଣ୍ଡବତ କଲେ ପ୍ରେମ ନିମଜ୍ଜିତ ମନେ ।
ଧାଇଁ ଗୁରୁ ତାଙ୍କୁ ନେଲେ ବୁକୁରେ ଜଡ଼ାଇ,
ଭେଟିଲେ ଉଚ୍ଛୁଳା ପ୍ରେମେ ତାଙ୍କୁ ବେନି ଭାଇ । ୧୨୧୦

ନିଷାଦ ଆନନ୍ଦ ମନେ କହି ନିଜ ନାମ,
ଅଳ୍ପ ଦୂରେ ଥାଇ କଲା ଭୂମିଷ୍ଠ ପ୍ରଣାମ ।
ରାମ-ସଖା ଜାଣି ମୁନି ଆଲିଙ୍ଗିଲେ ବଳେ,
ସାଉଁଟି ନେଲେ କି ପ୍ରେମ ଲୋଟୁଥିଲା ତଳେ । ୧୨୧୧

"ଶ୍ରୀରାମ-ଭକତି ତାର ମଙ୍ଗଳର ମୂଳ"
କହି ପରଶଂସି ଦେବେ ବରଷନ୍ତି ଫୁଲ ।
ଏହା ସମ ନାହିଁ ନୀଚ ନିପଟ ଅଧମ,
ଆଉ ବଡ଼ କିଏ ଭବେ ବଶିଷ୍ଠଙ୍କ ସମ ? । ୧୨୧୨

ଯାହାକୁ ବଶିଷ୍ଠ ଦେଖି ଲକ୍ଷ୍ମଣୁ ଅଧିକ,
ଆବେଗେ ମିଳିଲେ ହୋଇ ପ୍ରୀତି ପୁଲକିତ ।"
ଏହା ସୀତାପତି ରାମ ଭଜନେ କେବଳ,
ମିଳେ ନାମ ପ୍ରଭାବରେ ଏ ପ୍ରତ୍ୟକ୍ଷ ଫଳ । ୧୨୧୩

ଜାଣି ରାମ ଅତିଶୟ ଆର୍ତ୍ତ ପୁରବାସୀ,
କୃପାସିନ୍ଧୁ ଭଗବାନ ଜ୍ଞାନ ଗୁଣ ରାଶି—
ଯେ ଯେଉଁ ଭାବରେ ଥିଲା ମିଳନ ପ୍ରୟାସୀ,
ମେଣ୍ଟାଇଲେ ରୁଚି ମତେ ତାଙ୍କ ପାଶେ ଆସି । ୧୨୧୪

ଲୋକଙ୍କୁ ନିମିଷେ ଭେଟି ଲକ୍ଷ୍ମଣ ସହିତେ;
ଦୂର କଲେ ଦୁଃଖ ଦାହ ଯାହା ଥିଲା ଚିତ୍ତେ ।
ଶ୍ରୀରାମଙ୍କ ପକ୍ଷେ ନୁହେଁ ଏହା ବଡ଼ କଥା,
କୋଟି ଘଟେ ଏକ ସୂର୍ଯ୍ୟ ପ୍ରତିବିମ୍ବ ଯଥା । ୧୨୧୫

ନିଷାଦ ରାଜକୁ ଭେଟି ଉଚ୍ଛୁଳା ପ୍ରେମରେ,
ପୁରଜନେ ପ୍ରଶଂସନ୍ତି ତାହାର ଭାଗ୍ୟରେ ।

ଶ୍ରୀରାମ ଦେଖିଲେ ସବୁ ମାତାଙ୍କୁ ଦୁଃଖିତ,
ଲତିକା ପଙ୍‌କ୍ତି କି ହିମ ପାତେ ନିପୀଡ଼ିତ । ୧୨୧୬

ପ୍ରଥମରେ କୈକେୟୀଙ୍କୁ ଭେଟି ରଘୁପତି,
ମୃଦୁ ଶୀଳ ଭକତିରେ ସିକ୍ତ କରି ମତି,
କହିଲେ ପ୍ରବୋଧି ତାଙ୍କ ପାଦ ତଳେ ପଡ଼ି,
କାଳ କର୍ମ ବିଧି ପରେ ଦୋଷକୁ ଅଜାଡ଼ି । ୧୨୧୭

ଜନନୀଗଣଙ୍କୁ ପରେ ଭେଟି ରଘୁବର,
ବୁଝାଇ ଶୁଝାଇ କଲେ ସନ୍ତୋଷ ସକଳ ।
"ଈଶ୍ୱର ଅଧୀନ ମାତ ସମସ୍ତ ସଂସାର,
କାହାରେ ଦୋଷ ଦେବା ନୁହେଁ ଉଚିତ ବେଭାର ।" ୧୨୧୮

ଗୁରୁପତ୍ନୀ ପଦେ ବନ୍ଦ ହୋଇ ପ୍ରଣମିଲେ,
ପୁଣି ବିପ୍ରନାରୀଙ୍କୁ, ଯେ ସଙ୍ଗେ ଆସିଥିଲେ ।
ଗଙ୍ଗା ଗୌରୀ ପ୍ରାୟେ କଲେ ସଭିଙ୍କୁ ସମ୍ମାନ,
ମୃଦୁ ବଚନେ ସେ କଲେ ଆଶିଷ ପ୍ରଦାନ । ୧୨୧୯

ଧରି ସୁମିତ୍ରାଙ୍କ ପାଦ ଆଉଜିଲେ କୋଳେ,
ରଙ୍କୀକୁ ସମ୍ପତ୍ତି ସତେ ଭେଟିଅଛି ଭୋଳେ ।
ପୁଣି ବନ୍ଦ ହୋଇ ପଡ଼ିଗଲେ ପଦ ତଳେ,
ସର୍ବାଙ୍ଗ ଶରୀର ସିକ୍ତ ପ୍ରେମ ଜରଜରେ । ୧୨୨୦

ଅତି ଅନୁରାଗେ ମାତା ବୁକେ ଲଗାଇଲେ,
ନୟନ ସେନେହ ଜଳେ ସ୍ନାନ କରାଇଲେ ।
ସେହି ସମୟର ଯେତେ ହରଷ ବିଷାଦ,
କେମିତି କହିବ କବି ? ମୂକ ଯେସନେ ସ୍ୱାଦ । ୧୨୨୧

ଶେଷେ ଜନନୀଙ୍କୁ ଭେଟି ଶ୍ରୀରାମ ଲକ୍ଷ୍ମଣ,
ଗୁରୁଙ୍କୁ କହିଲେ ଏବେ କରି ପଦାର୍ପଣ ।
ମୁନୀଶ ଆଦେଶ ତହୁଁ ପୁରଜନେ ପାଇ,
ଯହିଁ ଜଳ ସ୍ଥଳ ଦେଖି ବସା କଲେ ଯାଇ । ୧୨୨୨

ବିପ୍ର ମନ୍ତ୍ରୀ ମାତା ଗୁରୁ ଆଦି ମାନ୍ୟ ଜନେ,
ବାଛି ବାଛି କେତେକଙ୍କୁ ନିଜର ଗହଣେ,
ଘେନି ରଘୁନାଥ ପୂତ ଆଶ୍ରମେ ଚଳିଲେ,
ଭରତ ଲକ୍ଷ୍ମଣ ବେନି ଭାଇ ସଙ୍ଗେ ଥିଲେ । ୧୨୨୩

ସୀତା ଆସି ପ୍ରଣମିଲେ ବଶିଷ୍ଠ ପୟରେ,
ନିଜର ଇପ୍ସିତ ଆଶୀର୍ବାଦ ଲାଭ କଲେ ।
ତହୁଁ ମୁନି ପତ୍ନୀଗଣ ସହ ଗୁରୁପତ୍ନୀ,
ଭେଟି ଲଭିଲେ ଯେ ପ୍ରୀତି କିଏ କହିବଟି ? ୧୨୨୪

ବନ୍ଦି ବନ୍ଦି ବଇଦେହୀ ସଭିଙ୍କ ଚରଣ,
ଲାଭ କଲେ ସୁଖଦାୟୀ ଆଶିଷ ବଚନ ।
ଶାଶୂ ସକଳଙ୍କୁ ଯେବେ ସୀତା ଦେଖି ଦେଲେ,
ଭୟେ ସୁକୁମାରୀ ନିଜ ଆଖି ବୁଜିନେଲେ । ୧୨୨୫

ରାଜହଂସୀ ଦଳେ ସତେ ବ୍ୟାଧର କବଳେ—
ହାୟରେ କପାଳ ମନ୍ଦ ଦଇବ କି ନ କରେ ।
ସୀତାଙ୍କୁ ନିରେଖି ଦୁଃଖୀ ହେଲେ ସବୁ ମାତା,
ସବୁ ସହିବାକୁ ହେବ ଯା’ ଦିଏ ବିଧାତା । ୧୨୨୬

ତା’ପରେ ଜନକସୁତା ହୃଦେ ଦମ୍ଭ ଧରି,
ନୀଳ-ସରସିଜ-ନେତ୍ରେ ଜଳ କଣା ଭରି,
ସକଳ ଶାଶୁଙ୍କୁ ଯାଇ ଭେଟିଲେ ଜାନକୀ,
ମହୀରେ ବ୍ୟାପିଲା ତେବେ କରୁଣ ରସ କି ? ୧୨୨୭

ଅତି ସ୍ନେହ ଭରେ ଧରି ସଭିଙ୍କ ଚରଣ,
ଜାନକୀ ଭେଟନ୍ତି ଯେବେ ହୋଇ ଦୁଃଖୀ ମନ ।
ଶାଶୁଏ ଆଶିଷ ଦେଲେ ହୋଇ ହର୍ଷମତି,
"ସୀତା ଲୋ ତୁ ସବୁକାଳେ ହୁଅ ଭାଗ୍ୟବତୀ ।" ୧୨୨୮

ସ୍ନେହେ ବ୍ୟାକୁଳିତ ସୀତା ଆଉ ସବୁ ରାଣୀ,
ବସାଇଲେ ସମସ୍ତଙ୍କୁ ବଶିଷ୍ଠ ସୁଜ୍ଞାନୀ ।

ବୁଝାଇ କହିଲେ ମାୟା ଜଗତର ଗତି,
ପୁଣି ପରମାର୍ଥ କଥା କହୁ ବଖାଣନ୍ତି । ୧୨୨୯
ଶୁଣାଇଲେ ନୃପତିଙ୍କ ସ୍ୱରଗ ଗମନ,
ପାଇଲେ ଶ୍ରୀରାମ ଶୁଣି ଦୁଃଖ ଅକଳନ ।
ନିଜ ପ୍ରତି ତାଙ୍କ ସ୍ନେହ ମୃତ୍ୟୁର କାରଣ,
ଭାବି ଧୈର୍ଯ୍ୟ ଧୁରନ୍ଧର ବ୍ୟାକୁଳିତ ମନ । ୧୨୩୦
କୁଳିଶ କଠୋର କଟୁ ବଚନ ଶ୍ରବଣେ,
ବିଳପିଲେ ସଲକ୍ଷ୍ମଣ ସୀତା ରାଣୀଗଣେ ।
ସକଳ ସମାଜ ହେଲା ଶୋକାକୁଳ ଅତି,
ସତେ ଆଜ ଅବା ମରିଛନ୍ତି ନରପତି । ୧୨୩୧
ଶ୍ରୀରାମଙ୍କୁ ବୁଝାଇଲେ ମୁନି ଜ୍ଞାନବାନ,
ଗଙ୍ଗାରେ ସମାଜ ସହ ସର୍ବେ କଲେ ସ୍ନାନ ।
ସେ ଦିନ ନିର୍ଜଳ ବ୍ରତ କଲେ ରାମ ପୁଣି,
କେହି ନ ଛୁଇଁଲେ ଜଳ କହିଲେ ବି ମୁନି । ୧୨୩୨
ରଘୁନନ୍ଦନଙ୍କୁ ପର ପ୍ରଭାତରେ ମୁନି,
ଯାହା ଯାହା ଆଜ୍ଞା ଦେଲେ ହୃଦୟରେ ଗୁଣି,
ଅଶେଷ ଶରଧା ଭକ୍ତି ସହକାରେ ପ୍ରଭୁ,
ଉଚିତ ବିଧିରେ କଲେ ସୁସମ୍ପନ୍ନ ସବୁ । ୧୨୩୩

ବେଦମତେ କରି ପିତୃକ୍ରିୟା ସମାପନ,
ପୂତ ହେଲେ ପ୍ରଭୁ ପାପ-ତିମିର-ତପନ ।
ପାପ-ତୁଳା-ରାଶିକୁ ଯା' ନାମ ହୁତାଶନ,
ଯାହାଙ୍କ ସ୍ମରଣ ସର୍ବ ମଙ୍ଗଳ କାରଣ । ୧୨୩୪
ଶୁଦ୍ଧ ସେ ହୋଇଲେ ସାଧୁ ସମ୍ମତ ଯେପରି,
ତୀର୍ଥ ଆବାହନେ ସୁର-ସରିତ ଯେଭଳି ।
ଶୁଦ୍ଧ ହେବା ପରେ ଦୁଇ ଦିନ ଗଲା କଟି,
କହିଲେ ଗୁରୁଙ୍କ ପାଶେ ସ୍ନେହେ ରଘୁପତି । ୧୨୩୫

"ନାଥ ଅତିଶୟ ଦୁଃଖୀ ଏ ଲୋକ ସକଳ,
ଖାଇ କନ୍ଦମୂଳ ଫଳ ବନସ୍ତର ଜଳ ।
ସାନୁଜ ଭରତ ମନ୍ତ୍ରୀ ଆଉ ମାତାଗଣେ,
ଦେଖିଲେ ପଲକ ଲାଗେ ଯୁଗେକ ଯେସନେ । ୧୨୩୬

ସର୍ଭେଁ ସାଥେ ପୁରେ ତେଣୁ ଫେରନ୍ତୁ ଆପଣେ,
ଆପଣ ଏଠାରେ ରାଜା ସରଗ ଭୁବନେ ।
ବହୁତ ଗୁଡ଼ାଏ କହି ଧୃଷ୍ଟତା ମୁଁ କଲି,
ଗୋସାଇଁ ଉଚିତ ଯାହା କରନ୍ତୁ ସେପରି ।" ୧୨୩୭

"ହେ ରାମ ଧରମ ସେତୁ କରୁଣାୟତନ,
ତୁମେ କାହିଁ ନ କହିବ ଏପରି ବଚନ ।
ଲୋକେ ଦୁଃଖୀ, ମାତ୍ର ଦିନ ଦୁଇ ପାଇଁ ରାମ,
ଦରଶନେ ଶାନ୍ତ ପାଇ ନିଅନ୍ତୁ ବିଶ୍ରାମ ।" ୧୨୩୮

ରାମଙ୍କ ବଚନ ଶୁଣି ସଶ୍ରିତ ସମାଜ,
ମଝି ଦରିଆରେ ଯେହ୍ନେ ବିକଳ ଜାହାଜ ।
ଶୁଣି ସୁମଙ୍ଗଳମୟ ମୁନିଙ୍କ ବଚନ,
ମନେ ହୁଏ ଅନୁକୂଳ ହେଲା କି ପବନ । ୧୨୩୯

ତିକାଳେ ସ୍ନାହାନ କରି ପୟୋସ୍ୱିନୀ ଜଳେ,
ଯା' ଦର୍ଶନେ ପାପରାଶି ମୂଳ ସହ ମରେ ।
ନୟନେ ମଙ୍ଗଳ ମୂର୍ତ୍ତି ବାର ବାର ଭରି,
ହରଷେ ଦେଖନ୍ତ ଯାଇ, ଦଣ୍ଡବତ କରି । ୧୨୪୦

ସର୍ବେ ରାମଗିରି ବନ କରନ୍ତ ଦର୍ଶନ,
ଯହିଁ ସବୁ ସୁଖ, ନାହିଁ ଦୁଃଖର ଲକ୍ଷଣ ।
ଝରଣାରୁ ବହେ ଝର ଅମୃତ ସମାନ,
ତିବିଧ ପବନ ହରେ ତିନି ତାପମାନ । ୧୨୪୧

ନାନା ତରୁଲତା ତୃଣ ଜାତି ଅଗଣିତ,
ନାନା ଫଳ ପୁଷ୍ପ ପତ୍ରେ କାନନ ପୂରିତ ।

ମନୋହର ଶୀଳା ଚତୁ ଋତୁ ସୁଖଦାୟୀ,
ସେ ବନ ଶୋଭାକୁ ଅଛୁ କେ ବର୍ଣ୍ଣିବା ପାଇଁ ? ୧୨୪୨

ସରେ ସରସିଜ ଜଳ ପକ୍ଷୀର କୂଜନ,
ନାନା ରଙ୍ଗ ପଶୁ ପକ୍ଷୀ ଭୃଙ୍ଗର ଗୁଞ୍ଜନ ।
ବୈରତା ବରଜ କରି ଏକାଠି ଆହାର,
ସରବେ ଆନନ୍ଦେ ବନେ କରନ୍ତି ବିହାର । ୧୨୪୩

ବନବାସୀ କନ୍ଧ କୋଲ୍ହ କିରାତ ଓ ଖିଲ୍ଲ,
ଭରି ପର୍ଣ୍ଣପୁଟ ଚଳପଦୀ ସୁ ରୁଚିର;
ଚର୍ବି ଭରି କନ୍ଦମୂଳ ଫଳ ଓ ଅଙ୍କୁର,
ସୁଧାସମ ସ୍ୱାଦଯୁକ୍ତ ପବିତ୍ର ମଧୁର ।
ଦିଅନ୍ତି ଲୋକଙ୍କୁ କରି ବିନୟ ପ୍ରଣାମ,
କହି ସେ ସବୁର ସ୍ୱାଦ ଭେଦ ଗୁଣ ନାମ ।
ସେ ଲୋକେ ଦେଲେହେଁ ବହୁମୂଲ୍ୟ, ନ ନିଅନ୍ତି,
ଫେରାଇଲେ ରାମଙ୍କର କିଆମ ଦିଅନ୍ତି । ୧୨୪୪

କହନ୍ତି ସେନେହ ଭରା ମଧୁର ବଚନେ—
"ପ୍ରସନ୍ନ ହୁଅନ୍ତି ପ୍ରେମ ଚିହ୍ନି ସାଧୁ ଜନେ ।
ତୁମେ ପୁଣ୍ୟବନ୍ତ ଆମେ ନିଷାଦ ପାମର,
ଦର୍ଶନ ଲଭିଲୁ ରାମ ପ୍ରସାଦେ ତୁମର । ୧୨୪୫

ଆମକୁ ଦୁର୍ଲ୍ଲଭ ଅତି ତୁମରି ଦର୍ଶନ,
ସୁର-ଧାରା ଯେସନେ ମରୁ ଭୂମିରେ ସପନ ।
ରାମ କୃପା କରିଛନ୍ତି ନିଷାଦ ରାଜନେ ।
ରାଜା ପରି ହେବା ଲୋଡ଼ା ପ୍ରଜା ପରିଜନେ । ୧୨୪୬

ହୃଦେ ଏହା ଜାଣି ଏବେ ସଙ୍କୋଚ ତିଆଗ,
କୃପା କର ଦେଖି ଆମ ପ୍ରୀତି ଅନୁରାଗ ।
କୃତାର୍ଥ କରିବା ପାଇଁ ଆମକୁ ପ୍ରଚୁର,
ଘେନନ୍ତୁ ଦେଉଛୁ ଯାହା ତୃଣ ଫଳାଙ୍କୁର । ୧୨୪୭

ବନକୁ ଆସିଛ ତୁମେ ହେ ପ୍ରିୟ ଅତିଥି,
ଆମ ଭାଗ୍ୟେ ତବ ସେବା ଯୋଗ୍ୟ ନାହିଁ କିଛି ।
କି ଦେଇ ପାରିବୁ ଆମେ ତୁମକୁ ଗୋସାଇଁ,
ଆମରି ମିତ୍ରତା ବିନା କାଠ ପତ୍ର ପାଇଁ । ୧୨୪୮

ଏତିକି ଆମରି ବଡ଼ ସେବକତା ପଣ,
ଚୋରାଇ ଯେ ନାହୁଁ ତମ ବାସନ ବସନ ।
ଆମେ ଜଡ଼ ଜୀବାଧମ ଜୀବଜନ୍ତୁ ଘାତି,
କୁଟିଳ କୁଚାଳୀ ଆଉ କୁବୁଦ୍ଧି କୁଜାତି । ୧୨୪୯

ପାପ କର୍ମ କରି ହେବା ରଜନୀ ବିତାଇ,
କଟିରେ ବସନ ନାହିଁ ପେଟ ନ ପୂରଇ ।
ଧରମ ଭାବନା କ'ଣ ନାହିଁ ତ ସପନେ,
ଏତିକି ଯା' କିଛି, ତାହା ରାମ ଦରଶନେ । ୧୨୫୦

ଯେ ଦିନୁଁ ଦେଖିଲୁ ପ୍ରଭୁ ଚରଣ କମଳ,
ଛୁଟିଗଲା ଦୁଃଖ ଦୋଷ ଦୁଃସହ ଆମର ।"
କଥା ଶୁଣି ପୁରଜନେ ଲଭି ଅନୁରାଗ,
ମନେ ମନେ ପ୍ରଶଂସନ୍ତି ସେମାନଙ୍କ ଭାଗ୍ୟ । ୧୨୫୧

ପରଶଂସି ସେମାନଙ୍କ ଭାଗ୍ୟକୁ ଏସନ,
ଶୁଣାଇ କହନ୍ତି କେତେ ମଧୁର ବଚନ ।
ଦେଖି ତାଙ୍କ କଥାବାର୍ତ୍ତା ମିଳନର ରୀତି,
ସୁଖୀ ହେଲେ ଦେଖି ପୁଣି ରାମ-ପଦେ ପ୍ରୀତି । ୧୨୫୨

କୋଲ୍ହ କିରାତଙ୍କ କଥା ଶୁଣି ନରନାରୀ,
ଆପଣା ପ୍ରେମକୁ ଥିଲେ ହୃଦେ ଧିକ୍କାରି ।
ରଘୁବଂଶ ମଣି ରାମଚନ୍ଦ୍ର କୃପା ଫଳେ,
ନିଶ୍ଚିତ ବୁଡ଼ିବା ଯୋଗ୍ୟ ଲୁହା ବିନା ଜଳେ,
ଶ୍ରୀରାମ-ଭକତି ରୂପ ନଉକା ଉପରେ,
ତୁଳସୀ କହନ୍ତି ପାର ହୁଏ ଅକ୍ଲେଶରେ । ୧୨୫୩

ଚଉଦିଗେ ବନେ ପ୍ରତିଦିନ ପୁର ଜନେ,
କରୁଥିଲେ ବିଚରଣ ଆନନ୍ଦିତ ମନେ ।
ଆନନ୍ଦରେ ମୋଟା ହୋଇ ଯାଆନ୍ତି ଯେପରି,
ପ୍ରଥମ ବରଷା ଜଳେ ଭେକ ଓ ମୟୂରୀ । ୧୨୫୪

ପୁର ନରନାରୀ ସର୍ବେ ପ୍ରେମରେ ଅବଶ,
ପଲକ ସଦୃଶ ବନେ କଟଇ ଦିବସ ।
ଯେତେ ଶାଶୁ ଥିଲେ ସୀତା ସେତିକ ରୂପରେ,
କରନ୍ତି ସମାନ ସେବା ସଭିଙ୍କୁ ଆଦରେ । ୧୨୫୫

ରହସ୍ୟ ଜାଣିଲେ ନାହିଁ ରାମ ବିନା କେହି,
ସବୁ ମାୟା ଅଧିଷ୍ଠାନ ନଜେ ତ ବୈଦେହୀ ।
ସେବା ବଶ କଲେ ସୀତା ସବୁ ଶାଶୁଗଣେ,
ସେ ଆଶିଷ ଉପଦେଶ ଦେଲେ ହର୍ଷମନେ । ୧୨୫୬

ଦେଖି ସୀତା ସହ ବେନ ଭାଇଙ୍କୁ ସରଳ,
ଅତି ଅନୁତାପେ ରାଣୀ କୁଟିଳା ବିକଳ ।
ପୃଥ୍ୱୀକୁ ଯମକୁ ସିଏ କରନ୍ତି ଯାଚନା,
ପୃଥିବୀ ସ୍ଥାନ, କି ଯମ ମୃତ୍ୟୁ କରେ ମନା । ୧୨୫୭

ଲୋକ ବେଦେ ସୁବିଦିତ କବିଏ କହନ୍ତି,
ରାମଦ୍ରୋହୀ ନରକେ ବି ସ୍ଥାନ ନ ଲଭନ୍ତି ।
ଏ ଶଙ୍କା ସଭିଙ୍କ ହୃଦେ କରେ ଆଲୋଡ଼ନ,
ରାମ କି ଫେରିବେ ନାହିଁ ଅଯୋଧ୍ୟା ଭୁବନ ? ୧୨୫୮

ନିଶି ନିଦ୍ରା କମ୍ଭା କ୍ଷୁଧା ନ ହୁଏ ଦିବସେ,
ସୁଚିନ୍ତା ବିକଳ ବ୍ୟଥା ଭରତ ଉରସେ ।
ଅତଳ ପଙ୍କରେ ଅବା ନିମଜ୍ଜିତ ମୀନ,
ଜଳାଭାବେ ହୁଏ ଯେହ୍ନେ ବ୍ୟାକୁଳ ମଳିନ । ୧୨୫୯

ମାତା ଛଳେ କାଳ ଆସି କୁଚକ୍ର କରିଲା,
ପାଚିଲା କ୍ଷେତରେ ଈତି ରାତି କି ପଡ଼ିଲା ?

କପଟର ହୋଇବ ଏବେ ରାମ ଅଭିଷେକ,
ମୋତେ ନ ଦିଶଇ କାହିଁ ଉପାୟ ଯେ ଏକ । ୧୨୭୦

ଅବଶ୍ୟ ଫେରିବେ ରାମ ଗୁରୁ ଆଜ୍ଞା ମାନି,
କିନ୍ତୁ କହିବେ କି ଗୁରୁ ରାମ ରୁଚି ଜାଣି ।
ଜନନୀ କହିଲେ ଅବା ରାମ ବାହୁଡ଼ିବେ,
କିନ୍ତୁ ରାମ ମାତା ଜିଦ କରି କି ପାରିବେ ? ୧୨୭୧

ମୁହିଁ ପୁଣି ଅନୁଚର କେତେକ ମାତର,
ତହିଁ କୁସମୟ, ବାମ ବିଧାତା ମୋହର ।
ମୁହିଁ ହଠ କଲେ ହେବ ଅଧିକ କୁକର୍ମ,
କୈଳାସୁ ଅଧିକ ଗରୁ ସେବକର କର୍ମ । ୧୨୭୨

ମନକୁ କୌଣସି ଯୁକ୍ତି କିଛି ନ ପାଇଲା,
ଭରତ କରନ୍ତେ ଚିନ୍ତା ରଜନୀ ପାହିଲା ।
ପ୍ରାତଃ ସ୍ନାନ ଅନ୍ତେ ଶିର ପ୍ରଭୁଙ୍କୁ ନୁଆଇଁ,
ବସିଛନ୍ତି; ପଠାଇଲେ ବଶିଷ୍ଠ ଡକାଇ । ୧୨୭୩

ଗୁରୁଙ୍କର ପାଦ ପଦ୍ମେ କରି ଦଣ୍ଡବତ,
ଆଜ୍ଞା ପାଇ ବସିଗଲେ ପାଖରେ ଭରତ ।
ସେ କାଳେ ବ୍ରାହ୍ମଣ ମନ୍ତ୍ରୀ ମହାଜନମାନେ,
ସଭାସଦ ବର୍ଗ ଆସି ମିଳିଲେ ସେ ସ୍ଥାନେ । ୧୨୭୪

ମୁନୀଶ କହିଲେ ତହୁଁ କାଳୋଚିତ ବାଣୀ,
ଶୁଣ ସଭାସଦେ ଶୁଣ ଭରତ ସୁଜ୍ଞାନୀ ।
ରବିକୁଳ-ଦିବାକର ଧର୍ମ ଧୁରନ୍ଧର,
ମହାରାଜ ରାମଚନ୍ଦ୍ର ସ୍ୱବଶ-ଈଶ୍ୱର । ୧୨୭୫

ସେ ସତ୍ୟ-ପ୍ରତିଜ୍ଞ ବେଦ ମର୍ଯ୍ୟାଦା ରକ୍ଷକ,
ରାମ ଅବତାର ଭବ କଲ୍ୟାଣ କାରକ ।
ସେ ତ ଗୁରୁ ପିତା ମାତା କଥା ରକ୍ଷାକାରୀ,
ଦୁଷ୍ଟ ଦଳ-ନାଶକାରୀ ଦେବ-ହିତକାରୀ । ୧୨୭୬

ମାତ୍ର ପ୍ରୀତି ପରମାର୍ଥ ସ୍ୱାର୍ଥକୁ ଶ୍ରୀରାମ,
ତତ୍ତ୍ୱତଃ ଜାଣନ୍ତି, କେହ୍ନି ନୁହେ ତାଙ୍କ ସମ ।
ବ୍ରହ୍ମା ବିଷ୍ଣୁ ଶିବ ଚନ୍ଦ୍ର ସୂର୍ଯ୍ୟ ଦିଗପାଳ,
ମାୟା ଜୀବ ସବୁ କର୍ମ ଆଉ ସବୁ କାଳ । ୧୨୬୭

ପାତାଳର ପୃଥିବୀର ରାଜାଙ୍କ ପ୍ରଭୁତା,
ବେଦେ ଶାସ୍ତ୍ରେ ଅଛି ଯେତେ ଯୋଗ ସିଦ୍ଧି କଥା;
ସକଳ ବିଚାରି ହୃଦେ ଦେଖ ଭଲକରି,
ସଭିଏଁ ଅଛନ୍ତି ରାମ ଆଜ୍ଞା ଶିରେ ଧରି । ୧୨୬୮

ତେଣୁ ରାମ ଅଭିପ୍ରାୟ ଆଦେଶ ତାଙ୍କର,
ରଖି ପାରିଲେ ତ ହେବ ମଙ୍ଗଳ ଆମ୍ଭର ।
ତୁମେ ବୁଦ୍ଧିମାନ ସର୍ବେ ପ୍ରବୀଣ ପ୍ରବର,
ସମ୍ମତ ସମସ୍ତେ ଯହିଁ ମିଳି ତାହା କର । ୧୨୬୯

ସଭିଙ୍କୁ ସୁଖଦ ନିଶ୍ଚେ ରାମ ଅଭିଷେକ,
ଆନନ୍ଦ ମଙ୍ଗଳ ମୂଳ ମାର୍ଗ ତାହା ଏକ ।
ଫେରିବେ ଅଯୋଧ୍ୟା କେଉଁ ରୂପେ ରଘୁରାୟ,
ବିଚାରି କହନ୍ତୁ, ତା'ର କରିବା ଉପାୟ । ୧୨୭୦

ସକଳେ ସାଦରେ ମୁନିବରଙ୍କ କଥିତ,
ଶୁଣି ମାତ୍ର ପରମାର୍ଥ ସ୍ୱାର୍ଥ-ବିଜଡ଼ିତ,
ବିଭୋର ହୋଇଲେ ଲୋକେ, ନ ଆସେ ଉତ୍ତର,
କହିଲେ ଭରତ ତହୁଁ ଯୋଡ଼ି ବେନି କର । ୧୨୭୧

"ସୂର୍ଯ୍ୟବଂଶେ ଜନ୍ମିଛନ୍ତି ନୃପତି ଅନେକ,
ତେଜଶାଳୀ ପରାକ୍ରମୀ ଏକୁଁ ବଳି ଏକ ।
ଜନମ କାରଣ ସଭିଙ୍କର ପିତା ମାତା,
ଶୁଭାଶୁଭ କର୍ମଫଳ ଦିଅଇ ବିଧାତା । ୧୨୭୨

କିନ୍ତୁ ତବାଶିଷ ଦଳି ଦୁଃଖ ଓ ବିପତ୍ତି,
ସକଳ କଲ୍ୟାଣ କଲେ, ଜଗତ ଜାଣନ୍ତି ।

ବଧି ଗତ ରୋଧି ପାର ଗୋସାଇଁ ଆପଣ,
କେ ଟାଳ ପାରିବ ଯାହା କରିଥାନ୍ତି ପଣ । ୧୨୭୩

ମୋ ଠାରୁ ଆପଣ ଏବେ ବୁଝନ୍ତୁ ଉପାୟ,
ତେଣୁ ଜାଣୁଅଛୁ ଏହା ମୋ ଅଭାଗ୍ୟ ହାୟ ।"
ଶୁଣି ଭରତଙ୍କ ଏହି ସେନେହ ବଚନ,
ଅନୁରାଗେ ଉଚ୍ଛୁଳିଲା ଗୁରୁଙ୍କର ମନ । ୧୨୭୪

"ହେ ବତ୍ସ ଏ ସବୁ ସତ୍ୟ, ରାମ-କୃପା ଫଳେ,
ରାମ-ବିମୁଖଙ୍କୁ ସୁଖ ନାହିଁ ସପନରେ ।
କହିବାକୁ କଥା ଏକ ସଙ୍କୋଚ ଲାଗଇ,
ସବୁ ଯିବା କାଳେ ଜ୍ଞାନୀ ଅର୍ଦ୍ଧେକ ଛାଡ଼ଇ । ୧୨୭୫

ଏବେ ତୁମେ ଦୁଇ ଭାଇ ବନସ୍ତକୁ ଯାଅ,
ଲକ୍ଷ୍ମଣ ଜାନକୀ ରଘୁନାଥଙ୍କୁ ଫେରାଅ ।"
ଶୁଣି ସୁବଚନ ବେନି ଭାଇ ସୁପ୍ରସନ୍ନ,
ପରମ ଆନନ୍ଦେ ପୂର୍ଣ୍ଣ ହେଲା ଅପଘନ । ୧୨୭୬

ହରଷିତ ମନ, ତେଜ ଫୁଟିଲା ଶରୀରେ,
ରାମ ରାଜା ହେଲେ ଅବା ନୃପତି ବଞ୍ଚିଲେ ।
ଲୋକଙ୍କ ଅଧିକ ଲାଭ ଯାହା ଅଳ୍ପ କ୍ଷତି,
ସମ ଦୁଃଖ ସୁଖ ରାଣୀ ସର୍ବେ ବିଳପନ୍ତି । ୧୨୭୭

ଭରତ କହିଲେ, "ଯାହା କହିଲ ତା' କର,
ଜଗତ ଲଭନ୍ତୁ ତାଙ୍କ କାମନାର ଫଳ ।
ସମସ୍ତ ଜୀବନ ମୁହିଁ ରହିଯିବି ବନେ,
ତାହାଠାରୁ ବଳ ସୁଖ ନ ଅଛି ଜୀବନେ । ୧୨୭୮

ରାମ ସୀତା ଅନ୍ତର୍ଯାମୀ ସର୍ବଜ୍ଞ ଆପଣ,
କହୁଥାଅ ଯଦି ନାଥ ଏ ସତ୍ୟ ବଚନ ।
ସେହି ଅନୁସାରେ କର୍ମ କରି ସୁନିଶ୍ଚିତ,
ନିଜ ବାକ୍ୟ ନିଜେ ପ୍ରଭୁ କରି ପ୍ରମାଣିତ ।" ୧୨୭୯

ଭରତଙ୍କ କଥା ଶୁଣି ଦେଖି ଏହି ସ୍ନେହ,
ସଭାସହ ମୁନିବର ହୋଇଲେ ବିଦେହ ।
ଭରତଙ୍କ ଏହି ମହା ମହିମା ଅମ୍ବୁଧି,
ଅବଳା ସଦୃଶ ତଟରେ ଊଭା ମୁନି-ବୁଦ୍ଧି । ୧୨୮୦

ବୁଦ୍ଧି ଖୋଜି ତାହା ପାରି ହେବାକୁ ବସିତ,
ନଉକା ବୋଇତ ଭେଲା ନ ମିଳଇ କିଛି ।
ଭରତ ମହିମା କହ କିଏ ବଖାଣିବ,
ସର-ସିପେ ସାଗର କି ସମ୍ଭାଇ ପାରିବ ? ୧୨୮୧

ଭରତଙ୍କୁ ମୁନି ଭଲ ପାଇ ହୃଦଗତେ,
ଆସିଲେ ସମାଜ ସାଥେ ରାମଙ୍କ ନିକଟେ ।
ପ୍ରଣମି ଶ୍ରୀରାମ ଦେଲେ ଉତ୍ତମ ଆସନ,
ବସିଗଲେ ସର୍ବେ ଶୁଣି ମୁନିଙ୍କ ଶାସନ । ୧୨୮୨

ବିଚାରି ମନରେ ଦେଶ କାଳ ଅବସର,
କହିଲେ ରାମଙ୍କୁ ମୁନି ବଚନ କୋମଳ—
"ହେ ସୁଜାଣ ଶିରୋମଣି ସର୍ବଜ୍ଞ ଶ୍ରୀରାମ,
ଧରମ ନିପୁଣ ମିତ ଜ୍ଞାନ-ଗୁଣ-ଧାମ ! ୧୨୮୩

ସଭିଙ୍କ ଅନ୍ତରେ ବାସ କରି ଅନ୍ତର୍ଯାମୀ,
ସୁଭାବ କୁଭାବ ହେଲେ ଜାଣିପାରି ସ୍ୱାମୀ ।
ମାତା ପ୍ରଜା ଭରତଙ୍କ ଯେଉଁ ହେବ ହିତ,
ମନେ ଭାବି କହ ସେହି ଉପାୟ ଉଚିତ । ୧୨୮୪

ଆରତ ବିଚାରି କରି କେବେ ନ କହଇ,
ଜୁଆଡ଼ିକୁ ନିଜ ଦାଉଁ କେବଳ ଦିଶଇ ।"
କହିଲେ ମୁନିଙ୍କ କଥା ଶୁଣି ରଘୁପତି,
"ସକଳ ଉପାୟ ତବ ହାତେ ମହାମତି ! ୧୨୮୫

ତବ ଇଚ୍ଛା ପୂରଣରେ ସଭିଙ୍କର ହିତ,
ଆଦେଶ ପାଳନେ ସର୍ବେ ହେବେ ଆନନ୍ଦିତ ।

ପ୍ରଥମେ ହୋଇବ ଯେଉଁ ଆଦେଶ ମୋ' ପ୍ରତି,
ଆନନ୍ଦେ ପାଳିବ ତାହା ଶିର ପରେ ରଖି । ୧୨୮୬

ଗୋସାଇଁ ଯାହାକୁ ପୁଣି କହିବେ ଯେପରି,
ସେ ସବୁ ପ୍ରକାରେ ସେବା କରିବ ସେପରି ।"
ମୁନୀଶ କହିଲେ, "ରାମ ତୁମ କଥା ସାର,
କିନ୍ତୁ ଭରତଙ୍କ ପ୍ରେମ ନ ରଖେ ବିଗ୍ଭର । ୧୨୮୭

ସେ କାରଣେ ବାର ବାର କହୁଛୁ ଅବଶ୍ୟ,
ଭରତର ଭକ୍ତି ପାଖେ ବୁଦ୍ଧି ମୋର ବଶ ।
ଭରତର ରୁଚି ରଖି ଯାହା କରାଯିବ,
ମୋ ମତେ, ମହେଶ ସାକ୍ଷୀ, ମଙ୍ଗଳ ହୋଇବ । ୧୨୮୮

ଆଦର ପୂର୍ବକ ଆଗେ ଭରତ ବିନତି
ଶୁଣି ସୁବିଗ୍ଭର କର ଆହେ ରଘୁପତି ।
ସାଧୁ ମତ ଲୋକ ମତ ପୁଣି ରାଜନୀତି,
ବେଦ ସାର ମତେ କର ଉଚିତ ଯେମିତି ।" ୧୨୮୯

ଗୁରୁଙ୍କର ସ୍ନେହ ଦେଖି ଭରତ ଉପରେ,
ଅଶେଷ ଆନନ୍ଦ ଜାତ ରାମଙ୍କ ଅନ୍ତରେ ।
ମନ କର୍ମ ବଚନେ ଯେ ସେବକ ନିଜର,
ସେହି ଭରତକୁ ଜାଣି ଧର୍ମ ଧୁରନ୍ଧର । ୧୨୯୦

ଗୁରୁ ଆଜ୍ଞା ଅନୁକୂଳ ସୁନ୍ଦର କୋମଳ,
ବଚନ କହିଲେ ରାମ, ସୁକଲ୍ୟାଣ କର—
"ଆପଣଙ୍କ ରାଣ, ରାଣ ପିତାଙ୍କ ଚରଣେ,
ଭରତ ସମାନ ଭାଇ ନାହିଁ ତ୍ରିଭୁବନେ । ୧୨୯୧

ଯେଉଁ ଜନେ ଗୁରୁ-ପାଦ-ପଦ୍ମେ ଅନୁରକ୍ତ,
ଲୋକେ ବେଦେ ସେ ଅତ୍ୟନ୍ତ ବଡ଼ ଭାଗ୍ୟବନ୍ତ ।
ଯାହା ପ୍ରତି ଆପଣଙ୍କ ଏତେ ଅନୁରାଗ,
କେ କହି ପାରିବ ସେହି ଭରତଙ୍କ ଭାଗ୍ୟ ? ୧୨୯୨

ବୁଦ୍ଧି ମୋର ସଙ୍କୁଚିତ ଜାଣି ସାନଭାଇ
ମୁହଁ ପରେ କହିବାକୁ ଭରତ ବଡ଼ାଇ ।
ତଥାପି ଭରତ ଯାହା କଲେ ଶୁଭଙ୍କର ।"
ନୀରବ ହୋଇଲେ ଏହା କହି ରଘୁବର । ୧୨୯୩

ମୁନୀଶ କହିଲେ ତହୁଁ ଭରତଙ୍କୁ ଚାହିଁ—
"ହେ ବତ୍ସ କରୁଣସିନ୍ଧୁ, ତୁମ ପ୍ରିୟ ଭାଇ ।
ଜାଣି ତୁମ ପ୍ରତି ତାଙ୍କ ଅସୀମ ମମତା,
ଲଜ୍ଜା ତେଜି କହ ଏବେ ହୃଦୟର କଥା ।" ୧୨୯୪

ମୁନି ଆଜ୍ଞା ପାଇ ଶୁଣି ଶ୍ରୀରାମଙ୍କ ମତ,
ଅନୁକୂଳ ଗୁରୁ ସ୍ୱାମୀ ଜାଣିଲେ ସମସ୍ତ ।
ଦେଖି ନିଜ ପରେ ଏବେ ସବୁ ବୋଝ ଭାର,
କିଛି କହି ନ ପାରନ୍ତି, କରନ୍ତି ବିଚାର । ୧୨୯୫

ପୁଲକିତ ତନୁ, ଜଭା ହୋଇ ସଭା ସ୍ଥଳେ,
ନୀରଜ-ନୟନ ଭରେ ପ୍ରେମ ଅଶ୍ରୁ ଜଳେ ।
କହିଲେ, "କହିବା ମୋର କହିଛନ୍ତି ମୁନି,
ଏଥିରୁ ଅଧିକା ପ୍ରଭୁ କି କହିବି ପୁଣି ? ୧୨୯୬

ମୁହିଁ ତ ଜାଣଇ ମୋର ସ୍ୱାମୀଙ୍କ ସ୍ୱଭାବ,
ନ ବହନ୍ତି ଦୋଷୀ ପ୍ରତି କେବେ କ୍ରୋଧଭାବ ।
ଅଶେଷ କରୁଣା ସ୍ନେହ ତାଙ୍କର ମୋ ପାଇଁ,
ଖେଳରେ ବି ତାଙ୍କ ରୋଷ ତିଳେ ଦେଖି ନାହିଁ । ୧୨୯୭

ବାଲ୍ୟକାଳୁ ଛାଡ଼ିନି ମୁଁ କେବେ ତାଙ୍କ ସଙ୍ଗ,
ସେ ବି କରନ୍ତିନି କିଛି କରି ମନ ଭଙ୍ଗ ।
ପ୍ରଭୁଙ୍କର କୃପା ରୀତି ହୃଦେ ଅଛି ଧ୍ୟାୟୀ,
ଖେଳେ ହାରିଥିଲେ ମୋତେ ଦିଅନ୍ତି ଜଣାଇ । ୧୨୯୮

ପ୍ରେମ ଓ ସଙ୍କୋଚ ବଶେ ମୁଁ ତାଙ୍କ ଆଗରେ,
ମୁହଁ ଖୋଲି କଥା କେବେ କହି ନାହିଁ ଥରେ ।

ମୋ' ପ୍ରେମ-ପିପାସୁ ନେତ୍ର ସେ ବଦନେ ଗୃହ୍ଣି,
ଆଜ ପର୍ଯ୍ୟନ୍ତ କେବେ ତୃପ୍ତ ହୋଇ ନାହିଁ । ୧୨୯୯

ସବୁ ପାରନ୍ତି ବନ୍ଧୁ ମୋ' ଗେଲବସର,
ସେ ମାତ ଜନମୀ ଛଳେ କରିଲା ଅନ୍ତର ।
ଏହା କହିବାକୁ ଆଜ ମୋତେ ନ ଶୋଭଇ,
ନିଜ ବିଗ୍ଭରେ କେ ସାଧୁ ପବିତ୍ର ଅଟଇ ? ୧୩୦୦

ମାତା ମୋର ମନ୍ଦ, ମୁହିଁ ସାଧୁ ପୁଣ୍ୟବାନ,
ଆଣିବା ଏ ଭାବ ହୃଦେ ଦୁର୍ବୁଦ୍ଧି ସମାନ ।
ବାଜୁଙ୍ଗା ବୁଦାରୁ କେବେ ଧାନ କି ଫଳଇ,
କଳା-ଶାମୁକାରୁ କେବେ ମୁକ୍ତା ଉପୁଜଇ ? ୧୩୦୧

ସ୍ୱପ୍ନେ ସୁଦ୍ଧା ଦୋଷ କ୍ରୁଟି ନାହିଁ ଯେ କାହାର,
ମୋଅର ଅଭାଗ୍ୟ ଜାଣ ଗଣ୍ଡ ପାରବାର ।
ନ ବୁଝି ମୁଁ ନିଜ ପାପ ପରିଣାମ ଫଳ,
କଟୁ କହି ମାତା ହୃଦ ଜାଳିଲି କେବଳ । ୧୩୦୨

ହୃଦେ ସବୁଆଡ଼ ଖୋଜି ହାରି ମୁଁ ହତାଶ,
କେବଳ ଉପାୟେ ଏକ ଭଲ ହେବା ଆଶ ।
ଗୁରୁଙ୍କର ସମର୍ଥନ ସ୍ୱାମୀ ସୀତାରାମ,
ତେଣୁ ଭାବୁଅଛୁ ଶୁଭ ହେବ ପରିଣାମ । ୧୩୦୩

ସାଧୁଙ୍କ ସଭାରେ ଗୁରୁ ସ୍ୱାମୀଙ୍କ ସମୀପେ,
ସତ୍ୟ ଭାବେ କହୁଅଛୁ ଏ ପବିତ୍ର ତୀର୍ଥେ ।
ପ୍ରେମ କି କପଟ ଏହା ସତ କିବା ମିଛ,
ଜାଣନ୍ତି ତା' ସୀତାରାମ ସର୍ବଜ୍ଞ ମୁନୀଶ । ୧୩୦୪

ପିତାଙ୍କ ତେଜିବା ପ୍ରାଣ ରଖି ପ୍ରେମ ପଣ,
ମାତା କୁମତିକି ସାକ୍ଷୀ ସକଳ ଭୁବନ ।
ସହି ନ ହୁଅଇ ଦେଖି ମାତାଙ୍କ ବିକଳ,
ଦୁଃଖେ ଦଗ୍ଧ ପୁର ନର ନାରୀଏ ସକଳ । ୧୩୦୫

କେବଳ ମୂର୍ଖ ତ ଅଟେ ଅନର୍ଥର ମୂଳ,
ସବୁ ଶୁଣି ସବୁ ବୁଝି ସହେ ସବୁ ଶୂଳ ।
ଶୁଣିଲ ଶ୍ରୀରାମ ବନେ କରିଲେ ଗମନ,
ମୁନି ବେଶେ ସଙ୍ଗେ ନେଇ ଜାନକୀ ଲକ୍ଷ୍ମଣ । ୧୩୦୬

ବିନା ପଦତ୍ରାଣେ ଗଲେ ଗୃହି ଗୃହି ପାଦେ,
ଶିବ ସାକ୍ଷୀ, ମୁଁ ଜୀଇଛି ଏପରି ଆଘାତେ ।
ପୁଣି ଦେଖି ମଧ ନିଷାଦର ଏହି ପ୍ରୀତି,
କୁଳିଶ କଠୋର ଛାତି ନ ଫାଟେ କେମିତି ? ୧୩୦୭

ଏବେ ଆସି ସବୁ କଥା ଦେଖିଲି ନୟନେ,
ସହିବାକୁ ଜଡ ଜୀବ ଜୀଇଛି ଜୀବନେ ।
ଯାହାଙ୍କୁ ନିରେଖି ପଥ ସର୍ପିଣୀ ବୃଶ୍ଚିକ,
ଭୟାନକ ବିଷ କ୍ରୋଧ ତେଜନ୍ତି ନିଶ୍ଚିତ । ୧୩୦୮

ସେ ସୀତା ଲକ୍ଷ୍ମଣ ରାମ ଯାହାକୁ ଅହିତ,
ସେହି କୈକେୟୀର ପୁତ୍ର ମୁଁ ଜଡ ଭରତ ।
ତେଣୁ ମୋତେ ଛାଡ଼ି ଆଉ କାହାକୁ ବିଧାତା,
ଅସହଣି ଦୁଃଖ ସହିବାକୁ ବା ଦଅନ୍ତା ?" ୧୩୦୯

ଆରତ ବିନତି ପ୍ରୀତି ମିତ ଛଳେପନ,
ଶୁଣି ଭରତଙ୍କ ଏହି ବିକଳ ବଚନ ।
ସଭାସଦ ବର୍ଗେ ହେଲେ ଶୋକ ନିମଗନ,
ପଡ଼ିଲା କମଳ-ବନେ ତୁଷାର ଯେସନ । ୧୩୧୦

ଅନେକ ପ୍ରକାର କହି ପୁରାଣ କାହାଣୀ,
ଭରତେ ସାନ୍ତ୍ୱନା ଦେଲେ ବଶିଷ୍ଠ ସୁଜ୍ଞାନୀ ।
କହିଲେ ଯଥାର୍ଥ କଥା ପୁଣି ରଘୁବର,
ରବିକୁଳ-କଇଁବନ-ବନ୍ଧୁ ନିଶାକର । ୧୩୧୧

"ଭାଇରେ ହୃଦୟେ ବୃଥା କର ନାହିଁ ଗ୍ଲାନି,
ଈଶ୍ୱର ଅଧୀନ ଏହି ଜୀବ ଗତି ଜାଣି ।

ତ୍ରିଭୁବନେ ତିନକାଳେ ଯେତେ ପୁଣ୍ୟବନ୍ତ,
ମୋ' ମତରେ ସର୍ବେ ତୋର ତଳେରେ ଭରତ । ୧୩୧୨

ତୁମକୁ କୁଟିଳ ବୋଲି ଭାବିଲେ ହୃଦୟେ,
ଇହ ପରଲୋକ ନାଶ ହୁଅଇ ନିଶ୍ଚୟେ ।
ଗୁରୁ ସାଧୁସଙ୍ଗ ସେବା କରି ନାହିଁ ଯିଏ,
ଜନନୀକୁ ସେହି ମନ୍ଦମତି ଦୋଷ ଦିଏ । ୧୩୧୩

ହେ ଭରତ ତୁମ ନାମ ସ୍ମରଣ ମାତ୍ରକେ,
ଏ ପ୍ରପଞ୍ଚ ପାପ ନାଶ ହେବ ନିମିଷକେ ।
ଯିବ ଅମଙ୍ଗଳ, ଯଶ ମିଳିବ ଭୁବନେ,
ପରଲୋକ ସୁଖ ତୁମ ନାମ ଉଚ୍ଚାରଣେ । ୧୩୧୪

ସତ୍ୟ କହୁଅଛୁ ଭାଇ ରଖି ସାକ୍ଷୀ ଶିବ,
ତୁମେ ତ ରଖିଲେ ଏହି ଧରଣୀ ରହିବ ।
ଅଯଥା ବିତର୍କମାନ ହୃଦେ ଆଣ ନାହିଁ,
ବୈର ପ୍ରୀତି ଲୁଚାଇଲେ ଲୁଚଇ କି କାହିଁ ? ୧୩୧୫

ନିର୍ଭୟେ ଯାଆନ୍ତି ପଶୁ ପକ୍ଷୀ ମୁନି ପାଶେ,
ବାଧକ ବ୍ୟାଧକୁ ଦେଖି ଦଉଡ଼ନ୍ତି ତ୍ରାସେ ।
ପଶୁ ପକ୍ଷୀ ଜାଣୁଛନ୍ତି ନିଜ ହିତାହିତ,
ଜ୍ଞାନ-ଗୁଣ-ଧାମ ନର ଶରୀର ଏହିତ । ୧୩୧୬

ତୁମକୁ ମୁଁ ଭଲ ଭାବେ ଜାଣିଅଛୁ ଭାଇ,
କି କରିବ ନିରୁପାୟ ଏହି ଦ୍ୱନ୍ଦ୍ୱ ପାଇଁ—
ସତ୍ୟକୁ ରଖିଲେ ପିତା ମୋତେ ପରିତ୍ୟାଗି,
ତନୁ ତ୍ୟାଗ କଲେ ପୁଣି ପ୍ରେମ ପଣ ଲାଗି । ୧୩୧୭

ଏଡ଼ିଲେ ତାଙ୍କର ସତ୍ୟ ହୁଏ ଚିନ୍ତା ଶୋକ,
ତା'ଠାରୁ ଅଧିକ ପୁଣି ତୁମର ସଙ୍କୋଚ ।
ତା'ପରେ ଆଦେଶ ଦେଇଛନ୍ତି ମୁନିବର,
ଅବଶ୍ୟ କହିବି ଯାହା, କରିବି ସତ୍ୱର । ୧୩୧୮

ମନରେ ନ ରଖି ଲଜ୍ଜା ହରଷ ଅନ୍ତରେ,
ଯା' କିଛି କହିବ ତାହା କରିବି ସତରେ ।
ସତ୍ୟସନ୍ଧ ରଘୁବର କୋମଳ ବଚନେ,
ଆନନ୍ଦ ହୋଇଲେ ତହିଁ ଉପସ୍ଥିତ ଜନେ । ୧୩୧୯

ଭାବିଲେ ସୁରେଶ ଦେବେ ହୋଇ ଭୟଭୀତ,
ହେବା କାମ ଏବେ ନଷ୍ଟ ହେଉଛି ନିଶ୍ଚିତ ।
ନ ଅଛି ଉପାୟ ଯେଣୁ ଆଉ କିଛି ହସ୍ତେ—
ତେଣୁ ମନ ମଧ୍ୟେ ରାମ ଶରଣ ସମସ୍ତେ । ୧୩୨୦

ବହୁତ ବିଚାରି କଥା ହେଲେ ପରସ୍ପର,
ଭକତର ଭକ୍ତ-ବଶ ରାମ ରଘୁବର ।
ଅମ୍ବରୀଷ ଦୁର୍ବାସାଙ୍କ ଚରିତ ସୁମରି,
ନିରାଶା ସୁରେଶ ସୁର ହୃଦେ ଗଲା ଭରି । ୧୩୨୧

ପ୍ରଥମେ ସହିଲେ ଯେବେ ସୁରେ ବହୁ କଷ୍ଟ,
ପରେ ନୃସିଂହଙ୍କୁ କଲେ ପ୍ରହ୍ଲାଦ ପ୍ରକଟ ।
କାନକୁ ଲଗାଇ କାନ ମୁଣ୍ଡକୁ ହଲାଇ,
କହିଲେ ଭରତ ହାତେ ଦେବ କାର୍ଯ୍ୟ ଭାଇ । ୧୩୨୨

"ହେ ଦେବେ ନ ଦିଶେ ଆଉ କୌଣସି ଉପାୟ,
ସେବକ-ସେବାକୁ ସଦା ଖୁସି ରଘୁରାୟ ।
ଗୁଣେ ଶୀଳେ ବଶ କଲେ ଯେ ରଘୁନନ୍ଦନ,
ଭରତଙ୍କୁ କର ପ୍ରୀତି-ହୃଦୟେ ସ୍ମରଣ । ୧୩୨୩

ଦେବତାଙ୍କ ମତ ଶୁଣି ଗୁରୁ ବୃହସ୍ପତି,
କହିଲେ, "ହେ ଦେବେ ତୁମେ ଭାଗ୍ୟବନ୍ତ ଅତି ।
ଭକ୍ତ-ଭରତଙ୍କ ପଦେ ପୀରତି ଅତୁଳ,
ଜଗତେ ସକଳ ଶୁଭ ସୁମଙ୍ଗଳ ମୂଳ । ୧୩୨୪

ସୀତାପତି-ସେବକର ସେବାରେ ଯା' ମନ,
ଶତ କାମଧେନୁ ସୁଖ ସେ କରେ ଅର୍ଜନ ।

ତୁମ ମନେ ଜାଗିଲା ଯେ ଭରତ ଭକତି,
ଚିନ୍ତା ତେଜ ଏବେ ବନ୍ଧୁ ସଲଖିଲେ ଗତି । ୧୩୨୫

ଭରତ ପ୍ରଭାବ ଏବେ ଦେଖ ସୁରପତି,
ସ୍ୱଭାବ ସ୍ନେହରେ ବଶ ଶ୍ରୀରାମ ଅତ୍ୟନ୍ତ ।
ମନେ ଦମ୍ଭଧର, ଦେବେ ଭୟ କର ନାହିଁ,
ଭରତଙ୍କୁ ଭାବ ରଘୁପତିଙ୍କର ଛାଇ । ୧୩୨୬

ଦେବତାଙ୍କ ଚିନ୍ତା ସୁରଗୁରୁଙ୍କର ମତ,
ଜାଣି ଅନ୍ତର୍ଯାମୀ ରାମ ହୃଦୟେ ସଙ୍କୋଚ ।
ଏଣେ ସବୁ ଭାର ଭାବ ଆପଣା ଉପରେ,
କୋଟି କଳପନା କଲେ ଭରତ ଅନ୍ତରେ । ୧୩୨୭

ମନରେ ବିଚାର କଲେ ହୃଦେ ଅନୁମାନ,
ପାଳଲେ ପ୍ରଭୁଙ୍କ ଆଜ୍ଞା ହୋଇବ କଲ୍ୟାଣ ।
ତେଜ ନିଜ ପଣ ପ୍ରଭୁ ରଖିଲେ ମୋ ପଣ,
ଅଳପ ନୁହଁଇ ଏ ତ ତାଙ୍କ କୃପା କ'ଣ । ୧୩୨୮

କଲେ ତ ସେ ସବୁ ମତେ ଅମିତ କରୁଣା,
ନ କଲ ହୃଦୟୁ ସ୍ନେହ କଞ୍ଚତରେ ଊଣା ।
ହରଷେ ଭରତ ଯୋଡ଼ି ବେନି ପଦ୍ମ-ପାଣି,
କହିଲେ ପ୍ରଣାମ କରି ସୁକୋମଳ ବାଣୀ । ୧୩୨୯

"ହେ କରୁଣା-ପାରାବାର ହୃଦ ଅନ୍ତର୍ଯାମୀ,
କି କହିବ କୁହାଇବ ଏବେ ଆଉ ସ୍ୱାମୀ ।
ଗୁରୁ ସୁପ୍ରସନ୍ନ ମୋତେ, ସ୍ୱାମୀ ଅନୁକୂଳ,
ମେଣ୍ଟିଲା ମୋ ମଳ-ମନ କଳପିତ ଶୂଳ । ୧୩୩୦

ନିଜ ଡରେ ଡରୁଥିଲି ଚିନ୍ତା ଅକାରଣ,
ରବିର କି ଦୋଷ ଅବା ହେଲେ ଦିଗ ଭ୍ରମ ।
ମୋର ମନ୍ଦ ଭାଗ୍ୟ ପୁଣି ମାତା କୁଟିଳତା,
ବିଧିର ବିଷମ ଗତି କାଳ କଠିନତା,

ପାଦ ଧୋଇ ସବେ ମିଳି ମୋତେ ବନାଶିଲେ,
କିନ୍ତୁ ପାଳି ପଣ ପ୍ରଭୁ ଅଧମେ ରଖିଲେ ।
ଏ କିଛି ନୂତନ ରୀତି ନୁହେଁ ପ୍ରଭୁଙ୍କର,
ଲୋକେ ବେଦେ ବିଦିତ ଏ ସଭିଙ୍କୁ ଗୋଚର । ୧୩୩୧

ହେଉ ଯାଉ ଏ ସଂସାର ପଚ୍ଛେ ପ୍ରତିକୂଳ,
କା' ଭଲେ କି ଲୋଡ଼ା ଯଦି ପ୍ରଭୁ ଅନୁକୂଳ ।
ଦେବ ! ଦେବ-ତରୁ ତୁଲ୍ୟ ତୁମରି ସ୍ୱଭାବ,
କାହା ପ୍ରତି ନାହିଁ କେବେ ଶତ୍ରୁ ମିତ୍ର ଭାବ । ୧୩୩୨

ଚିହ୍ନି ସେ ବୃକ୍ଷକୁ ତା'ର ପାଖକୁ ଯେ ଯାଏ,
ତା' ଛାୟା ସକଳ ଚିନ୍ତା ନାଶ କରିଥାଏ ।
ରାଜା ରଙ୍କ ଯେତେ ଲୋକ ଭଲ ଆଉ ମନ୍ଦ,
ମାଗି ପାଇଥାନ୍ତି ତାଙ୍କ ଇପ୍ସିତ ଦରବ । ୧୩୩୩

ଦେଖି ଗୁରୁ ସ୍ୱାମୀଙ୍କର ସବୁ ମତେ ସ୍ନେହ,
ମୋ କ୍ଷୋଭ ମେଣ୍ଟିଲା ନାହିଁ ମନରେ ସନ୍ଦେହ ।
ଏବେ କୃପାମୟ ପ୍ରଭୁ କରନ୍ତୁ ତେସନ,
ଦାସ ପ୍ରତି ଯେହ୍ନେ ବ୍ୟଗ୍ର ନୋହୁ ତୁମ ମନ । ୧୩୩୪

ସ୍ୱାମୀଙ୍କୁ ସଙ୍କୋଚେ ଠେଲି ଯେଉଁ ସେବାକାରୀ,
ନିଜ ହିତ ଚାହେଁ ମତି ମଳିନ ତାହାରି ।
ସକଳ ପ୍ରକାର ସୁଖ ଲୋଭ ବିବର୍ଜିତ,
କେବଳ ସ୍ୱାମୀଙ୍କ ସେବା ସେବକର ହିତ । ୧୩୩୫

ସଭିଙ୍କର ସ୍ୱାର୍ଥ ନ୍ୟସ୍ତ ପ୍ରଭୁ ବାହୁଡ଼ିଲେ,
କୋଟିଏ କଲ୍ୟାଣ ପ୍ରଭୁ ଆଦେଶ ପାଳିଲେ ।
ଏହି ତ ଅଟଇ ସ୍ୱାର୍ଥ ପରମାର୍ଥ ସାର,
ସକଳ ସୁକୃତ ଫଳ ସୁଗତି ଶୃଙ୍ଗାର । ୧୩୩୬

ଶୁଣ ପ୍ରଭୁ ମୋର ଏକମାତ୍ର ନିବେଦନ,
ଉଚିତ ମଣିଲେ ତାହା କରିବେ ଆପଣ ।

ଅଭିଷେକ ସାଜ ସାଜ ଆଣିଛୁ ସକଳ,
ମନକୁ ମାନିଲେ ପ୍ରଭୁ କରନ୍ତୁ ସୁଫଳ । ୧୩୩୭

ଶତ୍ରୁଘ୍ନ ସହିତେ ମୋତେ ପଠାଇ କାନନେ,
ବାହୁଡ଼ି ସନାଥ କର ଅଯୋଧ୍ୟାର ଜନେ ।
କିମ୍ବା ଏହି ବେନି ଭାଇ ପଠାଇ ନଗରେ,
କରୁଣା ନିଧାନ ମୋତେ ନିଅନ୍ତୁ ସାଙ୍ଗରେ । ୧୩୩୮

ଅଥବା ତିନହେଁ ଆମେ ଯିବୁ ଘୋର ବନ,
ସୀତା ସାଥେ ପ୍ରଭୁ ଫେର ଅଯୋଧ୍ୟା ଭୁବନ ।
ଯେ ଭାବେ ପ୍ରଭୁଙ୍କ ମନ ହୋଇବ ପ୍ରସନ୍ନ,
କରୁଣା ସାଗର କର ସେପରି ଯତନ । ୧୩୩୯

ପ୍ରଭୁ ମୋ ଉପରେ ସବୁ ରଖି ଦେବ ଭାର,
ମୋର ତ ନ ଥିବ ନୀତି ଧରମ ବିଚାର ।
ସ୍ୱାର୍ଥକୁ ମୋ ଲାଗି ନିଶ୍ଚେ କହିବି ବଚନ,
ଆର୍ତ୍ତ ହୃଦେ ନ ଥାଏ ତ ବିବେକ-ରତନ । ୧୩୪୦

ସ୍ୱାମୀଙ୍କ ଆଦେଶ ଶୁଣି ଯେ ଦିଏ ଉତ୍ତର,
ଲଜ୍ଜା ଲାଜ କରେ ଦେଖି ସେ ସେବକ ନର ।
ସବୁ ଅବଗୁଣର ମୁଁ ଅତଳ ସାଗର,
ସ୍ନେହେ ମୋତେ "ସାଧୁ" କହି ପ୍ରଶଂସା ଯା'କର । ୧୩୪୧

ହେ କୃପାଳୁ ଏବେ ସୁଖୀ ହେବି ମୁଁ ତହିଁରେ,
ସଙ୍କୋଚ ପ୍ରଭୁଙ୍କ ମନେ ନ ହେବ ଯହିଁରେ ।
ସତ୍ୟ କହୁଛି ମୁଁ ଦେଇ ପ୍ରଭୁ ପଦେ ଘେନି,
ଏ ଏକ ଉପାୟେ ହେବ ଜଗତ କଲ୍ୟାଣ । ୧୩୪୨

ଯାହାକୁ ଯେପରି ଆଜ୍ଞା ଦେବେ ରଘୁରାୟେ,
ପ୍ରସନ୍ନ ମନରେ ଲଜ୍ଜା ନ ରଖି ହୃଦୟେ ।
ସେ ଆଜ୍ଞା ପାଳିବ ସିଏ ଶିରୋଧାର୍ଯ୍ୟ କରି,
ଏଥିରେ ସକଳ ଦ୍ୱନ୍ଦ୍ୱ ଯିବ ଅପସରି । ୧୩୪୩

ଭରତଙ୍କ ପୂତ କଥା ଶୁଣି ଦେବଗଣ,
"ସାଧୁ" କହି ହର୍ଷେ କଲେ କୁସୁମ ସିଞ୍ଚନ ।
ଦ୍ୱିଧାରେ ପଡ଼ିଲେ ଯେତେ ଅଯୋଧ୍ୟା ନିବାସୀ,
ହରଷିତ ମନ ହେଲେ ମୁନି ବନବାସୀ । ୧୩୪୪

ସଙ୍କୋଚ ସ୍ୱଭାବ ରାମ ରହିଲେ ନୀରବେ,
ପ୍ରଭୁ ଗତି ଦେଖି ଚିନ୍ତା କଲେ ସଭାସଦେ ।
ଆସିଲେ ଜନକ ଦୂତ ସେ କାଳେ ସେ ସ୍ଥଳେ,
ଶୁଣି ଡକାଇଲେ ମୁନି ବଶିଷ୍ଠ ସଭାରେ । ୧୩୪୫

ସେମାନେ ପ୍ରଣାମ କରି ରାମଙ୍କୁ ନିରେଖି,
ହୋଇଲେ ଅତ୍ୟନ୍ତ ଦୁଃଖୀ ତାଙ୍କ ବେଶ ଦେଖି ।
ମୁନୀଶ ଦୂତଙ୍କୁ ତହୁଁ ପଚ୍ଚାରିଲେ କଥା,
'ବିଦେହ ରାଜଙ୍କ କହ କୁଶଳ ବାରତା ।' ୧୩୪୬

ଶୁଣି ସସଙ୍କୋଚେ ତଳେ ମସ୍ତକ ଲଗାଇ,
ଯୋଡ଼କରି ଧୀରବର କହିଲେ, "ଗୋସାଇଁ,
ଆପଣେ ଆଦରେ ଯେଉଁ କହିଲେ ବଚନ,
ଏହି ମାତ୍ର ହେଲା ଯାହା କୁଶଳ କାରଣ । ୧୩୪୭

ନାହିଁ ତ ହେ ମୁନିନାଥ ରାଜାଙ୍କ କୁଶଳ,
କୋଶଳ ନାଥଙ୍କ ସଙ୍ଗେ ଯାଇଛି ସକଳ ।
ସମସ୍ତ ଜଗତ ଆଜ ହୋଇଛି ଅନାଥ,
ବିଶେଷେ ଅଯୋଧ୍ୟାପୁରୀ ବିଦେହ ହେ ନାଥ । ୧୩୪୮

ଶୁଣି ଦଶରଥଙ୍କର ମରଣ ଖବର,
ବିଦେହ ନିବାସୀ ହେଲେ ଶୋକରେ ପାଗଳ ।
ବିଦେହଙ୍କୁ ସେ ସମୟେ ଦେଖି ଶୋକବଶ,
ନାମ ସତ୍ୟତାରେ କଲେ ସନ୍ଦେହ ଅବଶ୍ୟ । ୧୩୪୯

ରାଣୀଙ୍କ ଚକ୍ରାନ୍ତ ଶୁଣି ବିଦେହ ନୃପତି,
ମଣିହରା ସର୍ପ ସମ ହେଲେ ହତ ମତି ।

ଭରତଙ୍କ ରାଜ୍ୟ ଭାର, ରାମ ବନବାସ,
ଶ୍ରବଣେ ଜନକ ହୃଦେ ଲଭିଲେ ପରାସ । ୧୩୫୦

ପରାମର୍ଶ କଲେ ରାଜା ମନ୍ତ୍ରୀଙ୍କ ସହିତ,
କହ ସୁବିଜ୍ଞେ ଏବେ ହେବା କି ଉଚିତ ।
ସକଳ ହିଗରୁ ବୁଝି ଅସଙ୍ଗତ ଅତି,
ଅଯୋଧ୍ୟା ଯିବା ନ ଯିବା କେହି ନ କହନ୍ତି । ୧୩୫୧

ଧୈର୍ଯ୍ୟ ଧରି ନରପତି ହୃଦୟେ ବିଚାରି,
ଅଯୋଧ୍ୟା ପଠାଇ ଦେଲେ ଦକ୍ଷ ଚାର ଚାରି ।
ବୁଝି ଭରତଙ୍କ ରାମ ପ୍ରତି ମତି ଗତି,
ଭେଦ ନ ଜଣାଇ ଫେରି ଆସିବ ଝଟତି । ୧୩୫୨

ଅଯୋଧ୍ୟାକୁ ଗଲେ ଚଳି ଗୁପ୍ତଚର ଗଣ,
ଦେଖିଲେ ଭରତଙ୍କର କାର୍ଯ୍ୟ ଆଚରଣ ।
ଚିତ୍ରକୁଟ ଅଭିମୁଖେ ଯିବାରୁ ଭରତ,
ଫେରିଲେ ସେ ଚରଗଣେ ମିଥିଳା ତୁରନ୍ତ । ୧୩୫୩

ବାହୁଡ଼ି ସେ ଦୂତେ ନିଜ ବୁଦ୍ଧି ଅନୁସାରେ,
କହିଲେ ଭରତ କର୍ମ ଜନକ ସଭାରେ ।
ଶୁଣି ଗୁରୁ ପରିଜନ ସଚିବ ନୃପତି,
ଚିନ୍ତା ଓ ସେନେହେ ହେଲେ ବ୍ୟାକୁଳିତ ଅତି । ୧୩୫୪

ହୃଦେ ଧୈର୍ଯ୍ୟ ଧରି କରି ଭରତ ବଡ଼ାଇ,
ଦକ୍ଷ ଯୋଦ୍ଧା ପାରିଷଦମାନଙ୍କୁ ଡକାଇ ।
ରକ୍ଷକ ରଖାଇ ପୁରେ ନଗରେ ଦେଶରେ,
ସଜାଇ ତୁରଗ ଗଜ ବିବିଧ ଯାନରେ । ୧୩୫୫

ଦି' ଘଡ଼ିଆ ସାଧି ଯାତ୍ରା କଲେ ତତକାଳେ,
ବିଶ୍ରାମ ନ କରି ନୃପ କେଉଁଠି ପଥରେ,
ଆଜି ବଡ଼ି ଭୋରୁ କରି ସ୍ନାହାନ ପ୍ରୟାଗେ,
ହେଉଥିଲେ ଯମୁନାକୁ ପାର ସେଇଲାଗେ । ୧୩୫୬

ଖବର ନେବାକୁ ଏବେ ପଠାଇଲେ ନାଥ,
ଏହା କହି ଭୂମିପରେ କଲେ ପ୍ରଣିପାତ ।
ଛଅ ସାତ ଜଣ ଦେଇ କରାତ ସଙ୍ଗରେ,
ଚରଙ୍କୁ ପଠାଇ ଦେଲେ ମୁହାଁଣ ସନ୍ଧରେ । ୧୩୫୭

ଜନକଙ୍କ ଆଗମନ ବାର୍ତ୍ତା ପାଇ ଲବେ,
ପ୍ରସନ୍ନ ହୋଇଲେ ଅଯୋଧ୍ୟାର ଲୋକ ସବେ ।
ସଙ୍କୋଚ ଜନ୍ମିଲା ରଘୁପତିଙ୍କର ମନେ,
ଚିନ୍ତାକୁଳ ଦେବରାଜ ଅମର ଭୁବନେ । ୧୩୫୮

କୁନ୍ଦିଲା କୈକେୟୀ ସତେ ଅନୁତାପ ଭରେ,
କାହାକୁ କହିବ, ଦୋଷ ଦେବ ବା କାହାରେ ?
ଏପରି ହରଷ ମନେ ହର୍ଷ ନରନାରୀ,
ପୁଣି ରହିବାକୁ ହେବ ଆଜ ଦିନ ସାରି । ୧୩୫୯

ଏହିପରି ଭାବେ ବନେ ସେ ଦିବସ ଗତେ,
ପ୍ରାତଃ ସ୍ନାନ କରିବାକୁ ଲାଗିଲେ ସମସ୍ତେ ।
ସ୍ନାନ ଶେଷେ ପୂଜା କଲେ ନର ନାରୀଗଣ,
ଗଉରୀ ଗଣେଶ ଶିବ ସୂର୍ଯ୍ୟ ନାରାୟଣ । ୧୩୬୦

ପୁଣି କରି ରମାନାଥଙ୍କ ଚରଣ ବନ୍ଦନା,
କରଯୋଡ଼ି କାକପାତି କରନ୍ତି ପ୍ରାର୍ଥନା ।
ଶ୍ରୀରାମ ହୁଅନ୍ତୁ ରାଜା ବଇଦେହୀ ରାଣୀ,
ଏ ଅଯୋଧ୍ୟା ହେଉ ସୁଖ ସୀମା ରାଜଧାନୀ । ୧୩୬୧

ପ୍ରତିଷ୍ଠିତ ହେଉ ତହିଁ ସୁଖର ସମାଜ,
ଭରତେ ଦିଅନ୍ତୁ ରାମ ପଦ ଯୁବରାଜ ।
ଲୋକଙ୍କ ଉପରେ ସିଞ୍ଚି ଏ ସୁଖ ଅମୃତ,
ଦାଇବ ଜଗତେ ଦେଉ ପ୍ରାଣ-ଲାଭ-ସୁଖ । ୧୩୬୨

ଅଯୋଧ୍ୟା ସମାଜ ଗୁରୁ ଭାଇଙ୍କ ସଙ୍ଗରେ,
ରାଜତ୍ୱ କରନ୍ତୁ ରାମ ଆନନ୍ଦ ମନରେ ।

ଅଯୋଧ୍ୟା ନଗରରେ ରାମ ରାଜା ଥାଉଁ ଥାଉଁ,
ଆମ ସମସ୍ତଙ୍କ ପ୍ରାଣ ଆଗେ ଆଗେ ଯାଉ । ୧୩୬୩

ଶୁଣି ପୁରଜନଙ୍କର ଏ ସ୍ନେହ ବଚନ,
ନିନ୍ଦନ୍ତି ବୈରାଗ୍ୟ ଯୋଗ ମୁନି ଯୋଗୀ ଜନ ।
ନିତ୍ୟ କର୍ମ ଶେଷେ ପୁରଜନେ ସର୍ବାଧିରେ,
ପ୍ରଣମିଲେ ଶ୍ରୀରାମଙ୍କୁ ପୁଲକ ଶରୀରେ । ୧୩୬୪

ଉତ୍ତମ ମଧ୍ୟମ ନୀଚ ନର ନାରୀଗଣ,
ଭାବ ଅନୁରୂପେ କଲେ ଶ୍ରୀରାମ ଦର୍ଶନ ।
ଭେଟିଲେ ସଭିଙ୍କୁ ରାମ ଆଦର ସମ୍ମାନେ,
ପ୍ରଶଂସା କରନ୍ତି ସର୍ବେ କରୁଣା ନିଧାନେ । ୧୩୬୫

ବାଲ୍ୟକାଳୁ ରାମଙ୍କର ଏମିତି ସ୍ୱଭାବ,
ପାଳନ୍ତି ସକଳ ନୀତି ଜାଣି ପ୍ରୀତି ଭାବ ।
ଶ୍ରୀ ରଘୁନନ୍ଦନ ଶୀଳ ସଙ୍କୋଚ ସାଗର,
ସୁଲୋଚନ ସୁବଦନ ଚରିତ୍ର ସରଳ । ୧୩୬୬

ରାମ ଗୁଣରାଶି ଗାଇ ହୃଦ ଅନୁରାଗେ,
ପ୍ରଶଂସା କରନ୍ତି ପୁରଜନେ ନିଜ ଭାଗ୍ୟେ ।
ଜଗତେ ଅଳପ ଆମ ସମ ପୁଣ୍ୟବାନ,
ଯାହାଙ୍କୁ ନିଜର ବୋଲି ଜାଣନ୍ତି ଶ୍ରୀରାମ । ୧୩୬୭

ପ୍ରେମେ ଅତିଶୟ ମଗ୍ନ ଯେବେ ପୁରଜନ,
ସେକାଳେ ଜନକଙ୍କର ଶୁଣି ଆଗମନ,
ରବିକୁଳ-ସରସିଜ-ସୂର୍ଯ୍ୟ ରଘୁବର,
ସ୍ୱାଗତ ସକାଶେ ଗଲେ ସସଭା ସତ୍ୱର । ୧୩୬୮

ସଙ୍ଗେ ଘେନି ଭାଇ ମନ୍ତ୍ରୀ ଗୁରୁ ପୁରଜନ,
ଆଗେ ଆଗେ ଗଲେ ବେଗେ ଶ୍ରୀ ରଘୁନନ୍ଦନ ।
ଚିତ୍ରକୂଟ ଗିରି ଯେବେ ଜନକ ଦେଖିଲେ,
କରି ନମସ୍କାର ରଥପରୁ ଓହ୍ଲାଇଲେ । ୧୩୬୯

ଶ୍ରୀରାମ ଦର୍ଶନ ଆଶା ହୃଦୟେ ଅଶେଷ,
ନ ଲାଗଇ ତେଣୁ କା'ରେ ପଥ-ଶ୍ରମ-କ୍ଲେଶ ।
ଯହିଁ ରାମ ବଇଦେହୀ ମନ ତହିଁଥାଏ,
ମନ ବିନା ତନୁ ସୁଖ ଦୁଃଖ କିଏ ପାଏ ? ୧୩୭୦

ଏହି ଭାବ ବହି ଚାଲି ଆସନ୍ତି ଜନକ,
ସମାଜ ସହିତେ ମତି ଅତି ପ୍ରେମ ମତ୍ତ ।
ନିକଟକୁ ଆସିବାର ଦେଖି ସ୍ନେହ ଭରେ,
ପରସ୍ପର ମିଳିବାକୁ ଲାଗିଲେ ସକଳେ । ୧୩୭୧

ଜନକ ବନ୍ଦିଲେ ମୁନିଗଣଙ୍କ ଚରଣ,
ଋଷିଙ୍କୁ ପ୍ରଣାମ କଲେ ଶ୍ରୀ ରଘୁନନ୍ଦନ ।
ଜନକଙ୍କୁ ଭେଟି ରାମ ଭାଇଙ୍କ ଗହଣେ,
ସସମାଜ ସଙ୍ଗେ ନେଇ ଚଳିଲେ ଆଶ୍ରମେ । ୧୩୭୨

ଶାନ୍ତ ରସ ପୂତ ଜଳେ ପୂର୍ଣ୍ଣସିନ୍ଧୁ ସମ,
ମନେହୁଏ ରଘୁପତି ଶ୍ରୀରାମ-ଆଶ୍ରମ ।
କରୁଣା-ସରିତ ସେନା ବାହିନୀକୁ ନେଇ,
ରାମ କି ଯାଆନ୍ତି ତହିଁ ଦେବାକୁ ମିଶେଇ । ୧୩୭୩

ବିବେକ ବୈରାଗ୍ୟ କୂଳ ବୁଡ଼ାଇ ସେ ଧାଏଁ,
ସଶୋକ ବଚନ ରାଜ ନଦୀନାଳ ପ୍ରାୟେ ।
ଚିନ୍ତା ଦୀର୍ଘ ଶ୍ୱାସ, ବାୟୁ ଚାଳିତ ତରଙ୍ଗ,
ଧୈର୍ଯ୍ୟ-ତଟ-ତରୁବରେ କରୁଥାଏ ଭଙ୍ଗ । ୧୩୭୪

ବିଷମ ବିଷାଦ ତାର ଖର ସ୍ରୋତ ଧାର,
ଭୟ ଭ୍ରମ ଶଙ୍କାରାଜ ଆବର୍ତ୍ତ ଅପାର ।
ବିଦ୍ୱାନେ କୈବର୍ତ୍ତ, ବିଦ୍ୟା ବଡ଼ ନାବ ପ୍ରାୟ,
ବାହି ନ ପାରନ୍ତି ନାବ ନ ଦିଶେ ଉପାୟ । ୧୩୭୫

ବିଚରି କରାତ କୋଲ୍ହ ଯେତେ ବନଚର,
ପଥିକ ସମାନ ଥକି ରହିଲେ କେବଳ ।

ଆଶ୍ରମ-ସିନ୍ଧୁରେ ଯେବେ ଏ ନଦୀ ମିଶିଲା,
ଆକୁଳେ ସାଗର ସତେ ଉଚ୍ଛୁଳ ଉଠିଲା । ୧୩୭୬

ବିକଳ ହୋଇଲେ ଶୋକେ ବେନି ରାଜକୁଳ,
କିଛି ନ ରହିଲା ଜ୍ଞାନ, ଦମ୍ଭ ଲଜ୍ଜା-ମୂଳ ।
ଅଯୋଧ୍ୟା ରାଜଙ୍କ ରୂପ ଗୁଣ ଶୀଳ ଗାଇ,
କାନ୍ଦନ୍ତି ଜନକେ ଶୋକ-ସାଗରେ ମଜ୍ଜାଇ । ୧୩୭୭

ଶୋକ-ପାରାବାରେ ମଜ୍ଜି ଯେସନେ ନାରୀନରେ,
ବ୍ୟାକୁଳ ହୃଦୟେ ଚିନ୍ତା କରନ୍ତି ମନରେ—
ପୁଣି ବିଧାତାକୁ ଦୋଷ ଦେଉଥାନ୍ତି ରୋଷେ,
ବାମ ହିନ୍ତି କି ନ କଲା ସବୁ ବିନା ଦୋଷେ । ୧୩୭୮

ତୁଳସୀ କହନ୍ତି ଦେବ ସିଦ୍ଧ ଯୋଗୀ ମୁନି,
ତପୀ ମଧ୍ୟେ ନ ଥିବେ କେ ଏ ବିକଳ ଶୁଣି,
ଦେଖି ବିଦେହଙ୍କ ଦଶା ସମର୍ଥ ହୋଇବ,
ପ୍ରେମ-ନଦୀ ବିନା କ୍ଳେଶେ ପାରି ହୋଇଯିବ ! ୧୩୭୯

ଶୋକାକୁଳ ଜନେ ମୁନିଗଣେ ନାନା ସ୍ଥାନେ,
ବହୁ ଉପଦେଶ ଦେଲେ ଉଚିତ ବିଧାନେ ।
ଜନକଙ୍କୁ ବୁଝାଇଲେ ବଶିଷ୍ଠ ମହର୍ଷି,
ହୃଦେ ଧୈର୍ଯ୍ୟଧର ଏବେ ବିଦେହ ନୃପତି । ୧୩୮୦

ଯାହାଙ୍କର ଜ୍ଞାନ-ରବି ଭବ-ନିଶା ଧ୍ୱଂସେ,
ବଚନ-କିରଣେ ମୁନି-କମଳ ବିକଶେ ।
ମୋହ ମମତାକି ତାଙ୍କ ପାଶେ ପାରେ ଯାଇ,
ଏ ସିନା ଶ୍ରୀରାମ-ସୀତା କରୁଣା ବଡ଼ାଇ । ୧୩୮୧

ବିଷୟୀ ସାଧକ ସିଦ୍ଧ ବିଜ୍ଞାନୀ ପଣ୍ଡିତ,
ଜଗତେ ତ୍ରିବିଧ ଜୀବ ବେଦେ ସୁବିଦିତ ।
ତାଙ୍କ ମଧ୍ୟେ ରାମ-ସ୍ନେହେ ଯା' ମନ ସରସ,
ସାଧୁ ସମାଜରେ ତା'ର ଆଦର ଅବଶ୍ୟ । ୧୩୮୨

ରାମ ପ୍ରେମ ବିନା ଶୋଭା ପାଏ ନାହିଁ ଜ୍ଞାନ,
କର୍ଣ୍ଣଧାର ବିନା ଯେଉଁପରି ଜଳଯାନ ।
ବହୁ ଭାବେ ଜନକଙ୍କୁ ବଶିଷ୍ଠ କହିଲେ,
ରାମ ଘାଟେ ତହୁଁ ସର୍ବେ ସ୍ନାହାନ କରିଲେ । ୧୩୮୩

ଅତି ଦୁଃଖେ ଜର୍ଜରିତ ହୋଇ ଲୋକମାନେ,
କଟାଇଲେ ସେ ଦିବସ ବିନା ଜଳପାନେ ।
ପଶୁ ପକ୍ଷୀ ମୃଗ କେହି ନ କଲେ ଆହାର,
ପ୍ରିୟ ବନ୍ଧୁଜନଙ୍କର ଆଉ କି ବିଚାର । ୧୩୮୪

ନିମିରାଜ ଜନକ ଶ୍ରୀରାମ ରଘୁରାଜ,
ପ୍ରଭାତରେ ସ୍ନାନ ସାରି ସହିତେ ସମାଜ ।
ବସିଗଲେ ଉଦ୍‌ବେଗରେ ବଟ ତରୁ ତଳ,
ମଳିନ ସଭିଙ୍କ ମନ ଶରୀର ଦୁର୍ବଳ । ୧୩୮୫

ସେ ଯେଉଁ ବ୍ରାହ୍ମଣେ ଦଶରଥ ପୁରବାସୀ,
ଯେ ମିଥିଳା ନରପତି ନଗର ନିବାସୀ ।
ସୂର୍ଯ୍ୟବଂଶ ଗୁରୁ ନିମି କୁଳ ପୁରୋହିତ,
ଭବେ ପରମାର୍ଥ ପଥ ଯାହାଙ୍କ ଦର୍ଶିତ । ୧୩୮୬

ଉପଦେଶ ପୂର୍ଣ୍ଣ କଥା କହିଲେ ଅନେକ,
ଧର୍ମନୀତି ସହିତରେ ବୈରାଗ୍ୟ ବିବେକ ।
ବିଶ୍ୱାମିତ୍ର କହି କହି ପୁରୁଣା ଚରିତ,
ବୁଝାଇଲେ ସଭାଜନେ ବାଣୀ ସୁଭାଷିତ । ୧୩୮୭

ରଘୁନାଥ କୌଶିକଙ୍କୁ ତା'ପରେ କହିଲେ,
ନାଥ, ବିନା ଜଳପାନେ କାଲି ସର୍ବେ ଥିଲେ ।
ମୁନୀଶ କହିଲେ ରାମ କହୁଛନ୍ତି ବିଧି,
ଅଢ଼େଇ ପହର ଆଜ ଗଲାଣି ତ ବିତି । ୧୩୮୮

ଜନକ, ବିହୁତରାଜ ଋଷି ମନ ଜାଣି,
କହିଲେ, "ଭରତ ଏଠି ନୁହେଁ ଅନ୍ନପାଣି ।"

ସଭିଙ୍କୁ ଲାଗିଲା ଭଲ ରାଜାଙ୍କ ବଚନ,
ଯଥାଦେଶ ପାଇ କଲେ ସ୍ନାନାର୍ଥେ ଗମନ । ୧୩୮୯

ଅଗଣନ ବନବାସୀ ସେହି ଅବସରେ,
ଭରି ବୋଝ, ଫଳ ଫୁଲ ମୂଳ ଓ ପତ୍ରରେ, ।
ନାନା ଜାତି ନାନା ଗୁଣ ନାନା ସ୍ୱାଦଯୁକ୍ତ,
ଆଣି ପହଞ୍ଚିଲେ ଭରି ବାହୁଙ୍କେ ବହୁତ । ୧୩୯୦

ଶ୍ରୀରାମ କୃପାରେ ହେଲେ କାମଦ ପର୍ବତେ,
ହରୁଥିଲେ ଦୁଃଖ ରାଶି ଦର୍ଶନ ମାତ୍ରକେ ।
ସେଠାର ସରିତ ସର ବନ ଭୂମି ଭରି,
ଉଚ୍ଛୁଳେ ଯେପନେ ସ୍ନେହ ଆନନ୍ଦ ଲହରୀ । ୧୩୯୧

ଫଳ ପୁଷ୍ପ ଯୁକ୍ତ ହେଲେ ବୃକ୍ଷ ତରୁ ଲତା,
କହନ୍ତି କ ଖଗ ମୃଗ ଅଳି ମଧୁ କଥା ।
ସେ କାଳେ ଅରଣ୍ୟ ବହୁ ଉତ୍ସାହେ ଭରିଲା,
ସୁଖଦ ତ୍ରିବିଧ ବାୟୁ ଚୌଦିଗେ ବହିଲା । ୧୩୯୨

ଅରଣ୍ୟ ସୁଷମା ଶୋଭା କହି ନ ହୁଅଇ,
ମହୀ ଯେସ୍ନେ ଜନକଙ୍କ ଆତିଥ୍ୟ କରଇ ।
କରି ରାମ ରାଜା ମୁନି ଆଦେଶ ପାଳନ,
ତହୁଁ ସବୁ ଲୋକ କଲେ ସ୍ନାନ ସମାପନ । ୧୩୯୩

ଦେଖି ଦେଖି ତରୁ ତଳେ ଅନୁରାଗ ମନେ,
ସ୍ଥାନେ ସ୍ଥାନେ ବସିଗଲେ ସେଠି ପୁରଜନେ ।
ଅନେକ ପ୍ରକାର ଦଳ କନ୍ଦମୂଳ ଫଳ,
ଅମୃତ ସମାନ ସ୍ୱାଦ ପବିତ୍ର ବିମଳ । ୧୩୯୪

ବଶିଷ୍ଠ ସଭିଙ୍କ ପାଇଁ ଅଶେଷ ଆଦରେ,
ପଠାଇଲେ ବହୁ ଭରି ଦାସଙ୍କ ହାତରେ ।
ପୂଜି ଦେବ ଗୁରୁ ପିତୃ ପୁରୁଷ ଅତିଥି,
ଫଳାହାର କଲେ ସର୍ବେ ଲଭି ପ୍ରାଣେ ପ୍ରୀତି । ୧୩୯୫

ଏପରି ଭାବରେ କଟିଗଲା ଦିନ ରାତି,
ହୃଅନ୍ତି ରାମଙ୍କୁ ଦେଖି ସୁଖୀ ନରନାରୀ ।
ବେଳି କୂଳ କରୁଥାନ୍ତି ହୃଦେ ଅନୁଭବ,
ରାମ ସୀତା ବିନା ଯିବା ନୋହିବ ସୁଖଦ । ୧୩୯୬

ସୀତା ରାମ ସଙ୍ଗେ ବନ ନିବାସ ଉତ୍ତମ,
ଆରାମ ଦାୟକ କୋଟି ଦେବଲୋକ ସମ ।
ଶ୍ରୀରାମ ଲକ୍ଷ୍ମଣ ସୀତା ବିନା ଘର ସୁଖ,
ଯାହାର ପସନ୍ଦ, ବିଧି ତାହାର ବିମୁଖ । ୧୩୯୭

ସଭିଙ୍କୁ ହୋଇବ ଯେବେ ବିଧି ଅନୁକୂଳ,
ରାମ ସାଥେ ବନବାସ ହେବ ଆମ ମୂଳ ।
ମନ୍ଦାକିନୀ ଜଳେ ହେବ ତିକାଳ ସ୍ନାହାନ,
ଶ୍ରୀରାମ ଦର୍ଶନ ସୁଖ ମଙ୍ଗଳ ନିଧାନ । ୧୩୯୮

ରାମଗିରି ବନ ମୁନି ଆଶ୍ରମେ ଭ୍ରମଣ,
କନ୍ଦମୂଳ ଫଳ ସୁଧା ସମାନ ଅଶନ ।
ସୁଖରେ ଚଉଦ ବର୍ଷ ଯିବ ଗ୍ରୁଏଁ ଗ୍ରୁଏଁ,
ଯିବା ଜଣା ନ ପଡ଼ିବ ପଲକ ପରିଏ । ୧୩୯୯

ଆମେ କି ହୋଇବୁ ସତେ ଏ ସୁଖ ଭାଜନ,
କାହିଁ ଆମ ଭାଗ୍ୟ କହୁଥାନ୍ତି ପୁରଜନ ।
ଏହି ବେଳି ସମାଜଙ୍କ ସରଳ ସ୍ୱଭାବ,
ସଭିଙ୍କ ଶ୍ରୀରାମ ପଦେ ପ୍ରୀତି ଅନୁରାଗ । ୧୪୦୦

ଏପରି କାମନା ମନେ କରନ୍ତି ସକଳେ,
ଶ୍ରବଣେ ସେ ସ୍ନେହ ପ୍ରୀତି ହୃଦୟ ତରଳେ ।
ସେ କାଳେ ଜାନକୀ-ମାତା ଦାସୀ ପଠାଇଲେ,
ସଭିଙ୍କର ସୁସମୟ ସେ ଦେଖି ଆସିଲେ । ୧୪୦୧

ଶୁଣି ସୀତା ଶାଶୁଙ୍କର ଅଛି ଅବସର,
ଆସିଲେ ଜନକ ନୃପ-ମହିଷୀ ନିକର ।

ତାହାଙ୍କୁ କୌଶଲ୍ୟା କରି ସମ୍ମାନ ଆଦରେ,
କାଳୋଚିତ ସୁଆସନ ଦେଲେ ପ୍ରୀତିଭରେ । ୧୪୦୨

ଉଭୟ ପକ୍ଷରୁ ଶୁଣି ସ୍ନେହ ଓ ମମତା,
ତରଳେ କଠିନ ବଜ୍ର ତେଜ କଠିନତା ।
ପୁଲକ ଶିଥିଳ ତନୁ ଲୋତକ ନୟନେ,
ନଖେ ଭୂଇଁ ଚିରି ହେଲେ ଚିନ୍ତାକୁଳ ମନେ । ୧୪୦୩

ରାମ-ସୀତା-ପ୍ରେମ-ମୂର୍ତ୍ତି ଯେସନେ ସକଳେ,
କରୁଣା କି କାନ୍ଦେ ନାନା ବେଶରେ ବିକଳେ ।
"ବିଧି ଗତି ବକ୍ର" ସୀତା ଜନନୀ କହିଲେ,
ବଜ୍ର ଲିହଣେ ସେ ପୟୁଫେଣକୁ ଫୋଡ଼ିଲେ । ୧୪୦୪

ଅମୃତ କେବଳ ଶୁଣା କଥା ଏ ସଂସାରେ,
କିନ୍ତୁ ଦେଖାଯାଏ ବିଷ ବିଶ୍ୱେ ସବୁଠାରେ ।
ବିଧି ନିଠୁର, ବଗ କୁଆ ପେଚ୍ଚ ସବୁଠାରେ,
କେବଳ ମାନସେ ମାତ୍ର ଥାଆନ୍ତି ମରାଳେ । ୧୪୦୫

ଶୁଣି ଶୋକାତୁର ହୋଇ କହିଲେ ସୁମିତ୍ରା,
ବିଧି ଗତି ବିପରୀତ ଅତୀବ ବିଚିତ୍ରା ।
ଯେ ସୃଜି ପାଳନ କରି କରଇ ସଂହାର,
ପିଲା ଖେଳ ପରି ତାର ସବୁ କାରବାର । ୧୪୦୬

'କାରେ କିଆଁ ଦୋଷ ଦେବା' କୌଶଲ୍ୟା କହନ୍ତି,
କର୍ମର ଅଧୀନ ସୁଖ ଦୁଃଖ ଲାଭ କ୍ଷତି ।
କର୍ମର କଠିନ ଗତି ଜାଣଇ ବିଧାତା,
ସେହି ତ ଅଟଇ ଶୁଭାଶୁଭ ଫଳ ଦାତା । ୧୪୦୭

ସଭିଙ୍କର ଶିର ପରେ ବିଧାତା ନିର୍ଦ୍ଦେଶ,
ସୃଷ୍ଟି ସ୍ଥିତି ଲୟ ସୁଧା ବିଷେ ସେ ଆଦେଶ ।
ମୋହ ବଶେ ଦୁଃଖୀ ହେବା ଅଯଥା କେବଳ,
ବିଧି ସୃଷ୍ଟି ଏହି ମତେ ଅନାଦି ଅଚଳ । ୧୪୦୮

ରାଜାଙ୍କ ଜୀବନ ମୃତ୍ୟୁ କଥା ହୃଦେ ସ୍ମରି,
ନିଜ ବ୍ରତ ହାନି ଯାହା କରୁଛେ ଆମରି ।
କହିଲେ ଜାନକୀ ମାତା, "ସତ୍ୟ ଏ ବଚନ,
ତୁମେ ପାଟରାଣୀ ପୂତ ଅଯୋଧ୍ୟା ରାଜନ । ୧୪୦୯

ଶ୍ରୀରାମ ଲକ୍ଷ୍ମଣ ସୀତା ଯିବେ ଘୋର ବନ,
ପରିଣାମେ ନୁହଁ ମନ୍ଦ ହୋଇବ ଉତ୍ତମ ।"
"ମୋ ଚିନ୍ତା ଭରତ ପୁରେ ରହିବ କେସନେ"—
କହିଲେ କୌଶଲ୍ୟା ମାତା ବ୍ୟଥାତୁର ମନେ । ୧୪୧୦

"ଲଭି ପ୍ରଭୁ କୃପା, ତମ ଆଶିଷ ଉତ୍ତମ,
ମୋର ଗୃହବଧୂ ବଧୂ ଗଙ୍ଗାଜଳ ସମ ।
ରାମ ନାମେ କେବେ କରି ନ ଥିଲି ଶପଥ,
ଆଜ ରାଣ ଦେଇ ଏବେ କହୁଅଛି ସତ । ୧୪୧୧

ଭରତର ଗୁଣ ଶୀଳ ବିନୟ ବଡ଼ାଇ,
ଭାଇ-ପଣ ଭକ୍ତି ଆଉ ଭରସା ବି କାହିଁ ?
ବର୍ଣ୍ଣିବାକୁ ତାହା ବାଣୀ ବୁଦ୍ଧି ନ ପାଇବ,
ସିନ୍ଧୁକୁ କେ ଶାମୁକାରେ ଉଖାଳି ପାରିବ ? ୧୪୧୨

ଭରତକୁ କୁଳ-ଦୀପ ବୋଲି ସଦା ଜାଣ,
ବାରମ୍ବାର କହିଛନ୍ତି ମୋତେ ନରରାଣ ।
କଷଟିରେ ସୁନା, ରତ୍ନ ଜହୁରୀ ହାତରେ,
ଚିହ୍ନନ୍ତି, ମଣିଷ ଜଣା ପଡ଼ନ୍ତି ବେଳରେ । ୧୪୧୩

ଆଜ କିନ୍ତୁ କହିବା ମୋ ହୁଏ ଅନୁଚିତ,
ହୋଇଛି ଯେ ହେତୁ ଶୋକେ ସ୍ନେହେ ଜ୍ଞାନାତୀତ ।"
ଗଙ୍ଗାଜଳ ସମ ପୂତ ତାଙ୍କର ବଚନ,
ଶୁଣି ସ୍ନେହ ଶିଥିଳିତ ହେଲେ ରାଣୀଗଣ । ୧୪୧୪

କୌଶଲ୍ୟା କହିଲେ ପୁଣି ହୃଦେ ଧୈର୍ଯ୍ୟଧରି,
"ଶୁଣ ଆଗୋ ଶୁଣ ଦେବୀ ହେ ମିଥିଳେଶ୍ୱରୀ ।

ଜ୍ଞାନର ଭଣ୍ଡାର ସମ ତୁମ ପ୍ରାଣପତି,
କହ ତ ତୁମକୁ ଶିକ୍ଷା କେ ଦେଇ ପାରନ୍ତି ? ୧୪୧୫

ହେ ରାଣୀ ରାଜାଙ୍କ ଆଗେ ଅବସର ପାଇ
ନିଜେ ବୁଝାଇଲା ପରି କହିବ ବୁଝାଇ ।
ଭରତ ବନକୁ ଯାଉ ଭବନେ ଲକ୍ଷ୍ମଣ,
ଯେବେ ଏ ମତରେ ମାନେ ନୃପତିଙ୍କ ମନ । ୧୪୧୬

ତ୍ୱରିତ ମନରେ କର ଯତନ ତେସନେ,
କେବଳ ଭରତ ଚିନ୍ତା ମୋର ଯାହା ମନେ ।
ଭରତ ହୃଦୟେ ଗୂଢ଼ ପ୍ରେମ ଅଛି ଭରି,
ସେ ଘରେ ରହିଲେ ମୋତେ ଲାଗୁଛି କପରି ?" ୧୪୧୭

ନିରେଖି ସ୍ୱଭାବ ଶୁଣି କୋମଳ ବଚନ,
ସକରୁଣ ରସେ ମଗ୍ନ ହେଲେ ନାରୀଗଣ ।
ନଭୁଁ ଝରେ ପୁଷ୍ପ ଧନ୍ୟ ଧନ୍ୟ ଧ୍ୱନି ଶୁଣି,
ସ୍ନେହେ ଶିଥିଳିତ ହେଲେ ସିଦ୍ଧ ଯୋଗୀ ମୁନି । ୧୪୧୮

ଦେଖି ଥକା ହୋଇ ରାଣୀସମାଜ ରହିଲେ,
ତହୁଁ ଦମ୍ଭ ଧରି ମନେ ସୁମିତ୍ରା କହିଲେ—
"ଦେବୀ ଗୋ ଦ'ଘଡ଼ି ରାତି ବିତିଲାଣି ଏବେ,"
ଶୁଣି ରାମ ମାତା ସ୍ନେହେ ଉଠିଗଲେ ବେଗେ । ୧୪୧୯

କହିଲେ ସସ୍ନେହେ ପୁଣି ସପ୍ରେମ ଅନ୍ତରେ,
"ନିଜର ଡେରାକୁ ଏବେ ବାହୁଡ଼ ସତ୍ୱରେ ।
ଆମର କେବଳ ଗତି ଏବେ ଭଗବାନ,
ଅଥବା ମିଥିଳାପତି ସହାୟକ ଜାଣ ।" ୧୪୨୦

ଦେଖି କୌଶଲ୍ୟାଙ୍କ ପ୍ରେମ ଶୁଣି ନମ୍ର ବାଣୀ,
ଧରି ତାଙ୍କ ପୂତ ପାଦ ମିଥିଳେଶ ରାଣୀ ।
କହିଲେ, "ଗୋ ଦେବୀ ତବ ବିନୟ ଯଥାର୍ଥ,
ତେଣୁ ତୁମେ ଦଶରଥ ପତ୍ନୀ, ରାମ ମାତ । ୧୪୨୧

ଆଦର କରନ୍ତି ପ୍ରଭୁ ନିଜ ମିତ ଜନେ,
ଅଗ୍ନି ଧୂମ, ଗିରି ତୃଣ ମସ୍ତକେ ଯେସନେ ।
ମନ କର୍ମ ବାକ୍ୟେ ଆମ ରାଜା ତ ସେବକ,
ତୁମକୁ ସହାୟ ସଦା ଉମା ତ୍ର୍ୟମ୍ବକ । ୧୪୨୨

ତୁମ ସହାୟକ ଯୋଗ୍ୟ କେ ଅଛି ଜଗତେ,
ପ୍ରଦୀପ ସହାୟେ ସୂର୍ଯ୍ୟ ଶୋଭଇ କି ସତେ ।
ଦେବତାଙ୍କ କାର୍ଯ୍ୟ ପାଇଁ ରାମ ଯିବେ ବନେ,
ରାଜତ୍ୱ କରିବେ ଫେରି ଅଯୋଧ୍ୟା ଭୁବନେ । ୧୪୨୩

ଦେବ ନାଗ ନରେ ନିଜ ନିଜ ବାସସ୍ଥଳେ,
ସୁଖରେ କରିବେ ବାସ ରାମ ବାହୁବଳେ ।
ପ୍ରଥମରୁ କହିଛନ୍ତି ଏହା ଯାଜ୍ଞବଲ୍କ୍ୟ,
ମିଥ୍ୟା ନ ହୋଇବ ଦେଖ ଋଷିଙ୍କର ବାକ୍ୟ ।" ୧୪୨୪

କହି ପ୍ରେମେ ପଡ଼ି ପଦେ ସୀତାଙ୍କ ଜନନୀ,
ସଙ୍ଗେ ସୀତା ଯିବା ପାଇଁ କରିଲେ ଦଇନ ।
ଲଭି ଅନୁମତି ତହୁଁ ଜାନକୀ ସହିତେ,
ଡେରାକୁ ଫେରିଲେ ସୀତା-ଜନନୀ ତୁରିତେ । ୧୪୨୫

ପ୍ରିୟ ପରିଜନେ ମାନ ସମ୍ମାନ ଜଣେଇ,
ସେମାନଙ୍କ ସହିତରେ ମିଳିଲେ ବୈଦେହୀ ।
ତପସ୍ୱିନୀ ବେଶେ ଦେଖି ସୀତାଙ୍କୁ ସକଳ,
ଅତ୍ୟନ୍ତ ଦୁଃଖରେ ହେଲେ ବ୍ୟଥିତ ବିକଳ । ୧୪୨୬

ରାମ ଗୁରୁ ବଶିଷ୍ଠଙ୍କ ଆଜ୍ଞା ଶିରେ ନେଇ,
ଜନକ ବାହୁଡ଼ି ବାସେ ଭେଟିଲେ ବୈଦେହୀ ।
ପ୍ରାଣର ପବିତ୍ର ପ୍ରେମ ଅତିଥିଙ୍କୁ ପାଇ,
ଜାନକୀକୁ ନୃପ ନେଲେ ବକ୍ଷେ ଆଉଜାଇ । ୧୪୨୭

ଅନୁରାଗ-ସିନ୍ଧୁ ହୃଦେ ଉଚ୍ଛୁଳି ଉଠିଲା,
ରାଜାଙ୍କର ମନ ଅବା ପ୍ରୟାଗ ହୋଇଲା ।

ସେ ସିନ୍ଧୁରେ ସୀତା-ସ୍ନେହ ବଢ଼ି ବଢ଼ି ଯାଏ,
ତହିଁ ରାମ-ପ୍ରେମ-ଶିଶୁ ଅବା ଶୋଭା ପାଏ । ୧୪୨୮

ନୃପ-ଜ୍ଞାନ-ମାର୍କଣ୍ଡେୟ ବିକଳ ସମ୍ଭବ,
ବୁଡ଼ି ବୁଡ଼ି ପାଇଲେ କି ଶିଶୁ ଅବଲମ୍ବ ।
ବିଦେହଙ୍କ ମତି କିନ୍ତୁ ନୋହିଲା ମୋହିତ,
ରଘୁବର କରୁଣାର ମହିମା ଏହି ତ । ୧୪୨୯

ପିତା ମାତା ପ୍ରେମେ ସୀତା ବିକଳ ଏସନ,
ନିଜକୁ ସମ୍ଭାଳିବାକୁ ହେଲେ ଅଭାଜନ ।
କିନ୍ତୁ ଧୀର ଧରା-କନ୍ୟା ସମସ୍ତ ସୁଧର୍ମ,
କଥା ଚିନ୍ତ କଲେ ହୃଦେ ଧଇର୍ଯ୍ୟ ଧାରଣ । ୧୪୩୦

ତପସ୍ୱିନୀ ବେଶେ ଦେଖି ସୀତାଙ୍କୁ ଜନକ,
ହୃଦୟେ ପରମାନନ୍ଦେ ଜାଗିଲା ପୁଲକ ।
କହିଲେ ସେ, "କଲୁ ମାଆ ପୂତ ବେନି କୁଳ,
କହନ୍ତି ସର୍ବେ ତୋ ଯଶେ ଜଗତ ଉଜ୍ଜ୍ୱଳ । ୧୪୩୧

ସୁର-ସରିତକୁ ଜିଣି ତୋ କୀର୍ତ୍ତି ସରିତ,
କୋଟି ବ୍ରହ୍ମାଣ୍ଡରେ ଆଜ ହୁଏ ପ୍ରବାହିତ ।
କରନ୍ତି ମହିମାନ୍ୱିତ ଗଙ୍ଗା ତିନି ସ୍ଥାନ,
ତୋର କୀର୍ତ୍ତି କଲା ସନ୍ଥ-ହୃଦ ମହାସ୍ଥାନ ।" ୧୪୩୨

ସତ୍ୟ ସ୍ନେହ ମଧୁ କଥା କହନ୍ତି ଜନକ,
ଶୁଣି ସୀତା ସସଙ୍କୋଚେ ଲଭନ୍ତି ପୁଲକ ।
ପୁଣି ସ୍ନେହେ ପିତା ମାତା ବୁକେ ଭିଡ଼ି ଧରି,
ଦେଲେ ନାନା ଉପଦେଶ ସୁକଲ୍ୟାଣ ଭରି । ୧୪୩୩

ଲାଜରେ ଜାନକୀ ତହିଁ ନ କହନ୍ତି କିଛି,
ଭାବିଲେ ହେବନି ଭଲ କଟାଇବା ନିଶି ।
ସୀତା ମନ ଜାଣି ରାଣୀ କହିଲେ ରାଜନେ,
ଶୀଳ ଗୁଣ ପ୍ରଶଂସିଲେ ବେନି ମନେ ମନେ । ୧୪୩୪

ବାରମ୍ବାର ଆଲିଙ୍ଗନ କରି ରାଜା ରାଣୀ,
ଉଚିତ ସମ୍ମାନେ କଲେ ସୀତାଙ୍କୁ ମେଲାଣି ।
ବେଳ ପାଇ ନୃପ ଆଗେ କୋମଳ ବଚନେ,
କହିଲେ ଭରତ ଦଶା ରାଣୀ ସଂଗୋପନେ । ୧୪୩୫

ସୁନାର ସୁଗନ୍ଧ ସମ ଶଶି-ସୁଧା ସାର,
ଭରତଙ୍କ ବ୍ୟବହାର ଶୁଣି ମହୀପାଳ,
ମୁଦିଲେ ସଜଳ ନେତ୍ର ତନୁ ପୁଲକିତ,
ପ୍ରଶଂସି ସୁଯଶ ରାଣି ମନ ହରଷିତ । ୧୪୩୬

"ସୁଲୋଚନା, ସୁମୁଖୀ ଗୋ ସାବଧାନେ ଶୁଣ,
ଭବ-ବନ୍ଧ-ବିମୋଚନା ଭରତଙ୍କ ଗୁଣ ।
ରାଜନୀତି, ଧର୍ମ, ବ୍ରହ୍ମ ବିଚାର ଏ ତିନ,
ବିଷୟେ ମୋହର ବୁଦ୍ଧି ଯା' କରୁ ପ୍ରବୀଣା— ୧୪୩୭

ସେ ବୁଦ୍ଧି କଳିବ କେମ୍ନେ ଭରତ ମହିମା,
ଛଳରେ ବି ନ ମାଡ଼ିବ ତାଙ୍କ ଛାୟା ସୀମା ।
ବ୍ରହ୍ମା ଗଣନାଥ ଶିବ ସରସ୍ୱତୀ ଶେଷ,
ବୁଧ ବିଶାରଦ କବି କୋବିଦ ବିଶେଷ,
ଭରତ ଚରିତ କୀର୍ତ୍ତି ସୁଯଶ ଚରିତ୍ର,
ଧରମ ବିମଳ ଗୁଣ, ସ୍ୱଭାବ ପବିତ୍ର,
ବୁଝି ଶୁଣି ସଭିଙ୍କର ହୃଦେ ଭରେ ସୁଖ,
ପବିତ୍ରେ ନିନ୍ଦଇ ଗଙ୍ଗା, ମିଠାରେ ଅମୃତ । ୧୪୩୮

ଅସୀମ ସୁଗୁଣଧାମ ନର ଅନୁପମ,
ଭରତ କେବଳ ଜାଣ ଭରତଙ୍କ ସମ ।
ତୁଳନା ଦେବାକୁ କବି ବୁଦ୍ଧି ସଙ୍କୁଚିତ,
ସୁମେରୁ କି ତୁଳ ଷୋଳ ଛଟାଙ୍କି ସହିତ ? ୧୪୩୯

ବରାଙ୍ଗି, ମହିମା ତାଙ୍କ ବର୍ଣ୍ଣିବା ଅଗମ୍ୟ,
ଜଳହୀନ ଧରଣୀରେ ଯିବା ମୀନ ସମ ।

ଅମିତ ମହିମା ଶୁଣ ଭରତର ସହି,
ଶ୍ରୀରାମ ଜାଣନ୍ତି ସିନା ନ ପାରିବେ କହି ।" ୧୪୪୦

କରି ପ୍ରେମେ ଭରତଙ୍କ ପ୍ରଭାବ ବର୍ଣ୍ଣନା,
ଜାଣି ମନ ରୁଚି ଜାଣି ନୃପ ମହାମନା,
କହିଲେ, "ଲକ୍ଷ୍ମଣ ଫେରି ଭରତ ବନସ୍ତେ,
ଗଲେ ଭଲ ହେବ ଜାଣ ସଭିଙ୍କର ମତେ । ୧୪୪୧

ପରନ୍ତୁ ଭରତ ରାମ ପ୍ରତୀତି ଓ ପ୍ରୀତି,
ବସ୍ତୁର ବୁଦ୍ଧିରେ ତାହା କଳିବ କେମିତି ?
ଯଦ୍ୟପି ଶ୍ରୀରାମ ଜାଣ ସମତାର ସୀମା,
ପ୍ରେମ-ମମତାର ସୀମା ଭରତ-ମହିମା । ୧୪୪୨

ସ୍ୱାର୍ଥ ଅବା ପରମାର୍ଥ ସୁଖ ଚିନ୍ତା ମନେ,
ଭରତ କଦାପି ରଖି ନାହାନ୍ତି ସପନେ ।
ଶ୍ରୀରାମ ଚରଣେ ରତି ସାଧନା ଓ ସିଦ୍ଧି,
ମତେ ଲାଗେ ଭରତଙ୍କ ମତ ଏହି ବିଧି । ୧୪୪୩

ଭଲ ଭାବେ ଜାଣି ରଖ ସ୍ୱପ୍ନରେ ଭରତ,
ମନୁ କେବେ ନ ଟାଳିବେ ଶ୍ରୀରାମଙ୍କ ମତ ।
ତେଣୁ ଆଗୋ ରାଣୀ ହୋଇ ସ୍ନେହ ବିଜଡ଼ିତ,
ଶୋଚନା କରିବା ନୋହେଁ ତୁମର ଉଚିତ ।" ୧୪୪୪

ଶ୍ରୀରାମ-ଭରତ ଗୁଣାବଳି କହି କହି,
କ୍ଷଣ ସମ ଦମ୍ପତିଙ୍କ ରାତି ଗଲା ପାହି ।
ପ୍ରଭାତେ ଉଠିଲେ ରାଜ-ସମାଜ ଯୁଗଳ,
ସ୍ନାନ କରି ଦେବ ପୂଜା କରିଲେ ସତ୍ୱର । ୧୪୪୫

ସ୍ନାନ ଶେଷେ ଗୁରୁ ପାଶେ ଯାଇ ରଘୁନାଥ,
ପଦ ବନ୍ଦ କୃପା ପାଇ କହିଲେ, "ହେ ନାଥ ।
ଭରତ ଅଯୋଧ୍ୟାବାସୀ ମୋର ମାତାମାନେ,
ବନବାସ ଦୁଃଖୀ ଶୋକ ବ୍ୟାକୁଳ ପରାଣେ । ୧୪୪୬

ସମାଜ ସହିତ ମହାରାଜ ମିଥିଳେଶ,
ହେଲଣି ବହୁତ ଦିନ ସହୁଛନ୍ତି କ୍ଳେଶ ।
କରନ୍ତୁ ଗୋସାଇଁ ତାହା ଉଚିତ ଯେମନ୍ତେ,
ସଭିଙ୍କ କଲ୍ୟାଣ ନ୍ୟସ୍ତ ଆପଣଙ୍କ ହସ୍ତେ ।” ୧୪୪୭

ଏହା କହି ରଘୁନାଥ ହେଲେ ସଙ୍କୁଚିତ,
ଦେଖି ଶୀଳ ଗୁଣ ମୁନି ମନ ପୁଲକିତ ।
“ରାମ ତୁମ ବିନା ସବୁ ସୁଖ-ସାଜମାନ,
ବେନି ରାଜକୁଳ ପାଇଁ ନରକ ସମାନ । ୧୪୪୮

ପ୍ରାଣର ତ ତୁମେ ପ୍ରାଣ, ଜୀବର ଜୀବନ,
ସୁଖର ତ ତୁମେ ସୁଖ, ହେ ରଘୁନନ୍ଦନ !
ତୁମ ବିନା ଗୃହକୁ ଯେ ମଣେ ସୁଖ, ରାମ,
ସେମାନଙ୍କ ପାଇଁ ବିହି ସବୁ କାଳେ ବାମ । ୧୪୪୯

ଜଳି ଯାଉ ସେହି ସୁଖ, କର୍ମ ଧର୍ମ ରୀତି,
ଯହିଁ ନାହିଁ ରାମ-ପଦ-କମଳରେ ପ୍ରୀତି ।
କୁଯୋଗ ସମ ସେ ଯୋଗ, ସେ ଜ୍ଞାନ ଅଜ୍ଞାନ,
ଶ୍ରୀରାମେ ପିରତି ଯହିଁ ନୁହଁଇ ପ୍ରଧାନ । ୧୪୫୦

ତୁମ ବିନା ସର୍ବେ ଦୁଃଖୀ, ସୁଖୀ ତୁମ ସହ,
ତୁମେ ଜାଣ ଯେଉଁପରି ଯାହାର ହୃଦୟ ।
ଶିରୋଧାର୍ଯ୍ୟ ସଭିଙ୍କର ତୁମ ଅନୁମତି,
କୃପାଳୁ ତୁମକୁ ଜଣା ସଭିଙ୍କର ଗତି । ୧୪୫୧

ତେଣୁ ଆଶ୍ରମରେ କର ପଦାର୍ପଣ ଧୀର,”
କହି ହେଲେ ମୁନି ସ୍ନେହ-ଶିଥିଳ ଶରୀର ।
ପ୍ରଣିପାତ କରି ରାମ ଗଲେ ତହୁଁ ଚଳି,
ମିଳିଲେ ଜନକ ପାଶେ ଋଷି ଧୈର୍ଯ୍ୟ ଧରି । ୧୪୫୨

ରାମ ସ୍ନେହ ଶୀଳ ଯୁକ୍ତ ସ୍ୱଭାବ ସୁନ୍ଦର,
ବଚନ ନୃପଙ୍କୁ ଶୁଣାଇଲେ ମୁନିବର ।

ମହାରାଜ ଏବେ ତାହା କରନ୍ତୁ ନିଶ୍ଚିତ,
ସଧର୍ମ ହୋଇବ ପୁଣି ସଭିଙ୍କର ହିତ । ୧୪୫୩

ଜ୍ଞାନର ଭଣ୍ଡାର ଶୁଚି ସୁଜ୍ଞାନୀ ରାଜନ,
ତୁମେ ଧର୍ମଧୀର, ତୁମ ବିନା କେ ଭାଜନ,
ଦ୍ୱିଧା ଦୂର କରିବାକୁ ଆଜ ଏହି କାଳେ,
ସମର୍ଥ ହୋଇବ କହ ଉଚିତ ପ୍ରକାରେ । ୧୪୫୪

ପ୍ରେମ ମଗ୍ନ ହେଲେ ନୃପ ମୁନିଙ୍କ ବଚନେ,
ଜ୍ଞାନ ବୈରାଗ୍ୟର ହେଲା ବୈରାଗ୍ୟ ଯେସନେ ।
ସ୍ନେହ ବଶୀଭୂତ ହୋଇ ଭାବିଲେ ସେ ମନେ,
ଭଲ କଲୁ ନାହିଁ ଅବା ଆମେ ଆସି ବନେ । ୧୪୫୫

ରାମଙ୍କୁ କହିଲେ ରାଜା ଯିବା ପାଇଁ ବନ,
ପ୍ରମାଣ କରିଲେ ପୁଣି ନିଜ ପ୍ରେମ ପଣ ।
ଏବେ ତାଙ୍କୁ ବନୁ ଘୋର ବନନ୍ତ ପଠାଇ,
ଆନନ୍ଦେ ଫେରିବୁ କରି ବିବେକ ବଡ଼ାଇ । ୧୪୫୬

ଏହା ଦେଖି ଶୁଣି ମୁନି ତପସ୍ୱୀ ବ୍ରାହ୍ମଣେ,
ବିକଳ ହୋଇଲେ ଅତି ପ୍ରେମେ ମନେ ମନେ ।
ସମୟ ବିଚାରି ଧୈର୍ଯ୍ୟ ଧରି ନରପତି,
ସମାଜ ସହିତେ ଗଲେ ଭରତଙ୍କ କତି । ୧୪୫୭

ଭରତ ଆଗକୁ ଆସି କଲେ ସମ୍ଭାଷଣ,
ଦେଲେ ତାଙ୍କୁ ଉପଯୁକ୍ତ ଉତ୍ତମ ଆସନ ।
କହିଲେ ମିଥିଳା ପତି, "ହେ ପୁତ୍ର ଭରତ,
ଭଲ ଭାବେ ତମେ ରାମ ସ୍ୱଭାବ ଜାଣତ । ୧୪୫୮

ସେ'ତ ଶୁଚି ସତ୍ୟବ୍ରତ ଧର୍ମେ ରତ ସଦା,
ରଖି ସଭିଙ୍କର ସ୍ନେହ ମମତା ସର୍ବଦା,
ସଙ୍କୋଚେ ସହନ୍ତି ଦୁଃଖ ଲୋକଙ୍କର ପାଇଁ,
ତୁମେ ଯା' କହିବ ତାହା ରଖିବେ ଗୋସାଇଁ । ୧୪୫୯

ଶୁଣି ପୁଲକିତ ଗାତ୍ରେ ନେତ୍ରେ ନୀର ଭରି,
କହିଲେ ଭରତ ହୃଦେ ଅତି ଧୈର୍ଯ୍ୟ ଧରି,
"ପିତାଙ୍କ ସମାନ ପୂଜ୍ୟ ପ୍ରିୟ ଯେ ଆପଣ,
ହିତୈଷୀ ନୋହିବେ ପିତା ମାତା ଗୁରୁ ସମ । ୧୪୭୦

କୌଶିକାଦି ମୁନି ରାଜ୍ଞ ସଚିବ ସମାଜ,
ଜ୍ଞାନର ସାଗର ନିଜେ ବିଦ୍ୟମାନ ଆଜ ।
ମୁଁ ଶିଶୁ ସେବକ ମାତ୍ର ଆଜ୍ଞା ଅନୁଗାମୀ,
ଏ କଥା ବିଚାରି ଦିଅ ଉପଦେଶ ସ୍ୱାମୀ । ୧୪୭୧

ଆପଣଙ୍କ ପ୍ରଶ୍ନ ଏହି ସମାଜେ ସ୍ଥଳୀରେ,
ମଉନେ ମଳିନ, ହେବ ପାଗଳ, କହିଲେ ।
ତଥାପି କହୁଛି ଶ୍ରେଷ୍ଠ ମୁହେଁ ବଡ଼ କଥା,
କ୍ଷମିବ ହେ ତାତ ଜାଣି ବାମ ମୋ ବିଧାତା । ୧୪୭୨

ଆଗମ ନିଗମ ଶାସ୍ତ୍ର ପୁରାଣେ ଲିଖିତ,
ସେବା ଧର୍ମ ସୁକଠିନ, ଜଗତେ ବିଦିତ ।
ସ୍ୱାମୀ ଧର୍ମ, ସ୍ୱାର୍ଥ ପରସ୍ପରର ବିରୋଧ,
ବୈରତା ଯେ ଅନ୍ଧ, ପ୍ରେମେ ନାହିଁ ଜ୍ଞାନ ବୋଧ । ୧୪୭୩

ରଖି ରାମଙ୍କର ଧର୍ମବ୍ରତ ଅଭିଳାଷ,
ମୋତେ ଜାଣି ପ୍ରଭୁ ପରାଧୀନ ତାଙ୍କ ଦାସ ।
ଯା' ସବୁ ସମ୍ମତ ତଥା ହିତ ସଭିଙ୍କର,
ସମସ୍ତଙ୍କ ପ୍ରେମ ଚିହ୍ନି ସେହିପରି କର ।" ୧୪୭୪

ଭରତ ସ୍ୱଭାବ ଦେଖି ଶୁଣି ସୁବଚନ,
ସମାଜ ସହିତେ କଲେ ପ୍ରଶଂସା ରାଜନ ।
ସୁଗମ୍ୟ ଅଗମ୍ୟ ମୃଦୁ କଠୋର ସୁନ୍ଦର,
ବହୁ ଅର୍ଥଯୁକ୍ତ, ଅଳ୍ପ ହେଲେ ବି ଅକ୍ଷର । ୧୪୭୫

ଦରପଣେ ମୁଖ, କରେ ଦର୍ପଣ ଯେସନ,
ଧରି ନ ପଡ଼ଇ ତେହ୍ନେ ବଚନ ଏସନ ।

ଚଳିଲେ ଭରତ ମୁନି ନୃପ ସସମାଜ,
ଥିଲେ ଯହିଁ ଦେବ-କଇରବ-ଦ୍ୱିଜରାଜ । ୧୪୬୬

ଶୁଣି ଏ ଖବର ଲୋକେ ଚିନ୍ତା ଅବସନ୍ନ,
ପ୍ରଥମ ବର୍ଷାରେ ଯେହ୍ନେ ଦୁଃଖୀ ମୀନଗଣ ।
କୁଳ ଗୁରୁଙ୍କର ଗତି, ବିଦେହଙ୍କ ସ୍ନେହ,
ଦେଖି ପ୍ରଥମରୁ ଦେବେ କରିଲେ ସନ୍ଦେହ । ୧୪୬୭

ରାମ-ଭକ୍ତିମୟ-ପ୍ରାଣ-ଭରତଙ୍କୁ ଚାହିଁ,
ସ୍ୱାର୍ଥୀ ସୁରେ ବ୍ୟସ୍ତ ପରାଜୟ ଗ୍ଲାନି ପାଇ ।
ସମସ୍ତଙ୍କୁ ଦେଖି ସୁରେ ରାମ ପ୍ରେମମୟ,
ଅତି ଚିନ୍ତା ବଶେ ହେଲେ ଅଶେଷ ଅଥୟ । ୧୪୬୮

କହନ୍ତି ଚିନ୍ତାରେ ଅତି ସୁରେ ସୁରପତି,
"ସେନେହ ମମତା ବଶ ଶ୍ରୀରାମ ଅଟନ୍ତି ।
ସର୍ବେ ମିଳି କର କିଛି ଉପାୟ ରଚନ,
ନୋହିଲେ ସକଳ କାର୍ଯ୍ୟ ହେଲା ଅକାରଣ ।" ୧୪୬୯

ବାଣୀଙ୍କୁ ସୁମରି ସୁରେ କଲେ ସ୍ତୁତିଗାନ,
ଦୟାକରି ଦେବୀ ରଖ ଦେବତାଙ୍କ ଟାଣ ।
ଭୁଲାଅ ଭରତ ମତି କରି ନିଜ ମାୟା,
ଦେବତା କୁଳକୁ ପାଳ ରଚି ଛଳ ଛାୟା । ୧୪୭୦

ଦେବଙ୍କ ବିନତି ଶୁଣି ଦେବୀ ବାଣାପାଣି,
କହିଲେ, ସ୍ୱାର୍ଥାନ୍ଧ ସୁରେ ହୋଇଛନ୍ତି ଜାଣି,
"କହୁଚ ଭରତ ବୁଦ୍ଧି କରିବି ନାଶନ,
ସୁମେରୁ ନ ଦିଶେ ବହ୍ନି ସହସ୍ର ନୟନ ।
ବିଧି ହରିହର ମାୟା ପ୍ରବଳ ଫସାରେ,
ଭରତ ମତିକୁ ସେ ବି ଅନାଇ ନ ପାରେ ।
ତାକୁ ହରିବାକୁ ମୋତେ ଅନୁନୟ କର,
ଚନ୍ଦ୍ରମା ପାରେ କି ହରି ଖର ରବିକର ? ୧୪୭୧

ଭରତ ହୃଦୟ ରାମ-ସୀତା ବାସସ୍ଥଳୀ,
ଯହିଁ ସୂର୍ଯ୍ୟ ତହିଁ ତମ ରହିବ କପରି ?"
ସାଣାପାଣି ବ୍ରହ୍ମଲୋକେ ଗଲେ ଏହା କହି,
ନିଶିଥ-ଚକୋର ପ୍ରାୟେ ଦେବେ ହେଲେ ଦହି ? ୧୪୭୩

ମଳମନା ସ୍ୱାର୍ଥୀ ଦେବେ କରି କୁମନ୍ତ୍ରଣା,
ନାନା ଷଡ଼ଯନ୍ତ୍ର ସବୁ କଲେ କଳପନା ।
ବହୁ ମାୟା ଜାଲ ରଚି ସେ ଅମରଗଣ,
ବିସ୍ତାର କରିଲେ ଭୟ ଭ୍ରମ ଉଚାଟନ । ୧୪୭୪

ନାନା କୁଟ କରି ଚନ୍ତା କଲେ ଦେବରାଜ,
ଭରତ ହାତରେ ସବୁ କାର୍ଯ୍ୟ ଓ ଅକାର୍ଯ୍ୟ ।
ଶ୍ରୀ ରଘୁନାଥଙ୍କ ପାଶେ ଗଲେ ମିଥିଳେଶ,
ଉଚିତ ସମ୍ମାନ କଲେ ତାଙ୍କୁ କୋଶଳେଶ । ୧୪୭୫

ସମୟ ସମାଜ ଧର୍ମ ବିଚାରି ଉଚିତ,
ବଚନ କହିଲେ ରଘୁବଂଶ ପୁରୋହିତ ।
କହିଲେ ଭରତ-ମିଥିଳେଶ କଥାଚୟ,
ପରେ ଭରତଙ୍କ ସବୁ କହିବା ବିଷୟ । ୧୪୭୬

"ବତ୍ସ, ରଘୁବର ତମେ କହିବ ଯେପରି,
ଏହି ମୋର ମତ ସର୍ବେ କରିବେ ସେପରି ।"
ଏହା ଶୁଣି ରଘୁନାଥ ଯୋଡ଼ି ଯୁଗ୍ମ ପାଣି,
କହିଲେ ସରଳ ସତ୍ୟ ସୁକୋମଳ ବାଣୀ । ୧୪୭୭

"ନିଜେ ତ ଆପଣ ମିଥିଳେଶ ଉପସ୍ଥିତ,
ଏଠି ମୋ କହିବା ହେବ ଧୃଷ୍ଟତା ନିଶ୍ଚିତ ।
ନୃପତିଙ୍କ, ଆପଣଙ୍କ ଆଜ୍ଞା ହେବ ଯାହା,
ଆପଣଙ୍କ ରାଣ ମୋର ଶିରୋଧାର୍ଯ୍ୟ ତାହା ।" ୧୪୭୮

ମୁନୀଶ ଓ ମିଥିଳେଶ ସବୁ ସଭାସଦ,
ସଙ୍କୁଚିତ ହେଲେ ଶୁଣି ରାମଙ୍କ ଶପଥ ।

ଏହାର ଉତ୍ତର ଦେଇ ନ ପାରି ସକଳେ,
ରହିଲେ ଭରତଙ୍କର ବଦନ-କମଳେ । ୧୪୭୯

ସମାଜ ସଙ୍କୋଚ ବଶ ନିରେଖି ଭରତ,
ହୃଦୟେ ଧାରଣ କରି ଧୈର୍ଯ୍ୟ ଅତୁଳିତ ।
କୁସମୟ ଜାଣି ହୃଦ-ପ୍ରେମ ସମ୍ଭାଳିଲେ,
ଅଗସ୍ତ୍ୟ ବଢ଼ନ୍ତା-ବିନ୍ଧ୍ୟ ଯେସନେ ନିବାରିଲେ । ୧୪୮୦

ରାମ ଗୁରୁ ସାଧୁ ନୃପେ ହୋଇ ସବିନୟ,
ସଭିଙ୍କୁ ପ୍ରଣାମ କଲେ ଯୋଡ଼ି କର ଦ୍ୱୟ ।
"କ୍ଷମା କର ଆଜ ଅତି ଅନୁଚିତ ମୋର;
ମୁଁ କୋମଳ-ମତି ମୋର ବଚନ କଠୋର । ୧୪୮୧

ସୁଶୋଭନା ଶାରଦାଙ୍କୁ ହୃଦେ କଲେ ଧ୍ୟାନ,
ମାନସୁଁ ସେ ମୁଖ-ପଦ୍ମେ ହେଲେ ବିଦ୍ୟମାନ ।
ବିମଳ ବିବେକ ଶୁଭ୍ର ଧର୍ମ ମାନ୍ତଶାଳୀ—
ଭରତ-ବଚନ ହେଲା ମଞ୍ଜୁଳ ମରାଳୀ । ୧୪୮୨

ବିବେକ-ଲୋଚନେ ତହିଁ ଦେଖିଲେ ଭରତ,
ପ୍ରେମେ-ଶିଥିଳିତ ସେହି ସମାଜ ସମସ୍ତ ।
ଜାନକୀ ଶ୍ରୀରାମ ସ୍ମରି ହୃଦୟେ ନିରତ,
କହିଲେ ବଚନ କରି ଶତ ଦଣ୍ଡବତ । ୧୪୮୩

"ତୁମେ ପ୍ରଭୁ ପିତା ମାତା ମିତ୍ର ଗୁରୁ ସ୍ୱାମୀ,
ପରମ ହିତୈଷୀ, ପୂଜ୍ୟ ତୁମେ ଅନ୍ତର୍ଯାମୀ ।
ସରଳ ସୁପ୍ରଭୁ ଶୀଳ, ସ୍ନେହର ନିଧାନ,
ସର୍ବଙ୍କ ପ୍ରତିପାଳ ତୁମେ ସର୍ବଜାଣ । ୧୪୮୪

ସମର୍ଥ ଶରଣାଗତ ଜନ ହିତକାରୀ,
ଗୁଣର ଗ୍ରାହକ ପାପ-ଅବଗୁଣହାରୀ ।
ଗୋସାଇଁଙ୍କ ପରି ସ୍ୱାମୀ ଗୋସାଇଁ ତ ନିଜେ,
ସ୍ୱାମୀ-ଦ୍ରୋହୀ ମୋ' ସମାନ ମୁହିଁ ଏଥି ବିଜେ । ୧୪୮୫

ପ୍ରଭୁଙ୍କ ପିତାଙ୍କ ଆଜ୍ଞା ପେଲି ମୋହ ବଶେ,
ସଭମାନେ ଆସିଅଛୁ ଏଠି ବନ ଦେଶେ ।
ଜଗତରେ ଭଲ ମନ୍ଦ ଉଚ୍ଚ ନୀଚ ଯେତେ,
ସୁଧା ଅମରତ୍ୱ ମୃତ୍ୟୁ ମହୁରୀ ସମେତେ,
ରାମ ରାଜାନୁଶାସନ ଲଂଘିଅଛୁ ମନେ—
ଦେଖା ନାହିଁ ଶୁଣା ନାହିଁ କେହି ଏ ଭୁବନେ ।
ମୁହିଁ କରି ଅଛି ଯାହା ଧୃଷ୍ଟତା କେବଳ,
କିନ୍ତୁ ପ୍ରଭୁ ବୁଝନ୍ତି ତା' ସ୍ନେହ ସେବା ମୋର । ୧୪୬

ନାଥ ନିଜ କୃପା ବଳେ, ନିଜ ଭଲ ପଣେ,
କେବଳ ମୋହର ହିତ କରିଛ ଆପଣେ ।
ଯହିଁରେ ଦୂଷଣ ମୋର ହୋଇଛି ଭୂଷଣ,
ଚଉଦିଗେ ଉଡ଼ିଅଛି ମୋ ଯଶ-କେତନ । ୧୪୭

ଆପଣଙ୍କ ରୀତି ନୀତି ସ୍ୱଭାବ ବଡ଼ାଇ,
ଜଗତ ପ୍ରସିଦ୍ଧ ବେଦେ ଯାଉଛନ୍ତି ଗାଇ ।
ଯେ କ୍ରୂର କୁଟିଳ ଖଳ କୁମତି କଳଙ୍କୀ,
ଶୀଳତା ବିହୀନ ନୀଚ ନାସ୍ତିକ ନିଃଶଙ୍କୀ ।
ସେ ପୁଣି ଶରଣେ ଆସି କଲେ ନମସ୍କାର,
କିଛି ନ ବିଚାରି କଲ ତାକୁ ଆପଣାର ।
ଦୋଷ ଦେଖି ମଧ୍ୟ କେବେ ହୃଦେ ନ ଘେନିଲ,
ବରଂ ସାଧୁ ମେଳେ ତାର ଗୁଣ ବଖାଣିଲ । ୧୪୮

କେଉଁ ସ୍ୱାମୀ ସେବକକୁ ରଖଇ ଏସନେ,
ଆପଣେ ସେବକ-ସାଜ ସଜାଅ ଯତନେ ।
ଆପଣା କରଣି ପୁଣି ନ ଭାବ ସପନେ,
'ସେବକେ ସଙ୍କୋଚ ହେବ' ଭାବ ଯାହା ମନେ । ୧୪୯

ଭୁଜ ଟେକି କହୁଛି ମୁଁ କରି ଏହି ପଣ,
ଅନ୍ୟ ସ୍ୱାମୀ ନାହିଁ କେହି ଯେମିତି ଆପଣ ।

ପଶୁ ନାଚେ ଶୁକ ପାଠେ ହୁଅଇ ପ୍ରବୀଣ,
କିନ୍ତୁ ଗୁଣ ଯେତେକ ନଟ ଶିକ୍ଷକ ଅଧୀନ । ୧୪୯୦

ସୁଧାରି ସେବକ ଦୋଷ ଦେଇ ମାନ୍ୟପଣ,
ସାଧୁ ମେଳେ ଶିରୋମଣି କରନ୍ତି ଆପଣ ।
କୃପାଳୁଙ୍କ ବାନା ଜଏ ନଜ ପଣାବଳୀ,
ପାଳନ କରିବ ଭ୍ରମ ଅଛି ଦୃଢ଼ କରି । ୧୪୯୧

ମୋତେ ସ୍ନେହବଶେ ଅବା ବାଳକ ସ୍ୱଭାବେ,
ସର ଆଜ୍ଞା ଲଂଘି ଚଳି ଆସିଲି ଏ ଠାବେ ।
ତଥାପି ଆପଣା ଆଡ଼ୁ କରୁଣାସାଗର,
ସମସ୍ତ ପ୍ରକାର ଭଲ ମଣିଲ ମୋହର । ୧୪୯୨

ଦରଶନ କଲି ପଦ ସୁମଙ୍ଗଳ ମୂଳ,
ଜାଣିଲି ସହଜେ ସ୍ୱାମୀ ମୋତେ ଅନୁକୂଳ ।
ଏ ବିଶାଳ ସମାଜେ ମୁଁ କଳିଲି ମୋ ଭାଗ୍ୟ,
ବଡ଼ ଦୋଷେ ସୁଦ୍ଧା ସ୍ୱାମୀ କଲେ ଅନୁରାଗ । ୧୪୯୩

ଅଯୋଗ୍ୟତା ସତ୍ତ୍ୱେ ପ୍ରଭୁ କୃପା ଅନୁଗ୍ରହ,
ମୋ ପ୍ରତି ଅଧିକ କଲ ଅଜସ୍ର ନିଶ୍ଚୟ ।
ରଖିଲ ଗୋସାଇଁ ସେବକପର ମୋହର,
ନିଜ ଭଲ ପଣେ ଶୀଳ ସ୍ୱଭାବେ ଭୂମର । ୧୪୯୪

ସ୍ୱାମୀ ସମାଜଙ୍କ ପାଶେ ମୁଁ ସଙ୍କୋଚ ଛାଡ଼ି,
ଉଚିତ ଓ ଅନୁଚିତ କଥା କହୁ ବାଢ଼ି,
କପଟ ଧୃଷ୍ଟତା ନାଥ କଲି ଆଚରଣ,
କ୍ଷମିବ ହେ ଦେବ କରି ମୋ ଆର୍ତ୍ତି ସ୍ମରଣ । ୧୪୯୫

ସୁହୃଦ ସୁଜାଣ ଶ୍ରେଷ୍ଠ ସ୍ୱାମୀଙ୍କ ନିକଟେ,
ସୁଦ୍ଧାଏ କହିବା ବଡ଼ ଅପରାଧ ଅଟେ ।
ସବୁ କଥା ମୋର ପ୍ରଭୁ ଦେଇଛ ସୁଧାରି,
ତେଣୁ ଦେବ ଏବେ ଆଜ୍ଞା ଦିଅ ଦୟାକର । ୧୪୯୬

ପ୍ରଭୁଙ୍କ ଚରଣ-ପଦ୍ମ-ରଜ ମନୋହର,
ମନୋହର ସୀମା ସତ୍ୟ ସୁଖ ସୁକୃତର ।
ପକାଇ ସେ ସ୍ୱର୍ଣ କହେ, ଶୟନେ ସ୍ୱପନେ,
ଜାଗରଣେ ଯେଉଁ ଅଭିଳାଷ ଅଛି ମନେ । ୧୪୯୭

ସହଜ ସେବାରେ ସ୍ୱାମୀ ହେଉ ଅନୁରାଗ,
ସ୍ୱାର୍ଥ ଛଳ ଚାରି ଫଳ କରି ପରିତ୍ୟାଗ ।
ଆଜ୍ଞା ସମ ସୁସ୍ୱାମୀଙ୍କ ସେବା ନାହିଁ ଅନ୍ୟ,
ସେ ଆଜ୍ଞା-ପ୍ରସାଦ ଏବେ ଲଭୁ ଏହି ଜନ ।" ୧୪୯୮

ପ୍ରେମେ ଅଭିଭୂତ ହେଲେ ଏହିପରି କହି,
ଶରୀରେ ପୁଲକ ନେତ୍ର ସ୍ରୋତକେ ବହଇ ।
ଆକୁଳେ ଧରିଲେ ପ୍ରଭୁ କମଳ-ଚରଣ,
ସେ ସମୟ ପ୍ରେମ କରି ନ ହୁଏ ବର୍ଣ୍ଣନ । ୧୪୯୯

ମଧୁ କଥା କହି ରାମ କରିଲେ ଆଦର,
ବସାଇଲେ ନିଜ ପାଶେ ଧରି ନେଇ କର ।
ଭରତ ବଚନ ଶୁଣି ଦେଖି ତାଙ୍କ ଶୀଳ,
ସଭାଙ୍କ ଶ୍ରୀରାମ ହେଲେ ସ୍ନେହରେ ଶିଥିଳ । ୧୫୦୦

ସ୍ନେହରେ ଶିଥିଳ ହେଲେ ରାମ ରଘୁପତି,
ମୁନିବର ସାଧୁ ସଭା ମିଥିଳା ନୃପତି ।
ମନେ ମନେ ଭରତଙ୍କ ଭକ୍ତି ଭାଇ-ପଣ,
ସକଳେ ଅନ୍ତରେ କଲେ ପ୍ରଶଂସା କୀର୍ତ୍ତନ ।
ଅତ୍ୟନ୍ତ ମଳିନ ମନେ ସ୍ୱର୍ଗେ ସୁରଗଣ,
ପ୍ରଶଂସି ଭରତେ କଲେ ପୁଷ୍ପ ବରଷଣ ।
ତୁଳସୀ କହନ୍ତି ଲୋକେ ଶୁଣି ସଙ୍କୁଚିତ,
ନିଶାଗମେ ସରସିଜ ଯେସନେ ମୁଦ୍ରିତ । ୧୫୦୧

ଦେଖି ସମାଜର ଦୀନ ଦୁଃଖୀ ନାରୀ ନରେ,
ନିରେଖି କପଟୀ ଇନ୍ଦ୍ର ହରଷ ମନରେ ।

ଏ ମୃତକମାନେ ପଛେ ମରନ୍ତୁ ବନରେ,
କିନ୍ତୁ ମୋ କଲ୍ୟାଣ ହେଉଥାଉ ନିରନ୍ତରେ । ୧୫୦୨

ଛଳ ଚକ୍ରାନ୍ତର ଶେଷ ସୀମା ସୁରପତି,
ନିଜର ମଙ୍ଗଳ, ପର ଅନିଷ୍ଟ ଇଚ୍ଛନ୍ତି ।
କାକ ସମ ରୀତି ତାଙ୍କ ଅତି ମଳମନା,
କାହାକୁ ବିଶ୍ୱାସ ନାହିଁ କେବଳ ଛଳନା । ୧୫୦୩

ଆଗେ କୁବୁଦ୍ଧିର କରି କପଟ ଭିଆଇ,
ବଶୀଭୂତ କଲେ ସର୍ବେ ସେ ମନ୍ତ୍ର ମନ୍ତ୍ରାଇ ।
ଦେବତା ମାୟାରେ ଲୋକେ ହେଲେ ବିମୋହିତ,
ରାମ-ପ୍ରେମ କିନ୍ତୁ କମି ନ ଥିଲା କିଞ୍ଚିତ । ୧୫୦୪

ଭୟ ଉଚାଟରେ କାର ଥିର ନୋହେ ମନ,
କେବେ ଭଲ ଲାଗେ ବନ କେବେ ବା ଭୁବନ ।
ଦ୍ୱିଧାଗ୍ରସ୍ତ ମନ ପ୍ରଜାକୁଳ ଦୁଃଖୀ ଭାରି,
ନଦୀ ସିନ୍ଧୁ ସଙ୍ଗମରେ ଯେଉଁପରି ବାରି । ୧୫୦୫

ଦୁଇ ବିଧ ମତି କାହେ ନ ଲାଗେ ଉତ୍ତମ,
କାହାକୁ ନ କହେ କିଏ ଅସଲ ମରମ ।
ତା' ଦେଖି ଭାବନ୍ତି ହସି କରୁଣାନିଧାନ,
ସମ ସ୍ୱଭାବ ତ ଶ୍ୱାନ ଯୁବା ମଘବାନ । ୧୫୦୬

ଭରତ ଜନକ ମନ୍ତ୍ରୀ ମୁନି ଜ୍ଞାନୀ ଗଣେ,
ଏମାନଙ୍କୁ ଛାଡ଼ି ରହିଗଲେ ଯେଉଁ ଜନେ,
ଯାହାର ସ୍ୱଭାବ ଆଉ ପ୍ରକୃତି ଯେପରି,
ଦେବ ମାୟା କଲା ଗ୍ରାସ ତାଙ୍କୁ ସେହିଭଳି । ୧୫୦୭

ଆପଣାର ସ୍ନେହ ଇନ୍ଦ୍ର କପଟ କାରଣେ,
ଦେଖିଲେ ଶ୍ରୀରାମ ଦୁଃଖୀ ସବୁ ପୁରଜନେ ।
ସଭାସଦ ଗୁରୁ ବିପ୍ର ମନ୍ତ୍ରୀ ନରପତି-
ବୁଦ୍ଧିକୁ କରିଲା ବଶ ଭରତ-ଭକତି । ୧୫୦୮

ରାମଙ୍କୁ ପ୍ରତିମା ପ୍ରାୟେ ରଖିଲେ ଅନାଇ,
ସଙ୍କୋଚ କରନ୍ତି ସତେ କେ ଅଛି ଶିଖାଇ ।
ଭରତ ନମ୍ରତା ପ୍ରୀତି ବିନୟ ବଡ଼ାଇ,
କହିବା କଠିନ, ଶୁଣିବାକୁ ସୁଖଦାୟୀ । ୧୫୦୯

ଯାହାଙ୍କ ଭକତି ଦେଖି ମାତ୍ର ଲବ ଲେଶ,
ପ୍ରେମ ମଗ୍ନ ହେଲେ ମୁନିଗଣ ମିଥିଳେଶ ।
କେମନ୍ତେ ବର୍ଣ୍ଣିବ ତାଙ୍କ ମହିମା ତୁଳସୀ,
ସେ ଭକ୍ତି ପ୍ରଭାବେ ବୁଦ୍ଧି ଉଠଇ ଉଲସି । ୧୫୧୦

ଜାଣି ବୁଦ୍ଧି ଶ୍ରେଷ୍ଠ, ବଡ଼ ତାଙ୍କର ମହିମା,
ସଙ୍କୋଚଇ ରଖିବାକୁ କବିର ଗାରିମା ।
ଗୁଣେ ଅତି ରୁଚି ମାତ୍ର କହି ତ ନ ପାରେ,
ଶିଶୁ କଥା ସମ ବୁଦ୍ଧି ଗତି ଯେ ଏଠାରେ । ୧୫୧୧

ଭରତ ନିର୍ମଳ-ଯଶ ନିର୍ମଳ-ଚନ୍ଦ୍ରମା,
କବି ବୁଦ୍ଧି ଚକ୍ରବାକୀ-କନ୍ୟା ମନୋରମା ।
ଭକ୍ତଜନ ସୁବିମଳ ହୃଦୟ ଆକାଶେ,
ସେ ଯଶ-ଚନ୍ଦ୍ରମା ଯେବେ ଲଲିତେ ପ୍ରକାଶେ,
ତାହାକୁ ନିରେଖି ସେହି ସୁମତି-ଚକୋରୀ,
ନିର୍ନିମେଷ ନୟନରେ ରହେଁ ମୁଖ ତୋଳି । ୧୫୧୨

ବେଦକୁ ସୁଗମ ନୁହେଁ ଭରତ ଶୀଳତା,
କବିଏ କ୍ଷମନ୍ତୁ ଲଘୁମତି ଚପଳତା ।
କିଏ ଅଛି କହି ଶୁଣି ଭରତ ମହତ୍ତ୍ୱ,
ସୀତା-ରାମ ଶ୍ରୀଚରଣେ ନ ହେବ ଆସକ୍ତ । ୧୫୧୩

ଭରତଙ୍କୁ ସ୍ମରି ରାମ ପଦେ ଅନୁରାଗ,
ଯାହାକୁ ସୁଲଭ ନୁହେଁ ସେହି ହତଭାଗ୍ୟ ।
ଦୟାଳୁ ଶ୍ରୀରାମ ଦେଖି ସଭିଙ୍କ ଅବସ୍ଥା,
ସୁଜାଣ ଶ୍ରୀରାମ ଜାଣି ଜନ ହୃଦ ବ୍ୟଥା । ୧୫୧୩

ଧର୍ମ ଧୁରନ୍ଧର ଧୀର ନୀତି ସୁଚତୁର,
ସତ୍ୟ ସ୍ନେହ ଶୀଳ ସୁଖ ଆନନ୍ଦ ସାଗର,
ସୁବିଜ୍ଞ ଦେଶ କାଳ ସମସ୍ତ ସମାଜ,
ନୀତି ପ୍ରୀତି ରକ୍ଷାକାରୀ ରାମ ରଘୁରାଜ । ୧୫୧୪

କହିଲେ ବଚନ ବାଣୀ-ସର୍ବସ୍ୱ ଯେମନ୍ତେ,
ଶୁଣିବାକୁ ସୁଧା ସମ ହିତକର ଅନ୍ତେ ।
"ହେ ଭାଇ ଭରତ ତୁମେ ଧରମ ଧୁରୀଣ,
ଲୋକ ବେଦ ବେଦ ଜ୍ଞାତା ପ୍ରେମରେ ପ୍ରବୀଣ । ୧୫୧୫

ମନ କର୍ମ ବାକ୍ୟେ ଭାଇ ତୁମେ ତୁମ ସମ,
ସୁନିର୍ମଳ, ଏ ଜଗତେ ନାହିଁ କେ ଉତ୍ତମ ।
ଏ ଗୁରୁ ସମାଜେ ପୁଣି କୁସମୟେ ଆଜ,
କେହ୍ନେ କହି ହୁଏ ସାନ ଭାଇ ଗୁଣରାଜ । ୧୫୧୬

ତୁମେ ଭାଇ ଜାଣ ସୂର୍ଯ୍ୟ-ବଂଶ କୁଳ ରୀତି,
ସତ୍ୟସନ୍ଧ ପିତାଙ୍କର ସୁଯଶରେ ପ୍ରୀତି ।
ସମସ୍ତ ସମାଜ ଗୁରୁ ଜନେ ଲଜ୍ୟା ପଣ,
ଜାଣ ସଦା ଶତ୍ରୁ ମିତ୍ର ଉଦାସୀନ ମନ । ୧୫୧୭

ସଭିଙ୍କ କର୍ତ୍ତବ୍ୟ ଜଣା ତୁମକୁ ଭରତ,
ତୁମର ଓ ମୋର ଯେତେ ହିତ ଧର୍ମ ପଥ ।
ଯଦିବା ଭରଷା ମୋର ସଦା ତୁମଠାରେ,
ତଥାପି କହୁଛି କିଛି ସମୟାନୁସାରେ । ୧୫୧୮

ପିତାଙ୍କ ବିହୁନେ ଆମ ବିଷୟ ସକଳ,
ସମ୍ଭାଳିଲେ କୁଳଗୁରୁ-କରୁଣା କେବଳ ।
ନଥିବା ଆତ୍ମୀୟ ପ୍ରଜା ପୁର ପରିବାର,
ଆମ ସହ ହୋଇଥାନ୍ତେ ସର୍ବେ ନାରଖାର । ୧୫୧୯

ଅସମୟେ ଯେବେ ରବି ହୋଇଯିବେ ଅସ୍ତ,
ଜଗତେ କାହାକୁ ଦୁଃଖ ନ ହେବ କହତ ?

ତେଣେ ବିଧାତା କଲା ଅକାଳେ ଉତ୍ପାତ,
ରଖିଲେ ଆମକୁ ମୁନି ମିଥିଳେଶ ଭ୍ରାତ । ୧୫୨୦

ସବୁ ରାଜକାର୍ଯ୍ୟ ମାନ ମର୍ଯ୍ୟାଦା ସୁଖ୍ୟାତି,
ଧରଣୀ ଧରମ ଧାମ ଗୃହକର୍ମ ଆଦି,
ଗୁରୁଙ୍କ ପ୍ରଭାବ ସଦା ଆମକୁ ପାଳିବ,
ଶେଷ ପରିଣାମେ ଜାଣ ମଙ୍ଗଳ ହୋଇବ । ୧୫୨୧

ସମାଜ ସହିତେ ଭାଇ ତୁମର ମୋହର,
ଗୃହେ ବନେ ଗୁରୁ-କୃପା ରକ୍ଷକ କେବଳ ।
ମାତା ପିତା ଗୁରୁ ସ୍ୱାମୀ ଆଦେଶ ପାଳନ,
ଧରମ ଧରଣୀଧର ଅନନ୍ତ ସମାନ । ୧୫୨୨

ତାହା ତୁମେ କର ଆଜ କରାଅ ମୋ' କରେ,
ସୂର୍ଯ୍ୟବଂଶ ରକ୍ଷାକର୍ତ୍ତା ହୁଅ ଜଗତରେ ।
ଏହି ଏକମାତ୍ର ଆଜ୍ଞା-ପାଳନ-ସାଧନା,
କୀରତି, ସଦ୍‌ଗତି ଭୂତି—ତ୍ରିବେଣୀ ରଚନା । ୧୫୨୩

ଏମନ୍ତ ବିଚାରି ସହି ସଙ୍କଟ ଅତୁଳ,
ସୁଖୀ କର ଯାଇ ପ୍ରଜା ପରିଜନ କୁଳ ।
ଭାଇ ସର୍ବେ ନେଇଛନ୍ତି ବାଣ୍ଟି ମୋ' ବିପତ୍ତି,
ତୁମକୁ ଚଉଦ ବର୍ଷ କାଳୁ ଦୁଃଖ ଅତି । ୧୫୨୪

ଜାଣି ମଧ୍ୟ ସୁକୁମାର କହେ ସୁକଠୋର,
କୁସମୟେ ଏହା ନୁହେଁ ଅନୁଚିତ ମୋର ।
କୁସ୍ଥାନେ ସାହାଯ୍ୟ କରେ ଯେ ଉତ୍ତମ ଭାଇ,
ବଜ୍ର ଆଘାତକୁ ମଧ୍ୟ ହସ୍ତ ନିବାରଇ ।" ୧୫୨୫

ହସ୍ତ ପଦ ନେତ୍ର ଆଦି ସେବକ ପରାୟେ,
ମୁଖ ତହିଁ ସ୍ୱାମୀ ସମ ସଦା ରହିଥାଏ ।
ତୁଳସୀ କହନ୍ତି ସ୍ୱାମୀ-ସେବକ ପୀରତି,
ଶୁଣି ଦେଖି ସୁକବିଏ ପ୍ରଶଂସା କରନ୍ତି । ୧୫୨୬

ଶୁଣି ରାମ ବାଣୀ ଲାଗେ ମଧୁର ଏମନ୍ତ,
ଯେହ୍ନେ ପ୍ରେମ-ସିନ୍ଧୁ ଜାତ ଅମୃତେ ସିକତ ।
ସ୍ନେହ ସମାଧିରେ ଲୋକେ ହେଲେ ଅବସନ୍ନ,
ଦଶା ଦେଖି କଲେ ବାଣୀ ମଜ୍ଜନ ସାଧନ । ୧୫୨୭

ଭରତ ଲଭିଲେ ହୃଦେ ପରମ ସନ୍ତୋଷ,
ସ୍ୱାମୀ ଅନୁଗ୍ରହ ମାତ୍ରେ ଗଲା ଦୁଃଖ ଦୋଷ ।
ପ୍ରସନ୍ନ ବଦନ ମନୁଁ ଛୁଟିଲା ବିଷାଦ,
ମୂକକୁ ମିଳିଲା ସତେ ଶାରଦା-ପ୍ରସାଦ । ୧୫୨୮

ସପ୍ରେମେ ପ୍ରଣାମ କରି ପୁଲକ ଅନ୍ତରେ,
କହିଲେ ସରାଗେ ଯୋଡ଼ି ସରସିଜ-କରେ--
"ସଙ୍ଗେ ଯିବା ସୁଖ ନାଥ ମିଳିଲା ଏଥର,
ଜଗତେ ଜନମ ହେବା ପାଇଗଲି ଫଳ । ୧୫୨୯

ଏବେ କୃପାନିଧି ଆଜ୍ଞା ହୋଇବ ଯେପରି,
ସାଦରେ କରିବି ତାହା ଶିରୋଧାର୍ଯ୍ୟ କରି ।
ସେ ଅବଲମ୍ବନ କିଛି ଦିଅ ରଘୁବର,
ଯାହା ସେବି ଚୌଦ ବର୍ଷ କଟିବ ମୋହର । ୧୫୩୦

ଗୁରୁଙ୍କ ଆଦେଶେ ଦେବ ସକଳ ତୀର୍ଥର,
ପ୍ରଭୁ ଅଭିଷେକ ଅର୍ଥେ ଆଣିଥିଲି ଜଳ ।
ସେ ନିମନ୍ତେ କି ଆଦେଶ ହେଉଛି ଗୋସାଇଁ,
ଦୟା କରି କହ ଏବେ ଦୀନ ଜନ ସାଇଁ । ୧୫୩୧

ଏକ ଅଭିଳାଷ ମୋର ମନେ ଉପୁଜଇ,
ସଭୟୁ ସଙ୍କୋଚ ବଶେ କହି ନ ପାରଇ ।"
"କହ ଭାଇ କହ" ଲଭି ପ୍ରଭୁ ଅନୁମତି,
କହିଲେ ସସ୍ନେହେ କଥା ସୁମଧୁର ଅତି । ୧୫୩୨

"ପୂତ ପୀଠ ଚିତ୍ରକୁଟ ତୀର୍ଥ ବନ ସର,
ସ୍ୱଗତ ଶଇଳ ମୃଗ ବିହଙ୍ଗ ନିର୍ଝର,

ବିଶେଷତଃ ପ୍ରଭୁ ପଦାଙ୍କିତ ଭୂଇଁ ସବୁ,
ଆସିବି ଦର୍ଶନ କରି ଆଜ୍ଞା ହେଲେ ପ୍ରଭୁ ।" ୧୫୩୩

"ଅବଶ୍ୟ ମହର୍ଷି ଅତ୍ରି ଆଜ୍ଞା ଶିରେ ଧରି,
ବନେ ବୁଲ ଭାଇ ମନୁ ଭୟ ଦୂର କରି ।
ଅତ୍ରିଙ୍କ ପ୍ରସାଦେ ବନ ମଙ୍ଗଳଦାୟକ,
ପରମ ପବିତ୍ର ଭାଇ ରତ୍ନ ବନୋଦକ । ୧୫୩୪

ପୁଣି ମୁନିରାଜ ଆଜ୍ଞା ଦେବେ ଯେଉଁଠାରେ,
ଆଣିଥିବା ପୁଣ୍ୟ ଜଳ ରଖିବ ସେଠାରେ ।"
ପ୍ରଭୁଙ୍କ ବଚନେ ସୁଖ ପାଇଲେ ଭରତ,
ଅତ୍ରି ମୁନି ପାଦ-ପଦ୍ମେ କଲେ ଦଣ୍ଡବତ । ୧୫୩୫

ସୁମଙ୍ଗଳ ମୂଳ ରାମ-ଭରତ ଚରିତ,
ଶୁଣି ସ୍ୱାର୍ଥପର ଦେବେ ହୋଇ ପ୍ରମୋଦିତ,
ରଘୁକୁଳ ଯଶକୀର୍ତ୍ତି କରି ପରଶଂସା,
ବରଷିଲେ କଳ୍ପତରୁ କୁସୁମ ସହସା । ୧୫୩୬

ଧନ୍ୟ ହେ ଭରତ ଧନ୍ୟ ଶ୍ରୀରାମ ଗୋସାଇଁ,
ହରଷିତ ଦେବତାଏ ଗୁଣ ଗାଇ ଗାଇ ।
ମିଥିଳା ନୃପତି ମୁନି ସମାଜ ସହିତ,
ଭରତଙ୍କ କଥା ଶୁଣି ହେଲେ ଉଲ୍ଲାସିତ । ୧୫୩୭

ରାମ-ଭରତଙ୍କ ଗୁଣଗ୍ରାମ ସ୍ନେହ ଭକ୍ତି,
ପୁଲକେ ବିଦେହପତି ପ୍ରଶଂସା କରନ୍ତି ।
ଅତି ମନୋରମ ସ୍ୱାମୀ-ସେବକ ସ୍ୱଭାବ,
ପୂତକୁ କରଇ ପୂତ ସେ ପ୍ରୀତି ପ୍ରଭାବ । ୧୫୩୮

ପ୍ରଶଂସା କରନ୍ତି ନିଜ ବୁଦ୍ଧି ଅନୁସାରେ,
ମନ୍ତ୍ରୀ ସଭାସଦ ସର୍ବେ ଅନୁରାଗ ଭରେ ।
ଶୁଣି ଶୁଣି ରଘୁବର ଭରତ ସମ୍ବାଦ,
ଉଭୟ ସମାଜ ହୃଦେ ହରଷ ବିଷାଦ । ୧୫୩୯

ରାମ ମାତା ସୁଖ ଦୁଃଖ ସମାନ ମଣିଲେ,
ରାମ ଗୁଣ କହି ଅନ୍ୟେ ସାନ୍ତ୍ୱନା ଦିହିଲେ ।
ରଘୁବୀରଙ୍କର କେହି କରଇ ବଡ଼ାଇ,
ଭରତ ସ୍ୱଭାବ ଉଚ୍ଚେ କେହୁ ଉଠେ ଗାଇ । ୧୫୪୦

ତା'ପରେ ମହର୍ଷି ଅତ୍ରି କହିଲେ ଭରତେ,
"କୂପ ଏକ ଅଛୁ ଏହି ଶଇଳ ନିକଟେ ।
ସୁଧାସମ ଅନୁପମ ଏ ପବିତ୍ରମୟ—
ତୀର୍ଥ ଜଳ ତହିଁ ରଖି ଦିଅ ହେ ତନୟ ।" ୧୫୪୧

ଭରତ ମହର୍ଷି ଅତ୍ରିଙ୍କର ଆଜ୍ଞା ପାଇ,
ତୀର୍ଥ ଜଳପାତ୍ର ସବୁ ଆଗରେ ପଠାଇ ।
ଶତ୍ରୁଘ୍ନ ମୁନିଗଣ ସାଧୁ ବୃନ୍ଦ ସହ ନିଜେ,
ସେହି ସୁଗଭୀର କୂପ ପାଶେ ହେଲେ ବିଜେ । ୧୫୪୨

ପୁଣ୍ୟ ତୀର୍ଥ ଜଳ ରଖି ଏ ପବିତ୍ର ସ୍ଥଳେ,
କହିଲେ ମହର୍ଷି ଅତ୍ରି ଅତି ପ୍ରମୋଦରେ ।
"ହେ ବତ୍ସ ଅନାଦି ସିଦ୍ଧ ସ୍ଥଳ ଜାଣ ଏହି,
ଲୁପ୍ତ କାଳକ୍ରମେ ତାହା ନ ଜାଣନ୍ତି କେହି ।" ୧୫୪୩

ଏ ସରସ ସ୍ଥାନ ଦେଖି ସୁସେବକ ଗଣ,
ପୁଣ୍ୟ ଜଳ ପାଇଁ କୂପ କରିଲେ ଖନନ ।
ବିଧାତା ବିଧାନେ ହେଲା ବିଶ୍ୱ ଉପକାର,
ସୁଗମ ହୋଇଲା ଧର୍ମ ଅଗମ୍ୟ ବିଗ୍ରହ । ୧୫୪୪

କହିବେ "ଭରତ-କୂପ" ଏଣିକି ସକଳେ,
ପରମ ପାବନ ଯାହା ମିଶି ତୀର୍ଥ ଜଳେ ।
ସପ୍ରେମେ ନିୟମେ ସ୍ନାନ କରୁଥିଲେ ଜନେ,
ସେ ହେବେ ନିର୍ମଳ ମନ କର୍ମ ଓ ବଚନେ । ୧୫୪୫

କୂପର ମହିମା କଥାମାନ କହି କହି,
ଚଳିଲେ ଯିବେ ଥିଲେ ରଘୁନାଥ ଯହିଁ ।

ଶ୍ରୀ ରଘୁନାଥଙ୍କୁ ଅତ୍ରି ମୁନି ଶୁଣାଇଲେ,
ତୀର୍ଥର ପ୍ରଭାବ ସବୁ ଯାହା ଜାଣିଥିଲେ । ୧୫୪୬

କହୁ କହୁ ଧର୍ମ ଇତିହାସ ହୋଇ ଭୋଳ,
ସୁଖେ ବିତିଗଲା ନିଶି ହୋଇଗଲା ଭୋ'ର ।
ନିତ୍ୟ କର୍ମ ଶେଷ କରି ଚିତ୍ରକୂଟ ବେନି ଭାଇ,
ଅତ୍ରି, ଗୁରୁ, ରଘୁପତି ଅନୁମତି ପାଇ । ୧୫୪୭

ସାଦା ସିଧା ପୋଷାକରେ ସମାଜ ସହିତେ,
ବାହାରିଲେ ରାମବନ ଦେଖିବା ନିମନ୍ତେ ।
ସହଜେ କଅଁଳ ପାଦ ପାଦୁକା ଯେ ନାହିଁ,
ସଙ୍କୋଚେ ଧରଣୀ ମୃଦୁ ହେଲା କ ିସେ ପାଇଁ । ୧୫୪୮

କୁଶ କଣ୍ଟା ଗୋଡ଼ ପାଠ କୁବସ୍ତୁରେ ଭରି,
କର୍କଶ କଠୋର ଅଙ୍ଗ ଢାଙ୍କି ବସୁନ୍ଧରା,
ମୃଦୁ ସୁମଞ୍ଜୁଳ ମାର୍ଗ ରଚିଲା, ସମୀର,
ବହିଲା ତ୍ରିବିଧ ସୁଖ ଦେବା ହୋଇ ଧୀର । ୧୫୪୯

ମେଘ କରି ଛାଇ, ଦେବେ କୁସୁମ ବରଷି,
ବୃକ୍ଷେ ଫୁଲ ଫଳ, ତୃଣେ ହୋଇ ମୃଦୁସ୍ପର୍ଶୀ,
ମୃଗ ଯୂଥ ଗୃହି, ଖଗେ କରି ମଧୁ ସ୍ୱନ,
ସକଳେ ସେବିଲେ ଜାଣି ରାମ ପ୍ରିୟଜନ । ୧୫୫୦

ହାଇ ମାରୁଥିବା କାଳେ ସାଧାରଣ ଜନ,
ସିଦ୍ଧି ଲଭେ କଲେ ରାମ ନାମ ଉଚ୍ଚାରଣ ।
ତେବେ ରାମ ପ୍ରିୟ ଭାଇ ଭରତଙ୍କ ପାଇଁ,
ଏ ସକଳ ସେବା ବଡ଼ କଥା ହୁଏ ନାହିଁ । ୧୫୫୧

ଭରତ ଏପରି ଭାବେ ଭ୍ରମନ୍ତି କାନନ,
ହୁଅନ୍ତି ଲଜ୍ଜିତ ପ୍ରେମ ଦେଖି ମୁନିଗଣ ।
ପୁଣ୍ୟ ଜଳାଶୟ ତୀର୍ଥ ଭୂମି ଗିରି ବନ,
ଖଗ ମୃଗ ତରୁ ତୃଣ ବନ ଉପବନ । ୧୫୫୨

ସବୁକୁ ବିଚାର ପୂତ ଦିବ୍ୟ ଭାବେ ଦେଖି,
ପଚ୍ଛିରନ୍ତି ମୁନିବରେ ଯେଉଁଠାମା ବିବେକୀ ।
କହନ୍ତି ଆନନ୍ଦ ମନେ ଶୁଣି ମୁନିବର,
ନାମ ଗୁଣ ହେତୁ ପୁଣ୍ୟ ପ୍ରଭାବ ସକଳ । ୧୫୫୩

କେଉଁଠି କରନ୍ତି ସ୍ନାନ କାହିଁ ପ୍ରଣିପାତ,
ରମ୍ୟ ସ୍ଥାନ ଦେଖି କାହିଁ ପ୍ରୀତି ହୁଏ ଜାତ ।
କାହିଁ ବସି ମୁନିଙ୍କର ଅନୁମତି ପାଇ,
ସ୍ମରଣ କରନ୍ତି ସୀତା ସହ ବେନି ଭାଇ । ୧୫୫୪

ସୁସେବା ସ୍ୱଭାବ ସ୍ନେହ ନିରେଖି ଏସନ,
ଆଶିଷ ଦିଅନ୍ତି ହର୍ଷେ ବନଦେବ ଗଣ ।
ଅଢ଼େଇ ପ୍ରହର ଗତେ ଆଶ୍ରମେ ଫେରନ୍ତି,
ପ୍ରଭୁ ପାଦ-ପଦ୍ମ ଆସି ଦର୍ଶନ କରନ୍ତି । ୧୫୫୫

ପାଞ୍ଚ ଦିନ ମଧ୍ୟେ ଥିଲା ଯେତେ ତୀର୍ଥସ୍ଥଳ,
ଭରତ ଦର୍ଶନ କଲେ ଆନନ୍ଦେ ସକଳ ।
ହରିହର ଯଶ କଥା ଶୁଣି ଅବିରତ,
ପଞ୍ଚମ ଦିବସ ଗତ, ସନ୍ଧ୍ୟା ଉପଗତ । ୧୫୫୬

ପ୍ରାତଃ ସ୍ନାନ କରି ସର୍ବେ ହେଲେ ସମ୍ମିଳିତ,
ଭରତ ବ୍ରାହ୍ମଣ ମନ୍ତ୍ରୀ ବିଦେହ ସହିତ ।
ଜାଣି ମଧ୍ୟ ଭଲ ଦିନ ଆଜ ବିଦା ପାଇଁ,
କହିବାକୁ ସଙ୍କୋଚିଲେ କୃପାଳୁ ଗୋସାଇଁ । ୧୫୫୭

ଗୁରୁ ନୃପ ସଭା ଭରତଙ୍କୁ ଅନାଇଲେ,
ତା'ପରେ ସଙ୍କୋଚେ ରାମ ମହୀକୁ ଚାହିଁଲେ ।
ପ୍ରଶଂସି ସ୍ୱଭାବ ଶୀଳ କହିଲେ ସକଳେ,
ରାମ ସମ ଲଜ୍ୟାଶୀଳ ସ୍ୱାମୀ କେ ଭୂତଳେ । ୧୫୫୮

ସୁଜ୍ଞାନୀ ଭରତ ଜାଣି ରାମ ଅଭିଳାଷ,
ସପ୍ରେମେ ଉଠିଲେ ଧରି ହୃଦୟେ ସାହାସ ।

କହିଲେ ପ୍ରଣାମ କରି ଯୋଡ଼ି ବେନି କର,
"ହେ ନାଥ ସକଳ ରୁଚି ରଖିଲ ମୋହର । ୧୫୫୯

ସହିଲେ ସନ୍ତାପ ଘୋର ସକଳେ ମୋ ପାଇଁ,
ଆପଣେ ସହିଲେ ନାନା କଷ୍ଟ ଗୋସାଇଁ ।
ଦିଅନ୍ତୁ ଆଦେଶ ପ୍ରଭୁ ଏବେ ମୋହ ପାଇଁ,
ସେବିବି ଚଉଦ ବର୍ଷ ମୁଁ ଅଯୋଧ୍ୟା ଯାଇ । ୧୫୬୦

ହେ ଦୀନ ଦୟାଳୁ ପ୍ରଭୁ କୋଶଳ ରାଜନ,
କପରି ଶ୍ରୀପଦ ଦାସ କରିବ ଦର୍ଶନ ।
ବନବାସ ଶେଷ ଯାଏଁ ରହିବି କପରି,
ସେହି ଶିକ୍ଷା ମୋତେ ନାଥ ଦିଅ ଦୟାକରି । ୧୫୬୧

ପ୍ରଭୁ ତବ ସ୍ନେହେ ପୁରଜନ ପରିଜନ,
ପ୍ରଜାଏ ପବିତ୍ର ସ୍ନେହ ଧର୍ମ ପରାୟଣ ।
ଆପଣଙ୍କ ପାଇଁ ଭବ ଜ୍ୱାଳା ବରଂ ଭଲ,
ଆପଣଙ୍କ ବିନା ମୋକ୍ଷେ ନାହିଁ କେଉଁ ଫଳ । ୧୫୬୨

ହେ ସୁଜ୍ଞାମୀ ସ୍ୱାମୀ ଜାଣି ସର୍ବ ହୃଦ ବ୍ୟଥା,
ମୋର ଆଚରଣ ମନ ରୁଚି ଓ ଲାଳସା,
ସଭିଙ୍କୁ ପ୍ରଣତପାଳ କରିବ ପାଳନ,
ଶେଷ ଯାଏଁ ନର୍ବାହିବ ବେନି ପକ୍ଷ ଜନ । ୧୫୬୩

ସକଳ ପ୍ରକାରେ ବଡ଼ ଏ ମୋର ଭରସା,
ଭାବିଲେ କୁଟିଳ ଚିନ୍ତା ବାନ୍ଧେ ନାହିଁ ବସା ।
ପ୍ରଭୁଙ୍କ ସୁଦୟା ପୁଣି ମୋହର ଆରତ,
ବେନି ମିଶି ମୋତେ କରିଅଛନ୍ତି ଉଦ୍ଧତ । ୧୫୬୪

ଏ ବଡ଼ ଦୋଷକୁ ମୋର ଦୂର କର ସ୍ୱାମୀ,
ଶିଖାଅ ସଙ୍କୋଚ ତେଜ ଜାଣି ଅନୁଗାମୀ ।"
ପ୍ରଶଂସିଲେ ସର୍ବେ ଶୁଣି ଭରତ ବଚନନ୍ତ,
କ୍ଷୀର ନୀର ବିଭାଜନେ ଯେ ମରାଳ ମନ୍ତ । ୧୫୬୫

ଶୁଣି ଧାନ ଛଳହୀନ ଭାଇର ବଚନ,
କହିଲେ ସୁଜ୍ଞାନୀ ପ୍ରଭୁ ଶ୍ରୀରଘୁନନ୍ଦନ—
ଦେଶ କାଳ ସମୟର ଅନୁକୂଳ ମତେ,
ପ୍ରୀତି ଭରା ହୃଦୟରେ ଅନୁଜ ଭରତେ । ୧୫୬୬

"ହେ ଭାଇ ତୁମର ମୋର ପରିଜନଙ୍କର,
ସଦନ, କାନନ ଚିନ୍ତା ଗୁରୁ ନୃପଙ୍କର ।
ଶିରୋପରେ ଥାଉଁ ଗୁରୁ ମୁନି ମିଥିଳେଶ,
ତୁମର ଓ ମୋର ନାହିଁ ସ୍ୱପ୍ନେ ମଧ୍ୟ କ୍ଳେଶ । ୧୫୬୭

ତୁମର ଓ ମୋର ଭାଇ ଏହା ପରମାର୍ଥ,
ସ୍ୱାର୍ଥ ଓ ସୁଯଶ ପୁଣି ଧର୍ମ ପରମାର୍ଥ ।
କେନି ଭାଇ ପିତା ଆଜ୍ଞା କରିବା ପାଳନ,
ଲୋକେ ବେଦେ ହେବ ନୃପ ମଙ୍ଗଳ କାରଣ । ୧୫୬୮

ଗୁରୁ ପିତା ମାତା ସ୍ୱାମୀ ଆଦେଶ ପାଳିଲେ,
ଖାଲେ ନ ପଡ଼ଇ ପାଦ କୁପଥେ ଚ଼ଳିଲେ ।
ଏମନ୍ତ ବିଚାର ମନୁ ଚିନ୍ତା ପରିହରି,
ଫେରି ଶେଷ ଯାଅଁ ପାଳ ଅଯୋଧ୍ୟା ଆମରି । ୧୫୬୯

ଗୁରୁ-ପଦ-ରଜେ ନ୍ୟସ୍ତ ସକଳ ପ୍ରକାର,
ଦେଶ ରାଜକୋଷ ପରିଜନ ପରିବାର ।
ମୁନି ମାତା ସଚିବଙ୍କ ଆଜ୍ଞା ତୁମେ ମାନି,
ପାଳ ଏ ପୃଥିବୀ ପ୍ରଜାକୁଳ ରାଜଧାନୀ । ୧୫୭୦

ମୁଖିଆ ଯେ ମୁଖ ସମ ହୋଇବ ସଂସାରେ,
ଖାଏ ପିଏ ଏକା, ପାଳେ ବିବେକ ବିଚାରେ,
ଦେହର ସକଳ ଅଙ୍ଗ ପ୍ରତ୍ୟଙ୍ଗେ ସମାନେ ।
କହନ୍ତି ତୁଳସୀ ଦାସ ଭକ୍ତ ଭରା ପ୍ରାଣେ । ୧୫୭୧

କେବଳ ଏତିକି ଜାଣ ରାଜଧର୍ମ ସାର,
ମନ ମଧ୍ୟେ ମନୋରଥ ଗୁପ୍ତ ଯେ ପ୍ରକାର ।

କଲେହେଁ ଭାଇକୁ ବୋଧ ବହୁତ ପ୍ରକାର,
କିନ୍ତୁ ଶାନ୍ତ ନାହିଁ ମିଳେ ନ ପାଇ ଆଧାର । ୧୫୭୨

ଏଣେ ଭରତର ଶୀଳ ସ୍ୱଭାବ ଓ ପ୍ରୀତି,
ତେଣେ ଗୁରୁ ମନ୍ତ୍ରୀ ସମାଜର ଉପସ୍ଥିତି,
ଏହା ଦେଖି ହୃଦେ ଲଭି ସଙ୍କୋଚ ବହୁତ,
ରଘୁବର ରାମ ହେଲେ ପ୍ରେମେ ବଶୀଭୂତ ।
ଚରଣ-ପାଦୁକା ଦେଲେ ପ୍ରଭୁ କୃପା କରି
ଆଦରେ ଭରତ ନେଲେ ତାହା ଶିରେ ଧରି । ୧୫୭୩

କରୁଣାନିଧାନଙ୍କର ଚରଣ-ପାଦୁକା,
ଯେହ୍ନେ ଯୁଗ୍ମ ପ୍ରଜା-ପ୍ରାଣ-ପ୍ରହରୀ ପୁରୁଖା ।
ଭରତଙ୍କ ପ୍ରୀତି-ରତ୍ନ-ପେଟିକା ଯେସନ,
ଜୀବର ସାଧନ ପାଇଁ ଅବା ବେନି ବର୍ଣ୍ଣ । ୧୫୭୪

କୁଳର-କବାଟ, କର ସୁକର୍ମ ନିମନ୍ତେ,
ବିମଳ ନୟନ, ସେବା ସୁଧର୍ମର ସତେ ।
ଭରତ ଆଧାର ଲଭି ସୁଖୀ ହେଲେ ଚିତ୍ତେ,
ସୁଖୀ ଯେହ୍ନେ, ଥାଇ ରାମ-ସୀତାଙ୍କ ସହିତେ । ୧୫୭୫

ବିଦାୟ ମାଗିଲେ ଯେବେ ପ୍ରଣମି ଭରତ,
ଜାବୁଡ଼ି ଧରିଲେ ରାମ କରି କୋଳାଗତ ।
କୁସମୟ ପାଇଁ ଏଣେ ଖଳ ସୁରପତି,
ଅତି ଉଚ୍ଚାଟନ କଲେ ପ୍ରଜାଙ୍କର ମତି । ୧୫୭୬

ସେ ତହାନ୍ତେ ସଭଙ୍କର ହୋଇଲା କଲ୍ୟାଣ,
ବନବାସ ଶେଷ ଯାଏଁ ରଖିଲେ ପରାଣ ।
ନଭୁବା ଶ୍ରୀରାମ ସୀତା ଲକ୍ଷ୍ମଣ ବିୟୋଗେ,
ଛଟପଟ ହୋଇ ମରି ଥାଆନ୍ତେ କୁରୋଗେ । ୧୫୭୭

ରାମ-କୃପା କଲା ଦୂର ସକଳ ସଙ୍କଟ,
ହିତକାରୀ ରକ୍ଷାକାରୀ ହେଲା ଦେବକୂଟ ।

ଭାଇ ଭରତଙ୍କୁ ଭୁଜ-ଭିଡ଼ା-ଆଲିଙ୍ଗନ,
ସେହି ରାମ-ପ୍ରେମ-ରସ କେ କରେ ବର୍ଣ୍ଣନ ? ୧୫୭୮

ଉଚ୍ଛୁଳିଲା କାୟ-ମନୋ-ବାକ୍ୟେ ଅନୁରାଗ,
ଧୈର୍ଯ୍ୟ ଧୁରନ୍ଧର ରାମ କଲେ ଧୈର୍ଯ୍ୟ ତ୍ୟାଗ ।
ଝରିଲା କମଳ-ନେତ୍ରୁ ପ୍ରେମାଶ୍ରୁର ଝର,
ଦଶା ଦେଖି ଦେବତାଏ ହୋଇଲେ କାତର । ୧୫୭୯

ମୁନିଗଣ, ଗୁରୁ ଧୀର ଧୁରୀଣ ଜନକ,
ଜ୍ଞାନାନଳେ କଷିଛନ୍ତି ଯେ ମନ-କନକ,
ଯାହାଙ୍କୁ ନିର୍ଲିପ୍ତ କରି ଗଢ଼ିଲେ ବିରଞ୍ଚି,
ଜଗତ-ଜଳେ ଯେ ପଦ୍ମ ପତ୍ର ପ୍ରାୟେ ଛ'ନ୍ତି । ୧୫୮୦

ସେ ମଧ୍ୟ ବିଲୋକି ରାମ-ଭରତଙ୍କ ପ୍ରୀତି,
ଯେଉଁପରି ଅନୁପମ ଅପାର ସେମିତି—
କାୟମନୋବାକ୍ୟେ ଜ୍ଞାନ ବୈରାଗ୍ୟ ସହିତ,
ଶ୍ରୀରାମ-ଭରତ ପ୍ରେମେ ହେଲେ ନିମଜ୍ଜିତ । ୧୫୮୧

ଯହିଁ ଗୁରୁ ଜନକଙ୍କ ହେଲା ପ୍ରାଣ ମନ,
ତା' ପ୍ରାକୃତ ପ୍ରେମ ବୋଲି କହିବା ଦୂଷଣ ।
କବି କଲେ ସେମାନଙ୍କ ବିରହ ବର୍ଣ୍ଣନା,
କହିବେ ଲୋକେ, ଏ କବି ସୁକଠୋର ମନା । ୧୫୮୨

ଅଶେଷ ଅକଥନୀୟ ଏ ସଙ୍କୋଚ ରସ,
ବାଣୀ ସଙ୍କୁଚିତ ସ୍ମରି ସେ ପ୍ରୀତି ସରସ ।
ବୁଝାଇ ଭରତେ କେତେ ଶ୍ରୀ ରଘୁନନ୍ଦନ,
ଶତ୍ରୁଘ୍ନଙ୍କୁ ହୃଦେ ଚାପି କଲେ ଆଲିଙ୍ଗନ । ୧୫୮୩

ସେବକେ ସଚିବେ ଜାଣି ଭରତଙ୍କ ମନ,
ସମସ୍ତେ ନିଜର କାର୍ଯ୍ୟେ ଲାଗିଲେ ବହନ ।
ଉଭୟ ସମାଜ ଶୁଣି ହୋଇଲେ ବିକଳ,
ସଜାଇଲେ ପ୍ରସ୍ଥାନର ପଦାର୍ଥ ସକଳ । ୧୫୮୪

ପ୍ରଭୁ ଶ୍ରୀ ଚରଣ-ପଦ୍ମ ବନ୍ଦ ଭାଇ ବେନି,
ଯାହା ଆରମ୍ଭିଲେ ଶିରେ ରାମ ଆଜ୍ଞା ଘେନି ।
ସେ ଦୁହେଁ ମୁନୀଶ ତପି ବନ ଦେବ ଗଣେ,
ବନ୍ଦନ୍ତି କରିଲେ ବାରମ୍ବାର ସସମ୍ମାନେ । ୧୫୮୫

ଲକ୍ଷ୍ମଣଙ୍କୁ ଭେଟି କରି ସପ୍ରେମ ପ୍ରଣତି,
ସୀତା-ପଦ-ରଜ ଶିରେ ବୋଳି ପ୍ରେମେ ଅତି,
ସକଳ ମଙ୍ଗଳମୟ ଆଶୀର୍ବାଦ ପାଇ,
ଚଳିଲେ ହରଷ ଭରେ ତହୁଁ ବେନି ଭାଇ । ୧୫୮୬

ନୃପଙ୍କୁ ସାନୁଜ ରାମ କରି ନମସ୍କାର,
ବିନୟ ବଢ଼ାଇ କଲେ ଅନେକ ପ୍ରକାର ।
"ଦେବ, ଦୟାବଶେ ଦୁଃଖ ଅନେକ ସହିଲ,
ସମାଜକୁ ସଙ୍ଗେ ଘେନି ବନକୁ ଆସିଲ । ୧୫୮୭

ଏବେ ଦେଇ ଆଶୀର୍ବାଦ ଫେରନ୍ତୁ ନଗରେ ।"
ଶୁଣି ଧୈର୍ଯ୍ୟ ଧରି ନୃପ ବାହୁଡ଼ିଲେ ଘରେ ।
ସସମ୍ମାନ କରି ମୁନି ବିପ୍ର ସାଧୁଗଣେ,
ବିଦା କଲେ ହରି ହର ସମ ମଣି ମନେ । ୧୫୮୮

ଶାଶୂଙ୍କ ସମୀପେ ପୁଣି ଯାଇ ବେନି ଭାଇ,
ଫେରିଲେ ଚରଣ ବନ୍ଦ ଆଶୀର୍ବାଦ ପାଇ ।
କୌଶିକ ଜାବାଳି ବାମଦେବ ମୁନିବରେ,
ପୁରଜନ ପରିଜନ ସଚିବ ନିକରେ । ୧୫୮୯

କରି ସମାଦର ଯୋଗ୍ୟ ବିନୟ ପ୍ରଣାମ,
ଲୋକଙ୍କୁ ବିଦାୟ କଲେ ସାନୁଜ ଶ୍ରୀରାମ ।
ଉତ୍ତମ ମଧ୍ୟମ ନୀଚ ଯେତେ ନାରୀ ନର,
ସମସ୍ତଙ୍କୁ ଫେରାଇଲେ କରୁଣା ସାଗର । ୧୫୯୦

ଭରତ ମାତାଙ୍କ ପଦ ବନ୍ଦ ରଘୁବର,
ପଦ୍ମଜ ନିର୍ମଳ ସ୍ନେହେ ମିଳିଲେ ସତ୍ୱର ।

ସକଳ ସଙ୍କୋଚ ଚିନ୍ତା ମନରୁ ହଟାଇ,
ବିଦାୟ କରିଲେ ତାଙ୍କୁ ପାଲିଙ୍କି ସଜାଇ । ୧୫୯୧

ଭେଟି ପରିଜନ ମାତା ପିତାଙ୍କୁ ଜାନକୀ,
ଫେରିଗଲେ ପ୍ରାଣପ୍ରିୟ-ପ୍ରେମ-ପୂର୍ଣ୍ଣା ସତୀ—
ଶାଶୁଙ୍କୁ ପ୍ରଣାମ କଲେ ସଭକ୍ତି ମାନସେ,
ସେ ପ୍ରୀତି ବର୍ଣ୍ଣନେ କବି ହୃଦୟ ଉଲସେ । ୧୫୯୨

ଶୁଣି ନାନା ଉପଦେଶ ସୁଆଶିଷ ଲଭି,
ଉଭୟ ପ୍ରୀତିରେ ସୀତା ରହିଗଲେ ମଜ୍ଜି ।
ତା'ପରେ ଶ୍ରୀରାମ ଗୃହୁ ପାଲିଙ୍କି ମଗାଇ,
ବହୁ ଆଶ୍ୱାସନା ଦେଇ ମାତାଙ୍କୁ ଚଢ଼ାଇ । ୧୫୯୩

ବାରମ୍ବାର ବେନି ଭାଇ ସଭିଙ୍କୁ ଭେଟିଲେ,
ଜନନୀମାନଙ୍କୁ ସମ ସ୍ନେହେ ବାନ୍ଧିଇଲେ ।
ସାଜ ଗଜ ରଥ ସାଜ ବିବିଧ ବାହାନ,
କରିଲେ ଭରତ ନୃପ-ସମାଜ ପ୍ରସ୍ଥାନ । ୧୫୯୪

ହୃଦୟରେ ଧରି ସୀତା ଶ୍ରୀରାମ ଲକ୍ଷ୍ମଣ,
ଅଚେତେ ସକଳେ ପଥେ ଚଳନ୍ତି ଯେସନ ।
ହାତୀ ଘୋଡ଼ା ଆଦି ପଶୁ ସତେ ହୃଦେ ହାରି,
ଚାଲିଛନ୍ତି ପରାଧୀନ ହୋଇ ମନ ମାରି । ୧୫୯୫

ଗୁରୁ ଗୁରୁ-ପତ୍ନୀ ପଦ ବନ୍ଦି ରଘୁବର,
ସେନି ସୀତା ଲକ୍ଷ୍ମଣଙ୍କୁ ସହିତେ ସତ୍ୱର,
ହରଷ ବିଷାଦ ଭରି ଅବଶ ଶରୀରେ,
ବାହୁଡ଼ି ଆସିଲେ ପ୍ରଭୁ ସ୍ୱପର୍ଣ୍ଣ-କୁଟୀରେ । ୧୫୯୬

ନିଷାଦଙ୍କୁ ବିଦା କଲେ ଉଚିତ ସମ୍ମାନେ,
ଫେରିଲେ ବିରହ ବ୍ୟଥା ଭରି ରାମ ପ୍ରାଣେ ।
କୋଲ୍ହ କିରା କିରାତାଦି ଯେତେ ବନଚାରୀ,
ସଭିଏ ସମର୍ପିଲେ ଉପହାର ବହୁ ଆଣି । ୧୫୯୭

ବସି ବଟ ତଳେ ପ୍ରଭୁ ସସୀତା ଲକ୍ଷ୍ମଣ,
ବିରହେ ବିକଳ ହେଲେ ଗୁହ ପ୍ରିୟଜନ ।
ଭରତଙ୍କ ପ୍ରୀତି ଆଚରଣ ଅନୁରାଗେ,
କହନ୍ତି ଜାନକୀ ଆଉ ଲକ୍ଷ୍ମଣଙ୍କ ଆଗେ । ୧୫୯୮

ମନ କର୍ମ ବାକ୍ୟେ ସେହି ପ୍ରଶାନ୍ତ ପୀରତି,
ଶ୍ରୀମୁଖରେ କହିଗଲେ ପ୍ରେମେ ରଘୁପତି ।
ସେହି କାଳେ ଯେତେ ପଶୁ ପକ୍ଷୀ ଜଳ ମୀନ,
ହେଲେ ଚିତ୍ରକୂଟ ଚର ଅଚର ମଳିନ । ୧୫୯୯

ରଘୁନାଥଙ୍କର ଦଶା ଦେଖି ଦେବଗଣ,
କୁସୁମ ବରଷି କଲେ ସ୍ୱଦଶା ବର୍ଣ୍ଣନ ।
ପ୍ରଣମି ତାହାଙ୍କୁ ପ୍ରଭୁ, ଦେବାରୁ ଭରସା,
ଡର ଭୟ ତେଜ ମନୁ ଫେରିଲେ ସହସା । ୧୬୦୦

ଜାନକୀ ଲକ୍ଷ୍ମଣ ସହ ରାମ ରଘୁପତି,
ପର୍ଣ୍ଣ କୁଡ଼ିଆରେ ରହି ଏପରି ଶୋଭନ୍ତି—
ଜ୍ଞାନ ଭକ୍ତି ବୈରାଗ୍ୟ କି ମାନବ ଶରୀରେ,
ଶୋଭା ପାଉଛନ୍ତି ଆସି ଏ ପର୍ଣ୍ଣ-କୁଟୀରେ । ୧୬୦୧

ମୁନୀଶ ବ୍ରାହ୍ମଣ ଗୁରୁ ଭୂପତି ଭରତ,
ଶ୍ରୀରାମ ବିରହେ ଦୁଃଖୀ ସମାଜ ସମସ୍ତ ।
ପ୍ରଭୁଙ୍କର ଗୁଣରାଶି ଗୁଣି ହୃଦୟରେ,
ନୀରବେ ଚଳନ୍ତି ସର୍ବେ ସେ ବନ ପଥରେ । ୧୬୦୨

ସମସ୍ତେ ଯମୁନା ପାର ହେଲେ ସେ ଦିବସେ,
ଦିବସ ବିତିଲା ରହି ପୂର୍ବ ଉପବାସେ ।
ଦ୍ୱିତୀୟ ଦିବସ ଡେରା କଲେ ଗଙ୍ଗାପାରେ,
କଲେ ବ୍ୟବସ୍ଥାଦି ରାମସଖା ସେହିଠାବରେ । ୧୬୦୩

ସଇ ପାରି ହୋଇ ଗୋମତୀରେ ସ୍ନାନ କଲେ,
[illegible] ଅଯୋଧ୍ୟା [illegible] ।

ଜନକ ସେଠାରେ ରହି ଦିନ କାଳ ରହି,
ସମ୍ଭାଳିଲେ ରାଜକାର୍ଯ୍ୟ ଆଦି ଶ୍ରମ ସହି । ୧୬୦୪

ସମର୍ପି ସଚିବ ଗୁରୁ ଭରତଙ୍କୁ ରାଜ୍ୟ,
ଚଳିଲେ ମିଥିଳା ସାଜ ଆପଣା ସମାଜ ।
ଗୁରୁ ଉପଦେଶ ମାନି ପୁର ନାରୀ ନରେ,
ରାମ ରାଜଧାନୀରେ ସେ ସୁଖେ ବାସ କଲେ । ୧୬୦୫
ରାମଙ୍କ ଦର୍ଶନ ପାଇଁ ଅଯୋଧ୍ୟା ନିବାସୀ,
ନାନାଦି ନିୟମ ବ୍ରତେ ହୋଇ ଉପବାସୀ ।
ସୁଖ ଭୋଗ ବିଭୂଷଣ ତେଜି ସକଳ,
ଚୌଦ ବର୍ଷ ଶେଷ ଯାଏଁ ରହିଲେ କେବଳ । ୧୬୦୬

ଭରତ ସଚିବ ଭୃତ୍ୟେ କହିଲେ ବୁଝାଇ,
ସର୍ବେ ନିଜ କାର୍ଯ୍ୟରତ ହେଲେ ଆଜ୍ଞା ପାଇ ।
କନିଷ୍ଠ ଭାଇକୁ ଡାକ ପୁଣି ଶିଖାଇଲେ,
ସମସ୍ତ ମାତାଙ୍କ ସେବା ତାଙ୍କୁ ଅରପିଲେ । ୧୬୦୭

ବିପ୍ରଙ୍କୁ ଭରତ ଡାକ ଯୋଡ଼ି ବେନି କର,
ପ୍ରଣମି କହିଲେ କଥା ବିନୟେ ସୁନ୍ଦର ।
ବଡ଼ ସାନ ଭଲ ମନ୍ଦ କାର୍ଯ୍ୟ ଯେତେ ଯାହା,
ସଙ୍କୋଚ ନ କରି ମନେ ଆଦେଶିବ ତାହା । ୧୬୦୮

ପରିଜନ ପୁରଜନ ପ୍ରଜାଙ୍କୁ ଡକାଇ,
ସମସ୍ତ ବ୍ୟବସ୍ଥା କଲେ ପାଖରେ ବସାଇ ।
ଗୁରୁ ଗୃହେ ଗଲେ ପୁଣି ସାନୁଜ ଭରତ,
କହିଲେ ପ୍ରଣାମ କରି ଯୋଡ଼ି ବେନି ହସ୍ତ । ୧୬୦୯
"ହେ ଗୁରୁ ପାଇଲେ ଆଜ୍ଞା ରହିବି ନିୟମେ"
କହିଲେ ମୁନୀଶ ତାଙ୍କୁ ପୁଲକେ ସପ୍ରେମେ ।
"ବୁଝିବ କରିବ ତୁମେ କହିବ ବା ଯାହା,
ଜଗତେ ଧର୍ମର ସାର ହୋଇବ ତ ତାହା ।" ୧୬୧୦

ମୁନି ଶିଷ୍ୟଶିଷ ପାଇ ଡକାଇ ଗଣକେ,
ଶୁଭ ଦିନ ସ୍ଥିର କଲେ ପରାଣ ପୁଲକେ ।
ଅଯୋଧ୍ୟାର ସିଂହାସନେ ସକଳ ବିଧିରେ
ପ୍ରଭୁଙ୍କ ପାଦୁକା ବେନି ଧୀରେ ସଂସ୍ଥାପିଲେ । ୧୭୧୧

ରାମମାତା ଗୁରୁଙ୍କ ପଦେ ପ୍ରଣତି ଜଣେଇ,
ପ୍ରଭୁ ପଦ-ପାଦୁକାର ଅନୁମତି ନେଇ,
ନନ୍ଦିଗ୍ରାମେ ରଚି ଏକ ପତ୍ରର କୁଟୀର,
ରହିଲେ ସେଠାରେ ଧର୍ମ ଧୁରନ୍ଧର ଧୀର । ୧୭୧୨

ଶିରେ ବନ୍ଧି ଜଟାଜୁଟ କଟିରେ ବଳ୍କଳ,
କୁଶ ଶଯ୍ୟା ସଜାଇଲେ ଖୋଳି ଭୂଇଁତଳ ।
ଆସନ ବସନ ପାତ୍ର ବ୍ରତ ଓ ନିୟମ,
ପ୍ରେମେ ଆଚରିଲେ ସୁକଠୋର ମୁନି ଧର୍ମ । ୧୭୧୩

ବସନ ଭୂଷଣ ଭୋଗ ସୁଖ ସମୁଦାୟ,
କାୟମନୋବାକ୍ୟେ ତ୍ୟାଗ କଲେ ତୃଣ ପ୍ରାୟ ।
ଯେ ଅଯୋଧ୍ୟା ସୁଷମାକୁ ଇନ୍ଦ୍ରେ ପ୍ରଶଂସନ୍ତି,
କୁବେର ଯେ ନୃପ-ଧନେ ଲଜ୍ଜିତ ହୁଅନ୍ତି । ୧୭୧୪

ବିରାଗେ ସେ ପୁରେ ବାସ କରନ୍ତି ଭରତ,
ଚମ୍ପାବନେ ଅନାସକ୍ତ ଭ୍ରମର ଯେମନ୍ତ ।
ଭାଗ୍ୟବନ୍ତ ଜନ ଯିଏ ରାମ ଅନୁରାଗୀ,
ବାନ୍ତ ପରି ଭୋଗୈଶ୍ବର୍ଯ୍ୟ ଥାଆନ୍ତି ତିଆଗି । ୧୭୧୫

ଶରୀର ଦିନକୁଦିନ ହୁଅଇ ଦୁର୍ବଳ,
ମେଦ କମେ ନ କମଇ ମୁଖ ଛବି ବଳ ।
ନିତ୍ୟ ନବ-ରାମ-ପ୍ରେମ-ପଣ ହୁଏ ପୀନ,
ବଢ଼େ ଧର୍ମବଳ, ମନ ନ ହୁଏ ମଳିନ । ୧୭୧୬

ଶରତ ଆଗମେ ଯେହ୍ନେ ହ୍ରାସ ପାଏ ଜଳ,
ଶୋଭଇ ବେତସ ଆଉ ଫୁଟଇ କମଳ ।

ସଂଯମ ନିୟମ ଦମ ଶମ ଉପବାସ,
ଏ ତାରା, ଭରତ-ହୃଦ ବିମଳ ଆକାଶ । ୧୬୧୭

ସେ ଆକାଶ ଧ୍ରୁବତାରା ଅଟଳ ବିଶ୍ୱାସ,
ଚୌଦ ବର୍ଷ ଶେଷ ସୀମା ପୂର୍ଣ୍ଣିମା ପ୍ରକାଶ ।
ସ୍ୱାମୀ ଶ୍ରୀରାମଙ୍କ ସ୍ମୃତି ସୁର ବୀଥି ସମ,
ରାମ-ପ୍ରେମ ସୁବିମଳ ଶଶି ମନୋରମ ।
ସମାଜ-ତାରକା ଗଣେ ହୋଇ ବିଖଚିତ,
ଏ ଆକାଶ ନିତ୍ୟ ସୁବିମଳ ସୁଶୋଭିତ । ୧୬୧୮

ଭରତଙ୍କ ବସ ବାସ କର୍ମ ଆଚରଣ,
ଭକତି ବୈରାଗ୍ୟ ଗୁଣ ଐଶ୍ୱର୍ଯ୍ୟ ଲକ୍ଷଣ-
ବର୍ଣ୍ଣିବାକୁ ସଙ୍କୁଚିତ ସୁକବି ପରମ,
ସ୍ୱୟଂ ବାଣୀ ଶେଷ ଗଣେଶଙ୍କୁ ବି ଅଗମ୍ୟ । ୧୬୧୯

ନିତ୍ୟ ପୂଜା କରୁଥାନ୍ତି ପ୍ରଭୁଙ୍କ ପାଦୁକା,
ହୃଦେ ନ ସମ୍ଭାଳେ ପ୍ରେମ ଲଭି ପ୍ରଭୁ କୃପା ।
ସେ ପାଦୁକାଠାରୁ ନେଇ ଆଜ୍ଞା ଉପଦେଶ,
ସେ ବୁଝନ୍ତି ରାଜକାର୍ଯ୍ୟ, ବୁଝନ୍ତି ସେ ଦେଶ । ୧୬୨୦

ତନୁ ପୁଲକିତ ହୃଦେ ନିତ୍ୟ ସୀତାରାମ,
ନୟନେ ପ୍ରେମାଶ୍ରୁ ଜଳ, ଜପେ ରାମ ନାମ ।
ଶ୍ରୀରାମ ଲକ୍ଷ୍ମଣ ସୀତା ରହନ୍ତି କାନନେ,
ଭରତ ତପରେ ତନୁ କଷନ୍ତି ଭବନେ । ୧୬୨୧

ଉଭୟ ଦିଗରୁ ଦେଖି କହନ୍ତି ସମସ୍ତେ,
ଭରତ ପ୍ରଶଂସନୀୟ କେବଳ ଜଗତେ ।
ବ୍ରତ ଓ ନିୟମ ଶୁଣି ସାଧୁ ସଙ୍କୁଚିତ,
ମୁନିରାଜେ ଦଶା ଦେଖି ହୁଅନ୍ତି ଲଜ୍ଜିତ । ୧୬୨୨

ପରମ ପବିତ୍ର ଭରତଙ୍କ ଆଚରଣ,
ମଧୁର ମଞ୍ଜୁଳ ମୋଦ ମଙ୍ଗଳ କାରଣ ।

ହରଇ କଠିନ କଳି ଭୟଙ୍କର କ୍ଳେଶ,
ମହା ମୋହ-ଅନ୍ଧକାର ଦଳନେ ଦିନେଶ । ୧୬୨୩

ପାପ-ପୁଞ୍ଜ-କୁଞ୍ଜରକୁ ଦଳନେ କେଶରୀ,
ସନ୍ତାପ ସବୁକୁ ନାଶିବାକୁ ଯମ ପରି ।
ଭକତ ରଞ୍ଜନ ଭବ-ଭୟ-ଭାର ଧ୍ୱଂସୀ,
ପରମ ଅମିୟ ସାର ରାମ-ପ୍ରେମ ଶଶୀ । ୧୬୨୪

ଭରତ ଯେ ସୀତା-ରାମ-ପ୍ରେମାମୃତେ-ପୂର୍ଣ୍ଣ,
କହ ଭଲା ନୋହିଥିଲେ ତାଙ୍କର ଜନମ ।
ମୁନି ମନ ଅଗୋଚର କଠୋର ସଂଯମ,
ଯମ ଶମ ଦମ ଉପବାସ ଓ ନିୟମ;
କିଏ ଏହି ବ୍ରତ ପାଳି ପାରନ୍ତା ଜଗତେ,
କେ ରହି ପାରନ୍ତା ଅବିଚଳ ତାର ମତେ । ୧୬୨୫

କେ ଆପଣା ଯଶ ଛଳେ କରନ୍ତା ହରଣ,
ଦାରିଦ୍ର୍ୟ ସନ୍ତାପ ଦୁଃଖ ଦମ୍ଭାଦି ଦୂଷଣ ।
କିଏ ଶଠ ତୁଳସୀକୁ ବଳେ ହଠ କରି,
ରାମ ସମ୍ମୁଖକୁ ନେଇ ପାରିଥାନ୍ତା ଧରି । ୧୬୨୬

କହନ୍ତି ତୁଳସୀ ଦାସ ଯେ କେହି ଆଦରେ,
ଶୁଣିବ ଭରତ କଥା ନିର୍ମଳ ମନରେ ।
ରାମ-ସୀତା ପାଦ-ପଦ୍ମେ ହେବ ତାର ରତି,
ସଂସାର ବିଷୟ-ରସେ ହୋଇବ ବିରତି । ୧୬୨୭

ଇତି ଶ୍ରୀ ରାମ ଚରିତ ମାନସେ ସକଳ କଳି କଳୁଷ
ବିଧ୍ୱଂସନେ, ବିମଳ ବିଜ୍ଞାନ-ବୈରାଗ୍ୟ-ସମ୍ପାଦନୋ
ନାମ ଦ୍ୱିତୀୟଃ ସୋପାନଃ ॥

---